# ଭାରତୀୟ ସଂସ୍କୃତି

(ବୈଦିକ ପର୍ବ)

ଦ୍ୱିତୀୟ ଭାଗ

ଶ୍ରୀ ସୁରେନ୍ଦ୍ରନାଥ ଶତପଥୀ



ଓଡ଼ିଶା ବୁକ୍ ଷ୍ଟୋର

# ଭାରତୀୟ ସଂସ୍କୃତି

(ବୈଦିକ ପର୍ବ)

ଦ୍ୱିତୀୟ ଭାଗ

ଲେଖକ :
ଶ୍ରୀ ସୁରେନ୍ଦ୍ରନାଥ ଶତପଥୀ

ପ୍ରକାଶକ :
ଶ୍ରୀ ଗୋବିନ୍ଦଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଚ୍ଛଦ :
ଅସିତ୍ ମୁଖାର୍ଜି

ପ୍ରଥମ ପ୍ରକାଶ : ୧୯୮୯

ମୁଦ୍ରଣ :
ସପ୍ତର୍ଷି ପ୍ରିଣ୍ଟର୍ସ, କଟକ-୧୦

ମୂଲ୍ୟ :
ସାଧାରଣ ଟ ୪୫-୦୦
ଶୋଭନ ଟ ୫୦-୦୦

# BHARATIYA SANSKRUTI

(VAIDIKA PARVA)

Volume—II

*Published by*
**Sri Gobinda Charan Patra**
Orissa Book Store
Cuttack-753002

First Edition : 1989

**Price Rs. 50-00**

ଓଡ଼ିଶାର ବରେଣ୍ୟ କବି
ଶ୍ରୀ ରମାକାନ୍ତ ରଥଙ୍କ
ହସ୍ତରେ ସମର୍ପିତ ।

ସୁରେନ୍ଦ୍ରନାଥ ଶତପଥୀ

# ପ୍ରାଗ୍‌ଭାଷ

ବିଶ୍ୱ ବକ୍ଷରେ ଯେଉଁ ଦୁଇଟି ସାଂସ୍କୃତିକ ଧାରାର ପ୍ରବାହ ଅବ୍ୟାହତ ଭାବରେ ସହସ୍ର ସହସ୍ର ବର୍ଷ ଧରି ବହିଚାଲିଛି, ତନ୍ମଧ୍ୟରୁ ଭାରତୀୟ ସାଂସ୍କୃତିକ ଧାରା ହେଉଛି ଅନ୍ୟତମ ଏବଂ ଅପରଟି ହେଉଛି ଚୈନିକ ସାଂସ୍କୃତିକ ଧାରା । ଭାରତୀୟ ସଂସ୍କୃତିର ମୂଳ ଉତ୍ସ ବୈଦିକ ସଂସ୍କୃତି ହେଲେ ହେଁ ଯୁଗ ଯୁଗ ଧରି ଏହି ସାଂସ୍କୃତିକ ଧାରାରେ ବହୁ ସଂସ୍କୃତିର ଉପଧାରାମାନ ଆସି ମିଶିଛନ୍ତି ଏବଂ ତଦ୍ୱାରା ଏହି ଧାରାଟିକୁ ପୁଷ୍କଳ ଭାବରେ ପରିପୁଷ୍ଟ କରିଛନ୍ତି । ଆର୍ଯ୍ୟ ଓ ଆର୍ଯ୍ୟେତର ସଂସ୍କୃତିର ମିଶ୍ରଣରେ ଗଢ଼ି ଉଠିଛି ଭାରତୀୟ ସଂସ୍କୃତି । ଏହି ମିଶ୍ରଣ ପ୍ରକ୍ରିୟା ଏତେ ବର୍ଷ ଧରି ଚାଲି ଆସିଛି ଯେ କେଉଁଟା ନିଛୁଟା ଆର୍ଯ୍ୟ-ସଂସ୍କୃତି ଓ କେଉଁଟା ନୁହେଁ ତାହା ନିର୍ଣ୍ଣୟ କରିବା କଠିନ । ଏହା ସତ୍ତ୍ୱେ ମୂଳ ଭାରତୀୟ ସଂସ୍କୃତିର ଆତ୍ମାଟି ରହିଛି ଅପରିବର୍ତ୍ତିତ । ସୁଦୂର ଅତୀତରେ ଯେଉଁ ବୈଦିକ ସଂସ୍କୃତିର ଶିଶୁଟି କୁଆଁ କୁଆଁ ରାବ କରି 'ସପ୍ତସିନ୍ଧୁ'ର ଗଗନପବନକୁ ମୁଖରିତ କରି ଦେଇଥିଲା, ତାହା ପରେ ପରେ ସାରା ଭାରତବର୍ଷରେ ସଂପ୍ରସାରିତ ହେବା ସଙ୍ଗେ ସଙ୍ଗେ ଭାରତବର୍ଷର ସୀମା ଡେଇଁ ମଧ୍ୟଏସିଆ, ଆଫ୍ରିକା, ଇଉରୋପ ଆଦି ଅଞ୍ଚଳକୁ ବ୍ୟାପି ଯାଇଥିଲା । ଅତଏବ, କେବଳ ଭାରତୀୟ ସଂସ୍କୃତି ନୁହେଁ, ସାରା ବିଶ୍ୱ ସଂସ୍କୃତି ବିଷୟରେ ଜାଣିବାକୁ ହେଲେ ଆମକୁ ବୈଦିକ ସଂସ୍କୃତି ସଂପର୍କରେ ଅନୁଧ୍ୟାନ କରିବାକୁ ହେବ ।

ବର୍ତ୍ତମାନ ବିଂଶ ଶତାବ୍ଦୀର ଶେଷପାଦ ; ଏକବିଂଶ ଶତାବ୍ଦୀର ଗୁରୁ ଗୁରୁ କରାଘାତ କାଳର ଦ୍ୱାରଦେଶରେ ବାରମ୍ବାର ଶୁଭୁଛି । ଇତି ମଧ୍ୟରେ ପୃଥିବୀର ସଭ୍ୟତା ଓ ସଂସ୍କୃତି ବହୁତ ଆଗେଇ ଗଲାଣି । ତାହା ସହିତ ସମତାଳ ରକ୍ଷା କରି ଭାରତୀୟ ସଭ୍ୟତା ଓ ସଂସ୍କୃତି ମଧ୍ୟ ଆଗେଇ ଚାଲିଛି ଅତି ଦ୍ରୁତ ଗତିରେ । ଏହା ସତ୍ତ୍ୱେ ଭାରତୀୟ ସଂସ୍କୃତି ତାହାର ମୂଳ ଉତ୍ସଠାରୁ ବିଚ୍ୟୁତ ହୋଇ ନାହିଁ । ଏହି ସଂସ୍କୃତିର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଯେପରି ଏକ ଅଚ୍ଛେଦ୍ୟ କନକ ସୂତ୍ରରେ ଅନ୍ତଃସ୍ୟୂତ ! ଏହି ସୂତ୍ରଟି ହେଉଛି ବୈଦିକ ସଂସ୍କୃତି । ଯେତେ ପୁରାତନ ହେଲେ ମଧ୍ୟ ବେଦକୁ ଆମେ ଛାଡ଼ି ପାରିନାହୁଁ । କୌଣସି ଗୋଟିଏ ଅଲଂଘନୀୟ କଥାକୁ ଆମେ 'ବେଦର ଗାର' ସହିତ ତୁଳନା କରିଥାଉଁ । ଏତେ ପରିବର୍ତ୍ତନ ଓ ଘାତପ୍ରତିଘାତ ସତ୍ତ୍ୱେ ଭାରତୀୟ ପରିବାର ବଞ୍ଚିଛି । ଏବେ ମଧ୍ୟ ଏକ

ପରିବାରରେ ସ୍ୱାମୀ, ସ୍ତ୍ରୀ, ପୁତ୍ର, କନ୍ୟା, ଶାଶୂ, ଶ୍ୱଶୁର ଆଦି ଶାନ୍ତିପୂର୍ଣ୍ଣ ଭାବରେ ଯୌଥ ଜୀବନ କଟାଉଛନ୍ତି । ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରେ ଯୌଥ ପରିବାର ବନ୍ଧ ଭାବରେ ବିପର୍ଯ୍ୟସ୍ତ ହେଲେ ମଧ୍ୟ ଏବେ ବି ଏହା ଏକ ଆଦର୍ଶ ପରିବାରରେ ଭାରତରେ ମାନ୍ୟତା ପାଇଆସେ । ଏବେ ମଧ୍ୟ ପରିବାରର ଜ୍ୟେଷ୍ଠ ବ୍ୟକ୍ତି ସମସ୍ତଙ୍କର ସମ୍ମାନନୀୟ ଏବଂ କନିଷ୍ଠ ବ୍ୟକ୍ତି ସମସ୍ତଙ୍କର ସ୍ନେହ ଓ ଶ୍ରଦ୍ଧାର ଆସ୍ପଦ । ଏବେ ମଧ୍ୟ ବିବାହ ବେଦୀରେ ପାଣି-ଗ୍ରହଣ ବେଳେ ସ୍ୱାମୀ ସ୍ତ୍ରୀକୁ କହନ୍ତି :

"ଗୃହ୍ଣାମି ତେ ସୌଭଗତ୍ୱାୟ ହସ୍ତଂ ମୟା ପତ୍ୟା ଜରଦଷ୍ଟିଃ ଯଥା ଅସଃ ।" ଅର୍ଥାତ୍ ମୁଁ ସ୍ୱାମୀ ହିସାବରେ ତୁମର ସୌଭାଗ୍ୟ ଆନୟନ ଲାଗି ତୁମ ହାତ ଧରୁଛି । ଆମେ ବାର୍ଦ୍ଧକ୍ୟାବସ୍ଥା ପର୍ଯ୍ୟନ୍ତ ସ୍ୱାମୀ ସ୍ତ୍ରୀ ହୋଇ ରହିଥିବା । ଅତଏବ, ଏବେ ମଧ୍ୟ ଭାରତୀୟ ଜନଜୀବନକୁ ବୈଦିକ ସଂସ୍କୃତି ସର୍ବତୋଭାବରେ ଆଚ୍ଛନ୍ନ କରି ରଖିଛି ।

ଏତେ ପରିବର୍ତ୍ତନର ବାତ୍ୟା ବହିବା ସତ୍ତ୍ୱେ ଭାରତୀୟ ସଂସ୍କୃତିର ମୂଳଭିତ୍ତି ଦୋହଲି ଯାଇନାହିଁ । ତାହା ଯେପରି ଅଚଳ ମହାମେରୁ ଭଳି ଠିଆ ହୋଇ ରହିଛି ; ଆହୁ ସେହିପରି ଯୁଗ ଯୁଗ ଧରି ଠିଆ ହୋଇ ରହିଥିବ ମଧ୍ୟ ! ଏହି ସ୍ଥିତି ପ୍ରତି ଲକ୍ଷ୍ୟ କରି ମ୍ୟାକ୍ସମୁଲର (Maxmuller) ତାଙ୍କ ହିବର୍ଟ ବକ୍ତୃତାମାଳାରେ (Hibbert Lectures, III) ଯଥାର୍ଥରେ କହିଛନ୍ତି :

"What we can watch and study in India better than anywhere else is, how religious thoughts and religious language arise, how they gain force, how they spread changing their forms as they pass from mouth to mouth, from mind to mind, yet always retaining some faint contiguity with the spring from which they rose at first."

ଏହି ଯେଉଁ ଧର୍ମୀୟ ଚେତନା କଥା ମ୍ୟାକ୍ସମୁଲର କହିଛନ୍ତି, ତାହା ସାମଗ୍ରିକ ଭାରତୀୟ ସଂସ୍କୃତି ପ୍ରତି ପ୍ରଯୁଜ୍ୟ; କାରଣ ଭାରତରେ ବୈଦିକ କାଳରୁ ହିଁ ଧର୍ମ ଓ ସଂସ୍କୃତି ପରସ୍ପର ସହିତ ଓତଃପ୍ରୋତ ଭାବରେ ଜଡ଼ିତ ହୋଇ ଆସିଅଛି ।

ଏହାର ଅର୍ଥ ନୁହେ ଯେ ଭାରତୀୟ ସଂସ୍କୃତି ସବୁବେଳେ ପରଂପରାକୁ ଅନ୍ଧ ଭାବରେ ଜାବୁଡ଼ି ଧରିଛି । ପରମ୍ପରାକୁ ସମ୍ମାନ ଦେବାର ଅର୍ଥ ନୁହେଁ ଏହାକୁ ଅନ୍ଧ ଭାବରେ

ଅନୁସରଣ କରିବା । ଭାରତୀୟ ସଂସ୍କୃତି ଯେଉଁଠି ଆବଶ୍ୟକ ସେଠି ପରମ୍ପରାକୁ ରକ୍ଷା କରିଛି ; ପୁଣି ଯେଉଁଠି ଆବଶ୍ୟକ ସେଠି ପରମ୍ପରାକୁ ଅତିକ୍ରମ କରି ଯାଉଛି । ଯୁଗ-ଧର୍ମକୁ ଅନୁସରଣ କରି ପରମ୍ପରା ବଦଳି ଯାଇଛି ଏବଂ ନୂତନ ପରମ୍ପରାର ସୃଷ୍ଟି ହୋଇଛି । ଏହି ନୂତନ ପରମ୍ପରା ଭବିଷ୍ୟତକୁ ବଦଳି ଯାଇ ଆବଶ୍ୟକ ହେଲେ ଯୁଗଧର୍ମୀ ଆଉ ଏକ ନୂତନ ପରମ୍ପରା ପାଇଁ ବାଟ ଛାଡ଼ିଦେବ । ଯୁଗ ଯୁଗ ଧରି ଭାରତୀୟ ସଂସ୍କୃତିର ଧ୍ୱନି ହୋଇ ଆସିଛି ;

"ଗତଂ ଗତଂ ସର୍ବମୁପେକ୍ଷଣୀୟମ୍ ।
ବରଂ ବରଂ ସର୍ବମପେକ୍ଷଣୀୟମ୍ ।।"

ଅର୍ଥାତ୍ ଯାହା ଚାଲିଯାଇଛି, ତାହାକୁ ଉପେକ୍ଷା କରିବା ଉଚିତ । ଭବିଷ୍ୟତରେ ଯାହା ଭଲ ଆସିବ, ତାହା ପାଇଁ ଅପେକ୍ଷା କରିବା ଉଚିତ । ଏହା ହେଉଛି ଏକ ବଳିଷ୍ଠ ଆଶାବାଦର ସ୍ୱର । ସହସ୍ର ସହସ୍ର ବର୍ଷ ତଳେ ବୈଦିକ ଋଷିମାନେ ଜୀବନର ଆନନ୍ଦରେ ମାତି ଉଠି ଯେଉଁ ଆଶାବାଦର ସ୍ୱର ଉତ୍ତୋଳନ କରିଥିଲେ, ଏହା ତାହାର ପ୍ରତିଧ୍ୱନି ମାତ୍ର ! ଏହି ଆଶାବାଦ ଭାରତୀୟ ସଂସ୍କୃତିର ଚିର ପ୍ରବହମାନ ଧାରାଟିକୁ ସମୁଜ୍ଜ୍ୱଳ କରାଇ ରଖିଛି—ଚିରଞ୍ଜୀବନ୍ତ କରାଇ ରଖିଛି । ଏହି ପରିପ୍ରେକ୍ଷୀରେ ଯେତେ ପୁରାତନ ହେଲେ ମଧ୍ୟ, ଆମର ବୈଦିକ ସଂସ୍କୃତି ବିଷୟରେ ଅନୁଧ୍ୟାନ କରିବାର ଯଥେଷ୍ଟ ଆବଶ୍ୟକତା ଅଛି ; କାରଣ ତାହାରି ଭିତରେ ଲୁଚି ଛପି ରହିଛି ଆମର ଆତ୍ମା । ଆମେ ନିଜକୁ ତାହାରି ଭିତରେ ହିଁ ଆବିଷ୍କାର କରିପାରିବା ।

'ଭାରତୀୟ ସଂସ୍କୃତି : ବୈଦିକ ପର୍ବ' ପୁସ୍ତକର ପ୍ରଥମ ଭାଗଟି ପୂର୍ବରୁ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ଏହାର ଦ୍ୱିତୀୟ ଭାଗଟି ପ୍ରକାଶିତ ହେବାକୁ ଯାଉଛି । ବୈଦିକ ପର୍ବଟିକୁ ସର୍ବମୋଟ ଚାରିଗୋଟି ଭାଗରେ ପ୍ରକାଶ କରାଯିବାର କଳ୍ପନା କରାଯାଇଛି । ସୁଧୀ ପାଠକପାଠିକାମାନଙ୍କର ସଦିଚ୍ଛା ବଳରେ ଆଉ ଦୁଇଗୋଟି ଭାଗ ଅଚିରେ ପ୍ରକାଶିତ ହୋଇପାରିବ ବୋଲି ମୁଁ ଆଶା କରୁଛି ।

ଉକ୍ତ ପୁସ୍ତକରେ ବୈଦିକ ସଂହିତୋତ୍ତର ସାହିତ୍ୟ, ବୈଦିକ ଶିକ୍ଷା, ବୈଦିକ ଆଖ୍ୟାନ, ବେଦ-ମନ୍ତ୍ରର ପ୍ରତୀକତା, ବୈଦିକ ସମାଜ, ବୈଦିକ ବିବାହ ଓ ନାରୀ ଆଦି ବିଷୟରେ ଆଲୋଚନା କରାଯାଇଛି । ଉପନିଷଦ-ସାହିତ୍ୟରେ ଭାରତୀୟ ବୌଦ୍ଧିକତା ଯେପରି ଭାବରେ ଚେତନାର ଊର୍ଦ୍ଧ୍ୱତମ ଶିଖରରେ ପହଞ୍ଚିଥିଲା, ତାହା ଭାବିଲେ ବାସ୍ତବିକ ଯୁଗପତ୍ ମୁଗ୍ଧ ଓ ବିସ୍ମିତ ହେବାକୁ ପଡ଼ିଥାଏ । ଉପନିଷଦ କିନ୍ତୁ ମାଟିଗୋଡ଼ର ପୃଥିବୀକୁ ଛାଡ଼ି ନଥିଲା ; ତାହାର ପାଣିପବନରେ ପରିପୁଷ୍ଟ ମଣିଷକୁ ମଧ୍ୟ ଛାଡ଼ିନଥିଲା । ମଣିଷ

ମଧ୍ୟରେ ଦିବ୍ୟତ୍ୱର ସନ୍ଧାନ କରିବା ଲାଗି, ମଣିଷ ମଧ୍ୟରେ ଭଗବାନଙ୍କୁ ଆବିଷ୍କାର କରିବା ଲାଗି ତାହା ଓଜସ୍ୱିନୀ ବାଣୀରେ ଆହ୍ୱାନ ଦେଇଥିଲା । ଭାରତୀୟ ଦର୍ଶନର ପ୍ରଧାନ ପ୍ରବକ୍ତା ରାଧାକୃଷ୍ଣନ୍‌ଙ୍କ ଭାଷାରେ :

> "There is nothing higher than man in this world. God transcendent is beyond us. God immanent is in man. Every human being must be regarded as sustaining, the possibility of rising to the divine state."
>
> (Religion and Culture p. 34)

ଉକ୍ତ ପୁସ୍ତକର ପ୍ରଥମ ପରିଚ୍ଛେଦରେ ଏହି ବିଷୟଟି ବିଶଦ ଭାବରେ ଆଲୋଚିତ ।

ଶ୍ରୀଅରବିନ୍ଦ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯେ କି ବେଦମନ୍ତ୍ରଗୁଡ଼ିକର ପ୍ରତୀକାତ୍ମକ ବ୍ୟାଖ୍ୟା କଲେ । ସେ ବେଦର 'ନିନ୍ୟା ବଚାଂସି' ବା 'ଗୋପନ ବାଣୀସମୂହ'ର ପ୍ରକୃତ ଦ୍ୱାରକୁ ଉଦ୍‌ଘାଟନ କଲେ । ଏହା ନିଶ୍ଚିତ ଭାବରେ ଏକ ବଳିଷ୍ଠ ଓ ଯୁଗପ୍ରବର୍ତ୍ତକ ପଦକ୍ଷେପ । ଏହି ପ୍ରତୀକାତ୍ମକ ଅର୍ଥ ଉପରେ ନିର୍ଭର କରି ଉକ୍ତ ପୁସ୍ତକରେ ବେଦମନ୍ତ୍ରର ପ୍ରତୀକତା ସମ୍ପର୍କରେ ଆଲୋଚନା କରାଯାଇଛି । 'ଘୃତ', 'ଯଜ୍ଞ', 'ଗୋ', 'ଅଶ୍ୱ' ଆଦି ଶବ୍ଦମାନଙ୍କର ପ୍ରକୃତ ଅର୍ଥ କ'ଣ ସେ ବିଷୟରେ ଆଲୋକପାତ କରାଯାଇଛି । ମନୁଷ୍ୟର ଜୀବନଯାତ୍ରା କିଭଳି ଯଜ୍ଞ ସଦୃଶ ଏବଂ କିପରି ଭାବରେ ଏହି ପଥରେ ଯଥୋଚିତ ଭାବରେ ଯାତ୍ରା କଲେ ପରିଶେଷରେ ସେ ଦିବ୍ୟାଲୋକର ସନ୍ଧାନ ପାଇ ପାରିବ, ତାହାର ସଙ୍କେତ ବେଦମନ୍ତ୍ରରେ ଦିଆଯାଇଛି । ଏହିସବୁ କଥାସମେତ ଆଉ ଅନେକ କଥା ଉକ୍ତ ପରିଚ୍ଛେଦରେ ଆଲୋଚିତ ।

ଏତଦ୍‌ବ୍ୟତୀତ ବୈଦିକ ଶିକ୍ଷା, ବୈଦିକ ସମାଜ ଓ ବୈଦିକ ବିବାହ ସମ୍ପର୍କରେ ସମ୍ପୃକ୍ତ ପରିଚ୍ଛେଦଗୁଡ଼ିକରେ ଯେଉଁ ଆଲୋଚନା କରାଯାଇଛି, ତାହା ମଧ୍ୟ ସମଧିକ କୌତୂହଳପ୍ରଦ । ତାହା ଏ ସମ୍ପର୍କରେ ଆମ୍ଭମାନଙ୍କର ସାଧାରଣ ଭାବରେ ଥିବା ଅନେକ ଭୁଲ ଧାରଣାକୁ ଦୂର କରିପାରିବ । ଗୋଟିଏ ଉଦାହରଣ ନିଆଯାଉ । ଆମେ ସାଧାରଣତଃ ଭାବିଥାଉଁ ଯେ ବୈଦିକ ସମାଜରେ ସ୍ତ୍ରୀର ଆସନ ପୁରୁଷର ଆସନଠାରୁ ଥିଲା ନିମ୍ନସ୍ତରରେ । ବୈଦିକ ସମାଜ ପିତୃପ୍ରଧାନ ଥିବାରୁ ଏଭଳି ସ୍ଥିତି ଉପୁଜିଥିଲା । ଏହା କିନ୍ତୁ ଠିକ୍ ନୁହେଁ । ବୈଦିକ ସମାଜ ଉଭୟଙ୍କୁ ସମାନ ଆସନ ଦେଇଥିଲା । ପରିବାରରେ ସ୍ତ୍ରୀର ଆସନ

ଥିଲା ଖୁବ୍ ସମ୍ମାନଜନକ । ଗୃହିଣୀକୁ ଗୃହ ବୋଲି କୁହାଯାଉଥିଲା ଏହାର ତାତ୍ପର୍ଯ୍ୟ ହେଲା, ଗୃହିଣୀ ଥିଲା ପରିବାରର ସର୍ବମୟକର୍ତ୍ତ୍ରୀ । ବୈଦିକ ଶିକ୍ଷା ମଧ୍ୟ ସେହିପରି ଥିଲା ଅତି ମହତ୍ତ୍ୱପୂର୍ଣ୍ଣ । ଏହାର ଉଦ୍ଦେଶ୍ୟ ଥିଲା ଛାତ୍ରର ଐହିକ ଓ ପାରତ୍ରିକ ଉଭୟବିଧ ଉନ୍ନତି-ସାଧନ ଲାଗି ତା'କୁ ପ୍ରସ୍ତୁତ କରିବା । ମୋଟ ଉପରେ ତାକୁ ଭଲ ମଣିଷଟିଏ କରି ଗଢ଼ି ତୋଳିବା ଥିଲା ଏହି ଶିକ୍ଷାର ଚରମ ଲକ୍ଷ୍ୟ । ସେଥିପାଇଁ ଗୁରୁ ସଦାବେଳେ ଶିଷ୍ୟଙ୍କୁ କହୁଥିଲେ 'ମନୁର୍ଭବ' ବା 'ମଣିଷଟିଏ ହୁଅ' । ସଂପୃକ୍ତ ପରିଚ୍ଛେଦଟିରେ ଏହି ଶିକ୍ଷାର ବିଭିନ୍ନ ଦିଗ ଉପରେ ବିଶଦ ଭାବରେ ଆଲୋଚନା କରାଯାଇଛି । ଶିକ୍ଷା ଦେବା ଦ୍ୱାରା ଓ ଶିକ୍ଷା ଗ୍ରହଣ କରିବା ଦ୍ୱାରା କପରି ଉଭୟ ଗୁରୁ ଓ ଶିଷ୍ୟ ଉପକୃତ ହେଉଥିଲେ, ଆଲୋଚନା ପ୍ରସଙ୍ଗରେ ସେ କଥା ମଧ୍ୟ କୁହାଯାଇଛି । ବୈଦିକ ବିବାହ ଥିଲା ସ୍ତ୍ରୀ ଓ ପୁରୁଷଙ୍କର ମିଳନ ଲାଗି ଏକ ପବିତ୍ର ଅନୁଷ୍ଠାନ । ବିବାହର ବନ୍ଧନକୁ ଜୀବଦ୍ଦଶାରେ ଛିନ୍ନ କରିବାର ପ୍ରଶ୍ନ ହିଁ ନଥିଲା । ସେହି ପବିତ୍ର ଭାବସୂଚକ ମନ୍ତ୍ରାବଳୀ ଏବେ ମଧ୍ୟ ହିନ୍ଦୁମାନଙ୍କ ବିବାହ-ବେଦୀରେ ଉଚ୍ଚାରିତ ହେଉଛି । ବୈଦିକ ଚିନ୍ତାଧାରା ଅନୁଯାୟୀ ଧରଣୀ ଓ ଚକ୍ରବାଳର ସମ୍ପର୍କ ଭଳି ସ୍ତ୍ରୀ ଓ ସ୍ୱାମୀଙ୍କର ସମ୍ପର୍କ ଅବିଚ୍ଛେଦ୍ୟ ଓ ଚିରନ୍ତନ । ଶଂସିତ ପୁସ୍ତକର ସଂପୃକ୍ତ ପରିଚ୍ଛେଦରେ ଏହିସବୁ ବିଷୟ ଉପରେ ଯଥେଷ୍ଟ ଆଲୋକପାତ କରାଯାଇଛି ।

ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ଓଡ଼ିଶା ବୁକ୍‌ଷ୍ଟୋର, କଟକ ବହନ କରିଥିବାରୁ ମୁଁ ଉକ୍ତ ସଂସ୍ଥାର ସ୍ୱତ୍ୱାଧିକାରୀ ଶ୍ରୀ ଗୋବିନ୍ଦଚରଣ ପାତ୍ରଙ୍କୁ ଧନ୍ୟବାଦ ଦେଉଛି । ପରିଶେଷରେ ଏହାର ନିର୍ଭୁଲ ମୁଦ୍ରଣ ଲାଗି ଯଥାସାଧ୍ୟ ଉଦ୍ୟମ କରିଥିବାରୁ ସପ୍ତର୍ଷି ପ୍ରିଣ୍ଟର୍ସ, କଟକଙ୍କ ସ୍ୱତ୍ୱାଧିକାରୀ ଶ୍ରୀ ବୈକୁଣ୍ଠନାଥ ଆଚାର୍ଯ୍ୟ ମଧ୍ୟ ସମଧିକ ଧନ୍ୟବାଦାର୍ହ ।

ପୁସ୍ତକଟି ସହୃଦୟ ପାଠକପାଠିକାମାନଙ୍କୁ କିଞ୍ଚିତ୍ ଆନନ୍ଦ ଦେଇପାରିଲେ ମୋର ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

ସୁରେନ୍ଦ୍ର ନାଥ ଶତପଥୀ

୩୧ । ୧୨ । ୮୯

ଏଇ ଲେଖକଙ୍କର ଅନ୍ୟାନ୍ୟ କୃତି :—

ବାସବଦତ୍ତା (ବୌଦ୍ଧ କାଳୀନ୍ ଗଳ୍ପ)

ଫଲଗୁ ଘାଟରେ ସନ୍ଧ୍ୟା (ଐତିହାସିକ ଗଳ୍ପ)

ଭାରତୀୟ ସଂସ୍କୃତି (୧ମରୁ ୫ମ ଖଣ୍ଡ)

# ସୂଚୀ



□□□

ପ୍ରଥମ ପରିଚ୍ଛେଦ

# ବୈଦିକ ସଂହିତୋତ୍ତର ସାହିତ୍ୟ

ଏହି ପୁସ୍ତକର ପ୍ରଥମ ଭାଗସ୍ଥ ସପ୍ତମ ପରିଚ୍ଛେଦରେ ବୈଦିକ ସାହିତ୍ୟ କିପରି ସଂହିତା, ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ ଓ ବେଦାଙ୍ଗ, ଏହିପରି ପାଞ୍ଚ ଭାଗରେ ବିଭକ୍ତ, ତାହା ଦର୍ଶା ଯାଇଛି ଏବଂ ସଂହିତା ସାହିତ୍ୟ ଉପରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯାଇଛି । ବର୍ତ୍ତମାନ ଅନ୍ୟ ବିଭାଗଗୁଡ଼ିକ ଉପରେ ପୃଥକ୍ ପୃଥକ୍ ଆଲୋଚନା କରିବା । ଏ ଗୁଡ଼ିକ ସମସ୍ତେ ବେଦ ପରେ ସୃଷ୍ଟ ; ଏଣୁ ସଂହିତୋତ୍ତର ସାହିତ୍ୟ ନାମରେ ଖ୍ୟାତ ।

ବ୍ରାହ୍ମଣ :

'ବ୍ରହ୍ମ' ଶବ୍ଦର ଗୋଟିଏ ଦ୍ୱିତୀୟ ଅର୍ଥ ଅଛି—ଯଜ୍ଞ । ଏହି ଅର୍ଥ ଶତପଥ ବ୍ରାହ୍ମଣରେ ଗୋଟିଏ ପଙ୍‌କ୍ତିରୁ ଆମେ ପାଇଥାଉ । ସେଠାରେ ଲେଖାଅଛି : "ଏଷ ବୈ ପ୍ରତ୍ୟକ୍ଷଂ ଯଜ୍ଞୋ ପ୍ରଜାପତିଃ ।" (୧) ଅର୍ଥାତ୍ ଯଜ୍ଞ ପ୍ରଜାପତି ସ୍ୱରୂପ । ପ୍ରଜାପତିଙ୍କ ଅନ୍ୟ ନାମ ବ୍ରହ୍ମ ; ତେଣୁ ଯଜ୍ଞ ବ୍ରହ୍ମ ସ୍ୱରୂପ । ଯଜ୍ଞୀୟ କର୍ମକାଣ୍ଡର ବ୍ୟାଖ୍ୟା ତଥା ବିବରଣ ପ୍ରସ୍ତୁତ କରିବା ହେଉଛି ବ୍ରାହ୍ମଣ ଗ୍ରନ୍ଥର ମୁଖ୍ୟ କାର୍ଯ୍ୟ । ଏହା ଯଜ୍ଞର ବୈଜ୍ଞାନିକ, ଆଧିଭୌତିକ ତଥା ଆଧ୍ୟାତ୍ମିକ ବ୍ୟାଖ୍ୟା କରିଥାଏ । ଏହା ଗଦ୍ୟ ଆକାରରେ ଲିଖିତ । ଯୋଗୀରାଜ ବସୁଙ୍କ କହିବା ଅନୁସାରେ :

> "Brahmanas stand for a huge mass of prose texts which contain speculations on the mantras, precepts for the application of mantras in differant sacrifices, details of sacrificial paraphernalia and theological, philosophical, grammatical, etymological and metrical speculations." (୨)

ସଂହିତା ଓ ବ୍ରାହ୍ମଣ ମଧ୍ୟରେ ମୌଳିକ ପାର୍ଥକ୍ୟ ହେଲା ସଂହିତା ସାଧାରଣତଃ ଛନ୍ଦୋବଦ୍ଧ ମନ୍ତ୍ରଗୁଡ଼ିକର ସଂକଳନ । ଅବଶ୍ୟ କେତେକ ସଂହିତାର କିଛି ଅଂଶ, ଯଥା କୃଷ୍ଣ ଯଜୁର୍ବେଦୀୟ ସଂହିତା ଓ ଅଥର୍ବବେଦ ସଂହିତା, ଗଦ୍ୟାତ୍ମକ । କିନ୍ତୁ ସମସ୍ତ ବ୍ରାହ୍ମଣ ଗ୍ରନ୍ଥ ଗଦ୍ୟାତ୍ମକ ।

ବିଭିନ୍ନ ବେଦକୁ ଅବଲମ୍ବନ କରି ବିଭିନ୍ନ ବ୍ରାହ୍ମଣର ସୃଷ୍ଟି ହୋଇଛି । ଅସଂଖ୍ୟ ବ୍ରାହ୍ମଣର ନାମ ଆମେ ବିଭିନ୍ନ ଗ୍ରନ୍ଥରେ ଉଲ୍ଲିଖିତ ହୋଇଥିବାର ଦେଖିଥାଉଁ । କିନ୍ତୁ ସେଗୁଡ଼ିକ ଆମକୁ ବର୍ତ୍ତମାନ ଅନୁପଲଭ୍ୟ ; ଆମ ପାଇଁକି ସେଗୁଡ଼ିକ କାଳର କରାଳ-ଗର୍ଭରେ ଅବଲୁପ୍ତ । ବର୍ତ୍ତମାନ ଆମେ ବିଭିନ୍ନ ବେଦାନ୍ତର୍ଗତ ତେରଟି ମାତ୍ର ବ୍ରାହ୍ମଣ ଦେଖିବାକୁ ପାଇଥାଉଁ । ସେଗୁଡ଼ିକ ହେଲେ :

କ) ଋଗ୍‌ବେଦ— (୧) ଐତରେୟ ବ୍ରାହ୍ମଣ, (୨) ଶାଂଖାୟନ ବ୍ରାହ୍ମଣ
ଖ) ଶୁକ୍ଳ ଯଜୁର୍ବେଦ— (୩) ଶତପଥ ବ୍ରାହ୍ମଣ
ଗ) କୃଷ୍ଣ ଯଜୁର୍ବେଦ— (୪) ତୈତ୍ତିରୀୟ ବ୍ରାହ୍ମଣ
ଘ) ସାମବେଦ— (୫) ତାଣ୍ଡ୍ୟ ବ୍ରାହ୍ମଣ, (୬) ଷଡ଼୍‌ବିଂଶ ବ୍ରାହ୍ମଣ,
(୭) ଦୈବତ ବ୍ରାହ୍ମଣ, (୮) ଆର୍ଷେୟ ବ୍ରାହ୍ମଣ,
(୯) ସାମବିଧାନ ବ୍ରାହ୍ମଣ, (୧୦) ଉପନିଷଦ୍ ବ୍ରାହ୍ମଣ,
(୧୧) ସଂହିତୋପନିଷଦ୍ ବ୍ରାହ୍ମଣ (୧୨) ବଂଶ ବ୍ରାହ୍ମଣ
ଙ) ଅଥର୍ବ ବେଦ— (୧୩) ଗୋପଥ ବ୍ରାହ୍ମଣ

ଏହି ବ୍ରାହ୍ମଣଗୁଡ଼ିକୁ ବାଦ ଦେଇ, ଆଉ ଯେଉଁ ବ୍ରାହ୍ମଣଗୁଡ଼ିକ ଅଧୁନା ଆଂଶିକ ଭାବରେ କିମ୍ବା ସଂପୂର୍ଣ୍ଣ ଭାବରେ ଅବଲୁପ୍ତ ଏବଂ ଅନୁପଲବ୍‌ଧ, ତାହାର ଏକ ତାଲିକା ବିଭିନ୍ନ ଗ୍ରନ୍ଥରେ ଥିବା ପାଠକୁ ଭିତ୍ତି କରି ବଟକୃଷ୍ଣ ଘୋଷ ପ୍ରକାଶ କରିଛନ୍ତି । ଏହାର ସଂଖ୍ୟା ୨୪ରୁ ଅଧିକ । (୩)

ବିଷୟବସ୍ତୁର ଅବତାରଣା ଦୃଷ୍ଟିରୁ ବ୍ରାହ୍ମଣ ଗ୍ରନ୍ଥ ଚାରି ଭାଗରେ ବିଭକ୍ତ । ଏଗୁଡ଼ିକ ହେଲେ ବିଧି ଭାଗ, ଅର୍ଥବାଦ ଭାଗ, ଉପନିଷଦ ଭାଗ ଓ ଆଖ୍ୟାନ ଭାଗ । ବଳଦେବ ଉପାଧ୍ୟାୟଙ୍କ କହିବା ଅନୁସାରେ :

"ବିଧି କା ଅର୍ଥ ହୈ ଯଜ୍ଞ ତଥା ଉସକେ ଅଙ୍ଗୋପାଙ୍ଗୋଂ କେ ଅନୁଷ୍ଠାନ କା ଉପଦେଶ ।" (୪)

'ବିଧି' ଭାଗରେ ମୁଖ୍ୟତଃ କର୍ମକାଣ୍ଡ ସମ୍ପର୍କରେ ବର୍ଣ୍ଣନା ରହିଥାଏ । ଯଜ୍ଞପୀଠରେ ବସିବା, ଉଠିବା, ଚାଲିବା, ଆହୁତି ଦେବା ଇତ୍ୟାଦି ବିଷୟରେ ଠିକଣାଖି ବିବରଣୀ ଏଥିରେ ଦିଆଯାଇଛି । ଉଦାହରଣ ସ୍ୱରୂପ, ସାମବେଦର ତାଣ୍ଡ୍ୟ ବ୍ରାହ୍ମଣର ଗୋଟିଏ ବିଧାନ କଥା (୬।୭) ବିଚାରକୁ ନିଆଯାଉ । ପାଞ୍ଚ ଋତ୍ୱିକମାନଙ୍କ ଭିତରୁ ଅଧ୍ୱର୍ଯ୍ୟୁ, ପ୍ରସ୍ତୋତା, ଉଦ୍‌ଗାତା, ପ୍ରତିହର୍ତ୍ତା ଓ ବ୍ରହ୍ମା କିପରି ଧାଡ଼ିରେ ଜଣେକ ପଛରେ ଜଣେ ଚାଲିବେ, ସେ ବିଷୟରେ ଠିକ ଜାଣି ବର୍ଣ୍ଣନା ଏଥିରେ ରହିଛି । ଅମୁକ ଯଜ୍ଞ କଲେ ଅମୁକ ଫଳ ମିଳିବ ବୋଲି ବ୍ରାହ୍ମଣ ଗ୍ରନ୍ଥରେ ଯେଉଁ ସ୍ଥାନରେ କୁହା ଯାଇଛି, ତାହା 'ଅର୍ଥବାଦ ଭାଗ'

ନାମରେ ଖ୍ୟାତ । ଏଥିରେ ବିଧିକୁ ଶ୍ରଦ୍ଧା ଓ ନିଷ୍ଠାର ସହିତ ଅନୁକରଣ କରିବାକୁ ଉପଦେଶ ଦିଆଯିବା ସଙ୍ଗେ ସଙ୍ଗେ 'ନିଷେଧ'କୁ ନିନ୍ଦା କରାଯାଇଛି । ଉଦାହରଣ ସ୍ୱରୂପ, ଯଜ୍ଞରେ ବିଶର ବ୍ୟବହାର ନିଷିଦ୍ଧ । ନେଣ୍ଡ୍ ତୈତ୍ତିରୀୟ ବ୍ରାହ୍ମଣରେ (୩।୧।୮।୧) ଏହାର ନିନ୍ଦା କରାଯାଇ କୁହା ଯାଇଛି :

'ଅମେଧ୍ୟା ବୈ ମାଷା' ।

ଅନ୍ୟ ପକ୍ଷରେ ତାଣ୍ଡ୍ୟ ବ୍ରାହ୍ମଣରେ (୬।୩) ଅଗ୍ନିଷ୍ଟୋମ ଯଜ୍ଞର ବିଶେଷ ପ୍ରଶଂସା କରାଯାଇଛି । 'ଅର୍ଥବାଦ ଭାଗ'ରେ ଏହି ନିନ୍ଦାପ୍ରଶଂସା ବାକ୍ୟଗୁଡ଼ିକ ମଧ୍ୟ ରହିଥାଏ । ବ୍ରାହ୍ମଣ ଗ୍ରନ୍ଥର ତୃତୀୟ ଭାଗ ହେଲା 'ଉପନିଷଦ ଭାଗ' । ଏଥିରେ ବ୍ରହ୍ମତତ୍ତ୍ୱର ବିସ୍ତୃତ ଆଲୋଚନା କରାଯାଇଛି ; ଅତି ସୂକ୍ଷ୍ମ ଜ୍ଞାନର ଜିଜ୍ଞାସା, ଅନୁସନ୍ଧାନ ଓ ନିର୍ଣ୍ଣୟ କରାଯାଇଛି । ଏଥିରେ ମାନବ ଜୀବନର ଚରମ ଲକ୍ଷ୍ୟ ମୁକ୍ତି ଲାଗି ପଥ-ଆବିଷ୍କାର କରିବା ପାଇଁ ଉଦ୍ୟମ କରି ଯାଇଛି । ଚତୁର୍ଥ ଭାଗ ହେଲା 'ଆଖ୍ୟାନ ଭାଗ' । ଏଥିରେ ମୁନିଋଷି ଓ ଆଚାର୍ଯ୍ୟ-ମାନଙ୍କର ବଂଶପରମ୍ପରା ତଥା ରାଜବଂଶାବଳୀ ବିଷୟରେ ତଥ୍ୟ ଉପସ୍ଥାପିତ ହୋଇଛି ।

ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକ ହେଉଛି ଗଦ୍ୟ ସାହିତ୍ୟ । ଆଦିମ ଗଦ୍ୟ ଶୈଳୀ ଏଗୁଡ଼ିକରେ ଅନୁସୃତ । ପରେ ସଂସ୍କୃତ-ଗଦ୍ୟ ସାହିତ୍ୟର ଯେଉଁ ବିକାଶ ସମ୍ଭବ ହୋଇଥିଲା, ତାହାର ମୂଳ ବୀଜ ନିହିତ ଥିଲା ଏହି ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକରେ । ଏଣୁ ଭାରତୀୟ ଗଦ୍ୟ ସାହିତ୍ୟର ଇତିହାସରେ ଏଗୁଡ଼ିକର ଯଥେଷ୍ଟ ଗୁରୁତ୍ୱ ରହିଛି । ଏଥିରେ ବର୍ଣ୍ଣିତ ଆଖ୍ୟାନମାନଙ୍କର ଶୈଳୀ ପରବର୍ତ୍ତୀ ଯୁଗରେ ଭାରତୀୟ ଗଳ୍ପ-ସାହିତ୍ୟର ଶୈଳୀକୁ ଯଥେଷ୍ଟ ନିୟନ୍ତ୍ରିତ କରିଛି । ବୌଦ୍ଧ-ଜାତକ ଗଳ୍ପ (ଖ୍ରୀ : ପୂ : ୬ଷ୍ଠ ଶତାବ୍ଦୀ)ଗୁଡ଼ିକର ସୃଷ୍ଟି ପଛରେ ଏଗୁଡ଼ିକର ପ୍ରଭାବର ସ୍ୱାକ୍ଷର ସୁସ୍ପଷ୍ଟ । କେବଳ ଯାଗ-ଯଜ୍ଞର ବିଧିବିଧାନ ନୁହେଁ, ତତ୍କାଳୀନ ଏକ ସାମଗ୍ରିକ ସାମାଜିକ ଇତିହାସର ପରିଚୟ ମଧ୍ୟ ଆମେ ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକରେ ପାଇଥାଉଁ । ମ୍ୟାକ୍ସ ମୂଲର୍ ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକର ଗୁରୁତ୍ୱ ବିଷୟରେ କହିଛନ୍ତି :

> "There are passages in the Brahmanas full of genuine thought and feeling and most valuable as pictures of life, and as records of early struggle, which have left no trace in the literature of other nations." (୫)

ଉପରୋକ୍ତ ଆଲୋଚନା ଦୃଷ୍ଟିରୁ ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକର ନିମ୍ନଲିଖିତ ମତରେ ପ୍ରାଧାନ୍ୟ ରହିଛି ବୋଲି ନିଃସନ୍ଦେହ ନିର୍ଣ୍ଣୟ କରି ଯାଇପାରେ :

କ) ଏଗୁଡ଼ିକ ଐତିହାସିକ ଦୃଷ୍ଟିକୋଣରୁ ବିଶାଳ ଗ୍ରନ୍ଥ ।

ଖ) ଭାରତୀୟମାନଙ୍କର ସାମାଜିକ, ଧାର୍ମିକ ଓ ନୈତିକ ବିକାଶର ଧାରା ସମ୍ପର୍କରେ ଏଗୁଡ଼ିକରୁ ଅଜସ୍ର ତଥ୍ୟ ମିଳିଥାଏ ।

ଗ) ପ୍ରାଚୀନ ଗଦ୍ୟ ରଚନାର ସାର୍ବିକ ତଥ୍ୟ, ଯଥା, ଶୈଳୀ, ବ୍ୟାକରଣ, ଶବ୍ଦତତ୍ତ୍ୱ ଇତ୍ୟାଦି ସମ୍ପର୍କରେ ଏଗୁଡ଼ିକ ପୁଷ୍କଳ ଦିଗ୍‌ଦର୍ଶନ ଦେଇଥାଏ ।

ଘ) ଏଗୁଡ଼ିକ ପରବର୍ତ୍ତୀ କାଳର ଭାରତୀୟ ଗଦ୍ୟ ସାହିତ୍ୟ ଉପରେ ଯଥେଷ୍ଟ ପ୍ରଭାବ ପକାଇଛି ।

ଙ) ଏଗୁଡ଼ିକର 'ଆଖ୍ୟାନ ଭାଗ' ପରବର୍ତ୍ତୀ କାଳର ଭାରତୀୟ ଗଳ୍ପ ସାହିତ୍ୟ ସୃଷ୍ଟିରେ ଯଥେଷ୍ଟ ପ୍ରଭାବ ପକାଇଛି । ଏହି ପ୍ରଭାବ ବିଶେଷ କରି 'ବୌଦ୍ଧ ଜାତକ ଗଳ୍ପ'ରେ (ଖ୍ରୀ : ପୂ : ୬ଷ୍ଠ ଶତାବ୍ଦୀ) ଖୁବ୍ ସ୍ପଷ୍ଟ ।

ଚ) ଯାଗଯଜ୍ଞର ବିଧିବିଧାନ ଆଦି ସେତେବେଳେ ଖୁବ୍ ଜଟିଳ ହୋଇ ଯାଇଥିଲା ବୋଲି ଏଗୁଡ଼ିକରୁ ପ୍ରମାଣ ମିଳିଥାଏ ।

ଛ) ଭାରତୀୟ ଦାର୍ଶନିକ ଚିନ୍ତାଧାରାର କ୍ରମବିକାଶ ବିଷୟରେ ଜ୍ଞାନ ଆହରଣ କରିବା ପାଇଁ ଏଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ।

ଜ) ବ୍ରାହ୍ମଣକାଳରେ ଏକ ସୁସଙ୍ଗଠିତ ଓ ଶକ୍ତିଶାଳୀ ପୁରୋହିତ ଗୋଷ୍ଠୀର ସୃଷ୍ଟି ହୋଇ ଯାଇଥିଲା ବୋଲି ଏଗୁଡ଼ିକରୁ ପ୍ରମାଣ ମିଳେ ।

ଝ) ଏଗୁଡ଼ିକରେ ସଂଘର୍ଷ ବିଷୟ ପ୍ରାୟ ଅନୁଲ୍ଲିଖିତ । ତେଣୁ ଅନୁମିତ ହୁଏ ଯେ ସେତେବେଳେ ଆର୍ଯ୍ୟମାନେ ଅପେକ୍ଷାକୃତ ଶାନ୍ତିପୂର୍ଣ୍ଣ ଜୀବନ ଯାପନ କରୁଥିଲେ । ଆର୍ଯ୍ୟେତର ଗୋଷ୍ଠୀଙ୍କ ସହିତ ସେମାନଙ୍କର ଆଉ ସଂଘର୍ଷ ହେଉ ନଥିଲା । ବୋଧହୁଏ ଉଭୟ ଗୋଷ୍ଠୀ ପରସ୍ପର ସହିତ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତି ଅବଲମ୍ବନ କରି ଚଳୁଥିଲେ । ଆର୍ଯ୍ୟ ସଭ୍ୟତା ଉନ୍ନତ-ତର ହେବାରୁ ଏହା କ୍ରମେ କ୍ରମେ ଆର୍ଯ୍ୟେତର ସଭ୍ୟତାକୁ ଗ୍ରାସ କରି ଦେଇଥିଲା ଏବଂ ଏ ପ୍ରକାର ଗ୍ରାସକୁ ଗ୍ରସ୍ତ ସଭ୍ୟତା ସହଜରେ ଗ୍ରହଣ କରି ନେଇଥିଲା ; ସେଥିପାଇଁ ପ୍ରତିବାଦ କରି ନଥିଲା । ଉଭୟ ଗୋଷ୍ଠୀ ମଧ୍ୟରେ ବହୁ ବର୍ଷ ଧରି ବୁଝାମଣା ଭାବ ରହିବା ଫଳରେ ଆର୍ଯ୍ୟେତର ସଂସ୍କୃତିରୁ କିଛିଟା ଆସି ଆର୍ଯ୍ୟ ସଂସ୍କୃତି ମଧ୍ୟରେ ସ୍ୱାଭାବିକ ଭାବରେ ପ୍ରବେଶ କରିଥିଲା । ଅତଏବ, ଉଭୟ ସଂସ୍କୃତି ଥିଲେ ପରସ୍ପରର ପୋଷକ ଓ ପରିପୂରକ ।

ବର୍ତ୍ତମାନ ବିଭିନ୍ନ ବେଦ ଅନ୍ତର୍ଗତ ବ୍ରାହ୍ମଣଗୁଡ଼ିକ କଥା ପୃଥକ୍ ପୃଥକ୍ ଭାବରେ ବିଚାର୍ଯ୍ୟ ।

## ଋଗ୍‌ବେଦୀୟ ବ୍ରାହ୍ମଣ :

ପୂର୍ବରୁ କୁହାଯାଇଛି, ମାତ୍ର ଦୁଇଟି ଋଗ୍‌ବେଦୀୟ ବ୍ରାହ୍ମଣ ଆମକୁ ବର୍ତ୍ତମାନ ଉପଲବ୍ଧ । ଗୋଟିଏ ହେଲା ଐତରେୟ ବ୍ରାହ୍ମଣ ଏବଂ ଅପରଟି ଶାଙ୍ଖାୟନ ବା କୌଷୀତକି ବ୍ରାହ୍ମଣ । ଐତରେୟ ବ୍ରାହ୍ମଣରେ ୪୦ ଗୋଟି ଅଧ୍ୟାୟ ବିଦ୍ୟମାନ ଏବଂ ଏହା ଆଠଗୋଟି ପଞ୍ଚିକାରେ ବିଭକ୍ତ । ଏହାର ଶେଷ ଦଶ ଅଧ୍ୟାୟ ପ୍ରଥମ ତିରିଶ ଅଧ୍ୟାୟଠାରୁ ଅର୍ବାଚୀନ ବୋଲି ପଣ୍ଡିତମାନେ ମତ ଦିଅନ୍ତି । ଏହି ଦଶ ଅଧ୍ୟାୟ ବିଭିନ୍ନ ଐତିହାସିକ ଆଖ୍ୟାନରେ ପରିପୂର୍ଣ୍ଣ । ଏହି ବ୍ରାହ୍ମଣର ମୁଖ୍ୟ ଦେବତା ସଂଖ୍ୟା ହେଉଛି ୩୩ ; ଏବଂ ଇନ୍ଦ୍ର ହେଉଛନ୍ତି ସର୍ବଶ୍ରେଷ୍ଠ ଦେବତା ।

ଐତରେୟ ବ୍ରାହ୍ମଣର ଭାଷା ଓ ଋଗ୍‌ବେଦ ସଂହିତାର ଭାଷା ମଧ୍ୟରେ ବିଶେଷ ପାର୍ଥକ୍ୟ ନାହିଁ । ଏଣୁ ଏହା ପ୍ରାଚୀନତମ ବ୍ରାହ୍ମଣ ଗ୍ରନ୍ଥ ବୋଲି ମନେ ହୁଏ । ଇତରା ବୋଲି ଜଣେ ଦାସୀ ଗର୍ଭରୁ ବ୍ରାହ୍ମଣଙ୍କ ଔରସରୁ ମହୀଦାସ ଜନ୍ମ ନେଇଥିଲେ । ସେ ତାଙ୍କର ସାଧନା ଫଳରେ ଋଷିପଦ ପାଇ ପାରିଥିଲେ । ତାଙ୍କ ଦ୍ୱାରା ଐତରେୟ ବ୍ରାହ୍ମଣ ରଚିତ ବୋଲି ପରମ୍ପରା କହିଥାଏ । ପରମ୍ପରା ଆଉ ମଧ୍ୟ କହିଥାଏ ଯେ ମହୀଦାସଙ୍କୁ ତାଙ୍କ ବ୍ରାହ୍ମଣ-ପିତା ଯଜ୍ଞ କରିବାର ଅଧିକାରରୁ ବଞ୍ଚିତ କରିଥିଲେ । ତେଣୁ ସେ ମାଆଙ୍କ ଠାରୁ ଉତ୍ସାହ ପାଇ ଘୋର ତପସ୍ୟା ବଳରେ ଯେଉଁ ଜ୍ଞାନ ପାଇଥିଲେ, ତାହାକୁ ଐତରେୟ ବ୍ରାହ୍ମଣ ଭାବରେ ରୂପ ଦେଇଥିଲେ । ସେ ଥିଲେ ଇତରାଙ୍କ ପୁତ୍ର, ତେଣୁ ଐତରେୟ । ତାଙ୍କର ନାମ ଅନୁସାରେ ବ୍ରାହ୍ମଣ ଗ୍ରନ୍ଥଟିର ନାମ ହେଲା ଐତରେୟ ବ୍ରାହ୍ମଣ । ଏହି ବ୍ରାହ୍ମଣର କେତୋଟି ପଙ୍‌କ୍ତିର ଶେଷରେ ବାରମ୍ବାର 'ଚରୈବେତି ଚରୈବେତି' ପଙ୍‌କ୍ତିଟିର (ଆଗେଇ ଚାଲ, ଆଗେଇ ଚାଲ) ଉଲ୍ଲେଖ ଅଛି । ଏହି ପଙ୍‌କ୍ତିଟି ଯୁଗ ଯୁଗ ଧରି ଭାରତୀୟ ଜନମାନସକୁ ନାନା ବାଧା ବିଘ୍ନ ସତ୍ତ୍ୱେ ଆଗେଇ ଚାଲିବା ପାଇଁ ଉଦ୍‌ବୋଧନ ଦେଇ ଆସିଛି । ଏହି ଉଦ୍‌ବୋଧକ ପଙ୍‌କ୍ତିଟି ବାସ୍ତବିକ୍ ଖୁବ୍ ମହିମାମୟ ! ଏହି ବ୍ରାହ୍ମଣର ଅଧ୍ୟୟନରୁ ସେତେବେଳେ ଚଳୁଥିବା କେତେକ ସାମାଜିକ ପ୍ରଥା ବିଷୟରେ ସୂଚନା ମିଳୁଛି । ତାହା ହେଲା :

କ) ସେତେବେଳେ ବ୍ରାହ୍ମଣ ବ୍ରାହ୍ମଣେତର ଜାତିର ଝିଅକୁ ବିବାହ କରି ପାରୁଥିଲା କିମ୍ବା ତାହା ସହିତ ସ୍ୱାମୀ ଭାବରେ ଚଳି ପାରୁଥିଲା ।

ଖ) ସମାଜରେ ଦାସତ୍ୱ ପ୍ରଥା ପ୍ରଚଳିତ ଥିଲା ଏବଂ ଗୃହ-ସ୍ୱାମୀ ଦାସୀ ଗର୍ଭରୁ ନିଜ ଔରସରୁ ସନ୍ତାନ ଜନ୍ମ କରାଇ ପାରୁଥିଲା ।

ଗ) ଏଭଳି ପୁତ୍ରର ପିତାଙ୍କ ସମ୍ପତ୍ତିରେ ଅଧିକାର ନଥିଲା ।

ଘ) ବ୍ରାହ୍ମଣେତର ଗୋଷ୍ଠୀର ଲୋକେ ନିଜ ସାଧନା ବଳରେ ଋଷିତ୍ୱର ମର୍ଯ୍ୟାଦା

ପାଇ ପାରୁଥିଲେ ଏବଂ ସମସ୍ତଙ୍କ ଦ୍ୱାରା ପୂଜିତ ହେଉଥିଲେ ।

ଙ) ଜ୍ଞାନ କ୍ଷେତ୍ରରେ ବର୍ଣ୍ଣଗତ ବିଭେଦତା କିଛି କାମ କରୁ ନଥିଲା ।

ଐତରେୟ ବ୍ରାହ୍ମଣରେ ଅନେକ ସ୍ଥଳରେ 'ଢ଼' ସ୍ଥାନରେ 'ଲ'ର ବ୍ୟବହାର କରାଯାଇଛି । ଅନୁମାନ କରାଯାଏ ଯେ ଏହା ବୋଧହୁଏ ମଧ୍ୟଦେଶରେ, ବିଶେଷ କରି ମହାରାଷ୍ଟ୍ର ଅଞ୍ଚଳରେ ଲିଖିତ ହୋଇଥିଲା । ଏଥିରେ 'ଶୁନଃଶେପ ଉପାଖ୍ୟାନ' ପ୍ରସଙ୍ଗରେ ପୌଣ୍ଡ୍ର, ଆନ୍ଧ୍ର, ପୁଲିନ୍ଦ, ଶବର ଓ ମୂତିବ ଆଦି ଜାତି କଥା ଉଲ୍ଲେଖ ଅଛି । ବିଶ୍ୱାମିତ୍ରଙ୍କ ଅଭିଶାପରେ ତାଙ୍କ ନିଜ ପୁତ୍ରମାନେ ଆର୍ଯ୍ୟତ୍ୱର ଗୌରବରୁ ଖସି ଆସି ଉପରଲିଖିତ ଅନାର୍ଯ୍ୟ ଗୋଷ୍ଠୀ ସୃଷ୍ଟି କଲେ ବୋଲି କୁହାଯାଇଛି । ପୌଣ୍ଡ୍ର ବଙ୍ଗଳାର ସଂକେତ ଦେଉଛି । ଆନ୍ଧ୍ର ଦେଶ ତ ସେହି ନାମରେ ଏ ପର୍ଯ୍ୟନ୍ତ ଦକ୍ଷିଣ ଭାରତରେ ଅଛି । ପୁଲିନ୍ଦ ଓ ଶବର ମଧ୍ୟପ୍ରଦେଶର ପାର୍ବତ୍ୟ ଅଞ୍ଚଳର ଅଧିବାସୀ । 'ମୂତିବ' କେଉଁ ଗୋଷ୍ଠୀ ତାହା ବୁଝି ପଡ଼ୁନାହିଁ । ଏଥିରୁ ଅନୁମିତ ହୁଏ ଯେ ଆର୍ଯ୍ୟମାନଙ୍କର ସପ୍ତସିନ୍ଧୁ ଦେଶ ଛାଡ଼ି ପୂର୍ବ ଓ ଦକ୍ଷିଣ ଦିଗକୁ ଗତି ହେଉଥିଲା ବେଳେ ଏହି ବ୍ରାହ୍ମଣ ଗ୍ରନ୍ଥଟି ରଚିତ ହୋଇଛି ।

ବିଶ୍ୱାମିତ୍ର କେଉଁ ପରିସ୍ଥିତିରେ ପଡ଼ି ତାଙ୍କ ପୁତ୍ରମାନଙ୍କୁ ଅନାର୍ଯ୍ୟ ହେବା ପାଇଁ ଅଭିଶାପ ଦେଇଥିଲେ, ସେ ସମ୍ପର୍କରେ ଏକ କରୁଣ କାହାଣୀ ଏହି ବ୍ରାହ୍ମଣ ଗ୍ରନ୍ଥରେ ଅଛି । ରାଜା ହରିଶ୍ଚନ୍ଦ୍ର ବରୁଣଙ୍କ କୃପାରୁ ପୁତ୍ରଟିଏ ପାଇଥିଲେ ; ପୁତ୍ରଙ୍କର ନାଁ ଥିଲା ରୋହିତ । ହରିଶ୍ଚନ୍ଦ୍ର ନିଜ ପୁତ୍ରଙ୍କୁ ବଳି ସ୍ୱରୂପ ବରୁଣଙ୍କୁ ଅର୍ପଣ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ପୁତ୍ର ପ୍ରତି ବାତ୍ସଲ୍ୟ-ସ୍ନେହ ଆସିଗଲା ଏବଂ ସେ ଆଉ ତାହା କରିପାରିଲେ ନାହିଁ । ବରୁଣ ରାଗି ଯାଇ ତାଙ୍କୁ ଜଳୋଦର ରୋଗରେ ପକାଇଲେ । ରୋହିତ ଜଙ୍ଗଲକୁ ଯାଇଥିଲେ ଏବଂ ଏହି ଖବର ପାଇ ଘରକୁ ଶୀଘ୍ର ଶୀଘ୍ର ଫେରି ଆସିଲେ । ବାଟରେ ଇନ୍ଦ୍ର ତାଙ୍କୁ ଅଟକାଇବାକୁ ଚେଷ୍ଟା କଲେ ; କିନ୍ତୁ ସେ ଅଟକିଲେ ନାହିଁ । ଇନ୍ଦ୍ର ତାଙ୍କୁ ବହୁତ ଉପଦେଶ-ବାଣୀ ଶୁଣାଇଲେ । ଏ ଉପଦେଶ-ବାଣୀ ସାରା ମାନବ-ସମାଜ ପ୍ରତି ପ୍ରଯୁଜ୍ୟ । ସବୁ ପଙ୍‌କ୍ତିର ଶେଷରେ 'ଚରୈବେତି ଚରୈବେତି' (ଆଗେଇ ଚାଲ ଆଗେଇ ଚାଲ) ବୋଲି କୁହାଯାଇଛି । ଏହା ଏକ ଉଦ୍‌ବୋଧନୀ ବାଣୀ । ମାନବ-ଜୀବନରେ ସଫଳତା ହାସଲ କରିବାକୁ ହେଲେ, ଯେତେ ଯାହା ବାଧାବିଘ୍ନ ପଡ଼ୁ ପଛକେ, ମାନବକୁ ଆଗେଇ ଯିବାକୁ ହେବ, ଏହା ହେଲା ଏହି ବାଣୀଟିର ତାତ୍ପର୍ଯ୍ୟ । ରୋହିତ କୌଣସି ମତେ ଘରକୁ ଫେରି ଆସିଲେ । ରାଜପୁରୋହିତଙ୍କ ପରାମର୍ଶରେ ଆଉ ଜଣେ କାହାକୁ ରୋହିତଙ୍କ ଜାଗାରେ ବରୁଣଙ୍କୁ ବଳି ସ୍ୱରୂପ ଅର୍ପଣ କରାଯିବା ପାଇଁ ସ୍ଥିର ହେଲା । ଅଜୀଗର୍ତ୍ତ ଋଷି ତାଙ୍କ ମଝିଆଁ ପୁଅ ଶୁନଃଶେପଙ୍କୁ ଧନ ନେଇ ବଳି ପାଇଁ ବିକି ଦେଲେ । ଯଜ୍ଞବେଦୀରେ ବିଶ୍ୱାମିତ୍ର ଆସି ପହଞ୍ଚିଗଲେ ଏବଂ ଶୁନଃଶେପଙ୍କୁ ଦେବତା-ମାନଙ୍କୁ ପ୍ରସନ୍ନ କରିବା ପାଇଁ କେତେକ ମନ୍ତ୍ର ଶିଖାଇଲେ । ଶୁନଃଶେପ ସେହି ମନ୍ତ୍ରଗୁଡ଼ିକ

ବୋଲିବାରେ ଦେବତାମାନେ ଖୁବ୍ ପ୍ରସନ୍ନ ହୋଇ ଉଠିଲେ ଏବଂ ତାଙ୍କ ବନ୍ଧନ ଖୋଲିଗଲା । ହରିଶ୍ଚନ୍ଦ୍ରଙ୍କ ଜଳୋଦର ରୋଗ ମଧ୍ୟ ଭଲ ହୋଇଗଲା । ଶୁନଃଶେପ ବାପା ଅଜୀଗର୍ତ୍ତଙ୍କ ପାଖକୁ ଫେରିବେ କି ନାହିଁ ସେ ବିଷୟ ଋଷିମାନେ ବିଚାର କଲେ । ପିତାଙ୍କ କର୍ତ୍ତବ୍ୟ ହେଉଛି ପୁତ୍ରକୁ ରକ୍ଷା କରିବା । ଅଜୀଗର୍ତ୍ତ ଏହି କର୍ତ୍ତବ୍ୟରେ ଖିଲାପ କରିଥିବାରୁ ସେ ଆଉ ପିତୃତ୍ୱର ଗୌରବ ପାଇ ପାରିବେ ନାହିଁ ସ୍ଥିର ହେଲା । ଶୁନଃଶେପ ତେବେ ଯିବେ ଆଉ କାହା ପାଖକୁ ? ବିଶ୍ୱାମିତ୍ର ତାଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ଏ ସମସ୍ୟାଟିର ସମାଧାନ କରିଦେଲେ । ବିଶ୍ୱାମିତ୍ରଙ୍କ ପୁଅମାନେ କିନ୍ତୁ ଏହାକୁ ପସନ୍ଦ କଲେ ନାହିଁ । ତେଣୁ ବିଶ୍ୱାମିତ୍ର ସେମାନଙ୍କ ଉପରେ ରାଗି ସେମାନଙ୍କୁ ଆର୍ଯ୍ୟତ୍ୱର ମର୍ଯ୍ୟାଦାରୁ ତଳକୁ ଖସାଇ ଦେଲେ ଏବଂ ଉପରୋକ୍ତ ମତେ ଅନାର୍ଯ୍ୟ କରିଦେଲେ । ପଣ୍ଡିତମାନେ କୁହନ୍ତି ଯେ ଆର୍ଯ୍ୟ-ସମାଜରେ ଏହିଠାରୁ ପ୍ରଥମ କରି ପୋଷ୍ୟପୁତ୍ର ଗ୍ରହଣ କରିବା ପ୍ରଥା ଆରମ୍ଭ ହେଲା । ଏହି କାହାଣୀଟିରୁ ସେତେବେଳେ ଚଳୁଥିବା ନିମ୍ନଲିଖିତ ସାମାଜିକ ସ୍ଥିତି ସମ୍ପର୍କରେ ଆମେ ଅବହିତ ହୋଇଥାଉଁ :

(କ) ପିତା ସନ୍ତାନମାନଙ୍କର ରକ୍ଷଣର ଦାୟିତ୍ୱ ନେଉଥିଲେ ଏବଂ ଯେଉଁ ପିତା ଏଥିରେ ଅବହେଳା କରୁଥିଲେ, ସେ ପିତୃତ୍ୱର ଗୌରବରୁ ବଞ୍ଚିତ ହେଉଥିଲେ ।

(ଖ) ଅନାଥ ଶିଶୁକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରା ଯାଉଥିଲା ।

(ଗ) ଯଜ୍ଞପୀଠରେ ବେଳେବେଳେ ନରବଳି ଦିଆ ଯାଉଥିଲା ।

(ଘ) ଆର୍ଯ୍ୟମାନେ 'ସପ୍ତସିନ୍ଧୁ' ଅଞ୍ଚଳ ଛାଡ଼ି ଭାରତର ପୂର୍ବ ଓ ଦକ୍ଷିଣ ଅଞ୍ଚଳକୁ ଆସିଥିଲେ ଏବଂ 'ମଧ୍ୟଦେଶ' ସେମାନଙ୍କ ସଭ୍ୟତା ଓ ସଂସ୍କୃତିର କେନ୍ଦ୍ରବିନ୍ଦୁ ହୋଇ ଉଠିଥିଲା । (୭)

(ଙ) ଏହି ପୂର୍ବ ଓ ଦକ୍ଷିଣ ଦିଗକୁ ଆସିବା ସମୟରେ ସେମାନଙ୍କର ଅନେକ ଆର୍ଯ୍ୟେତର ଗୋଷ୍ଠୀ ସହିତ ପରିଚୟ ଘଟିଥିଲା ।

**ଶାଙ୍ଖାୟନ ବ୍ରାହ୍ମଣ :**

ଶାଙ୍ଖାୟନ ବା କୌଷୀତକି ବ୍ରାହ୍ମଣ ଋଗ୍‌ବେଦର ଦ୍ୱିତୀୟ ବ୍ରାହ୍ମଣ ଗ୍ରନ୍ଥ । ଏହା ତିରିଶଟି ଅଧ୍ୟାୟରେ ବିଭକ୍ତ । ପ୍ରତି ଅଧ୍ୟାୟରେ ପାଞ୍ଚରୁ ଆରମ୍ଭ କରି ସତର ପର୍ଯ୍ୟନ୍ତ ବିଭିନ୍ନ ସଂଖ୍ୟକ ଖଣ୍ଡ ବିଦ୍ୟମାନ । ସର୍ବମୋଟ ଏଥିରେ ୨୨୬ଟି ଖଣ୍ଡ ବିଦ୍ୟମାନ । ଏହି ଖଣ୍ଡଗୁଡ଼ିକରେ ଲମ୍ବା ଲମ୍ବା ଗଦ୍ୟ ରହିଛି । ଏଥିରୁ ଜଣା ପଡ଼ୁଛି ଯେ କାଳକ୍ରମେ ଗଦ୍ୟ ରଚନା ଜଟିଳ ହୋଇ ପଡ଼ିଥିଲା ଏବଂ ପୂର୍ବରୁ ବ୍ୟବହୃତ ହେଉଥିବା କ୍ଷୁଦ୍ର ବାକ୍ୟ ପରିବର୍ତ୍ତେ ଦୀର୍ଘ ବାକ୍ୟ ବ୍ୟବହୃତ ହେବାକୁ ଲାଗିଲା । ଗଦ୍ୟ-ସାହିତ୍ୟର ଏହି ଶୈଳୀ-ପରିବର୍ତ୍ତନକୁ

ଏଠାରେ ଲକ୍ଷ୍ୟ କରିବାର କଥା । ପରମ୍ପରା ଅନୁସାରେ କୌଷୀତକ ନାମକ ଜଣେ ଋଷି ହେଉଛନ୍ତି ଏହି ବ୍ରାହ୍ମଣ ଗ୍ରନ୍ଥର ସ୍ରଷ୍ଟା । ଯଜ୍ଞର ପ୍ରାଧାନ୍ୟ ଓ ଶାସ୍ତ୍ରୀୟ ବ୍ୟାଖ୍ୟାର ବୈଶିଷ୍ଟ୍ୟ ପ୍ରତିପାଦନ କରିବା ହେଉଛି ଏହି ବ୍ରାହ୍ମଣ ଗ୍ରନ୍ଥର ଲକ୍ଷ୍ୟ ।

ଆରୁଣି କୌଷୀତକିଙ୍କର ପୈଙ୍ଗ୍ୟ ନାମକୁ ଆଉ ଜଣେ ଆଚାର୍ଯ୍ୟଙ୍କ ସହିତ ବିରୋଧ ବିଷୟ ଏଥିରେ ବର୍ଣ୍ଣିତ । ଉକ୍ତ ବିରୋଧିତାର ଫଳଶ୍ରୁତି ସ୍ୱରୂପ କୌଷୀତକିଙ୍କ ମତର ଶ୍ରେଷ୍ଠତା ଏଥିରେ ପ୍ରତିପାଦିତ ହୋଇଛି । (୭)

ଏହି ଦୁଇଟିଯାକ ବ୍ରାହ୍ମଣ ଗୋଟିଏ ବୈଦିକ ସଂହିତା ସହିତ ସଂବନ୍ଧିତ ଥିବା ହେତୁ ଉଭୟ ମଧ୍ୟରେ କେତେକ ସୌସାଦୃଶ୍ୟ ବିଦ୍ୟମାନ । ଏଭଳି ସୌସାଦୃଶ୍ୟ ସତ୍ତ୍ୱେ ଉଭୟ ଗ୍ରନ୍ଥ ମଧ୍ୟରେ କେତେକ ପାର୍ଥକ୍ୟ ମଧ୍ୟ ବିଦ୍ୟମାନ । ଉଭୟ ଗ୍ରନ୍ଥର ତୁଳନାତ୍ମକ ଅଧ୍ୟୟନ କଲେ ଆମେ ଦେଖି ପାରିବା ଯେ କୌଷୀତକିର ବିଷୟ-ପ୍ରତିପାଦନ ପଦ୍ଧତି ଐତରେୟର ପଦ୍ଧତିଠାରୁ ଭିନ୍ନ । ବିଶେଷତଃ ଐତରେୟରେ କ୍ଷୁଦ୍ର ଓ ସରଳ ବାକ୍ୟ ବ୍ୟବହୃତ ହୋଇଥିବା ସ୍ଥଳେ କୌଷୀତକିରେ ଦୀର୍ଘ ଓ ଜଟିଳ ବାକ୍ୟ ବ୍ୟବହୃତ । ସେ ଯାହାହେଉ, ଐତିହାସିକ, ଭୌଗୋଳିକ, ସାମାଜିକ ଓ ଶୈକ୍ଷଣିକ ଦୃଷ୍ଟିକୋଣରୁ ବିଚାର କଲେ ଆମେ ଦେଖି ପାରିବା ଯେ ଉଭୟ ଗ୍ରନ୍ଥ ଅନୁରୂପ ଗୁରୁତ୍ୱପୂର୍ଣ୍ଣ ।

ଶାଙ୍ଖାୟନ ବ୍ରାହ୍ମଣରେ ଦେବମଣ୍ଡଳ, ସଂସ୍କୃତ ଭାଷାର ଶୁଦ୍ଧତା ରକ୍ଷା, ଛନ୍ଦର ଶୁଦ୍ଧତା ରକ୍ଷା, ଯଜ୍ଞରେ ପଶୁବଳି ସମ୍ପର୍କରେ ଦିଆ ଯାଇଥିବା କୌତୂହଳପୂର୍ଣ୍ଣ ଧାରଣାମାନ ଦୃଷ୍ଟି-ଗୋଚର ହୁଏ । ରୁଦ୍ର ଦେବତା ଏକ ବିଶିଷ୍ଟ ମହିମାମୟ ଆସନ ଗ୍ରହଣ କରିଥିବାର ଜଣାଯାଏ । ଏହାଙ୍କୁ ସବୁ ଦେବତାମାନଙ୍କ ମଧ୍ୟରେ ଜ୍ୟେଷ୍ଠ ଓ ଶ୍ରେଷ୍ଠ ବୋଲି କୁହାଯାଇଛି । ସେଥିପାଇଁ ଏଥିରେ ଗୋଟିଏ ସ୍ଥାନରେ ଆମେ ଦେଖିବାକୁ ପାଇଥାଉଁ :

"ରୁଦ୍ରୋ ବୈ ଜ୍ୟେଷ୍ଠଶ୍ଚ ଶ୍ରେଷ୍ଠଶ୍ଚ ଦେବତାନାମ୍" । (୮)

ଏହି ରୁଦ୍ର ଦେବତାଙ୍କର ବିଭିନ୍ନ ମହିମା ବିଷୟ ବର୍ଣ୍ଣନା କରି ଏହାଙ୍କୁ ଶିବ, ଭବ, ପଶୁପତି, ଉଗ୍ର, ମହାଦେବ, ଈଶାନ ଆଦି ନାନା ନାମରେ ଆବାହନ କରାଯାଇଛି ।

ଏତେବେଳକୁ ଅଗ୍ନିଙ୍କ ଗୁରୁତ୍ୱ ଊଣା ପଡ଼ିଯାଇଛି ଏବଂ ତାଙ୍କ ସ୍ଥାନ ଅଧିକାର କରି ବସିଛନ୍ତି ବିଷ୍ଣୁ । ଋଗ୍‌ବେଦୀୟ ଦେବମଣ୍ଡଳରେ ବିଷ୍ଣୁଙ୍କ ନାମ ଅବଶ୍ୟ ଥିଲା, ଯାହାକି ତଥ୍ୟ 'ତଦ୍‌ବିଷ୍ଣୋଃ ପରମଂପଦଂ' ଆଦି ପଙ୍‌କ୍ତିଗୁଡ଼ିକରୁ ଉପଲବ୍ଧ । କିନ୍ତୁ ସେଥିରେ ବିଷ୍ଣୁଙ୍କୁ ପ୍ରାଥମିକତା ଦିଆଯାଇ ନଥିଲା । ଅନ୍ୟ ପକ୍ଷରେ, ଅଗ୍ନିଙ୍କୁ ସେହି ପ୍ରାଥମିକତାଟି ମିଳିଥିଲା । କିନ୍ତୁ ଶଂସିତ ବ୍ରାହ୍ମଣରେ ସେହି ପ୍ରାଥମିକତା ବିଷ୍ଣୁଙ୍କୁ ମିଳିଛି । ଏହାର ୭ମ ଅଧ୍ୟାୟରେ ସ୍ପଷ୍ଟ ଭାବରେ ବିଷ୍ଣୁଙ୍କୁ ଅଗ୍ନିଙ୍କଠାରୁ ବଡ଼ ବୋଲି କୁହାଯାଇଛି । (୯)

ସଂସ୍କୃତ ଭାଷାର ଶୁଦ୍ଧତା ସମ୍ପର୍କରେ କୁହାଯାଇଛି ଯେ ଉଦୀଚ୍ୟ ବା ଉତ୍ତରାଞ୍ଚଳରେ ଏହାର ଶୁଦ୍ଧତା ରକ୍ଷାକରି ଯାଇଥିଲା । ଦକ୍ଷିଣାଞ୍ଚଳରେ ବିଭିନ୍ନ ଆର୍ଯ୍ୟେତର ଗୋଷ୍ଠୀ ସହିତ ସାଂସ୍କୃତିକ ଓ ଭାବଗତ ମିଳନ ହେବା ଫଳରେ ଭାଷାଗତ ଶୁଦ୍ଧତା କ୍ରମେ କ୍ରମେ ନଷ୍ଟ ହେବାକୁ ଲାଗିଲା । ତେଣୁ ଆର୍ଯ୍ୟମାନେ ଏହି ଶୁଦ୍ଧତାର ରକ୍ଷଣ ଲାଗି ଉତ୍ତରଦେଶୀୟ ଭାଷା ଉପରେ ଯଥେଷ୍ଟ ନିର୍ଭରଶୀଳ ଥିଲେ । ଉତ୍ତର ଅଞ୍ଚଳରେ ବହୁ ଶିକ୍ଷାନୁଷ୍ଠାନ ଗଢି ଉଠିଥିଲା ଏବଂ ସେଠାରେ ଶିକ୍ଷାଲାଭ କରିବା ପରେ ଏହି ଜ୍ଞାନକୁ ଛାତ୍ରମାନେ ଅନ୍ୟତ୍ର ବିତରଣ କରୁଥିଲେ । ଏହି କଥାଟି ସ୍ପଷ୍ଟ ଭାବରେ ଶଂସିତ ବ୍ରାହ୍ମଣରେ ବର୍ଣ୍ଣିତ । ସେଠାରେ କୁହା ଯାଇଛି :

"ଉଦଞ୍ଚ ଏବ ଯନ୍ତି ବାଚଃ ଶିକ୍ଷିତୁମ୍; ଯୋ ବୈ ତତ ଆଗଚ୍ଛନ୍ତି ତଂ ଶୁଶ୍ରୂଷନ୍ତେ ।"

ଅର୍ଥାତ୍ "ଉତ୍ତର ଦେଶକୁ ଲୋକେ ପାଠ ପଢିବାକୁ ଯାଆନ୍ତି । ଯେ ସେଠାରୁ ଫେରନ୍ତି, ତାଙ୍କର ସେବା କରି ଅନ୍ୟମାନେ ତାଙ୍କଠାରୁ ପାଠ ଶିଖନ୍ତି ।" ଉତ୍ତରଦେଶୀୟ ଭାଷାର ଶୁଦ୍ଧତା ବିଷୟରେ ବୁଦ୍ଧଙ୍କ ସମୟରେ (ଖ୍ରୀ : ପୂ : ୬ଷ୍ଠ ଶତାବ୍ଦୀ) ମଧ୍ୟ ପ୍ରସିଦ୍ଧି ଥିଲା । କେବଳ ଭାଷା ନୁହେଁ, ଆଚାରର ଶୁଦ୍ଧତା ମଧ୍ୟ ଉତ୍ତର ଦେଶରେ ରକ୍ଷା କରି ଯାଉଥିଲା ବୋଲି ବୁଦ୍ଧଙ୍କ ସମୟରେ ଲୋକମାନଙ୍କର ଧାରଣା ଥିଲା । ବୌଦ୍ଧ-ଜାତକ ଗଳ୍ପଗୁଡ଼ିକରେ ଶୁଦ୍ଧ ଆଚାର ବିଶିଷ୍ଟ ଭଲ ବ୍ରାହ୍ମଣ କହିଲେ ଉତ୍ତର ଦେଶୀୟ ବ୍ରାହ୍ମଣ ବୋଲି ବୁଝା ଯାଉଥିଲା । ଏହି ପ୍ରସିଦ୍ଧି ପାଣିନିଙ୍କ (ଖ୍ରୀ. ପୂ. ୪ର୍ଥ ଶତାବ୍ଦୀ) ସମୟରେ ମଧ୍ୟ ଥିଲା । ତାଙ୍କ ଘର ଥିଲା 'ସଲାତୁର' ଗ୍ରାମରେ ଯାହା କି ଆଧୁନିକ ଆଫଗାନିସ୍ଥାନର ଅନ୍ତର୍ଗତ । ଏହା ଉଦୀଚ୍ୟ ଅଞ୍ଚଳ । ଏହି ପୃଷ୍ଠଭୂମିରେ ପାଣିନି ତାଙ୍କର ପ୍ରସିଦ୍ଧ ବ୍ୟାକରଣ ଗ୍ରନ୍ଥ 'ଅଷ୍ଟାଧ୍ୟାୟୀ'ଟିକୁ ପ୍ରଣୟନ କରିଥିଲେ, ଯାହାକି ସାରା ଭାରତରେ ସମସ୍ତଙ୍କ ଦ୍ୱାରା ସମ୍ମାନର ସହିତ ଗୃହୀତ ହୋଇ ଯାଇଥିଲା ।

ଆଉ ଗୋଟିଏ ସ୍ଥାନରେ (୨।୩।୨) ଛନ୍ଦର ଶୁଦ୍ଧତା ରକ୍ଷା ଉପରେ ଗୁରୁତ୍ୱ ଆରୋପ କରି ଉପଦେଶ ଦିଆଯାଇ କୁହା ଯାଇଛି ଯେ ଇନ୍ଦ୍ର ଏହି ଛନ୍ଦ ସାହାଯ୍ୟରେ ହିଁ ବୃତ୍ରାସୁରକୁ ବଧ କରିଥିଲେ । ଏହାର ତାତ୍ପର୍ଯ୍ୟ ହେଲା, ଉପଯୁକ୍ତ ଛନ୍ଦରେ ଠିକ୍ ଉଚ୍ଚାରଣ ସହିତ ବେଦମନ୍ତ୍ରଗୁଡ଼ିକୁ ବୋଲିଲେ ସେଗୁଡ଼ିକର ସୁଫଳ ମିଳିବ ; ଅନ୍ୟଥା ନୁହେଁ ।

ଆଉ ଗୋଟିଏ ବିଶେଷ କୌତୂହଳୋଦ୍ଦୀପକ କଥା ହେଲା ଯଜ୍ଞରେ ପଶୁବଳିକୁ ନିନ୍ଦା କରିବା । ପଶୁବଳି ମହାପାପ ବୋଲି ଏଠାରେ କୁହାଯାଇଛି ଏବଂ ଲୋକମାନଙ୍କୁ ଭୟଭୀତ କରାଇବା ପାଇଁ କୁହାଯାଇଛି ଯେ ପଶୁବଳି ଦେଉଥିବା ଲୋକକୁ ପରଲୋକରେ ସେହି ପଶୁ ହିଁ ଖାଇଥାଏ । ନିମ୍ନଲିଖିତ ପଙ୍କ୍ତିଟି ଏ ବିଷୟରେ ସ୍ପଷ୍ଟ ସୂଚନା ଦେଇଥାଏ :

"ଅମୁଷ୍ମିନ୍ ଲୋକେ ପଶବୋ ମନୁଷ୍ୟାନଶ୍ନନ୍ତି ।"

ଅର୍ଥାତ୍ "ସେହି ଲୋକରେ ପଶୁଗୁଡ଼ିକ ମଣିଷମାନଙ୍କୁ (ବଳି ଦେଇଥିବା) ଖାଆନ୍ତି ।" ଆମେ ବ୍ରାହ୍ମଣ ଗ୍ରନ୍ଥକୁ ବେଦ-ମନ୍ତ୍ରର ପ୍ରକୃତ ବ୍ୟାଖ୍ୟାକାରୀ ଗ୍ରନ୍ଥ ବୋଲି ଗ୍ରହଣ କରୁଥିଲାବେଳେ, କିପରି ଭାବରେ କହିବା ଯେ ବୈଦିକ ଯଜ୍ଞରେ ପଶୁବଳିକୁ ଉତ୍ସାହିତ କରାଯାଉଥିଲା ? ବୁଦ୍ଧଦେବ ଯଜ୍ଞରେ ପଶୁବଳିକୁ ନିନ୍ଦା କରିବା ଦ୍ୱାରା କିପରି ବା ବେଦବିରୋଧୀ ହେଲେ ବୋଲି ଆମେ ବିଶ୍ୱାସ କରିବା ? ବୈଦିକ ଯଜ୍ଞର ତାତ୍ପର୍ଯ୍ୟ ସମ୍ପର୍କରେ ପୃଥକ୍ ଏକ ପରିଚ୍ଛେଦରେ ବିସ୍ତୃତ ଭାବରେ ଆଲୋଚନା କରାଯିବ । ବର୍ତ୍ତମାନ ପାଇଁ ଏତିକି ଜାଣିଲେ ଯଥେଷ୍ଟ ହେବ ଯେ ଶଂସିତ ବ୍ରାହ୍ମଣରେ ଯଜ୍ଞରେ ଦିଆ ଯାଉଥିବା ପଶୁବଳିକୁ ନିନ୍ଦା କରାଯାଇଛି ।

## ଯଜୁର୍ବେଦୀୟ ବ୍ରାହ୍ମଣ :

ପୂର୍ବରୁ କୁହାଯାଇଛି, ଯଜୁର୍ବେଦ ଦୁଇ ଭାଗରେ ବିଭକ୍ତ, ଶୁକ୍ଳ ଯଜୁର୍ବେଦ ଓ କୃଷ୍ଣ ଯଜୁର୍ବେଦ । ଶୁକ୍ଳ ଯଜୁର୍ବେଦାନ୍ତର୍ଗତ ବ୍ରାହ୍ମଣ ଗ୍ରନ୍ଥ ହେଲା ଶତପଥ ବ୍ରାହ୍ମଣ । କୃଷ୍ଣ ଯଜୁର୍ବେଦର ଅନ୍ତର୍ଗତ ବ୍ରାହ୍ମଣ ଗ୍ରନ୍ଥ ହେଲା ତୈତ୍ତିରୀୟ ବ୍ରାହ୍ମଣ । ଏହି ଦୁଇ ବ୍ରାହ୍ମଣ ଗ୍ରନ୍ଥ ଉପରେ ପୃଥକ୍ ପୃଥକ୍ ଭାବରେ ଆଲୋଚନା ନିମ୍ନରେ କରାଯାଉଛି ।

## ଶତପଥ ବ୍ରାହ୍ମଣ :

ଶୁକ୍ଳ ଯଜୁର୍ବେଦୀୟ ଏହି ବ୍ରାହ୍ମଣଟି ଆକାରରେ ଯେପରି ବୃହତ୍, ପ୍ରାଧାନ୍ୟରେ ମଧ୍ୟ ସେହିପରି ସମଧିକ ଗୌରବମୟ । ବାଳଗଙ୍ଗାଧର ତିଳକ ଏହାକୁ ଖ୍ରୀ: ପୂ ୨୫୦୦ର ରଚନା ବୋଲି କୁହନ୍ତି । (୧୦) ଜ୍ୟୋତିର୍ବିଦ୍ ବିଦ୍ୱାନ୍ ଶଙ୍କର ବାଳକୃଷ୍ଣ ଦୀକ୍ଷିତ ଏହାକୁ ଆହୁରି ୫୦୦ ବର୍ଷ ପଛକୁ ନେଇ ଯାଇଛନ୍ତି । ତାଙ୍କର ଏହି ସିଦ୍ଧାନ୍ତକୁ ସେ ମୁଖ୍ୟତଃ ଶତପଥ ବ୍ରାହ୍ମଣରେ ଥିବା (୨।୧।୨।୩) ଏକ ପଙ୍କ୍ତି ଉପରେ ଆଧାରିତ କରିଛନ୍ତି । ସେଠାରେ ଉଲ୍ଲେଖ ଅଛି ଯେ 'କୃତ୍ତିକା ନକ୍ଷତ୍ରମାନେ ପୂର୍ବରେ ଉଦୟ ହୁଅନ୍ତି ।' ଏଠି ବର୍ତ୍ତମାନ କାଳର କ୍ରିୟାପଦ ବ୍ୟବହୃତ । ଅତଏବ, ଏହି ପଙ୍କ୍ତିଟିର ସ୍ରଷ୍ଟା କୃତ୍ତିକା ନକ୍ଷତ୍ରପୁଞ୍ଜକୁ ପୂର୍ବ ଦିଗରେ ଉଦିତ ହେଉଥିବାର ନିଶ୍ଚୟ ଦେଖିଥିବେ । ଏହି ନକ୍ଷତ୍ର ପୁଞ୍ଜ ଅବଶ୍ୟ ବର୍ତ୍ତମାନ ଉତ୍ତର ଦିଗରେ ଉଦୟ ହେଉଛନ୍ତି । ଦୀକ୍ଷିତ ହିସାବ କରି ଦେଇଛନ୍ତି ଯେ ଖ୍ରୀ: ପୂ: ୩୦୦୦ରେ କୃତ୍ତିକା ନକ୍ଷତ୍ରପୁଞ୍ଜ ପୂର୍ବ ଦିଗରେ ଉଦୟ ହେଉଥିଲେ । ତେଣୁ ସେ ଶତପଥ ବ୍ରାହ୍ମଣର ସୃଷ୍ଟିକୁ ପ୍ରାୟ ଖ୍ରୀ: ପୂ: ୩୦୦୦ରେ ସ୍ଥାପିତ କରିଛନ୍ତି । ଏହାର ସୃଷ୍ଟିକାଳ ସମ୍ପର୍କରେ ନାନା ପ୍ରକାର ବିବଦମାନ ମତ ଥିଲେ ମଧ୍ୟ ଏକଥା ସ୍ୱୀକାର କରିବାକୁ ହେବ ଯେ ଏହା ଅତି ପୁରାତନ । ଏଥିରେ ଦର୍ଶା ଯାଇଥିବା ବିଭିନ୍ନ ଯଜ୍ଞ ଏହାର ପୁରାତନତାକୁ ଆହୁରି ଅଧିକ ସୁଦୃଢ଼ ଭିତ୍ତି ପ୍ରଦାନ କରିଥାଏ ।

ସଂହିତାଗୁଡ଼ିକ ମଧ୍ୟରେ ଋଗ୍‌ବେଦ ସଂହିତା ଯେପରି ଗୌରବାବହ, ବ୍ରାହ୍ମଣଗ୍ରନ୍ଥଗୁଡ଼ିକ ମଧ୍ୟରେ ଶତପଥ ବ୍ରାହ୍ମଣର ଅବସ୍ଥା ତଦ୍‌ନୁରୂପ । ସେଥିପାଇଁ ବଳଦେବ ଉପାଧ୍ୟାୟ ଯଥାର୍ଥରେ କହିଛନ୍ତି : "ଇସ୍ ବ୍ରାହ୍ମଣ ସାହିତ୍ୟ କା ୟହ୍ ଅପନେ ବର୍ଣ୍ଣ୍ୟ ବିଷୟୋଂ କେ ବିସ୍ତାର, ବିଗୁର ତଥା ବିବରଣ କେ କାରଣ ଶତପଥ-ବ୍ରାହ୍ମଣ ମୁକୁଟ ମଣି ମାନା ଜାତା ହୈ ।" (୧୧) ଏହା ବର୍ତ୍ତମାନ ଶୁକ୍ଳ ଯଜୁର୍ବେଦର ଦୁଇ ଶାଖା, ମାଧ୍ୟନ୍ଦିନ ଓ କାଣ୍ୱ ଏ ଉଭୟଙ୍କରେ ଉପଲବ୍ଧ । ଅବଶ୍ୟ ଶାଖା ଭେଦରେ ବ୍ରାହ୍ମଣ ଗ୍ରନ୍ଥର ଆକାରରେ ପାର୍ଥକ୍ୟ ରହିଅଛି । ଉଦାହରଣ ସ୍ୱରୂପ ମାଧ୍ୟନ୍ଦିନ ଶତପଥରେ କାଣ୍ଡ ସଂଖ୍ୟା ୧୪ ଓ ଅଧ୍ୟାୟ ସଂଖ୍ୟା ୧୦୦ ହେଲେ ହେଲେ କାଣ୍ୱ ଶତପଥରେ କାଣ୍ଡ ସଂଖ୍ୟା ୧୭ ଓ ଅଧ୍ୟାୟ ସଂଖ୍ୟା ୧୦୪ । ଏହି ଗ୍ରନ୍ଥରେ ଅଗ୍ନିହୋତ୍ର, ବାଜପେୟ, ରାଜସୂୟ, ଅଶ୍ୱମେଧ ଆଦି ଯଜ୍ଞ ବିଷୟରେ ବର୍ଣ୍ଣନା ବିଦ୍ୟମାନ । ଆଉ ମଧ୍ୟ ବିଭିନ୍ନ ପ୍ରକାର ହୋମ, ବ୍ରତୋପନୟନ, ସ୍ୱାଧ୍ୟାୟ ବିଷୟରେ ସମଧିକ ବର୍ଣ୍ଣନାରେ ଏହା ଭରପୂର । ରାଜାଙ୍କ ଅଭିଷେକ, ସୋମଯାଗ ଇତ୍ୟାଦି ବହୁ ବିଷୟରେ ବର୍ଣ୍ଣନା ମଧ୍ୟ ଏଥିରେ ରହିଅଛି । ଏହି ଗ୍ରନ୍ଥର ଆଉ ଏକ ବିଶେଷତ୍ୱ ହେଲା ଇତିହାସ ବିଷୟରେ ଏକ ସଂପୂର୍ଣ୍ଣ ନୂତନ ଦୃଷ୍ଟିକୋଣ ପ୍ରତିପାଦିତ କରିବା । ଏଥିରେ ଇତିହାସକୁ ଗୋଟିଏ କଳା ବୋଲି କୁହା ଯାଇଚି ; ଏହାକୁ ସାହିତ୍ୟର ଆସନ ଦିଆଯାଇଛି । (୧୨)

ଶତପଥ ବ୍ରାହ୍ମଣର ସ୍ରଷ୍ଟା ଋଷି ଯାଜ୍ଞବଲ୍କ୍ୟ ବୋଲି ପଣ୍ଡିତମାନେ କହିଥାନ୍ତି । କିନ୍ତୁ ଏଥିରେ ଥିବା 'ଅଗ୍ନିବିଦ୍ୟା'ର ସ୍ରଷ୍ଟା ସେ ନୁହନ୍ତି । ଏହାର ସ୍ରଷ୍ଟା ହେଉଛନ୍ତି ଶାଣ୍ଡିଲ୍ୟ ଋଷି । ଏକାଧିକ ଋଷିଙ୍କ ଦ୍ୱାରା ଏହି ଗ୍ରନ୍ଥଟି ରଚିତ ହୋଇଥିବାରୁ, ଏଥିକ ସୂଚନା ମିଳେ ଯେ ଏହା ବିଭିନ୍ନ ସମୟରେ ରଚିତ ଏବଂ ପରେ ବିଭିନ୍ନ ଲେଖାମାନ ଏଥିରେ ସଂକଳିତ । ଅବଶ୍ୟ ଏହି ସଂକଳନ କାର୍ଯ୍ୟଟି କେବେ ସମ୍ପୂର୍ଣ୍ଣ ହୋଇଥିଲା, ତାହା ଠିକ୍ ଭାବରେ କହିହେବ ନାହିଁ ।

ଶତପଥ ବ୍ରାହ୍ମଣର ଅଧ୍ୟୟନରୁ ଆମେ ତତ୍କାଳୀନ ସାମାଜିକ ସ୍ଥିତି ବିଷୟରେ ପ୍ରଚୁର ତଥ୍ୟ ପାଇପାରୁଁ । ବର୍ଣ୍ଣାଶ୍ରମ ବ୍ୟବସ୍ଥା, ସମାଜରେ ଓ ପରିବାରରେ ନାରୀର ସ୍ଥାନ, ଖାଦ୍ୟପେୟ, ନୃତ୍ୟଗୀତ, ରାଜ୍ୟ ଶାସନ, ଅର୍ଥନୈତିକ ସ୍ଥିତି ଆଦି ଅନେକ ଲୌକିକ ବିଷୟବସ୍ତୁ ଉପରେ ସମ୍ୟକ୍ ଆଲୋଚନା ଏଥିରେ କରାଯାଇଅଛି । ଅତଏବ, ଏହା ଅଧ୍ୟୟନ କଲେ ତତ୍କାଳୀନ ଭାରତର ଏକ ସାର୍ବିକ ସାମାଜିକ ଇତିହାସ ବିଷୟରେ ଆମେ ଅବଗତ ହୋଇଥାଉଁ । ଲୌକିକ ବିଷୟକୁ ଛାଡ଼ି ପାରଲୌକିକ ଓ ଆଧ୍ୟାତ୍ମିକ ବିଷୟବସ୍ତୁର ଅବତାରଣା ଏଥିରେ କିଛି କମ୍ ହୋଇନାହିଁ । ଦାର୍ଶନିକ ଚନ୍ତାଧାରାର ସୂକ୍ଷ୍ମ ସ୍ପର୍ଶରେ ମଧ୍ୟ ଏହା ଭରପୂର । ଏଥିରୁ କେତେକ ଐତିହାସିକ ତଥ୍ୟ ମଧ୍ୟ ଆମେ ପାଇଥାଉଁ । ବିଶେଷ କରି ଏହା ପଢ଼ିବା ଦ୍ୱାରା ଆର୍ଯ୍ୟମାନଙ୍କର ସପ୍ତସିନ୍ଧୁ ଅଞ୍ଚଳ ଛାଡ଼ି ପୂର୍ବ ଦିଗକୁ ଗତି କରୁଥିବା ବେଳର କିଛି ଘଟଣା ଆମ ଆଖିରେ ପଡ଼ିଥାଏ । ଉଦାହରଣ ସ୍ୱରୂପ ସଦାନୀରା (ଗଣ୍ଡକୀ)

ନଦୀର ପୂର୍ବପଟେ ଅଗ୍ନିଦେବଙ୍କ ସ୍ଥାପନ କରିବା ସମ୍ପର୍କୀୟ ଘଟଣା । ଏହା ପ୍ରୋକ୍ତ ଗ୍ରନ୍ଥର, ପ୍ରଥମ କାଣ୍ଡରେ (୧।୪।୧।୧୦-୧୭) ବର୍ଣ୍ଣିତ । 'ମାଥବ ବିଦେଘ' ବୋଲି ଜଣେ ରାଜା ଥିଲେ । ତାଙ୍କ ପୁରୋହିତଙ୍କ ନାଁ ଥିଲା ଗୌତମ ରାହୁଗଣ । 'ମାଥବ ବିଦେଘ' ପ୍ରଥମେ ସରସ୍ୱତୀ ନଦୀ ତୀରରେ ଥିଲେ । ସେଠାରୁ ସେ 'ଅଗ୍ନି'ଙ୍କୁ ସାଥିରେ ଧରି ପୂର୍ବ ଅଭିମୁଖରେ ଚାଲିଲେ ଏବଂ ହିମାଳୟରୁ ବାହାରିଥିବା ସଦାନୀରା (ଗଣ୍ଡକ) ନଦୀ ତୀରରେ ଅଟକି ଗଲେ । ସେଠାରେ ରାଜା ଓ ତାଙ୍କ ପୁରୋହିତ ଅଗ୍ନିଙ୍କୁ ସଦାନୀରାର ପୂର୍ବ ଦିଗରେ ରହିବାକୁ ଆଦେଶ ଦେଲେ । ଏହାର ତାତ୍ପର୍ଯ୍ୟ ହେଲା ଏହି ଯେ, ସେ ପୂର୍ବେ ଏଠାରେ ପ୍ରଥମ ଥର ପାଇଁ ଅଗ୍ନି-ପୂଜାର ପ୍ରବର୍ତ୍ତନ କରାଇଲେ । ପୂର୍ବରୁ ଏହି ଅଞ୍ଚଳ ଆର୍ଯ୍ୟମାନଙ୍କ ବାସର ଅନୁପଯୋଗୀ ଥିଲା; ବର୍ତ୍ତମାନ ଏହା ଉପଯୋଗୀ ହେଲା । ଏଥିରୁ ସପ୍ତସିନ୍ଧୁ ଅଞ୍ଚଳରୁ ଆର୍ଯ୍ୟ ସଂସ୍କୃତି କ୍ରମେ କ୍ରମେ ପୂର୍ବ ଦିଗକୁ ଗତି କରିଥିବାର ପ୍ରମାଣ ଆମେ ପାଇ ପାରୁଛୁ । ଏହି ଐତିହାସିକ ତଥ୍ୟ ଯୋଗାଇ ଦେବାରେ ଶତପଥ-ବ୍ରାହ୍ମଣର ଗୁରୁତ୍ୱ ନିଶ୍ଚୟ ରହିଅଛି । ଏହିଭଳି ଆହୁରି ଅନେକ ଐତିହାସିକ ଓ ସାମାଜିକ ତଥ୍ୟମାନ ଆମେ ଏହି ଗ୍ରନ୍ଥରୁ ପାଇଥାଉଁ ।

## ତୈତ୍ତିରୀୟ ବ୍ରାହ୍ମଣ :

ତୈତ୍ତିରୀୟ ବ୍ରାହ୍ମଣ ହେଉଛି, କୃଷ୍ଣ ଯଜୁର୍ବେଦ ଶାଖାର ସଂପ୍ରତି ଏକମାତ୍ର ଉପଲବ୍ଧ ବ୍ରାହ୍ମଣ ଗ୍ରନ୍ଥ । ଅପର ବ୍ରାହ୍ମଣ ଗ୍ରନ୍ଥ 'କାଠକ ବ୍ରାହ୍ମଣ'ର ନାମ ଶୁଣା ଯାଉଥିଲେ ମଧ୍ୟ ତାହା ଅନୁପଲବ୍ଧ । ଅତଏବ, ତାହାର ଭଲମନ୍ଦ ବିଷୟରେ କିଛି କହି ହେବନାହିଁ । ଏଥିରେ ତିନୋଟି ଭାଗ ବା କାଣ୍ଡ ଅଛି । ଏହି କାଣ୍ଡଗୁଡ଼ିକ ପୁଣି ୨୫ଟି ପ୍ରପାଠକରେ ବିଭକ୍ତ । ଏଥିରେ ବିଭିନ୍ନ ଯଜ୍ଞ ବିଷୟ, ବିଶେଷ କରି ପୁରୁଷମେଧ ଯଜ୍ଞ ବିଷୟ ବର୍ଣ୍ଣିତ । ଚାରି ଆଶ୍ରମ ଓ ଚାରି ବର୍ଣ୍ଣର ବ୍ୟବସ୍ଥା ସମ୍ପର୍କରେ ଏଥିରେ ବିସ୍ତୃତ ଭାବରେ ଆଲୋଚନା କରାଯାଇଛି ।

ବୈଦିକ ସାହିତ୍ୟରେ କର୍ମ ଦୁଇ ଭାଗରେ ବିଭକ୍ତ । ଗୋଟିଏ ହେଲା ପୁରୁଷାର୍ଥ କର୍ମ ଏବଂ ଅପରଟି ହେଲା ଯଜ୍ଞାର୍ଥ କର୍ମ । ଧର୍ମ, ଅର୍ଥ, କାମ ଓ ମୋକ୍ଷ, ଏହି ଚତୁର୍ବର୍ଗ ଫଳ ପାଇଁ ଯେଉଁ କର୍ମ କରାଯାଏ, ତାହା ହେଲା ପୁରୁଷାର୍ଥ କର୍ମ । ମଣିଷ ଏହା ନିଜର ସ୍ୱାର୍ଥ ପାଇଁ କିମ୍ବା ନିଜ ପରିବାରର ସ୍ୱାର୍ଥ ପାଇଁ କରିଥାଏ । ଏହା ଥାଏ ବ୍ୟକ୍ତିକୈନ୍ଦ୍ରିକ । ଅତଏବ, ଏ କର୍ମରେ ଉତ୍କର୍ଷ ନାହିଁ । ନିଜର ସ୍ୱାର୍ଥକୁ ବଳି ଦେଇ ଅପରର ମଙ୍ଗଳ ପାଇଁ ଯେଉଁ କର୍ମ କରି ଯାଇଥାଏ, ତାହା ହେଲା ଯଜ୍ଞାର୍ଥ କର୍ମ । ମଣିଷ ସବୁବେଳେ ଏହି ଦୁଇ ପ୍ରକାର କର୍ମରୁ ଗୋଟିଏ ନିଶ୍ଚୟ କରୁଥାଏ । ଯାହାର ଯଜ୍ଞାର୍ଥ କର୍ମ ଯେତେ ବେଶି, ସେ ସେତେ ପୁଣ୍ୟବାନ; ସେ ସେତେ ଭଗବାନଙ୍କର ନିକଟତର । ଯାହାର ସକଳ କର୍ମ ଯଜ୍ଞାର୍ଥ, ସେ ସ୍ୱୟଂ ଭଗବାନ୍ । "ଯଜ୍ଞୋ ବୈ ବିଷ୍ଣୁଃ" ବା "ଯଜ୍ଞ ଅଟେ ଭଗବାନ" ବୋଲି ଶତପଥ ବ୍ରାହ୍ମଣରେ ଏହି ଯେଉଁ ଉକ୍ତିଟି କୁହାଯାଇଛି, ତାହାର ତାତ୍ପର୍ଯ୍ୟ ଅଛି ଏଇଠି । ତୈତ୍ତିରୀୟ ବ୍ରାହ୍ମଣରେ ମଧ୍ୟ ଅନୁରୂପ

ଚନ୍ଦ୍ରାଧାର ଅନୁଷ୍ଠିତ । ସେତେବେଳକୁ ଅବଶ୍ୟ ଯଜ୍ଞର ବାହ୍ୟ ଆଡ଼ମ୍ବର ଖୁବ୍ ବଢ଼ି ଯାଇଥିଲା ଏବଂ ଏଥିରେ ଅନେକ ଜଟିଳ ବିଧିବିଧାନ ପଶି ଯାଇଥିଲା । ତାହା ସତ୍ତ୍ୱେ ଯଜ୍ଞର ଆତ୍ମିକ ଦୃଷ୍ଟିକୋଣଟି ଲୋପ ପାଇଯାଇ ନଥିଲା । ସତ୍ୟ ଓ ଜ୍ଞାନ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ଏବଂ ସେଗୁଡ଼ିକୁ ମର୍ଯ୍ୟାଦାବନ୍ତ ଆସନ ଦେବାର ପରମ୍ପରା ପୂର୍ବ ଭଳି ଚାଲିଥିଲା । ଏହାକୁ ଲକ୍ଷ୍ୟ କରି ବସୁ ଯଥାର୍ଥରେ କହିଛନ୍ତି :

> "The spirit underlying the form of sacrifice is never lost sight of though the form is made much of. The spirit of reverence and adherenee to truth and knowledge are enjoined to obtain the real benefit of rituals. In the Satapath Brahmana and Taittiriya Brahmana, great stress is laid on the spirit of the sacrifice and the path of knowledge." (୧୩)

ତୈତ୍ତିରୀୟ ବ୍ରାହ୍ମଣ କାଳରେ ପୁରୋହିତ ଗୋଷ୍ଠୀର ଖୁବ୍ ପ୍ରାଧାନ୍ୟ ବଢ଼ିଥିବାର ମନେ ହୁଏ । ସେମାନେ ରାଜା ଓ ପ୍ରଜା ଉଭୟଙ୍କ ଉପରେ ଅଖଣ୍ଡ ପ୍ରଭାବ ବିସ୍ତାର କରିଥିଲେ । ଚାରି ବର୍ଣ୍ଣର ବ୍ୟବସ୍ଥା ଅପେକ୍ଷାକୃତ ଦୃଢ଼ତର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ହୋଇଥିବା ଭଳି ଜଣାପଡ଼େ । ସେଥିପାଇଁ ତୈତ୍ତିରୀୟ ବ୍ରାହ୍ମଣରେ ଠାଏ କୁହାଯାଇଛି :

"ଅସତଃବେବ ତଦ୍ ଇତ୍ୟାହୁର୍ଯଂଛୂଦ୍ରୋ ଦୋଗ୍‌ଧୀତି ।" (୧୪)

ଅର୍ଥାତ୍ ଶୂଦ୍ର ଦ୍ୱାରା ଦୁହାଁ ଯାଇଥିବା ଦୁଧ ଯଜ୍ଞ ପାଇଁକି ଅପବିତ୍ର । ଶୂଦ୍ର ଦୁଧକୁ ଛୁଇଁ ଦେଲେ ତାହା ଦେବକାର୍ଯ୍ୟ ଲାଗି ଯେତେବେଳେ ଅପବିତ୍ର ବୋଲି ଜଣା ଯାଉଥିଲା ସେତେବେଳେ ଶୂଦ୍ରର ସାମାଜିକ ସ୍ଥିତି ଯେ କେତେ ଶୋଚନୀୟ ଅବସ୍ଥାରେ ଥିବ, ଏହା ସହଜରେ ଅନୁମେୟ ।

ଋଗ୍‌ବେଦ ସଂହିତାରେ ଅଗ୍ନିଙ୍କର ପ୍ରାଧାନ୍ୟ ଥିଲା । ବିଷ୍ଣୁ ବୈଦିକ ଦେବଗଣଙ୍କ ଭିତରେ ଏକ ଅପ୍ରଧାନ ଦେବ ହୋଇ ରହିଥିଲେ । କିନ୍ତୁ ତୈତ୍ତିରୀୟ ବ୍ରାହ୍ମଣରେ ବିଷ୍ଣୁ ଜଣେ ପ୍ରଧାନ ଦେବ ହୋଇ ଉଠିଲେ ଏବଂ ଅଗ୍ନିଙ୍କର ଆସନ ତାଙ୍କ ତଳକୁ ଖସିଗଲା । ଅବଶ୍ୟ ଏଠାରେ ମନେ ରଖିବାକୁ ହେବ ଯେ ବିଷ୍ଣୁଙ୍କର ପ୍ରାଧାନ୍ୟ ଶତପଥ ବ୍ରାହ୍ମଣରେ ମଧ୍ୟ ଦୃଶ୍ୟମାନ । ଋଗ୍‌ବେଦୀୟ ରୁଦ୍ର ତୈତ୍ତିରୀୟ ବ୍ରାହ୍ମଣରେ ଶିବ ହୋଇଗଲେ ଏବଂ ତାଙ୍କର

ପ୍ରାଧାନ୍ୟ ମଧ୍ୟ ବଢ଼ି ଉଠିଲା । ଏହିପରି ଭାବରେ ଦେବଗଣଙ୍କ ସ୍ଥିତିର କ୍ରମ ବିଷୟରେ ଏହି ବ୍ରାହ୍ମଣରେ କେତେକ ପରିବର୍ତ୍ତନ ଦେଖା ଦେଲା ।

**ସାମବେଦୀୟ ବ୍ରାହ୍ମଣ :**

ସାମବେଦର ସର୍ବମୋଟ ବ୍ରାହ୍ମଣ ସଂଖ୍ୟା ଆଠ, ଯାହାକି ଆମ୍ଭମାନଙ୍କୁ ବର୍ତ୍ତମାନ ଉପଲବ୍‌ଧ । ସାୟଣାଚାର୍ଯ୍ୟ ସେଗୁଡ଼ିକୁ ନିମ୍ନୋକ୍ତ ପ୍ରକାର ଆଠ ଭାଗରେ ବିଭକ୍ତ କରିଛନ୍ତି ।

(କ) ତାଣ୍ଡ୍ୟ ବ୍ରାହ୍ମଣ ବା ପ୍ରୌଢ଼ ବ୍ରାହ୍ମଣ ବା ପଞ୍ଚବିଂଶ ବ୍ରାହ୍ମଣ;

(ଖ) ଷଡ୍‌ବିଂଶ ବ୍ରାହ୍ମଣ;

(ଗ) ସାମବିଧାନ ବ୍ରାହ୍ମଣ ବା ସାମବିଧି ବ୍ରାହ୍ମଣ;

(ଘ) ଆର୍ଷେୟ ବ୍ରାହ୍ମଣ;

(ଙ) ଦେବତାଧ୍ୟାୟ ବ୍ରାହ୍ମଣ ବା ଦୈବତ ବ୍ରାହ୍ମଣ;

(ଚ) ଉପନିଷଦ୍ ବ୍ରାହ୍ମଣ ଏବଂ

(ଛ) ବଂଶ ବ୍ରାହ୍ମଣ

ସାମବେଦର ହିଁ ସର୍ବାଧିକ ବ୍ରାହ୍ମଣ ଆମ୍ଭମାନଙ୍କୁ ଉପଲବ୍‌ଧ । ବର୍ତ୍ତମାନ ପ୍ରତିଟି ବ୍ରାହ୍ମଣ ବିଷୟରେ ପୃଥକ୍ ପୃଥକ୍ ଭାବରେ ସୂଚନା ଦିଆଯାଉଛି ।

**ତାଣ୍ଡ୍ୟ ବ୍ରାହ୍ମଣ :**

ସାମବେଦର ଆକାରରେ ସବୁଠାରୁ ବଡ଼ ବ୍ରାହ୍ମଣ ହେଉଛି ତାଣ୍ଡ୍ୟ ବ୍ରାହ୍ମଣ । ଏହା ମଧ୍ୟ ପ୍ରାଧାନ୍ୟରେ ସବୁଠାରୁ ବଡ଼ । ତେଣୁ ଏହାର ଅନ୍ୟ ନାମ ହେଉଛି 'ପ୍ରୌଢ଼ ବ୍ରାହ୍ମଣ' । 'ତଣ୍ଡି' ନାମକ ଜଣେ ଋଷି ହେଉଛନ୍ତି ଏହାର ସ୍ରଷ୍ଟା । ତେଣୁ ଏହାର ନାମ ହୋଇଛି 'ତାଣ୍ଡ୍ୟ' । ଏହାର ନାମ 'ମହାବ୍ରାହ୍ମଣ' ବୋଲି ମଧ୍ୟ ପ୍ରସିଦ୍ଧି ଅଛି । ଏହାର ପ୍ରସିଦ୍ଧିର ବଡ଼ କାରଣ ହେଲା ଏଥିରେ ମହତ୍ତ୍ୱପୂର୍ଣ୍ଣ ଅନେକ ଐତିହାସିକ ତଥ୍ୟ ଉପସ୍ଥାପିତ ହେବା ସଙ୍ଗେ ସଙ୍ଗେ ପୁଷ୍କଳ ଭାବରେ ସମାଜଶାସ୍ତ୍ର ବିଷୟକ ବହୁ ତଥ୍ୟ ସ୍ଥାନିତ । ଏଥିରେ ସର୍ବମୋଟ ପଚିଶଟି ଅଧ୍ୟାୟ ଥିବାରୁ ଏହା 'ପଞ୍ଚବିଂଶ ବ୍ରାହ୍ମଣ' ନାମରେ ମଧ୍ୟ ଖ୍ୟାତ । ସାୟଣାଚାର୍ଯ୍ୟ ଏହା ଉପରେ ତାଙ୍କର ପ୍ରସିଦ୍ଧ ଭାଷ୍ୟ ଲେଖି ଯାଇଛନ୍ତି ।

ଏହି ବ୍ରାହ୍ମଣରେ ଚତୁର୍ଥ ଓ ପଞ୍ଚମ ଅଧ୍ୟାୟରେ 'ଗବାମୟନ' ଯଜ୍ଞର ବର୍ଣ୍ଣନା ଅଛି । ଏହି ଯଜ୍ଞ ଲଗାଏତ୍ ଏକ ବର୍ଷ ଧରି ଚାଲୁଥିଲା । ଷଷ୍ଠଠାରୁ ଆରମ୍ଭ କରି ନବମ ଅଧ୍ୟାୟ ପର୍ଯ୍ୟନ୍ତ 'ଅଗ୍ନିଷ୍ଟୁତ୍', 'ଜ୍ୟୋତିଷ୍ଟୋମ' ଆଦି ଯଜ୍ଞର ବର୍ଣ୍ଣନାରେ ପରିପୂର୍ଣ୍ଣ ।

ଏଥିରେ ମେଧାତିଥି ଓ ବତ୍ସ ଏହି ଦୁଇ ଋଷିଙ୍କୁ ନେଇ ଗୋଟିଏ ଅତି ରୋଚକ କାହାଣୀ ଅଛି । ଏଥିରୁ ତତ୍କାଳୀନ ସମାଜରେ ଶୂଦ୍ରମାନଙ୍କ ଅବସ୍ଥା କପରି ଦୟନୀୟ ଥିଲା, ତାହା ଜାଣିହୁଏ । ଆଉ ମଧ୍ୟ ନିଜ ଉଦ୍ୟମରେ ଶୂଦ୍ରମାନେ କପରି ଋଷି ହିଁର ମର୍ଯ୍ୟାଦା ପାଇ ପାରୁଥିଲେ, ତାହା ମଧ୍ୟ ଜାଣିହୁଏ । କାହାଣୀଟି ହେଲା, ମେଧାତିଥି ଓ ବତ୍ସ ଦୁଇ ଜଣ କାଣ୍ୱ ବଂଶଜ ଋଷି ଥିଲେ । ମେଧାତିଥିଙ୍କ ମାଆ ବ୍ରାହ୍ମଣୀ ଏବଂ ବତ୍ସଙ୍କ ମାଆ ଶୂଦ୍ରାଣୀ । ବ୍ରାହ୍ମଣ ଔରସରୁ ଉଭୟ ଜାତ ହୋଇଥିଲେ ମଧ୍ୟ ମେଧାତିଥି ବତ୍ସଙ୍କୁ ଶୂଦ୍ରାଣୀର ପୁତ୍ର ଭାବରେ ନୀଚ ଦୃଷ୍ଟିରେ ଦେଖୁଥିଲେ । ଦିନେ ତାଙ୍କର ବ୍ରହ୍ମତ୍ୱ ପରୀକ୍ଷା କରିବାକୁ ଯାଇ ସେ ବତ୍ସଙ୍କୁ ଅଗ୍ନିରେ ହବି ସ୍ୱରୂପ ଅର୍ପଣ କଲେ । ତାହା ସତ୍ତ୍ୱେ ତାଙ୍କର ବାଳ ମଧ୍ୟ ଅଗ୍ନିରେ ଦଗ୍ଧ ହେଲା ନାହିଁ । ତାହା ଏପରି ଭାବରେ ଲେଖାଅଛି :

"ତସ୍ୟ ଲୋମ ଚ ନୌଷତ୍" ।

ଏଥିରେ ମେଧାତିଥି ସ୍ତମ୍ଭୀଭୂତ ହୋଇଗଲେ ଏବଂ ଶେଷକୁ ବତ୍ସଙ୍କ ବ୍ରହ୍ମତ୍ୱ-ମର୍ଯ୍ୟାଦାକୁ ସ୍ୱୀକାର କରିବାକୁ ବାଧ୍ୟ ହେଲେ । ଏଥିରୁ ଜାତି ଜାତି ମଧ୍ୟରେ କପରି ଭାବରେ ପ୍ରାଧାନ୍ୟ ଲାଗି ସଂଘର୍ଷ ଉପୁଜୁଥିଲା ଏବଂ କପରି ଭାବରେ ନିମ୍ନ ଜାତିର ଲୋକେ ସ୍ୱୀୟ ସାମାଜିକ ସ୍ଥିତିକୁ ଦୃଢ଼ କରିବା ଲାଗି ଅବିରତ ସଂଗ୍ରାମ କରୁଥିଲେ, ସେ ବିଷୟରେ କିଛିଟା ସୂଚନା ମିଳୁଛି । ଏଥିରୁ ଏହି ନିଷ୍କର୍ଷ ନିର୍ଣ୍ଣୟ କରାଯାଇପାରେ :

(କ) ସେତେବେଳେ ବ୍ରାହ୍ମଣମାନଙ୍କର ସାମାଜିକ ସ୍ଥିତି ଥିଲା ସର୍ବୋଚ୍ଚ ସ୍ତରରେ ଏବଂ ଏହି ଆସନକୁ ଆଉ କୌଣସି ଜାତିର ଲୋକ ଯିବାକୁ ଉଦ୍ୟମ କଲେ ସେମାନେ ତାହାର ଦୃଢ଼ ପ୍ରତିରୋଧ କରୁଥିଲେ । ଅନ୍ୟ ବ୍ରାହ୍ମଣ ଗ୍ରନ୍ଥ-ମାନଙ୍କରେ ମଧ୍ୟ ବ୍ରାହ୍ମଣଗୋଷ୍ଠୀର ଏହି ଉନ୍ନତ ସାମାଜିକ ସ୍ଥିତି ବିଷୟ ବର୍ଣ୍ଣିତ ।

(ଖ) ବ୍ରାହ୍ମଣମାନେ ଅବଧ୍ୟ ଥିବାରୁ ସେମାନେ ଅନ୍ୟ ଜାତିର ଲୋକମାନଙ୍କୁ ପ୍ରତିଯୋଗିତାରୁ ହଟାଇ ଦେବା ଲାଗି ମାରିଦେବା ପାଇଁ ମଧ୍ୟ ପଛାଉ ନଥିଲେ ।

(ଗ) ଶୂଦ୍ରମାନଙ୍କର ସାମାଜିକ ସ୍ଥିତି ଖୁବ୍ ଦୁର୍ବଳ ଥିଲା ।

(ଘ) ବ୍ରାହ୍ମଣ ପିତା ଥାଇ ଶୂଦ୍ରାଣୀ ମାତା ଥିଲେ ସନ୍ତାନ ବ୍ରାହ୍ମଣର ଗୌରବ ପାଇ ପାରୁ ନଥିଲା ; ସେ ପିତୃ-ଅଧିକାରରୁ ବଞ୍ଚିତ ହେଉଥିଲା ।

(ଙ) ନାନା ବାଧାବିଘ୍ନ ସତ୍ତ୍ୱେ କେତେକ ଶୂଦ୍ର ସ୍ୱୀୟ ଉଦ୍ୟମରେ 'ବ୍ରାହ୍ମଣତ୍ୱ'

ତଥା 'ଋଷିତ୍ୱ' ଲାଭ କରି ପାରିଥିଲେ ଏବଂ ସମାଜ ଶେଷରେ ସେମାନଙ୍କୁ ଋଷି ବୋଲି ସ୍ୱୀକୃତ ଦେଇଥିଲା ।

(ଚ) ପ୍ରାଧାନ୍ୟ ଲାଗି ଜାତି ଜାତି ମଧ୍ୟରେ ସଂଘର୍ଷ ଲାଗି ରହିବାରୁ ଜଣାଯାଏ ଯେ ଜାତିଭେଦ ପ୍ରଥା ଦୃଢ଼ ଭାବରେ ସମାଜରେ ପ୍ରତିଷ୍ଠିତ ହୋଇ ନଥିଲା । ଏଭଳି ଦୃଢ଼ତା ଆସିବା ପାଇଁ ଆହୁରି କେତେ ଶହ ବର୍ଷ ଲାଗି ଯାଇଥିଲା ।

ଭୌଗୋଳିକ ଜ୍ଞାନ ଯୋଗାଇବା ଦୃଷ୍ଟିରୁ ତୈତ୍ତିରୀୟ ବ୍ରାହ୍ମଣର ମଧ୍ୟ ଗୁରୁତ୍ୱ ରହିଅଛି । ଏଥିରେ କୁରୁକ୍ଷେତ୍ର ଓ ତାହାର ଆଖ ପାଖ ଅଞ୍ଚଳର ବହୁଳ ବର୍ଣ୍ଣନା ଦେଖାଯାଏ । କୁରୁକ୍ଷେତ୍ରକୁ ପୃଥିବୀର ସ୍ୱର୍ଗଭୂମି ବୋଲି ଠାଏ କୁହାଯାଇଛି । (୧୫) ଏଥିରୁ ଜଣାଯାଏ ଯେ କୁରୁ-ରାଜ୍ୟ ସେତେବେଳେ ଖୁବ୍ ସମୃଦ୍ଧ ଥିଲା । କୁରୁକ୍ଷେତ୍ର ଅଞ୍ଚଳରେ ଥିବା ନୈମିଷାରଣ୍ୟକୁ ଯଜ୍ଞଭୂମି ବୋଲି କୁହାଯାଇଛି । ଏଠାରେ ବହୁ ମୁନି ଋଷି ଥିଲେ ଏବଂ ବହୁ ଯାଗଯଜ୍ଞ କରାଯାଉଥିଲା । ଭାରତୀୟ ପରମ୍ପରା ଅନୁସାରେ ଏହି ଅରଣ୍ୟରେ ହିଁ ଅଧିକାଂଶ ପୁରାଣ ରଚିତ ହୋଇଥିଲା । ଶଂସିତ ବ୍ରାହ୍ମଣଟି ମଧ୍ୟ ଏହି ଅଞ୍ଚଳରେ ସୃଷ୍ଟ ହୋଇ ଥିବାର ଅନୁମାନ କରାଯାଏ । (୧୬)

**ଷଡ୍ ବିଂଶ ବ୍ରାହ୍ମଣ :**

ଷଡ୍ ବିଂଶ ବ୍ରାହ୍ମଣର ମୋଟ ଛଅ ଅଧ୍ୟାୟରୁ ପ୍ରଥମ ପାଞ୍ଚ ଅଧ୍ୟାୟରେ ବିଭିନ୍ନ ଯଜ୍ଞ ବିଷୟରେ ବର୍ଣ୍ଣନା କରାଯାଇଛି । ଏହାର ନାମରୁ ଯାହା ସୂଚନା ମିଳୁଛି, ଏହା 'ପଞ୍ଚବିଂଶ ବ୍ରାହ୍ମଣ'ର ପରିଶିଷ୍ଟ ସ୍ୱରୂପ । ବିଷୟବସ୍ତୁର ବର୍ଣ୍ଣନା ପ୍ରସଙ୍ଗରୁ ମଧ୍ୟ ଆମେ ଦେଖିବାକୁ ପାଉ ଯେ ଏହା ପ୍ରକୃତରେ ପ୍ରୋକ୍ତ 'ପଞ୍ଚବିଂଶ ବ୍ରାହ୍ମଣ'ର ପରିଶିଷ୍ଟ ଓ ପରିପୂରକ ସ୍ୱରୂପ ବିଦ୍ୟମାନ । ପ୍ରପାଠକ କ୍ରମରେ ଏହି ବ୍ରାହ୍ମଣ ପାଞ୍ଚ ଭାଗରେ ବିଭକ୍ତ । ପଞ୍ଚମ ବିଭାଗଟିକୁ କୁହାଯାଏ 'ଅଦ୍ଭୁତ ବ୍ରାହ୍ମଣ'; କାରଣ ଏଥିରେ ଭୂମିକମ୍ପ, ଅକାଳରେ ଫୁଲ ଫୁଟିବା, ଫଳ ଫଳିବା ଆଦି ଅଦ୍ଭୁତ ବିଷୟମାନ ଉଲ୍ଲିଖିତ । କେହି କେହି ଏହାକୁ ସ୍ୱତନ୍ତ୍ର ଗୋଟିଏ ବ୍ରାହ୍ମଣର ଆଖ୍ୟା ଦେଉଥିଲେ ହେଁ, ସାୟଣାଚାର୍ଯ୍ୟ ଏହାକୁ 'ପଞ୍ଚବିଂଶ ବ୍ରାହ୍ମଣ'ର ଏକ ଅଂଶ ବୋଲି ଗ୍ରହଣ କରିଛନ୍ତି । ତାଙ୍କ ମତ ଅଧିକତର ଯୁକ୍ତିଯୁକ୍ତ ପରି ମନେହୁଏ । ଏଥିରେ ବ୍ରାହ୍ମଣମାନଙ୍କର ସଂଧ୍ୟା-ତର୍ପଣ ଓ ଅନ୍ୟାନ୍ୟ ନିତ୍ୟନୈମିତ୍ତିକ କର୍ମ-ବିଧି ସମ୍ପର୍କରେ ଆଲୋଚନା କରାଯାଇଛି । ଉଦାହରଣ ସ୍ୱରୂପ ସଂଧ୍ୟାର ଉପାସନା ପ୍ରସଙ୍ଗରେ କୁହା ଯାଇଛି :

"ବ୍ରାହ୍ମଣୋ ହ ହୋରାତ୍ରସ୍ୟ ସଂଯୋଗେ ସଂଧ୍ୟାମୁପାସ୍ତେ ।" (୧୭)

ଅର୍ଥାତ୍ ବ୍ରାହ୍ମଣ ଦିନ ଓ ରାତିର ସନ୍ଧି ସମୟରେ ସଂଧ୍ୟାର ଉପାସନା କରନ୍ତି ।

**ସାମବିଧାନ ବ୍ରାହ୍ମଣ :**

ଅନ୍ୟ ବ୍ରାହ୍ମଣ ଗ୍ରନ୍ଥଠାରୁ ସାମବିଧାନ ବ୍ରାହ୍ମଣର ଯଥେଷ୍ଟ ପାର୍ଥକ୍ୟ ବିଦ୍ୟମାନ । ଅନ୍ୟ ବ୍ରାହ୍ମଣଗୁଡ଼ିକ ବିଭିନ୍ନ ଯାଗଯଜ୍ଞାଦି ଉପରେ ଗୁରୁତ୍ୱ ଦେଇଥାନ୍ତି ; କିନ୍ତୁ ଏହି ବ୍ରାହ୍ମଣଟି ଗୁଣି ଗାରଡ଼ି, ମନ୍ତ୍ର ତନ୍ତ୍ର ଆଦି ଉପରେ ଗୁରୁତ୍ୱ ଦେଇଥାଏ । ଏହା ସ୍ଥୂଳତଃ ଆଭିଚାରିକ । ଶତ୍ରୁକୁ କିପରି ଗାଁରୁ ତଡ଼ି ଦେବାକୁ ହେବ, ତା'କୁ କିପରି ମାରି ଦେବାକୁ ହେବ, କିପରି ଧନ ପାଇବାକୁ ହେବ ଆଦି ବିଭିନ୍ନ ବିଷୟ ଏଥିରେ ବର୍ଣ୍ଣିତ ଏବଂ ସେଥିପାଇଁ ପୃଥକ୍ ପୃଥକ୍ ଆଭିଚାରିକ କାର୍ଯ୍ୟବିଧିମାନ ଅତି ବିସ୍ତୃତ ଭାବରେ ଆଖ୍ୟାତ । ଉଦାହରଣ ସ୍ୱରୂପ କୌଣସି ଶତ୍ରୁକୁ ଗାଁରୁ ତଡ଼ି ଦେବାକୁ ଗଲେ ଶ୍ମଶାନରୁ ଚିତାଭସ୍ମ ସଂଗ୍ରହ କରି ସେଥିରୁ କିଛି ସେହି ଲୋକର ଘରେ ଏବଂ ଆଉ କିଛି ତା'ର ବିଛଣାରେ ପକାଇ ଦେବାକୁ ପଡ଼ିଥାଏ । ଏହା କଲେ ସେ ସେହି ବିଛଣାରେ ଶୋଇ ପାରିବ ନାହିଁ କିମ୍ବା ସେହି ଘରେ ରହି ପାରିବ ନାହିଁ ; ଫଳରେ ସେ ଗାଁରୁ ବାହାରି ଯିବ । (୧୮) ସୁନା ପାଇବାକୁ ହେଲେ 'ମଣିଭଦ୍ର' ବୋଲି ଯକ୍ଷଙ୍କୁ ମାଂସ-ବଳି ଦେଇ ତାଙ୍କ ଆଗରେ ସାମ-ମନ୍ତ୍ର ଗାନ କରି ତାଙ୍କୁ ପୂଜା କରିବାକୁ ପଡ଼ିଥାଏ । (୧୯) ହାତୀ ଓ ଘୋଡ଼ାମାନଙ୍କୁ ମାରିବାକୁ ହେଲେ ମାଟିରେ ସେମାନଙ୍କ ମୂର୍ତ୍ତି ଗଢ଼ାଇ ମନ୍ତ୍ର ପଢ଼ି ଖଣ୍ଡା କିମ୍ବା କ୍ଷୁରରେ ସେମାନଙ୍କ ବେକକୁ କାଟିବାକୁ ପଡ଼ିଥାଏ । ମନ୍ତ୍ରର ପ୍ରଭାବ ଫଳରେ ସଂପୃକ୍ତ ଘୋଡ଼ା ବା ହାତୀ ମରିଯାନ୍ତି । ଏହି ସାମବିଧାନ ବ୍ରାହ୍ମଣକୁ ଭିତ୍ତି ସ୍ୱରୂପ ଗ୍ରହଣ କରି ପରବର୍ତ୍ତୀ କାଳରେ କାପାଳିକମାନଙ୍କର ଅଭିଚାରସର୍ବସ୍ୱ ଧର୍ମର ବିକାଶ ଘଟିଥିଲା । ଏବେ ମଧ୍ୟ ସେହି ଧର୍ମ ସୀମିତ ଭାବରେ କେଉଁଠି କେମିତି ପାଳିତ ହେଉଛି । ଆର୍ଯ୍ୟେତର ଚିନ୍ତାଧାରାର ପ୍ରଭାବରେ ଏଭଳି ଆଭିଚାରିକ ବିଧିବିଧାନମାନ ଆର୍ଯ୍ୟ ସଂସ୍କୃତି ମଧ୍ୟରେ ପ୍ରବେଶ କରିଥିବା ଭଳି ମନେ ହୁଏ । ଏପରି କି 'ଅଥର୍ବବେଦ'ରେ ଯେଉଁ ଆଭିଚାରିକ ବିଧିବିଧାନମାନ ନିର୍ଦ୍ଦିଷ୍ଟ ଅଛି ତାହା ମଧ୍ୟ ଆର୍ଯ୍ୟେତର ସଂସ୍କୃତି ଦ୍ୱାରା ପ୍ରଭାବିତ ବୋଲି ଅନେକ ପଣ୍ଡିତ ମତ ଦେଇଥାନ୍ତି ।

ଆଭିଚାରିକ ବିଧିବିଧାନ ଛଡ଼ା ଏଥିରେ ଅନ୍ୟ ବିଷୟରେ ମଧ୍ୟ ବର୍ଣ୍ଣନା ବିଦ୍ୟମାନ । ଉଦାହରଣ ସ୍ୱରୂପ, ନୂତନ ଗୃହରେ ପ୍ରବେଶ କରିବା ଲାଗି, ଆୟୁଷ ବୃଦ୍ଧି କରିବା ଲାଗି, ନାନା ପ୍ରକାର ଅନୁଷ୍ଠାନ ଆଦି କରିବା ଲାଗି ଏଥିରେ ଉପଦେଶମାନ ଖଞ୍ଜା ଯାଇଅଛି । କେଉଁ କେଉଁ ପାପକର୍ମ କଲେ କେଉଁ କେଉଁ ପ୍ରାୟଶ୍ଚିତ୍ତ କରିବାକୁ ହେବ, ସେ ବିଷୟ ମଧ୍ୟ ଏଥିରେ ବର୍ଣ୍ଣିତ । ଏହାକୁ ଭିତ୍ତି କରି ଏ ଦେଶର ପରବର୍ତ୍ତୀ କାଳରେ ଧର୍ମସୂତ୍ର ଗ୍ରନ୍ଥର ବିରାଟ ଅଟ୍ଟାଳିକାମାନ ଗଢ଼ି ଉଠିଥିଲା । ଏଥିରେ ଶୂଦ୍ରମାନଙ୍କୁ ବହୁତ ନିନ୍ଦା କରାଯାଇଛି ଏବଂ ସେମାନଙ୍କୁ ସାମାଜିକ ନାନା ସୁବିଧା ସୁଯୋଗରୁ ବଞ୍ଚିତ କରାଯିବାର ପରାମର୍ଶ ଦିଆ ଯାଇଛି । ଏହି ସମୟକୁ ଶୂଦ୍ରମାନଙ୍କର ଅବସ୍ଥା ଅତି ଶୋଚନୀୟ ହୋଇ ପଡ଼ିଥିବାର ମନେ ହୁଏ ।

ଏଥି ପ୍ରତି ଲକ୍ଷ୍ୟ କରି ବଳଦେବ ଉପାଧ୍ୟାୟ ଯାହା କହିଛନ୍ତି, ତାହା ବାସ୍ତବିକ୍ ପ୍ରଣିଧାନ ଯୋଗ୍ୟ :

> "ଶୂଦ୍ରୋଂ କା ବେଦ ପଢ଼ନା ତଥା ଉନ୍ହେଂ ଯଜ୍ଞ କରନା, ଅଶୋଭନ ଶବ୍ଦୋଂ କୋ ବୋଲନା, ସୁରା ପୀନା, ଗାୟ କୋ ମାରନା, କେଠେ ଭାଇ ସେ ପହିଲେ ଛୋ ବିବାହ କରନା, ଶୂଦ୍ରା କେ ସାଥ ବ୍ୟଭିଚାର, ବ୍ରାହ୍ମଣ କେ ଲିୟେ ଦୁଧ, ମଧୁ, ଅଦି ପଶୁଓଂ କା ବେଚନା-- ପାପାଚରଣୋଂ କେ ଦୂରୀକରଣ କେ ଲିୟେ ପ୍ରାୟଶ୍ଚିତ୍ତ କା ବିଧାନ ଇସ୍ ବ୍ରାହ୍ମଣ ମେଂ କିୟା ଗୟା ହୈ ।" (୨୦)

ଶୂଦ୍ରମାନଙ୍କର ସାମାଜିକ ସ୍ଥିତି ଯେ ସେତେବେଳେ କେତେ ଦୟନୀୟ ଥିଲା, ଏହା ସହଜରେ ଅନୁମେୟ । ସାମାଜିକ ଶୃଙ୍ଖଳା ଆଣିବା ନାଁରେ ସମାଜର ବଡପଣ୍ଡାମାନେ ଏହି ଯେଉଁ ଅତି କଠୋର ଓ ପକ୍ଷପାତୀ ନିୟମମାନ ବାନ୍ଧି ଦେଲେ ଏବଂ ନିଜେ କବାଟ ଝରକା ବନ୍ଦ କରି ଦେଇ କୋଠରୀଟିରେ ରହିଯିବା ପରେ ଆଉ କାହାକୁ ସେଥିରେ ପଶିବା ପାଇଁ ସୁଯୋଗ ଦେଲେ ନାହିଁ କିମ୍ବା ବାହାରର ପବନ ଓ ଆଲୋକ ଆସିବା ପାଇଁ ମଧ୍ୟ ଅବକାଶ ଦେଲେ ନାହିଁ, ତାହା ଫଳରେ ସମାଜରେ ଏକ ପ୍ରକାର ସ୍ଥାଣୁତ୍ୱ ଓ ଅବକ୍ଷୟର ବୀଜ ବୁଣା ହେଲା ଭଳି ଲାଗିଲା ! ଏହା ବୈଦିକ ସଂସ୍କୃତିର ବିକାଶ ପଥରେ ଥିଲା ଏକ ପ୍ରବଳ ଧକ୍କା ସ୍ୱରୂପ !

**ଆର୍ଷେୟ ବ୍ରାହ୍ମଣ :**

ଆର୍ଷେୟ ବ୍ରାହ୍ମଣ ତିନି ଗୋଟି ପ୍ରପାଠକ ଓ ୮୨ଟି ଖଣ୍ଡରେ ବିଭକ୍ତ । ଏଥିରେ ସାମବେଦର ଯେଉଁମାନେ ମନ୍ତ୍ରଦ୍ରଷ୍ଟା ଋଷି, ସେମାନଙ୍କର ଏକ ତାଲିକା ରହିଛି । ସାମଗାନର ବୈଜ୍ଞାନିକ ଅନୁଶୀଳନ ଲାଗି ଏହି ବ୍ରାହ୍ମଣ ଅତ୍ୟନ୍ତ ଉପାଦେୟ ଗ୍ରନ୍ଥ ।

**ଦେବତାଧ୍ୟାୟ ବ୍ରାହ୍ମଣ :**

ଏହି ବ୍ରାହ୍ମଣର ଅନ୍ୟ ନାମ ହେଉଛି ଦୈବତ ବ୍ରାହ୍ମଣ । ଏହା ଆକାରରେ ଅତି ଛୋଟ । ଏହା କେବଳ ମାତ୍ର ତିନି ଖଣ୍ଡରେ ବିଭକ୍ତ । ଏଥିରେ ଅଗ୍ନି, ଇନ୍ଦ୍ର, ପ୍ରଜାପତି, ସୋମ ଆଦି ସାମ-ଦେବତାମାନଙ୍କର ନାମ କ୍ରମାନ୍ୱୟରେ ଲିଖିତ ହୋଇ ରହିଛି । ବିଭିନ୍ନ ଛନ୍ଦ ବିଷୟରେ ଏଥିରେ ସୁବିସ୍ତୃତ ଆଲୋଚନା କରାଯାଇଛି । ଏଣୁ ଭାଷାଶାସ୍ତ୍ର ଦୃଷ୍ଟିକୋଣରୁ ଏହି ବ୍ରାହ୍ମଣର ଗୁରୁତ୍ୱ ରହିଅଛି ।

**ଉପନିଷଦ୍ ବ୍ରାହ୍ମଣ :**

ଉପନିଷଦ ବ୍ରାହ୍ମଣ ୧୦ଟି ପ୍ରପାଠକରେ ବିଭକ୍ତ । ଏଥିରେ ଦୁଇଟି ଗ୍ରନ୍ଥ ମିଶ୍ରିତ । ଗୋଟିଏ ହେଲା ମନ୍ତ୍ର ବ୍ରାହ୍ମଣ ଓ ଅପରଟି ହେଲା ଛାନ୍ଦୋଗ୍ୟ ଉପନିଷଦ । ଏଥିରେ ଘର

ସଂସ୍କାର କରିବାକୁ ଗଲେ ଯାହା ଯାହା କରଣୀୟ, ସେ ସମ୍ପର୍କୀୟ ଉପଦେଶବାଣୀମାନ ଗର୍ଭିତ । ଏହି ବ୍ରାହ୍ମଣର ଶେଷ ଭାଗ ହେଉଛି ଛାନ୍ଦୋଗ୍ୟ ଉପନିଷଦ । ଉପନିଷଦ ପ୍ରସଙ୍ଗ ଆଲୋଚନା କଲାବେଳେ ଏହି ଉପନିଷଦ ବିଷୟରେ କୁହାଯିବ ।

## ଗୋପଥ ବ୍ରାହ୍ମଣ :

ଗୋପଥ ବ୍ରାହ୍ମଣ ହେଉଛି ଅଥର୍ବ ବେଦର ଅନ୍ତର୍ଗତ । ଅଥର୍ବ ବେଦର ସର୍ବମୋଟ ନଅଟି ଶାଖା ଥିଲେ ମଧ୍ୟ ଏହି ଗୋଟିଏ ମାତ୍ର ବ୍ରାହ୍ମଣ ହିଁ ଆମକୁ ବର୍ତ୍ତମାନ ଉପଲବ୍ଧ । (୨୧) ଏହା ଦୁଇଟି କାଣ୍ଡ ବା ଖଣ୍ଡରେ ବିଭକ୍ତ; ଅଧ୍ୟାୟ ସଂଖ୍ୟା ହେଉଛି ଏଗାର । ଏଥିରେ ଅଥର୍ବ ବେଦର ମହିମା ବର୍ଣ୍ଣିତ । ଏଥିରେ 'ଶତପଥ ବ୍ରାହ୍ମଣ' ଓ 'ତାଣ୍ଡ୍ୟ ବ୍ରାହ୍ମଣ'ରୁ କିଛି ଅଂଶ ଆସି ରହିଥିଲେ ମଧ୍ୟ ଏହାର ସ୍ୱତନ୍ତ୍ର ମହତ୍ତ୍ୱ ଅଛି । ଏହା ଅପେକ୍ଷାକୃତ ଅର୍ବାଚୀନ ହୋଇଥିବାରୁ ଏଥିରେ ଅତି ଉଚ୍ଚ ଦାର୍ଶନିକ ଚିନ୍ତାଧାରାର ଅବତାରଣା ମଧ୍ୟ କରାଯାଇଛି । ସେଥିପାଇଁ ବିଦ୍ୱାନ୍‌ମାନେ ଏହାକୁ 'ବେଦାନ୍ତ ସାହିତ୍ୟ' ଶ୍ରେଣୀସ୍ଥ ବୋଲି କହିଥାନ୍ତି ।

ଏହାର ରଚୟିତା ହେଉଛନ୍ତି 'ଗୋପଥ' ନାମକ ଜଣେ ଋଷି । ଐତିହାସିକ ଦୃଷ୍ଟିକୋଣରୁ ଏହାର ମହତ୍ତ୍ୱ ରହିଅଛି । ଏଥିରେ କୁରୁପଞ୍ଚାଳ, ଅଙ୍ଗ-ମଗଧ, କାଶୀ-କୋଶଳ, ସାଲ୍ୱ-ମତ୍ସ୍ୟ ତଥା ବଂଶ-ଉଶୀନର ଦେଶମାନଙ୍କର ନାମ ଉଲ୍ଲିଖିତ । ଆର୍ଯ୍ୟମାନେ ସପ୍ତସିନ୍ଧୁ ଅଞ୍ଚଳରୁ ପୂର୍ବାଭିମୁଖରେ ଗତି କରିବାରେ ବହୁ ଶତ ବର୍ଷ ପରେ ଅଙ୍ଗ-ମଗଧ ଅଞ୍ଚଳ ସହିତ ପରିଚିତ ହୋଇଥିଲେ । ପ୍ରଥମେ ସେମାନେ ଏହି ଅଞ୍ଚଳକୁ ଆର୍ଯ୍ୟମାନଙ୍କ ବାସସ୍ଥାନର ଉପଯୋଗୀ ନୁହଁ ବୋଲି କହି ଘୃଣା କରୁଥିଲେ । ଏହା 'ବ୍ରାତ୍ୟ'ମାନଙ୍କ ଅଧ୍ୟୁଷିତ ଏକ ଘୃଣିତ ଦେଶ ବୋଲି ସେମାନେ କହୁଥିଲେ । ଗୋପଥ-ବ୍ରାହ୍ମଣର ବର୍ଣ୍ଣନାରୁ ଜଣାଯାଏ, ଏହାର ସୃଷ୍ଟି ବେଳକୁ ଆର୍ଯ୍ୟମାନେ ଅଙ୍ଗ-ମଗଧରେ ବସତି ସ୍ଥାପନ କରିବା ଆରମ୍ଭ କରି ସାରଲେଣି । ଅତଏବ, ଏହି ଗ୍ରନ୍ଥଟି ଅପେକ୍ଷାକୃତ ଅର୍ବାଚୀନ ହେବା ସ୍ୱାଭାବିକ । ପଣ୍ଡିତମାନଙ୍କ ମତରେ ଏହା ଖ୍ରୀ. ପୂ. ୭ମରୁ ୮ମ ଶତାବ୍ଦୀ ମଧ୍ୟରେ ସୃଷ୍ଟ । ତେବେ ଏ ସମ୍ପର୍କରେ ନିର୍ଦ୍ଦିଷ୍ଟ ଭାବରେ କିଛି କହି ହେବ ନାହିଁ ; କିନ୍ତୁ ଏ କଥା ସତ୍ୟ ଯେ ଏହା ନିଶ୍ଚିତ ଭାବରେ ବୁଦ୍ଧଙ୍କର (ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀ) ପୂର୍ବବର୍ତ୍ତୀ ।

ଏଥିରେ ଏକ ନୂତନତା ଲକ୍ଷ୍ୟ କରିବାର କଥା ହେଲା, ପ୍ରତ୍ୟେକ ବେଦ-ମନ୍ତ୍ର ପୂର୍ବରୁ 'ଓଁ', ଏହି ଏକାକ୍ଷର ଶବ୍ଦର ପ୍ରୟୋଗ । 'ଓଁ'କୁ 'ଆତ୍ମା' ବୋଲି ମାଣ୍ଡୂକ୍ୟୋପନିଷଦ୍‌ରେ କୁହାଯାଇଛି । (୨୨) ଏହାର ବହୁଳ ବ୍ୟବହାର ଗୋପଥ ବ୍ରାହ୍ମଣ ଛଡା ଅନ୍ୟ କେଉଁଠି ଦେଖାଯାଏ ନାହିଁ । ନୀଳକଣ୍ଠ ଦାସଙ୍କ ମତରେ ଏହି 'ଓଁ' ହେଉଛି ଓଡ଼ିଶାର (କଳିଙ୍ଗ) ବୈଦିକ ସଂସ୍କୃତିକୁ ଅବଦାନ ; କାଳିଙ୍ଗ ବ୍ରାତ୍ୟ ସଂସ୍କୃତିର ବୈଦିକ ସଂସ୍କୃତି

ଉପରେ ପଡ଼ିଥିବା ପ୍ରଶ୍ନବର ଫଳଶ୍ରୁତି । ଏବେ ମଧ୍ୟ ଓଡ଼ିଆ ଲୋକେ 'ଆତ୍ମା'କୁ ବା ନିଜକୁ 'ଓ' ବୋଲି କୁହନ୍ତି । କିଏ କାହାକୁ ନାଁ ଧରି ଡ଼ାକିଲେ ସେ 'ଓ' କରିଥାଏ । 'ଓଁ' ହେଉଛି ଓଡ଼ିଆ 'ଓ'ର ଅନୁନାସିକ ଉଚ୍ଚାରଣ । (୨୩) ପ୍ରଶ୍ନ ହୋଇପାରେ ଏହି 'ଓଁ' ଏଭଳି ସ୍ୱଷ୍ଟ ଭାବରେ ଗୋପଥ-ବ୍ରାହ୍ମଣରେ ପ୍ରବେଶ କଲା କିପରି ? ପ୍ରାଚୀନ ଅଙ୍ଗ ଅଞ୍ଚଳର ଅନ୍ତର୍ଭୁକ୍ତ ମୟୂରଭଞ୍ଜ ଜିଲ୍ଲାର ବହାର ପାଟକୁ ଲାଗି ଏବେ ବୈପ୍ଲାଦ ଶାଖାର ବ୍ରାହ୍ମଣ-ଗୋଷ୍ଠୀ ଅଛନ୍ତି । ଶୁଣାଯାଏ ଯେ ଏହି ଶାଖାର ବ୍ରାହ୍ମଣ ବର୍ତ୍ତମାନ ଭାରତର ଅନ୍ୟ କେଉଁଠି ନାହାନ୍ତି । ଅଥର୍ବ ବେଦର ବୈପ୍ପଳାଦ ଶାଖାର ବ୍ରାହ୍ମଣମାନଙ୍କର ଏଭଳି ବର୍ତ୍ତମାନତା, ଓଡ଼ିଆ ଭାଷାରେ 'ଆତ୍ମା'କୁ ବା ନିଜକୁ 'ଓ' ବୋଲି ଡାକିବା ଏବଂ ଗୋପଥ-ବ୍ରାହ୍ମଣରେ ଓଁ ଶବ୍ଦର ବହୁଳ ପ୍ରୟୋଗକୁ ଏକାଠି ବିଚାର କଲେ ଅନୁମିତ ହୁଏ ଯେ ଏହି ଗ୍ରନ୍ଥଟି ବୋଧହୁଏ ଗୋପଥ ଋଷିଙ୍କ ଦ୍ୱାରା କଳିଙ୍ଗ-ଅଙ୍ଗ-ମଗଧ ଅଞ୍ଚଳରେ କେଉଁଠି ରଚିତ ହୋଇଥିଲା । ମୟୂରଭଞ୍ଜର ରାଇରଙ୍ଗପୁର ସବ୍‌ଡିଭିଜନସ୍ଥ 'ଗୋରୁମହିଷାଣୀ' ପର୍ବତର 'ଗୋପଥ' ଋଷିଙ୍କ ଆଶ୍ରମ ସହିତ କିଛି ସମ୍ପର୍କ ଅଛି କି ନାହିଁ, ତାହା ଗବେଷଣା-ସାପେକ୍ଷ । ଏଥିରେ ବ୍ରାହ୍ମଣମାନଙ୍କ ଲାଗି ଶୁଦ୍ଧପୂତ ଓ ସଂଯତ ଜୀବନ ଆଚରଣ କରିବା ପାଇଁ ପରାମର୍ଶ ଦିଆଯାଇଛି । ସେମାନଙ୍କୁ ନାଚିବାକୁ ହେବ ନାହିଁ ; ଗୀତ ଗାଇବାକୁ ହେବ ନାହିଁ ; ଖରାପ କଥା ତୁଣ୍ଡରେ ଧରିବାକୁ ହେବ ନାହିଁ । (୨୪)

ଭାଷାତତ୍ତ୍ୱ ଦୃଷ୍ଟିରୁ ମଧ୍ୟ ଗୋପଥ ବ୍ରାହ୍ମଣର ପ୍ରାଧାନ୍ୟ ରହିଛି । ଅନେକଗୁଡ଼ିଏ ଶବ୍ଦର ଶବ୍ଦତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କରାଯାଇଛି ଏବଂ ତଦନୁଯାୟୀ ଅର୍ଥ ନିର୍ଣ୍ଣୟ କରାଯାଇଛି । ଯାସ୍କ ଠାଏ କହିଛନ୍ତି, "ପରୋକ୍ଷପ୍ରିୟାଃ ଦେବାଃ" । ଅର୍ଥାତ୍ ଦେବତାମାନେ ହେଉଛନ୍ତି ପରୋକ୍ଷପ୍ରିୟ । ଏହାର ତାତ୍ପର୍ଯ୍ୟ ହେଲା ସେମାନଙ୍କୁ ପ୍ରତ୍ୟକ୍ଷରେ ନ ଡାକି ପରୋକ୍ଷରେ ଡାକିଲେ ସେମାନେ ଖୁସି ହୁଅନ୍ତି । ବିଭିନ୍ନ ଦେବତାମାନଙ୍କର ଏହି ପରୋକ୍ଷାର୍ଥର ନିର୍ଣ୍ଣୟ ଶଂସିତ ବ୍ରାହ୍ମଣ ଗ୍ରନ୍ଥରେ କରାଯାଇଛି । ଉଦାହରଣ ସ୍ୱରୂପ 'ବରୁଣ' ଶବ୍ଦଟିକୁ ନିଆଯାଉ । ବରଣାର୍ଥକ 'ବୃଙ୍' ଧାତୁରୁ ଏହା ନିଷ୍ପନ୍ନ । ଯେ ବରଣୀୟ ବା ଯେ ଅତି ପ୍ରିୟ, ସେ ହେଲେ ବରୁଣ । ଭଗବାନ ଭକ୍ତଜନର ଅତି ପ୍ରିୟ ; ତେଣୁ ତାଙ୍କୁ ଭକ୍ତ ଆଦରରେ ଡ଼ାକେ ବରୁଣ ବୋଲି । ଏହିପରି ଆହୁରି ଅନେକ ଶବ୍ଦର ଅର୍ଥ ନିର୍ଣ୍ଣୟ ଏଥିରେ କରାଯାଇଛି ।

ଏହି ସବୁ ଦୃଷ୍ଟିକୋଣରୁ ବିଚାର କଲେ ଗୋପଥ-ବ୍ରାହ୍ମଣ ନିଶ୍ଚିତ ଭାବରେ ବହୁ ଦିଗରୁ ଗୁରୁତ୍ୱପୂର୍ଣ୍ଣ ବୋଲି ପ୍ରତୀତ ହେବ ।

## ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକର ଉପଯୋଗିତା :

ଉପର୍ଯ୍ୟୁକ୍ତ ଆଲୋଚନା ଦୃଷ୍ଟେ ବ୍ରାହ୍ମଣଗୁଡ଼ିକର ଉପଯୋଗିତା ବିଷୟରେ ଏକ ସ୍ଥୂଳ ଧାରଣା କରି ହେବ । ତାହା ହେଲା :

(କ) ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକରେ ପ୍ରଚୁର ପରିମାଣରେ ଲୌକିକ ବିଷୟବସ୍ତୁ ଉପରେ ବର୍ଣ୍ଣନା ଥାଇ ସଂସାରରେ କପରି ଚଳିବାକୁ ହେବ, ସେ ସମ୍ପର୍କରେ ପୁଷ୍କଳ ଉପଦେଶମାନ ଦିଆ ଯାଇଥିଲେ ମଧ୍ୟ, ଭିତ୍ତିରେ ଆଧ୍ୟାତ୍ମିକତାର ଧାରା ଅନ୍ତଃସ୍ରୋତା ଫଲ୍‌ଗୁ ପରି ବହି ଚାଲିଛି । ଲୌକିକ ଓ ଆଧ୍ୟାତ୍ମିକ ଜୀବନ ମଧ୍ୟରେ ସମନ୍ୱୟ ଆଣିଲେ ଯାଇ ଯେ ସାର୍ଥକ ଜୀବନ ଯାପନ କରି ହେବ, ସେ କଥା ଏଥିରେ କୁହା ଯାଇଛି ।

(ଖ) ବୈଦିକ ସଂହିତାରେ କର୍ମଫଳ ଓ ଜନ୍ମାନ୍ତରବାଦର ଅବତାରଣା ନଥିଲା ; କିନ୍ତୁ ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକରେ ତାହାର ଅବତାରଣା କରାଗଲା । ସତ୍‌କର୍ମ କଲେ ସୁଫଳ ମିଳିବ ଏବଂ ଅସତ୍‌କର୍ମ କଲେ କୁଫଳ ମିଳିବ, ଏହି ଧାରଣାଟି ଜନମାନସରେ ସ୍ଥାପିତ କରାଗଲା । ଏତଦ୍ଦ୍ୱାରା ସତ୍‌କର୍ମ କରିବା ଲାଗି ଲୋକମାନେ ପ୍ରୋତ୍ସାହନ ପାଇଲେ ।

(ଗ) ଯଜ୍ଞକର୍ମର ଟିକିନିଖି ବିଧିବିଧାନମାନ ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକରେ ଭରପୂର ହୋଇ ରହିଛି । ଅତଏବ, ଯଜ୍ଞ ସମ୍ପର୍କରେ ସମ୍ୟକ୍ ଜ୍ଞାନ ଅର୍ଜନ କରିବାକୁ ହେଲେ ଏଗୁଡ଼ିକର ମହତ୍ତ୍ୱକୁ ସ୍ୱୀକାର କରିବାକୁ ପଡ଼ିବ ।

(ଘ) ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକ ଭାରତୀୟ ସଂସ୍କୃତିର ଉଚ୍ଚ ଆଦର୍ଶର ପ୍ରତୀକ ହେବା ସଙ୍ଗେ ସଙ୍ଗେ ଜ୍ଞାନ ବିଜ୍ଞାନ ଏବଂ କଳାକୌଶଳର ଏକ ଭଣ୍ଡାର ଭାବରେ ବିଦ୍ୟମାନ ।

(ଙ) ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକରେ କେତେକ ନୂତନ ନୂତନ ଦେବ ସୃଷ୍ଟ ହୋଇ ଆର୍ଯ୍ୟ ଦେବମଣ୍ଡଳକୁ ସମୃଦ୍ଧ କରିଛନ୍ତି ଏବଂ ପୂର୍ବର ଦେବମଣ୍ଡଳର କେତେକ ଦେବ ସେମାନଙ୍କର ପ୍ରାଧାନ୍ୟ ହରାଇ ବସିଛନ୍ତି । ଆର୍ଯ୍ୟମାନଙ୍କ ଦେବମଣ୍ଡଳର କ୍ରମବିବର୍ତ୍ତନ ସମ୍ପର୍କରେ ତଥ୍ୟ ଜାଣିବା ପାଇଁ ଏହି ଗ୍ରନ୍ଥ-ଗୁଡ଼ିକର ଉପଯୋଗିତା ରହିଛି ।

(ଚ) ଅଗ୍ନି ଦେବତା କପରି କ୍ରମେ କ୍ରମେ ତାଙ୍କର ପ୍ରାଥମିକତା ହରାଇ ବସିଲେ ଏବଂ କପରି ତାଙ୍କ ସ୍ଥାନ ବିଷ୍ଣୁ ଅଧିକାର କରି ନେଲେ, ଏ ସମ୍ପର୍କରେ ଆବଶ୍ୟକ ତଥ୍ୟମାନ ଆମେ ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକରୁ ପାଇଥାଉଁ ।

ଏହି କେତୋଟି ମୁଖ୍ୟ ଦୃଷ୍ଟିକୋଣରୁ ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକର ଉପଯୋଗିତା ରହିଅଛି ।

## ଆରଣ୍ୟକ :

ବ୍ରାହ୍ମଣ-ସାହିତ୍ୟ ପରେ ପ୍ରାଧାନ୍ୟ କ୍ରମରେ ଆସେ ଆରଣ୍ୟକ-ସାହିତ୍ୟ । ସଂହିତା, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ୍ ସାହିତ୍ୟ ପରସ୍ପର ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଏବଂ କ୍ରମାନୁସାରେ ଗୋଟିକର କର୍ଯ୍ୟାସ ଅପରଟିରେ ବିଦ୍ୟମାନ । ସଂହିତାର ଅନ୍ତିମ ଭାଗ ହେଲା ବ୍ରାହ୍ମଣ ; ଏବଂ ବ୍ରାହ୍ମଣର ଅନ୍ତିମ ଭାଗ ହେଲା ଆରଣ୍ୟକ । ସେହିପରି ଆରଣ୍ୟକର ଅନ୍ତିମ ଭାଗ ହେଲା ଉପନିଷଦ । ଆରଣ୍ୟକ ଗ୍ରନ୍ଥ ଅରଣ୍ୟରେ ପଢ଼ା ଯାଉଥାଏ ଏବଂ ଅରଣ୍ୟରେ ରହୁଥିବା ଲୋକେ ଏହାକୁ ପଢ଼ନ୍ତି । ତେଣୁ ଏହାର ନାମ ହେଉଛି ଆରଣ୍ୟକ । (୨୫) ବ୍ରାହ୍ମଣ ଗ୍ରନ୍ଥରେ ଯାଗ, ଯଜ୍ଞାଦି କର୍ମକାଣ୍ଡ ବିଷୟରେ ବର୍ଣ୍ଣନା ଅଛି । କିନ୍ତୁ ଏଥିରେ ତାହା ନାହିଁ । ଏହାର ଅଧ୍ୟୟନ ଥିଲା ବାନପ୍ରସ୍ଥୀମାନଙ୍କ ପାଇଁ ଉଦ୍ଦିଷ୍ଟ । ବ୍ରହ୍ମଚର୍ଯ୍ୟ ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ ଏହି ଚାରୋଟି ଆଶ୍ରମ ମଧ୍ୟ ଦେଇ ଆର୍ଯ୍ୟମାନେ ଗତି କରୁଥିଲେ । ବାନପ୍ରସ୍ଥ ଥିଲା ତୃତୀୟ ଆଶ୍ରମ । ଏହି ଅବସ୍ଥାରେ ଗୃହସ୍ଥଙ୍କୁ ଗୃହ ଛାଡ଼ି ଅରଣ୍ୟରେ ତ୍ୟାଗପୂତ ଜୀବନ ଯାପନ କରିବାକୁ ପଡ଼ୁଥିଲା । ସେତେବେଳେ ତାଙ୍କୁ ଜ୍ଞାନ-ମାର୍ଗର ଆଶ୍ରୟ ନେବାକୁ ପଡ଼ୁଥିଲା । ବାନପ୍ରସ୍ଥୀ ଜୀବନ ପାଇଁ ସାମାନ୍ୟ କିଛି ଯଜ୍ଞ, ହୋମ ଆଦି କରିବାକୁ ପଡ଼ୁଥିଲା । ସେହି ସବୁ କର୍ମକାଣ୍ଡ ବିଷୟ ସହିତ ଆରଣ୍ୟକ ଗ୍ରନ୍ଥମାନଙ୍କର 'ବ୍ରହ୍ମ' ବିଷୟକ ଉଚ୍ଚ ଚିନ୍ତାଧାରାର ଅବତାରଣା କରାଯାଇଛି । ଏଭଳି ଉଚ୍ଚ ଚେତନାସ୍ତରରେ ବିଚରଣ କରିବା କେବଳ ଆରଣ୍ୟକ ଶାନ୍ତ ପରିବେଶରେ ହିଁ ଥିଲା । ଏଣୁ ମୁନି-ଋଷିମାନଙ୍କଠାରୁ ସେହି ଅନୁକୂଳ ପରିବେଶରେ ହିଁ ଶିଷ୍ୟମାନେ ଆରଣ୍ୟକ ଗ୍ରନ୍ଥ ଅଧ୍ୟୟନ କରୁଥିଲେ । ଏଥିରେ କର୍ମକାଣ୍ଡ ସମ୍ପର୍କରେ ସାମାନ୍ୟ କିଛି ସୀମିତ ବର୍ଣ୍ଣନା ଥିବାରୁ ସୂତ୍ରକାର ବୋଧାୟନ ଏହାକୁ ବ୍ରାହ୍ମଣ ସହିତ ସମାନ କରିଛନ୍ତି । (୨୬) ରାଧାକୃଷ୍ଣନ୍ ମଧ୍ୟ ସହମତ ହୋଇ କହିଛନ୍ତି :

> "ବ୍ରାହ୍ମଣ ଔର୍ ଆରଣ୍ୟକ ମେଂ କୋଇ ଶୁଦ୍ଧ ଔର୍ ଅତ୍ୟନ୍ତ ସ୍ପଷ୍ଟ ଅନ୍ତର୍ ନହୀଂ ହୈ ।" (୨୭)

ଏଥିରୁ ସ୍ପଷ୍ଟ ଭାବରେ ପ୍ରତୀତ ହେବ ଯେ ମୁଖ୍ୟତଃ ଅରଣ୍ୟବାସୀ ବାନପ୍ରସ୍ଥୀ ବ୍ୟକ୍ତିମାନଙ୍କ ପାଇଁ ଆରଣ୍ୟକ ଗ୍ରନ୍ଥଗୁଡ଼ିକ ଥିଲା ଉଦ୍ଦିଷ୍ଟ ।

ଆରଣ୍ୟକ ଗ୍ରନ୍ଥରେ 'ରହସ୍ୟବିଦ୍ୟା' ବା 'ବ୍ରହ୍ମବିଦ୍ୟା'ର ଚିନ୍ତନ କରାଯାଇଥିବାରୁ ଗୋପଥ-ବ୍ରାହ୍ମଣରେ (୨।୧୦) ଏହାର ଅନ୍ୟ ନାମ 'ରହସ୍ୟ' ବୋଲି କୁହାଯାଇଛି । ମହାଭାରତର ଆଦିପର୍ବରେ (୧।୨୬୫) ମଧ୍ୟ ଏହାର ଖୁବ୍ ପ୍ରଶଂସା କରାଯାଇଛି । ଔଷଧି-ଗଛରୁ ଯେମିତି ଅମୃତ ବାହାର କରି ଯାଇଥାଏ, ବେଦରୁ ସେମିତି ଅମୃତ ଆକାରରେ ଆରଣ୍ୟକ ବାହାରିଛି ବୋଲି ସେଠାରେ କୁହାଯାଇଛି । ଶଂସିତ ପଙ୍କ୍ତିଟି ହେଲା :

"ଆରଣ୍ୟକଂ ଚ ବେଦେଭ୍ୟ ଔଷଧିଭ୍ୟୋ ଽ ମୃତଂ ଯଥା ।"

ବାସ୍ତବରେ କହିବାକୁ ଗଲେ ଆରଣ୍ୟକର ସବୁଠାରୁ ବଡ଼ ବୈଶିଷ୍ଟ୍ୟ ହେଲା ଏହି ଯେ ଏଥିରେ କର୍ମ ଓ ଜ୍ଞାନ ଏହି ଦୁଇ ପ୍ରକାର ମାର୍ଗର ସମନ୍ୱୟ ଅଣାଯାଇଛି । ଉପନିଷଦ୍ ଗୁଡ଼ିକରେ ଯେଉଁ ଉଚ୍ଚାଙ୍ଗ ଆତ୍ମଜ୍ଞାନ ଓ ବ୍ରହ୍ମଜ୍ଞାନ ବିଷୟରେ ବିସ୍ତୃତ ଆଲୋଚନା ଓ ନିର୍ଣ୍ଣୟ କରାଯାଇଛି, ତାହାର ମୂଳାଧାର ହେଉଛି ଏହି ଆରଣ୍ୟକ ଗ୍ରନ୍ଥ । ସେଥିପାଇଁ ଏହାର ଏଭଳି ମହତ୍ତ୍ୱ ।

ଏହି ଗ୍ରନ୍ଥର ବିପୁଳତା ବିଷୟ ଚିନ୍ତା କଲେ ବର୍ତ୍ତମାନ ଆମକୁ ବିସ୍ମିତ ହେବାକୁ ପଡ଼ିଥାଏ ଏବଂ ପରେ ପରେ ଏହି ଗ୍ରନ୍ଥଗୁଡ଼ିକରୁ ଅଧିକାଂଶ ଆମକୁ ବର୍ତ୍ତମାନ ଉପଲବ୍ଧ ହେଉ ନଥିବା ବିଷୟ ଭାବି ଦୁଃଖିତ ହେବାକୁ ପଡ଼ିଥାଏ । ଆମ ପରମ୍ପରା ଅନୁସାରେ ଆରଣ୍ୟକ ଗ୍ରନ୍ଥଗୁଡ଼ିକର ମୋଟ ସଂଖ୍ୟା ଥିଲା ୧୧୩୦ । କିନ୍ତୁ ଆମକୁ ବର୍ତ୍ତମାନ ଆଠ ଗୋଟି ମାତ୍ର ଆରଣ୍ୟକ ଗ୍ରନ୍ଥ ଉପଲବ୍ଧ । ସେଗୁଡ଼ିକ ହେଲେ :

(କ) ଐତରେୟ ଆରଣ୍ୟକ
(ଖ) ଶାଙ୍ଖାୟନ ଆରଣ୍ୟକ
(ଗ) ତୈତ୍ତିରୀୟ ଆରଣ୍ୟକ
(ଘ) ବୃହଦାରଣ୍ୟକ
(ଙ) ମାଧ୍ୟନ୍ଦିନ ବୃହଦାରଣ୍ୟକ
(ଚ) କାଣ୍ୱ ଆରଣ୍ୟକ
(ଛ) ଜୈମିନୀୟୋପନିଷଦାରଣ୍ୟକ
(ଜ) ଛାନ୍ଦୋଗ୍ୟାରଣ୍ୟକ

ଏହିସବୁ ଆରଣ୍ୟକ ଗ୍ରନ୍ଥମାନଙ୍କରେ କି କି ବିଷୟବସ୍ତୁ ବର୍ଣ୍ଣିତ, ତାହା ବର୍ତ୍ତମାନ ଆଲୋଚ୍ୟ । ପୂର୍ବରୁ କୁହା ଯାଇଛି, ଏହା ମୁଖ୍ୟତଃ ଅରଣ୍ୟବାସୀ ବାନପ୍ରସ୍ଥୀମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ଏବଂ ତେଣୁ ଏଥିରେ ଲୌକିକ ଜ୍ଞାନର ଅତୀତ ଉଚ୍ଚତର ବ୍ରହ୍ମଜ୍ଞାନ ସମ୍ପର୍କରେ ଆଲୋକପାତ କରାଯାଇଥିଲା । ଏହି ବ୍ରହ୍ମବିଦ୍ୟାର ଅନ୍ୟ ନାମ ଥିଲା 'ପ୍ରାଣବିଦ୍ୟା' । ସବୁଠାରୁ ବେଶି ମହତ୍ତ୍ୱପୂର୍ଣ୍ଣ ଭାବରେ ଏହି ପ୍ରାଣବିଦ୍ୟା ସମ୍ପର୍କରେ ଆଲୋଚନା କରାଯାଇଛି ଐତରେୟ ଆରଣ୍ୟକରେ । ଆଉ ମଧ୍ୟ ସବୁ ଇନ୍ଦ୍ରିୟ ମଧ୍ୟରେ ପ୍ରାଣ କିପରି ଶ୍ରେଷ୍ଠ, ତାହା ଉପରୋକ୍ତ ଆରଣ୍ୟକରେ ଗୋଟିଏ ଆଖ୍ୟାୟିକା ମାଧ୍ୟମରେ ବୁଝାଇ ଦିଆ ଯାଇଛି । ପ୍ରାଣ ନଥିଲେ ଇନ୍ଦ୍ରିୟ ଇନ୍ଦ୍ରିୟ ନୁହେଁ ; ପ୍ରାଣୀ ପ୍ରାଣୀ ନୁହେଁ । ଆଉ ଠାଏ ମଧ୍ୟ କୁହା ଯାଇଛି :

"ସୋଽୟମାକାଶଃ ପ୍ରାଣେନ ବୃହତ୍ୟା ବିଷ୍ଟବ୍ଧଃ"

ଅର୍ଥାତ୍ ପ୍ରାଣର ବିରାଟ ଶକ୍ତି ବଳରେ ଆକାଶ ନିଜ ସ୍ଥାନରେ ସ୍ଥିର ହୋଇ ରହି ପାରିଛି । (୨୮) ଏହାର ତାତ୍ପର୍ଯ୍ୟ ହେଲା ସର୍ବତ୍ର ପ୍ରାଣର ସ୍ଫୁରଣ ବିଦ୍ୟମାନ । ଏହି ପ୍ରାଣକୁ କିଏ କୁହନ୍ତି 'ଆତ୍ମା' ; ଆଉ କିଏ କୁହନ୍ତି 'ବ୍ରହ୍ମ' । ସେ ସର୍ବତ୍ର ବ୍ୟାପ୍ତ ; ସର୍ବତ୍ର ସୂଚିତ । ଏହି ପ୍ରାଣ-ବିଦ୍ୟାକୁ ଉପନିଷଦଗୁଡ଼ିକରେ ଆହୁରି ସୂକ୍ଷ୍ମାତିସୂକ୍ଷ୍ମ ଭାବରେ ବିଚାର କରାଯାଇଛି । ଏହା ହେଲା ଆରଣ୍ୟକର ପ୍ରଥମ ଉପପାଦ୍ୟ ବିଷୟ ।

ଦ୍ୱିତୀୟତଃ ଏଥିରେ ବାନପ୍ରସ୍ଥୀମାନଙ୍କ ଲାଗି ଆବଶ୍ୟକ ହେଉଥିବା ନିତ୍ୟ-ନୈମିତ୍ତିକ କେତେକ କର୍ମବିଧିମାନ ମଧ୍ୟ ସ୍ଥାନିତ । ଏଗୁଡ଼ିକ ହେଲେ ବୈଶ୍ୱଦେବ, ସନ୍ଧ୍ୟା, ତର୍ପଣ ଇତ୍ୟାଦି ।

ତୃତୀୟତଃ କେତେକ ଆରଣ୍ୟକ ଗ୍ରନ୍ଥରେ କିଛି କିଛି ଭୌଗୋଳିକ ଓ ଐତିହାସିକ ତଥ୍ୟମାନ ମଧ୍ୟ ବିଦ୍ୟମାନ । ବିଭିନ୍ନ ରାଜ୍ୟମାନଙ୍କର ନାମ ସହିତ ବିଭିନ୍ନ ଋଷିଙ୍କର ନାମ ଏବଂ ବିଭିନ୍ନ ରାଜାଙ୍କର ନାମ ତନ୍ମଧ୍ୟରେ ବର୍ଣ୍ଣିତ । 'ତୈତ୍ତିରୀୟ ଆରଣ୍ୟକ'ରେ ଖାଣ୍ଡବ, କୁରୁକ୍ଷେତ୍ର, ମତ୍ସ୍ୟ, ଉଶୀନର, କାଶୀ, ବିଦେହ ଆଦି ରାଜ୍ୟମାନଙ୍କର ନାମ ଉଲ୍ଲିଖିତ । ସେଥିରୁ ଆମେ ଏହି ଧାରଣା ପାଇ ପାରିବା ଯେ ବ୍ରାହ୍ମଣ ଯୁଗରେ ଆର୍ଯ୍ୟମାନେ ସେହି ସେହି ଅଞ୍ଚଳ ସହିତ ପରିଚିତ ଥିଲେ । ଏହା ଛଡ଼ା ଅନେକ ଋଷି ଓ ଋଷିକାଙ୍କ ନାମ ମଧ୍ୟ ତନ୍ମଧ୍ୟରେ ଉଲ୍ଲିଖିତ । ବୃହଦାରଣ୍ୟକ ଆରଣ୍ୟକରେ ସୁଦ୍ୟୁମ୍ନ, ଇନ୍ଦ୍ରଦ୍ୟୁମ୍ନ, ଭୂରିଦ୍ୟୁମ୍ନ, ଶର୍ଯ୍ୟାତି, ଯଯାତି ଆଦି ରାଜାମାନଙ୍କ ନାମ ଉଲ୍ଲିଖିତ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଚକ୍ରବର୍ତ୍ତୀ । କିନ୍ତୁ ଏହି ସବୁ ବ୍ୟକ୍ତିମାନଙ୍କ ନାମ ଏବଂ ସେମାନଙ୍କ ସହିତ ସଂପୃକ୍ତ ଥିବା ଘଟଣାମାନ ସମୟର କ୍ରମ ଅନୁସାରେ ସଜ୍ଜିତ ନୁହେଁ । ପ୍ରାଚୀନ ଗ୍ରୀକ୍ ଐତିହାସିକ-ମାନେ ସମୟର କ୍ରମ ଅନୁସାରେ ଇତିହାସକୁ ସଜାଇ ରଖୁଥିଲେ । କିନ୍ତୁ ଭାରତରେ ତାହା ନଥିଲା । ବୋଧହୁଏ ଭାରତରେ ପ୍ରଥମ ଐତିହାସିକ ଗ୍ରନ୍ଥ ଲେଖିଲେ କହ୍ଲାଣ ଦ୍ୱାଦଶ ଶତାବ୍ଦୀରେ । ତାହା ହେଉଛି 'ରାଜତରଙ୍ଗିଣୀ' ଯହିଁରେ କାଶ୍ମୀର ରାଜବଂଶର ଇତିହାସ ଲିପିବଦ୍ଧ । ଆରଣ୍ୟକ ଗ୍ରନ୍ଥ ତଥା ଅନ୍ୟାନ୍ୟ ସମସ୍ତ ବୈଦିକ ଗ୍ରନ୍ଥରେ ଏ ପ୍ରକାର ସମୟ ଅନୁସାରେ ବିଭିନ୍ନ ବ୍ୟକ୍ତିମାନଙ୍କୁ ସଜ୍ଜୀକରଣ କରା ଯାଉନଥିଲା । ଭାରତୀୟ ସଂସ୍କୃତିକୁ ସେମାନଙ୍କର ଅବଦାନ କ'ଣ, କେବଳ ତାହାକୁ ହିଁ ଭିତ୍ତି ସ୍ୱରୂପ ଗ୍ରହଣ କରି ସେମାନଙ୍କ ନାମ ସଜାଇ ରଖା ଯାଉଥିଲା । ଏହା ଫଳରେ ଜଣେ ବ୍ୟକ୍ତିଙ୍କ ପାଖରେ ଶତ ଶତ ବର୍ଷ ପରେ ଆବିର୍ଭୂତ ହୋଇଥିବା ଆଉ ଜଣେ ବ୍ୟକ୍ତିଙ୍କର ନାମ ରହି ଯାଉଥିଲା । ଯେଉଁ ବୈଦିକ ଆର୍ଯ୍ୟମାନଙ୍କ ନିକଟରେ ସମୟର ଆରମ୍ଭ କପରି ହୋଇଥିଲା, ସେ ବିଷୟରେ ଚିନ୍ତା ପଶିଥିଲା, (ଦେଖନ୍ତୁ ଅଥର୍ବ ବେଦର କାଳସୂକ୍ତ) ସେମାନଙ୍କ ପାଖରେ ସମୟ ଥିଲା ଅନନ୍ତ ।

ତେଣୁ ପାଞ୍ଚ ଶବ୍ଦ ଥିବା ଶବ୍ଦ ବର୍ଗର ବ୍ୟବଧାନକୁ ସେମାନେ ତୁଚ୍ଛ ବୋଲି ଜ୍ଞାନ କରୁଥିଲେ । ସେଥିପାଇଁ ସେମାନେ ସମସ୍ତ ପ୍ରତି ସଚେତନ ନଥାଇ ଥିଲେ ସମସ୍ୱର ଦାନ ପ୍ରତି ସଚେତନ । ଏହି ପ୍ରକାର ସଚେତନତାର ନିବିଡ଼ ସ୍ପର୍ଶ ଆମେ ବୈଦିକ ସାହିତ୍ୟର ଛନ୍ଦେ ଛନ୍ଦେ ଦେଖିବାକୁ ପାଇଥାଉଁ ।

ଚତୁର୍ଥତଃ ଏଥିରେ ଆମେ ଲୌକିକ ସଂସ୍କୃତର ଭାଷା ପାଇଥାଉଁ । ବୈଦିକ ସଂହିତା ଓ ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକର ଭାଷାଠାରୁ ଏହି ଭାଷା ଥିଲା ସରଳତର । ଲୋକେ ଯେଉଁ ଭାଷା ବ୍ୟବହାର କରୁଥିଲେ, ସେହି ଭାଷାରେ ଏହାର ସୃଷ୍ଟି ହୋଇଥିଲା । ସେଥିପାଇଁ ଏହା ଲୋକପ୍ରିୟ ହୋଇ ପାରିଥିଲା । ଏହା କଠିନ ଆତ୍ମଜ୍ଞାନନିଷ୍ଠ ଗ୍ରନ୍ଥ ହୋଇଥିଲେ ମଧ୍ୟ ଲୋକଭାଷାର ପ୍ରୟୋଗ ଓ ସହଜ ସରଳ ଶୈଳୀର ପ୍ରବର୍ତ୍ତନ ହେତୁ ଏହା ଲୋକପ୍ରିୟ ହୋଇ ପାରିଥିଲା ।

ପଞ୍ଚମତଃ କେତେକ ବୈଜ୍ଞାନିକ ପରୀକ୍ଷା ବିଷୟ ମଧ୍ୟ ଏଥିରେ ବର୍ଣ୍ଣିତ । ଶାଙ୍ଖାୟନ ଆରଣ୍ୟକରେ ଗୋଟିଏ ବେଲ ଫଳରୁ ବିଭିନ୍ନ ପରୀକ୍ଷା ଫଳରେ କିପରି ମଣି ବାହାର କରିବାକୁ ହେବ, ସେ ବିଷୟରେ ଲେଖାଅଛି । ଅବଶ୍ୟ ଏଭଳି ପରୀକ୍ଷା କିଏ କରିଛନ୍ତି କି ନାହିଁ ଏବଂ ତାହା କରି ମଣି ତିଆରି କରି ପାରିଛନ୍ତି କି ନାହିଁ, ସେ ବିଷୟରେ ଲେଖକଙ୍କର ଜ୍ଞାନ ନାହିଁ ।

**ଉପନିଷଦ :**

ପୂର୍ବବର୍ତ୍ତୀ ପରିଚ୍ଛେଦରେ ବୈଦିକ ସାହିତ୍ୟର ବିଭାଗୀକରଣ ସମ୍ପର୍କରେ ଆଲୋଚନା ପ୍ରସଙ୍ଗରେ ଉପନିଷଦ୍ କ'ଣ ସେ ବିଷୟରେ କୁହା ଯାଇଛି ଏବଂ ଆହୁ ମଧ୍ୟ କୁହାଯାଇଛି ଯେ ମାନବ ଜୀବନର ଚରମ ଲକ୍ଷ୍ୟ 'ମୁକ୍ତି' ବା 'ମୋକ୍ଷ' ପାଇବାର ବାଟ ଏଥିରେ ବତାଇ ଦିଆ ଯାଇଛି । ସାୟଣାଚାର୍ଯ୍ୟ 'ବେଦ' ଶବ୍ଦର ବ୍ୟାଖ୍ୟା କରିବାକୁ ଯାଇ ଠିକ୍ ଅନୁରୂପ କଥା କହିଛନ୍ତି । ତାଙ୍କ କହିବା ଅନୁସାରେ :

> "ଇଷ୍ଟ ପ୍ରାପ୍ତ୍ୟନିଷ୍ଟପରିହାରୟୋଃ ଅଲୌକିକଂ ଉପାୟଂ ଯୋ ଗ୍ରନ୍ଥଃ ବେଦୟତି ସଃ ବେଦଃ ।" (୨୧)

ଅର୍ଥାତ୍ ଅନିଷ୍ଟକୁ ଛାଡ଼ି ଇଷ୍ଟ ପାଇବା ପାଇଁ ଅଲୌକିକ ପନ୍ଥାଟି ଯେଉଁ ଗ୍ରନ୍ଥ ବତାଇ ଦିଏ, ତାହା ହେଲା ବେଦ । ବେଦ ତେଣୁ ଦୁଇଟି କଥା କୁହେ । ପ୍ରଥମତଃ ଇଷ୍ଟ ପାଇବାକୁ ହେବ ; ନିଃଶ୍ରେୟସ୍ ଲାଭ କରିବାକୁ ହେବ । ଦ୍ୱିତୀୟତଃ ଅନିଷ୍ଟକୁ ଛାଡ଼ିବାକୁ ହେବ; ଅଶିବକୁ ଛାଡ଼ିବାକୁ ହେବ ; କୁପ୍ରବୃତ୍ତିକୁ ଦୂର କରିବାକୁ ହେବ । କାରଣ ଖରାପ କ'ଣ ଜାଣି ନଥିଲେ ମଣିଷ ତାହାଠାରୁ ଦୂରେଇ ଯିବ ବା କିପରି ? ଏବଂ ଭଲ ପାଖରେ ପହଞ୍ଚିବ ବା ।

କପର ? ତୃତୀୟତଃ ଏମିତ କରିବାକୁ ଗଲେ କୋଟିଏ ପନ୍ଥା ଅଛି । ଚତୁର୍ଥତଃ ଏହି ପନ୍ଥାଟି ହେଉଛି ଅଲୌକିକ । ବେଦ ଏହି ଗୂଢ଼ରେଟି କଥା ମଣିଷକୁ ଶିଖାଇ ତାକୁ ମୁକ୍ତି-ପଥରେ ଆଗେଇ ନେଇଥାଏ । ଉପନିଷଦ ହେଉଛି 'ବେଦାନ୍ତ'; ଏହା ବେଦର ଅନ୍ତ ବା ନିର୍ଯ୍ୟାସ । ଏଣୁ ଏହା ମଧ୍ୟ ଏହି ଗୂଢ଼ରେଟି କଥା ହିଁ ଶିଖାଇଥାଏ । ଏଇଥିରୁ ଉପନିଷଦ୍‌ର ମୌଳିକ ଲକ୍ଷ୍ୟ ଓ ବିଷୟବସ୍ତୁ ସମ୍ପର୍କରେ ଅବଧାରଣା କରି ହେବ । ଉପନିଷଦରେ କ'ଣ ଅଛି ସେ ବିଷୟରେ ଜର୍ମାନ ଦାର୍ଶନିକ ଡଏସନ୍ (Duessen) ଯାହା କହିଛନ୍ତି, ତାହା ଏଠାରେ ଯଥାର୍ଥରେ ପ୍ରଣିଧାନଯୋଗ୍ୟ । ତାଙ୍କ ମନ୍ତବ୍ୟ ହେଲା :

> "On the tree of wisdom there is no fairer flower than the Upanishades, and no finer fruit than the Vedanta philosophy."

ଜର୍ମାନ ପଣ୍ଡିତ ମ୍ୟାକ୍‌ସମୁଲର୍‌ଙ୍କର ପ୍ରାୟ ତାହା ହିଁ ମତ । ସୋପେନ୍‌ହାଓ୍ୱାର୍ (Schopenhauer) ତ ଏହାର ପ୍ରଶଂସାରେ ଶତମୁଖ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ମତରେ :

> "From every sentence deep original and sublime thoughts arise and the whole is pervaded by a high and holy and earnest spirit" (୨୯-କ)

ପାର୍‌ମେନାଇଡ୍‌ସ୍ (Parmenides) ପ୍ଲାଟୋ (Plato), ପ୍ଲୋଟିନସ୍ (Plotinus), କାଣ୍ଟ୍ (Kant), ସ୍ପିନୋଜା (Spinoza), ବ୍ରାଡ୍‌ଲେ (Bradley) ଆଦି ୟୁରୋପୀୟ ଦାର୍ଶନିକଗଣ ତଥା ଚୂଆଙ୍ଗ୍ ତ୍ସୁ ( Chuang Tzu ), ଲଓତ୍‌ସେ (Lao Tse) ଆଦି ଚୈନିକ ଦାର୍ଶନିକଗଣ ଯେଉଁ ଦାର୍ଶନିକ ତତ୍ତ୍ୱମାନ ବଖାଣିଛନ୍ତି ତହିଁରେ ଅଳ୍ପ ବହୁତ ଉପନିଷଦ୍‌ର ତତ୍ତ୍ୱବାଣୀ ହିଁ ଅନୁରଣିତ । ଉପନିଷଦୀୟ ଜ୍ଞାନ ଭାରତୀୟ ପରମ ଜ୍ଞାନର ପ୍ରତିନିଧିତ୍ୱ କରିଥାଏ । ଏହା ବ୍ରହ୍ମଜ୍ଞାନ ବିଷୟରେ ଜନମାନସକୁ ସଚେତନ କରାଇବା ଲାଗି ଉଦ୍ଦିଷ୍ଟ । ଏହା ପାଶ୍ଚାତ୍ୟ ଜ୍ଞାନ ଭଳି ବୈଜ୍ଞାନିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ନ ହୋଇ ସହଜାତ ଜ୍ଞାନ (intuition) ଉପରେ ନିର୍ଭରଶୀଳ ଥାଏ । ଏହି ଜ୍ଞାନ ଘନତ୍ୱ ଉପରେ ଗୁରୁତ୍ୱ ଆରୋପ କରିଥାଏ ; ପାଶ୍ଚାତ୍ୟ ଜ୍ଞାନ ଭଳି ବିଶାଳତା ଉପରେ କିନ୍ତୁ ନୁହେଁ । ଉର୍କୁହାର୍ଟ (Urquhart)ଙ୍କ ମତରେ :

> "The Indian mind leans to the intuitive, the Western to the discursive and empirical. The Indian emphasises intensity of knowledge ; the Western extensity. It might even be said that the Indian

mind is more naturally philosophical and the Western more naturally scientific." (୨୯-କ)

ସେହି ଦୃଷ୍ଟିରୁ ଉପନିଷଦ ବୈଦିକ ସାହିତ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରି ଆସିଛି । ଅତଏବ, ବେଦାନ୍ତ ଦର୍ଶନ ବିଷୟରେ ଜ୍ଞାନାର୍ଜନ କରିବାକୁ ହେଲେ ଉପନିଷଦର ଅଧ୍ୟୟନ ତଥା ଅନୁଧ୍ୟାନ ଏକାନ୍ତ ଆବଶ୍ୟକ ।

ଉପନିଷଦର କାଳ ବିଷୟରେ ନାନା ମୁନିଙ୍କର ନାନା ମତ । ତେବେ ଏଗୁଡ଼ିକ ଯେ ବେଦ, ବ୍ରାହ୍ମଣ ଓ ଆରଣ୍ୟକର ପରବର୍ତ୍ତୀ, ଏଥିରେ କାହାରି ସନ୍ଦେହ ନାହିଁ । ଡକ୍ଟର ରାଧାକୃଷ୍ଣନ୍‌ଙ୍କ ମତରେ ଐତରେୟ, କୌଷୀତକୀ, ଛାନ୍ଦୋଗ୍ୟ, କେନ, ତୈତ୍ତିରୀୟ, ବୃହଦାରଣ୍ୟକ, କଠ ଓ ଈଶ ଉପନିଷଦଗୁଡ଼ିକ ହେଉଛି ବୁଦ୍ଧଙ୍କର ପୂର୍ବବର୍ତ୍ତୀ । ସେ ଏଗୁଡ଼ିକୁ ଖ୍ରୀ : ପୂ : ୮ମ ଶତାବ୍ଦୀରୁ ଖ୍ରୀ : ପୂ : ୭ମ ଶତାବ୍ଦୀ ମଧ୍ୟରେ ସ୍ଥାନିତ କରିଛନ୍ତି । (୩୦)

ଉପନିଷଦର ସଂଖ୍ୟା କେତେ ସେ କଥା ସଠିକ୍ ଭାବରେ କହି ହେବ ନାହିଁ । ଆମ ପରମ୍ପରା ଅନୁସାରେ ଉପନିଷଦର ସଂଖ୍ୟା ହେଲା ୧୧୮୦ । ଏଇ କଥା 'ମୁକ୍ତିକୋପନିଷଦ'ର ୧୪ଶ ମନ୍ତ୍ରର ଲେଖାଅଛି । କିନ୍ତୁ ବର୍ତ୍ତମାନ ଆମକୁ ୧୦୮ଟି ଉପନିଷଦ ଉପଲବ୍ଧ । ଏଥି ମଧ୍ୟରୁ ଦଶଟି ଉପନିଷଦକୁ ପ୍ରଧାନ ବୋଲି ଧରି ଯାଇଥାଏ । ଏହି ଦଶଟିଯାକ ଉପନିଷଦର ଭାଷ୍ୟ ଶଙ୍କରାଚାର୍ଯ୍ୟ କରି ଯାଇଛନ୍ତି । ଏଗୁଡ଼ିକ ହେଲେ ଈଶ, କେନ, କଠ, ପ୍ରଶ୍ନ, ମୁଣ୍ଡକ, ମାଣ୍ଡୁକ୍ୟ, ଛାନ୍ଦୋଗ୍ୟ, ବୃହଦାରଣ୍ୟକ, ଐତରେୟ ଓ ତୈତ୍ତିରୀୟ । ଏହା ଛଡ଼ା ସେ ଶ୍ୱେତାଶ୍ୱତର ଉପନିଷଦର ଭାଷ୍ୟ ମଧ୍ୟ କରିଛନ୍ତି । ତାଙ୍କ ଲିଖିତ ବ୍ରହ୍ମସୂତ୍ରର ଭାଷ୍ୟରେ ସେ କୌଷିତକୀ, ଜାବାଲ, ମହାନାରାୟଣ ଓ ପୈଙ୍ଗଳ ଉପନିଷଦରୁ ମଧ୍ୟ ଉଦ୍ଧୃତମାନ ଆଣି ସନ୍ନିବେଶିତ କରିଛନ୍ତି । ମ୍ୟାକ୍‌ସମୁଲର୍ 'ମୈତ୍ରାୟଣୀୟ ଉପନିଷଦ୍'କୁ ଏକ ବିଶିଷ୍ଟ ଉପନିଷଦର ସ୍ଥାନ ଦେଲାବେଳେ କିଥ୍ ମହାନାରାୟଣୀୟ ଉପନିଷଦ୍‌କୁ ସେହି ସ୍ଥାନ ଦିଅନ୍ତି । ଡ୍ୟୁସେନ୍ ୬୦ଟି ଉପନିଷଦର ଅନୁବାଦ କରିଥିଲେ ହେଁ ତନ୍ମଧ୍ୟରୁ ୧୪ଟି ଉପନିଷଦକୁ ସେ ପ୍ରଧାନ ଉପନିଷଦ ଆଖ୍ୟା ଦିଅନ୍ତି । ଏହିପରି ଭାବରେ ପ୍ରଧାନ ଅପ୍ରଧାନ ଉପନିଷଦ ସ୍ଥିର କରିବାରେ ପଣ୍ଡିତମାନଙ୍କର ନାନା ମତ ଦେଖାଦିଏ । ଆମକୁ ତେଣୁ ଶଙ୍କରାଚାର୍ଯ୍ୟ ଭାଷ୍ୟ କରିଥିବା ପୂର୍ବୋକ୍ତ ଦଶଗୋଟି ଉପନିଷଦକୁ ହିଁ ପ୍ରଧାନ ଉପନିଷଦ ବୋଲି ଗ୍ରହଣ କରିବାକୁ ହେବ । ଏହା ଭାରତୀୟ ପରମ୍ପରା ଦ୍ୱାରା ସ୍ୱୀକୃତ ।

ଯୁଗେ ଯୁଗେ ଭାରତ ଭୂମିରେ ଦୁଇଟି ଦାର୍ଶନିକ ଚିନ୍ତାଧାରା ମୁଣ୍ଡ ଟେକି ଉଠିଛି ଏବଂ ଏଇ ଦୁଇ ଚିନ୍ତାଧାରା ମଧ୍ୟରେ ବିବାଦ ଲାଗି ଆସିଛି । ବୈଦିକ ଯୁଗରୁ ହିଁ ଏହା ଗ୍ରହ୍ମ

ଆସିଛି । ଗୋଟିଏ ହେଲା ଜ୍ଞାନମାର୍ଗୀ ଚିନ୍ତାଧାରା ଏବଂ ଅପରଟି ହେଲା କର୍ମମାର୍ଗୀ ଚିନ୍ତାଧାରା । କର୍ମମାର୍ଗୀମାନେ ବୈଦିକ ସଂହିତା ଓ ବ୍ରାହ୍ମଣରେ ନିର୍ଦ୍ଦିଷ୍ଟ କର୍ମକାଣ୍ଡକୁ ଭିତ୍ତି କରି ସେମାନଙ୍କ ମତର ଯାଥାର୍ଥ୍ୟ ପ୍ରତିପାଦନ କରନ୍ତି । ସେହିପରି ଜ୍ଞାନମାର୍ଗୀମାନେ ଉପନିଷଦ ନିର୍ଦ୍ଦିଷ୍ଟ ପନ୍ଥାକୁ ଅନୁସରଣ କରିବାକୁ ଯାଇ ସ୍ୱୀୟ ମତର ସାରବତ୍ତା ପ୍ରତିପାଦନ କରନ୍ତି । ଗୋଟିଏ ଗୋଷ୍ଠୀ ଧୂଳିମାଟିର ସଂସାରକୁ ନ ଛାଡ଼ି ସାଂସାରିକ କର୍ମରେ ବ୍ୟାପୃତ ରହିବାକୁ ଚାହୁଁଥିବେଳେ ଅପର ଗୋଷ୍ଠୀ ସଂସାରକୁ ଛାଡ଼ି ସନ୍ନ୍ୟାସ ଗ୍ରହଣ କରି ତ୍ୟାଗପୂତ ଜୀବନରେ ଜ୍ଞାନର ଆରାଧନା କରିବାକୁ ଚାହେଁ । ବହୁ ଯୁଗ ଧରି ଏହି ଦୁଇ ଗୋଷ୍ଠୀ ମଧ୍ୟରେ ବିବାଦ ଚାଲିଥିଲେ ମଧ୍ୟ ଏହି ଦୁଇ ପରସ୍ପର ବିରୋଧୀ ଚିନ୍ତାଧାରାକୁ କେହି ଦାର୍ଶନିକ ରୂପ ଦେଇ ପାରିନଥିଲେ । ଶେଷକୁ ଜୈମିନି ଓ ବ୍ୟାସ ଆସି ଏହି ଅଭାବଟି ପୂରଣ କରି ଦେଲେ ; ସେମାନେ ଏହି ଦୁଇ ମତବାଦକୁ ପୃଥକ୍ ପୃଥକ୍ ଦାର୍ଶନିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ କରାଇଲେ । କର୍ମମାର୍ଗ ଉପରେ ଭିତ୍ତି କରି ଜୈମିନି ଯେଉଁ ଦାର୍ଶନିକ ଚିନ୍ତାଧାରାଟିକୁ ପ୍ରତିଷ୍ଠିତ କଲେ, ତାହାକୁ କୁହାଗଲା ମୀମାଂସା । ଅପର ପକ୍ଷରେ ଜ୍ଞାନମାର୍ଗ ଉପରେ ଭିତ୍ତିକରି ଯେଉଁ ଦାର୍ଶନିକ ଚିନ୍ତାଧାରାଟି ବ୍ୟାସ ପ୍ରତିଷ୍ଠିତ କଲେ, ତାହାକୁ କୁହାଗଲା ବେଦାନ୍ତ । ଏହି ଦର୍ଶନଟି ଉପନିଷଦଭିତ୍ତିକ । ଅତଏବ, ଉପନିଷଦରେ କେବଳ ବେଦାନ୍ତ-ଦର୍ଶନର ହିଁ ବ୍ୟାଖ୍ୟା କରାଯାଇଛି । କେବଳ ବେଦାନ୍ତ ଦର୍ଶନ ସୃଷ୍ଟି କଲେ ତାହା ନୁହେଁ ; ସେ ଏହାକୁ ସୂତ୍ରାନ୍ୱିତ କରିଦେଲେ । ତାଙ୍କ ଦ୍ୱାରା ସୃଷ୍ଟ ଏହି ସୂତ୍ରଟିର ନାମ ହେଉଛି 'ବ୍ରହ୍ମସୂତ୍ର' । ଭାରତୀୟ ଜ୍ଞାନ ପରମ୍ପରାରେ ତିନୋଟି ଗ୍ରନ୍ଥକୁ ଜ୍ଞାନୀ-ମାନଙ୍କର ଆଶ୍ରୟ ବୋଲି କୁହାଯାଇଥାଏ । ସେଗୁଡ଼ିକୁ କୁହାଯାଏ 'ପ୍ରସ୍ଥାନତ୍ରୟୀ' । ସେଗୁଡ଼ିକ ହେଲେ, ଉପନିଷଦ୍, ଗୀତା ଓ ବ୍ରହ୍ମସୂତ୍ର । ଏଥିରୁ ଉପନିଷଦର ଗୁରୁତ୍ୱ କେତେ, ତାହା ଅନୁଭବ କରି ହେବ । ବ୍ୟାସଙ୍କର ଅନୁଶିଷ୍ୟ (ଶିଷ୍ୟ ବୈଶମ୍ପାୟନଙ୍କ ଶିଷ୍ୟ) ଯାଜ୍ଞବଲ୍କ୍ୟ ଏହି ଦୁଇ ମାର୍ଗ (ଜ୍ଞାନ ଓ କର୍ମ) ମଧ୍ୟରେ ଏକ ମଧୁର ସମନ୍ୱୟ ଅଣାଇଲେ ତାଙ୍କ ଦ୍ୱାରା ସୃଷ୍ଟ 'ଈଶୋପନିଷଦ' ଗ୍ରନ୍ଥରେ । ତାଙ୍କ ମତ ହେଲା ଜ୍ଞାନ ଓ କର୍ମ ମଧ୍ୟରେ ସମନ୍ୱୟ ଅଣାଇବାକୁ ହେବ ; ଭୋଗ ଓ ତ୍ୟାଗ ମଧ୍ୟରେ ସମନ୍ୱୟ ଅଣାଇବାକୁ ହେବ ; ବସ୍ତୁବାଦ ଓ ଅଧ୍ୟାତ୍ମବାଦ ମଧ୍ୟରେ ସମନ୍ୱୟ ଅଣାଇବାକୁ ହେବ । ତା'ହେଲେ ଯାଇ ମଣିଷ ସଫଳ ଜୀବନ ଯାପନ କରି ପାରିବ ; ତା'ହେଲେ ଯାଇ ସେ ଜୀବନର ସତ୍ୟକୁ ଉପଲବ୍ଧି କରି ପାରିବ ; ତାହେଲେ ଯାଇ ସେ ଜୀବନର ଆନନ୍ଦ ପାଇ ପାରିବ । ଏହି ସମନ୍ୱୟବାଦ ଯୁଗେ ଯୁଗେ ଆମ ସାଂସ୍କୃତିକ ଓ ଧାର୍ମିକ କ୍ଷେତ୍ରକୁ ପ୍ରଭାବିତ କରି ଆସିଛି । ଏହା ଉପନିଷଦର ଭାରତୀୟ ସଂସ୍କୃତିକୁ ନିଶ୍ଚିତ ଭାବରେ ଏକ ବଳିଷ୍ଠ ଅବଦାନ ।

ଉପନିଷଦରେ ହିନ୍ଦୁ ଦର୍ଶନ ଯେ ଚରମ ସୀମାରେ ଯାଇ ପହଞ୍ଚିଛି ଏ କଥା ରାଧାକୁମୁଦ ମୁଖାର୍ଜି ସ୍ପଷ୍ଟ ଭାବରେ ସ୍ୱୀକାର କରିଛନ୍ତି । (୩୯) ଏହାର ସୃଷ୍ଟି ବେଳକୁ

ପୃଥିବୀର ଅଧିକାଂଶ ଦେଶ ଥିଲା ଅନ୍ଧକାରାଚ୍ଛନ୍ନ । ବର୍ତ୍ତମାନ ସଭ୍ୟ ଦେଶ ବୋଲି ବୋଲାଉଥିବା ୟୁରୋପ ମହାଦେଶର ସମସ୍ତ ଦେଶ ପ୍ରସ୍ତର ଯୁଗକୁ ନିକଟ ଅତୀତରେ ଅତିକ୍ରମ କରିଥିଲେ ମାତ୍ର । ସେହି ସମୟରେ ଆର୍ଯ୍ୟମାନଙ୍କଠାରେ ଯେ କିଭଳି ଭାବରେ ଏପରି ଉଚ୍ଚ ଚିନ୍ତାଧାରାର ଉଦୟ ହୋଇ ପାରିଲା, ତାହା ଭାବିଲେ ବାସ୍ତବିକ ସ୍ତମ୍ଭିତ ହେବାକୁ ପଡ଼ିଥାଏ । ବୈଦିକ ସଂହିତାଗୁଡ଼ିକର ସମୟ ଚାଲି ଯାଇଥିଲା । ବୈଦିକ ଦେବ-ମଣ୍ଡଳ ଆଉ ଆର୍ଯ୍ୟମାନଙ୍କ ଅନୁସନ୍ଧିତ୍ସୁ ମନକୁ ସନ୍ତୁଷ୍ଟ କରି ପାରିଲା ନାହିଁ । ପୁରୋହିତଙ୍କ କର୍ମକାଣ୍ଡନିଷ୍ଠ ବିଧିବିଧାନରେ ଆଉ ସେମାନଙ୍କର ଆଗ୍ରହ ରହିଲା ନାହିଁ । ସେମାନେ ସତ୍ୟ କ'ଣ ଚିନ୍ତା କରିବାକୁ ଲାଗିଲେ ; ଏ ଜୀବନ କ'ଣ ଏବଂ ଏହାର ଲକ୍ଷ୍ୟ ଓ ପରିଣତି କ'ଣ ବୋଲି ବାରମ୍ବାର ନିଜକୁ ପ୍ରଶ୍ନ କଲେ । ଏହି ପ୍ରଶ୍ନ କରିବା ଅବସ୍ଥାରେ ସେମାନେ ଚେତନାର ଉର୍ଦ୍ଧ୍ୱତମ ସ୍ତରକୁ ଯାଇ ପ୍ରକୃତ ସତ୍ୟକୁ ଆବିଷ୍କାର କଲେ । ତାହାକୁ କୁହାଗଲା ବ୍ରହ୍ମଜ୍ଞାନ । ସେହି ବ୍ରହ୍ମ ହେଉଛନ୍ତି ସତ୍ୟ, ଶିବ ଓ ସୁନ୍ଦର । ସେ ସର୍ବତ୍ର ବିଦ୍ୟମାନ । ସେ ଦୂରରେ ଠିଆ ହୋଇଛନ୍ତି ; ଅଥଚ ପାଖରେ ଅଛନ୍ତି । ଉପନିଷଦରେ ଏହି 'ବ୍ରହ୍ମଜିଜ୍ଞାସା' ବା 'ଆତ୍ମଜିଜ୍ଞାସା' ଉପରେ ଗୁରୁତ୍ୱ ଦିଆ ଯାଇଛି ; ନିଜକୁ ଚିହ୍ନିବା ପାଇଁ ପରାମର୍ଶ ଦିଆଯାଇଛି । 'ବ୍ରହ୍ମସୂତ୍ର'ର ପ୍ରଥମ ସୂତ୍ରଟି ଏହି ବ୍ରହ୍ମ ଜିଜ୍ଞାସାରୁ ହିଁ ଆରମ୍ଭ ହୋଇଛି । ସେଠାରେ କୁହା ଯାଇଛି :

> "ଅଥାତୋ ବ୍ରହ୍ମଜିଜ୍ଞାସା" ।

ଅର୍ଥାତ୍ ଏହା ପରେ ଆମେ ବ୍ରହ୍ମ ବିଷୟରେ ଜିଜ୍ଞାସା କରିବା । ନେହେରୁ ଏଥି ପ୍ରତି ଲକ୍ଷ୍ୟ କରି କହିଛନ୍ତି :

> "The emphasis is essentially a self-realisation on knowledge of the individual self and absolute self both of which are said to be the same in essence. The objective external world is not considered unreal, but real in a relative sense, an aspect of the inner reality." (୩୨)

ଏହି ଚରମ ଜ୍ଞାନର ଚରମତମ ଅବସ୍ଥା ହେଲା ନିଜକୁ ସମସ୍ତଙ୍କ ଠାରେ ଏବଂ ପରମାତ୍ମାଙ୍କ ଠାରେ ଦେଖିବା । ସେତେବେଳେ ମଣିଷ ମନରେ ଉଦୟ ହେବ 'ସୋଽହମ୍' ଚେତନା ବା 'ମୁଁ ହେଉଛି ସେ', ଏହି ଚେତନା । ଏ ପ୍ରକାର ଚେତନା କିଛି ଶାସ୍ତ୍ରରେ ପଢ଼ିବାର କଥା ନୁହେଁ କିମ୍ବା ମୁହଁରେ କହିବାର କଥା ନୁହେଁ । ଅନ୍ୟ ପକ୍ଷରେ ଏହାକୁ

ଅନୁଭବ କରିବାର କଥା । ଏ ପ୍ରକାର ଅନୁଭୂତି ଆସିଲେ ଯାଇ ମଣିଷ ହେବ ବ୍ରହ୍ମଜ୍ଞାନୀ ; ଅନ୍ୟଥା ନୁହେଁ । ଅତଏବ, ବ୍ରହ୍ମଜ୍ଞାନ କେବଳ ଚେତନାରୁ ସଂଭୂତ ନୁହେଁ ; ଏହା ହୃଦୟରେ ଅନୁଭୂତ । ଉପନିଷଦ ଆମକୁ ଏହି ଶିକ୍ଷା ହିଁ ଦେଇଥାଏ । ତାହା ଏ କଥା ସ୍ପଷ୍ଟ କରି ଦେଇ କହୁଛି :

"ନାୟମାତ୍ମା ପ୍ରବଚନେନ ଲଭ୍ୟଃ" । (୩୩)

ଅର୍ଥାତ୍ ଏ 'ଆତ୍ମା' ପ୍ରବଚନ ବା ଉପଦେଶବାଣୀ ଦ୍ୱାରା ଉପଲବ୍ଧ ନୁହନ୍ତି । ବୃହଦାରଣ୍ୟକ ଉପନିଷଦ୍‌ରେ "ଅହଂ ବ୍ରହ୍ମାସ୍ମି" ବୋଲି ଯାହା କୁହା ଯାଇଛି, ତାହାର ତାତ୍ପର୍ଯ୍ୟ ଅଛି ଏଇଠି । (୩୪) ଆମ ସନାତନ ଧର୍ମର ଏହା ହିଁ ଲକ୍ଷ୍ୟ । ଏହା ଖାଲି ତ ସତ୍ୟର ବଳୟକୁ ସ୍ପର୍ଶ କରିବ ନାହିଁ ; ଏହା ସତ୍ୟ ମଧ୍ୟରେ ବି ପ୍ରବେଶ କରିବ; ସତ୍ୟ ମଧ୍ୟରେ ମଣିଷକୁ ଜୀଇଁବାକୁ ପ୍ରୋତ୍ସାହନ ଦେବ । ଅତଏବ, ଆମର ଧର୍ମ ହେଉଛି ଏକ ଜୀବନ୍ତ ଅନୁଭୂତି, ଯାହା କି ଉପନିଷଦ ଆମକୁ ଶିକ୍ଷା ଦେଇଥାଏ । ଆମ ଭାରତୀୟ ଚିନ୍ତାଧାରାରେ ଧର୍ମର ସଂଜ୍ଞା ଏହି ଦୃଷ୍ଟିରୁ ପୃଥିବୀର ଅନ୍ୟ ଦେଶମାନଙ୍କର ଧର୍ମର ସଂଜ୍ଞାଠାରୁ ଭିନ୍ନ । ରାଧାକୃଷ୍ଣନ୍ ଧର୍ମର ଏହି ଅନୁଭୂତିନିଷ୍ଠତା ଉପରେ ଗୁରୁତ୍ୱ ଆରୋପ କରି କହିଛନ୍ତି :

> "Religion is not the acceptance of academic abstractions or the celebration of the ceremonies, but a kind of life or experience. It is insight into the nature of reality (*darshan*) or experience of reality." (୩୫)

ଅତଏବ ଉପନିଷଦରେ ସତ୍ୟର ଦର୍ଶନ ବା ଅନୁଭବ ଉପରେ ଗୁରୁତ୍ୱ ଆରୋପ କରା ଯାଇଛି । ବ୍ରହ୍ମଜ୍ଞାନୀ ସାକ୍ଷାତ୍ ବ୍ରହ୍ମ ହୋଇ ଯାଆନ୍ତି ବୋଲି ଉପନିଷଦରେ ଯାହା କୁହାଯାଇଛି, ସେହି ଅବସ୍ଥାଟିକୁ ଉପରୋକ୍ତ ପଦ୍ଧତିରେ ହିଁ ପାଇ ହେବ ; ଅନ୍ୟଥା ନୁହେଁ । ଭାରତୀୟ ଆଧ୍ୟାତ୍ମିକ ପରିଭାଷାରେ ତାହାକୁ କୁହାଯିବ ମୋକ୍ଷ ବା ମୁକ୍ତି । ଏ ପ୍ରକାର ମାନସିକ-ସ୍ଥିତିରୁ ଆଉ ତଳକୁ ଖସି ଆସି ହେବ ନାହିଁ । ଏହାପାଇଁ ବୌଦ୍ଧମାନଙ୍କର ପରିଭାଷା ହେଉଛି 'ନିର୍ବାଣ' । ଉପନିଷଦରେ ଏହି ଯେଉଁ ମୁକ୍ତି କଥା କୁହା ଯାଇଛି, ତାହା ସାଧାରଣରେ ବୁଝିଲା ଭଳି ସ୍ୱର୍ଗପ୍ରାପ୍ତି ନୁହେଁ । ସ୍ୱର୍ଗ ହେଉଛି ବ୍ୟକ୍ତ ଜଗତ୍‌ର ଗୋଟିଏ ଅଂଶ । ଜୀବାତ୍ମା ଏଠାକୁ ଗଲେ ପୁଣି ଥରେ ପୃଥିବୀକୁ ଫେରି ଆସିଥାଏ । ତାକୁ ପୁଣି ଥରେ ପୃଥିବୀକୁ ଆସି ତା'ର କର୍ମଫଳ ଭୋଗ କରିବାକୁ ପଡ଼ିଥାଏ । ଅନ୍ୟ ପକ୍ଷରେ ମୁକ୍ତିର ଅର୍ଥ ହେଲା ପରମାତ୍ମାଙ୍କ ସହିତ ଜୀବାତ୍ମାର ମିଳନ । ସେଠାରେ ମିଳନ ଘଟିଲେ ତା'କୁ ଆଉ

ମାଟି ଗୋଡ଼ର ସଂସାରକୁ ଫେର ଆସିବାକୁ ପଡ଼େ ନଥାଏ । ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ମୁକ୍ତିର ଏହି ସ୍ଥିତି ବିଷୟରେ ବୁଝାଇବାକୁ ଯାଇ କହିଛନ୍ତି :

"ଯଦ୍‌ଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ ।"

ଅର୍ଥାତ୍ ଯେଉଁଠାକୁ ଗଲେ ଆଉ (ଜୀବାତ୍ମାକୁ) ଫେରିବାକୁ ହୁଏ ନାହିଁ, ତାହା ହେଉଛି ମୋ'ର ପରମ ଧାମ । ରାଧାକୃଷ୍ଣନ୍‌ଙ୍କ ମତରେ :

"ସ୍ୱର୍ଗ ହିଁ ଜୀବନ ଆତ୍ମକୈନ୍ଦ୍ରିକ ଜୀବନ କା ହି ବିସ୍ତାର ହୈ, ନର୍କ ଶ୍ରୀ ଅନନ୍ତ ଜୀବନ ଇସକି ମୁକ୍ତି ହୈ । ଯଦ୍ୟପି ଜହାଂ କାଳକା ବିସ୍ତାର ହୈ, ଓ୍ୱହାଂ ଦୂସରି କାଳାତୀତ ହୈ ।" (୩୬)

ଉପନିଷଦରେ ଏହିପରି ଭାବରେ ଅନନ୍ତ ଜୀବନ ଓ ମୁକ୍ତି ବିଷୟ ପ୍ରତିପାଦିତ ।

ଛାନ୍ଦୋଗ୍ୟ ଉପନିଷଦରେ (୧।୩।୧୪) ବ୍ରହ୍ମଙ୍କୁ କୁହା ଯାଇଛି 'ତଜ୍ଜଲାନ୍' । ଅର୍ଥାତ୍ ସେ ଜଗତକୁ ଜନ୍ମ ଦିଅନ୍ତି (ଜ) ; ନିଜ ଭିତରେ ଲୀନ କରି ଦିଅନ୍ତି (ଲ) ; ଏବଂ ଜଗତକୁ ଜୀବନ ଦିଅନ୍ତି (ଆନ୍) । ଜଗତ୍ ବ୍ରହ୍ମଙ୍କଠାରୁ ସୃଷ୍ଟ ଏବଂ ପରିଶେଷରେ ସେହିଠାରେ ହିଁ ଲୀନ ହେବ । ଜଗତ୍ ଯଦି ବ୍ରହ୍ମଙ୍କଠାରୁ ସୃଷ୍ଟ, ତେବେ ସୃଷ୍ଟିର ପରେ ପରେ ବ୍ରହ୍ମଙ୍କର ପୂର୍ଣ୍ଣତାରୁ କିଛି ଊଣା ପଡ଼ିଯାଇଛି କି ? ଏହାର ଉତ୍ତର ନାଁ ହେବ । ଉପନିଷଦରେ ନାନା ଆଖ୍ୟାୟିକା ମାଧ୍ୟମରେ ଏହି ସତ୍ୟକୁ ବୁଝାଇ ଦିଆଯାଇଛି । ସେଠାରେ କୁହା ଯାଇଛି, "ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ"; ଅର୍ଥାତ୍ ପୂର୍ଣ୍ଣରୁ ପୂର୍ଣ୍ଣ ଗଲେ ଅବଶେଷ କେବଳ ପୂର୍ଣ୍ଣ ହିଁ ରହିବ । ଅନନ୍ତରୁ ଅନନ୍ତକୁ ବିୟୋଗ କଲେ ଯେ ଫଳ ଶୂନ ହେବ ନାହିଁ ($x - x = 0$ ଭଳି), ଏହା ଏକ ଗାଣିତିକ ସତ୍ୟ ବୋଲି ଆଧୁନିକ ଗାଣିତିକମାନଙ୍କର ମତ । ଏହି ଦୃଷ୍ଟିରୁ ବିଚାର କଲେ ଉପନିଷଦୀୟ ଉପରୋକ୍ତ ଉକ୍ତିଟିର କେବଳ ଯେ ଆଧ୍ୟାତ୍ମିକ ଓ ଦାର୍ଶନିକ ତାତ୍ପର୍ଯ୍ୟ ରହିଛି, ତାହା ନୁହେଁ ; ଏହାର ମଧ୍ୟ ବୈଜ୍ଞାନିକ ଯୁକ୍ତିନିଷ୍ଠତା ରହିଛି ।

ଉପନିଷଦରେ 'ସତ୍ୟ' ଓ 'ମାୟା' ବିଷୟରେ ମଧ୍ୟ ବିଚାର କରି ଯାଇଛି । ଯାହା ଚିରନ୍ତନ ତାହା ହେଉଛି ସତ୍ୟ । ଯାହା ଚିରନ୍ତନ ନୁହେଁ ତାହା ଅସତ୍ୟ । ଅତଏବ, ଏହି ବ୍ୟକ୍ତ ଜଗତ୍ ଚିରନ୍ତନ ହୋଇ ନଥିବାରୁ ତାହା ଅସତ୍ୟ । ବ୍ରହ୍ମଙ୍କୁ ହିଁ କେବଳ ବୃହଦାରଣ୍ୟକ ଉପନିଷଦରେ (୨।୧) କୁହା ଯାଇଛି 'ସତ୍ୟସ୍ୟ ସତ୍ୟମ୍' ବା ସତ୍ୟର ସତ୍ୟ ବୋଲି । ଏହି ବ୍ୟକ୍ତ ଜଗତ୍ ଅଛି ବୋଲି ଆପାତ ପ୍ରତୀୟମାନ ହେଉଛି ବା ଆପାତ ସତ୍ୟ ବୋଲି ଜଣା ପଡ଼ୁଛି । କିନ୍ତୁ ଏହା ଯେଉଁଠାରୁ ଆସିଛି, ସେହି ପରଂବ୍ରହ୍ମ ହେଉଛନ୍ତି ପରମ ସତ୍ୟ । ବ୍ରହ୍ମଙ୍କୁ 'ସତ୍ୟର ସତ୍ୟ' ବୋଲି କହିବାର ତାତ୍ପର୍ଯ୍ୟ ଅଛି ଏଇଠି । ଏହାର

ଅର୍ଥ ନୁହେଁ ଯେ ସତ୍ୟ ଦୁଇଟା ଅଛି । ବ୍ରହ୍ମ ସତ୍ୟ ଏବଂ ଜଗତ୍ ମିଥ୍ୟା ବୋଲି କହିବାରେ ଏହା ହିଁ ହେଉଛି ଯଥାର୍ଥତା । ଏଥିରୁ କେହି ଯେପରି ଅର୍ଥ ନ କରନ୍ତି ଯେ ଜଗତ୍ ବୋଲି କିଛି ନାହିଁ ; ଏହା ଏକ ମରୀଚିକା । ଆମେ ବ୍ୟକ୍ତ ଜଗତ୍‌କୁ ଦେଖି ପାରୁଛୁ ; ଅନୁଭବ କରି ପାରୁଛୁ । ତେଣୁ ଏହା ନାହିଁ ବୋଲି କହିବା ଠିକ୍ ହେବ ନାହିଁ । ଅସତ୍‌ର ପ୍ରକୃତ ପରିଭାଷା ଆମେ ଅନ୍ୟ ଭାଷାରେ ନ ପାଇ ତାହାକୁ ମିଥ୍ୟା ବୋଲି କହି ଦେଉଛୁ । ବ୍ରହ୍ମ ହେଉଛନ୍ତି ଅକ୍ଷୟ, ଅବ୍ୟୟ ଓ ଅପରିବର୍ତ୍ତନୀୟ । ସେହି ଅପରିବର୍ତ୍ତନୀୟ ବ୍ରହ୍ମ ଯେତେବେଳେ ପରିବର୍ତ୍ତନୀୟ ବ୍ୟକ୍ତ ଜଗତରେ ପ୍ରକଟିତ ହୁଅନ୍ତି, ତାହାର ଫଳଶ୍ରୁତିକୁ ମିଥ୍ୟା ମରୀଚିକା ବୋଲି କହି ଏଡ଼େଇ ଦେଇ ହେବ ନାହିଁ । ଏହା ହେଉଛି ମାୟା, ଯାହାକୁ କ କଥାରେ କହି ହେବ ନାହିଁ । ରାଧାକୃଷ୍ଣନ୍‌ଙ୍କ ଭାଷାରେ ଏହି ମାୟା ହେଉଛି ଅନିର୍ବଚନୀୟ ରହସ୍ୟ । ମାୟାର ଏବଂବିଧ ଅର୍ଥ କରିବାକୁ ଯାଇ ରାଧାକୃଷ୍ଣନ୍ କହିଛନ୍ତି ;

> "When the Absolute is taken as pure Being, its relation to the world is inexplicable, (*anirvachaniya*) we know that without the background of Being, there can be no world. The relation between the two cannot be logically explicated. This inexplicability of the logical relationship does not repudiate the existence of the world. It does not say that the world is not, though it appears to be." (୩୭)

ଏ ଜଗତ୍ କେମିତି ଓ କାହିଁକି ରହିଛି, ତାହା ଆମେ କହି ପାରିବା ନାହିଁ । ଏହି ଅନିର୍ବଚନୀୟ ରହସ୍ୟାତ୍ମକ ସ୍ଥିତି ହେଉଛି ମାୟା । ଏହା ହେଉଛି ଈଶ୍ୱରଙ୍କର ସେହି ଶକ୍ତି ଯାହା ଦ୍ୱାରା ସେ ଏହି ବ୍ୟକ୍ତ ଜଗତକୁ ଗଢ଼ିଛନ୍ତି । ଅତଏବ ସଂସାରକୁ ମିଛ ମରୀଚିକା କହି ଉଡ଼ାଇ ଦେବା କଥା ଆଦୌ ଉପନିଷଦରେ ଚିନ୍ତା କରା ଯାଇନାହିଁ । ରାଧାକୃଷ୍ଣନ୍ ମଧ୍ୟ ଆଉ ଠାଏ ସ୍ପଷ୍ଟ କରି କହିଛନ୍ତି :

> "ଯଦି ଜଗତ୍ ସର୍ବଥା ମିଥ୍ୟା ହୈ, ତୋ ହମ୍ ମିଥ୍ୟା ସେ ସତ୍ୟ ପର୍ ପହୁଂଚ ନହି ସକ୍‌ତେ । (୩୮)

ଜଗତ୍ ଯଦି ମିଥ୍ୟା ହେବ, ତେବେ ଆମେ ବି ହୋଇଯିବା ମିଥ୍ୟା ; ଉପନିଷଦର ଋଷିମାନେ ମଧ୍ୟ ହୋଇଯିବେ ମିଥ୍ୟା ; ସତ୍ୟ ନିକଟରେ ପହଞ୍ଚିବା ପାଇଁ ସେମାନଙ୍କ ବାଣୀ ମଧ୍ୟ ହୋଇଯିବ ମିଥ୍ୟା । କଠୋପନିଷଦର ଉଦ୍‌ବୋଧନୀ ବାଣୀ 'ଅସତୋ ମା ସଦ୍ ଗମୟ'

(ଅସତ୍‌ରୁ ସତରେ ସତ୍ୟକୁ ନିଅ), ଏହାର୍ ଆଉ କିଛି ହିଁ ଅର୍ଥ ରହିବ ନାହିଁ । ଅତଏବ, ଜଗତକୁ କୌଣସି ମତେ ମିଥ୍ୟା ବୋଲି ଉଡ଼ାଇ ଦେବାର କଳ୍ପନା ଉପନିଷଦରେ କରାଯାଇନାହିଁ । ଏଭଳି ଯେଉଁମାନେ କହନ୍ତି, ସେମାନେ ଉପନିଷଦବାଣୀର କଦର୍ଥ କରନ୍ତି ବୋଲି ବୁଝିବାକୁ ହେବ ।

ଉପନିଷଦରେ ସଦାଚାର ଉପରେ ମଧ୍ୟ ଗୁରୁତ୍ୱ ଦିଆ ଯାଇଛି । ସଦାଚାରୀ ହେଲେ ଶୁଭ କଳ୍ପନା ଆସିବ ; ଶୁଭ କଳ୍ପନା ଆସିଲେ ଶୁଭ କର୍ମ କରାଯିବ ; ଏବଂ ଶୁଭକର୍ମ କଲେ ଶୁଭ ଫଳ ମିଳିବ । ଏହି ଯେଉଁ କର୍ମର କେତେଟି ବିଧିମାନ, ତାହା ଠିକ୍ ଭାବରେ କାମ କରିବା ପାଇଁ ସଦାଚାରର ଆବଶ୍ୟକତା ରହିଛି । ଛାନ୍ଦୋଗ୍ୟ ଉପନିଷଦରେ (୩।୧୭) ଜୀବନକୁ ଗୋଟିଏ ଯଜ୍ଞ ସହିତ ତୁଳନା କରାଯାଇଛି ଏବଂ ଏଥିରେ ତପସ୍ୟା, ଦାନ, ସାଧୁତା, ଅହିଂସା ଓ ସତ୍ୟବାଦିତାକୁ ଦକ୍ଷିଣା ସ୍ୱରୂପ କଳ୍ପନା କରାଯାଇଛି । ତୈତ୍ତିରୀୟ ଉପନିଷଦ୍‌ର ବ୍ରହ୍ମଚାରୀଙ୍କ ଲାଗି ଯେଉଁ କର୍ତ୍ତବ୍ୟସୂଚୀ ରଖା ଯାଇଛି, ତହିଁରେ ସତ୍ୟ, ପରୋପକାର, ଅହିଂସା ଆଦି ଅନ୍ତର୍ଗତ । ସତ୍ୟନିଷ୍ଠ ଭାବରେ ଜୀବନଯାପନ ପାଇଁ ଛାନ୍ଦୋଗ୍ୟ ଉପନିଷଦସ୍ଥ (୪।୪) ସତ୍ୟକାମ ଉପାଖ୍ୟାନରେ ଉପଦେଶ ଦିଆ ଯାଇଛି ।

ବର୍ତ୍ତମାନ ପୂର୍ବୋକ୍ତ ଦଶଗୋଟି ପ୍ରଧାନ ଉପନିଷଦ ବିଷୟରେ ପୃଥକ୍ ପୃଥକ୍ ଭାବରେ କିଛି ସୂଚନା ଦେବା ।

**ଈଶ ଉପନିଷଦ :**

ଏହା ମାଧ୍ୟନ୍ଦିନ ଶାଖାସ୍ଥ ଶୁକ୍ଳଯଜୁର୍ବେଦର ୪୦ତମ ଅଧ୍ୟାୟ । ଏଥିରେ ସର୍ବମୋଟ ୧୮ଟି ମନ୍ତ୍ର ଅଛି । ଏହି ଉପନିଷଦର ଆରମ୍ଭ ହେଉଛି 'ଈଶାବାସ୍ୟମିଦଂ ସର୍ବମ୍' ପଙ୍କ୍ତିରେ । ଏଣୁ ଏହାକୁ 'ଈଶାବାସ୍ୟ ଉପନିଷଦ୍' ବୋଲି ମଧ୍ୟ କୁହା ଯାଇଥାଏ । ଯଜୁର୍ବେଦ ସଂହିତାର ଆଲୋଚନା ପ୍ରସଙ୍ଗରେ ପୂର୍ବବର୍ତ୍ତୀ ଅଧ୍ୟାୟରେ ଏହା କେଉଁ ପୃଷ୍ଠଭୂମିରେ ସୃଷ୍ଟ ହୋଇଥିଲା, ସେ ବିଷୟରେ ସୂଚନା ଦିଆ ଯାଇଅଛି । ଏହା ଏକ ସମନ୍ୱୟବାଦୀ ଉପନିଷଦ୍ । ଏଥିରେ ତ୍ୟାଗ ଓ ଭୋଗ ମଧ୍ୟରେ, ଜ୍ଞାନ ଓ କର୍ମ ମଧ୍ୟରେ, ବିଦ୍ୟା ଓ ଅବିଦ୍ୟା ମଧ୍ୟରେ, ବସ୍ତୁବାଦ ଓ ଅଧ୍ୟାତ୍ମବାଦ ମଧ୍ୟରେ, ଏକେଶ୍ୱର ବ୍ରହ୍ମବାଦ ଓ ବହୁଦେବତାବାଦ ମଧ୍ୟରେ କିଭଳି ଭାବରେ ସମନ୍ୱୟ ଅଣାଇ ସାର୍ଥକ ଜୀବନ ଯାପନ କରାଯାଇ ପାରିବ, ସେ ବିଷୟରେ ପରାମର୍ଶ ଦିଆ ଯାଇଛି । ଆକାରରେ କ୍ଷୁଦ୍ର ହେଲେ ହେଁ ଏହା ସମସ୍ତ ଉପନିଷଦଠାରୁ ଗୌରବରେ ମହତ୍ତମ । ମହାତ୍ମା ଗାନ୍ଧୀଙ୍କ ମତ ହେଲା, ଏହାର ପ୍ରଥମ ମନ୍ତ୍ରରେ ହିଁ ସମଗ୍ର ଭାରତୀୟ ସଂସ୍କୃତିର ସାରବସ୍ତୁ ବର୍ତ୍ତିତ । ଏହି ପ୍ରଥମ ମନ୍ତ୍ରଟି ହେଲା :

"ଈଶା ବାସ୍ୟମିଦଂ ସର୍ବଂ ଯତ୍‌କିଞ୍ଚ ଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧ କସ୍ୟସ୍ୱିଦ୍ଧନମ୍ ।।"

ଅର୍ଥାତ୍ ଏ ସଂସାରରେ ଯାହା କିଛି ଚଳନଶୀଳ, ସବୁଥିରେ ଭଗବାନଙ୍କ ସତ୍ତା ବିଦ୍ୟମାନ । ତ୍ୟାଗର ଭାବ ନେଇ ତୁମେ ତାହାକୁ ଉପଭୋଗ କରିଯାଅ ; କାହାରି ଧନ ପ୍ରତି ଲୋଭ କର ନାହିଁ । ଏହି ଉପନିଷଦର ଏକାଦଶ ମନ୍ତ୍ରରେ ବଡ଼ କୌତୂହଳପ୍ରଦ କଥାଟିଏ କୁହା ଯାଇଛି । ସେଠାରେ 'ଅବିଦ୍ୟା'ଓ 'ବିଦ୍ୟା' ଉଭୟ ମଧ୍ୟରେ ସମନ୍ୱୟ ଆଣି ଉଭୟର ଆରାଧନା କରିବା ପାଇଁ କୁହା ଯାଇଛି ଏବଂ ଆଉ କୁହା ଯାଇଛି ଯେ ଅବିଦ୍ୟା ସାହାଯ୍ୟରେ ମୃତ୍ୟୁକୁ ତରି ଯାଇ ବିଦ୍ୟା ସାହାଯ୍ୟରେ ଅମୃତତ୍ୱ ପାଇବାକୁ ହେବ । ଏହାର ତାତ୍ପର୍ଯ୍ୟ ହେଲା, ବିଦ୍ୟା ଓ ଅବିଦ୍ୟା ଦ୍ୱାରା ଅମୃତତ୍ୱ ପାଇବାକୁ ହେବ । ଏହା ଆପାତବିରୋଧୀ ଜଣା ପଡ଼ୁଛି ; କିନ୍ତୁ ଏହି ମନ୍ତ୍ରଟିକୁ ଗଭୀର ଭାବରେ ଅନୁଧ୍ୟାନ କଲେ ଆମେ ସେପରି କିଛି ବିରୋଧିତା ଦେଖିବାକୁ ପାଇବା ନାହିଁ ; ବରଂ ପରସ୍ପରର ପରିପୂରକତା ଦେଖିବାକୁ ପାଇବା । ବ୍ରହ୍ମ ବା ଆତ୍ମା ଏକ ହେଲେ ମଧ୍ୟ ଏହାଙ୍କର ଦୁଇଟି ସ୍ୱଭାବ ବର୍ତ୍ତମାନ । ଗୋଟିଏ ହେଲା ଏହାଙ୍କ ଅଚଞ୍ଚଳତା ଏବଂ ଅପରଟି ହେଲା ଏହାଙ୍କ ଶକ୍ତି ବଳରେ ପରିବର୍ତ୍ତନଶୀଳତା, ଯାହା ମାୟା ନାମରେ ଖ୍ୟାତ । ଏହି ପରିବର୍ତ୍ତନ ଜଗତ ସଦା ଅବିରାମ ଗତିରେ ଚାଲିଛି ; ସେ କିନ୍ତୁ ନିଜେ ଅଚଳ ସ୍ଥିର ନିଶ୍ଚଳ । ନିଜେ ସେ ଏକ ; କିନ୍ତୁ ବହୁ ରୂପରେ ପ୍ରତିଭାତ ହୁଅନ୍ତି । ଏହି ଏକତ୍ୱ, କ୍ଷରତ୍ୱ ଓ ଅକ୍ଷରତ୍ୱକୁ ଜାଣିବା ହେଲା ପ୍ରକୃତ ବିଦ୍ୟା । ବହୁତ୍ୱରେ ଯଦି ଏକତ୍ୱର ସନ୍ଧାନ ନ ମିଳିଲା, ତେବେ ତାହା ଅବିଦ୍ୟା । ରାଧାକୃଷ୍ଣନ୍‌ଙ୍କ ମତରେ :

> "Unity constitutes the base of multiplicity and upholds it ; but multiplicity does not constitute and uphold the unity (୩୯)"

ଏହି ଐକ୍ୟ ଓ ଅନୈକ୍ୟ ମଧ୍ୟରେ ଯେ ପ୍ରଭେଦ ନିରଖିଲା, ସେହି ହେଉଛି ପ୍ରକୃତ ଜ୍ଞାନୀ । ଏହି ପରମ ଜ୍ଞାନର ଅମୃତ ପାନ କରି ସେ ଅମର ହୋଇ ପାରିବ । ସାରା ବିଶ୍ୱ ଏହି ଯେଉଁ ଐକ୍ୟର ସୂତ୍ରରେ ଗୁନ୍ଥା ହୋଇଛି, ତାହାରି ଉପରେ ହିଁ ଶଂସିତ ମନ୍ତ୍ରରେ ଗୁରୁତ୍ୱ ଆରୋପ କରା ଯାଇଛି । ରାଧାକୃଷ୍ଣନଙ୍କର ଅଧିକାଂଶ ଲେଖାରେ ଏହି ଐକ୍ୟବୋଧ ପ୍ରକଟିତ । (୪୦)

ଏହି ଉପନିଷଦର ଦେବତା ହେଉଛନ୍ତି 'ପୂଷନ୍' ବା ସୂର୍ଯ୍ୟ ବା ପୋଷଣକର୍ତ୍ତା ଭଗବାନ୍ । ତାଙ୍କରି ଦୟାରୁ ଯାଜ୍ଞବଲ୍କ୍ୟ ମୁନିଙ୍କଠାରେ ଦିବ୍ୟ ଜ୍ଞାନର ଉଦୟ ହୋଇଥିଲା ଏବଂ ସେ ଏହି ଉପନିଷଦ ମନ୍ତ୍ରଗୁଡ଼ିକ ରଚନା କରିଥିଲେ ବୋଲି ବୈଦିକ ପରମ୍ପରା କହିଥାଏ ।

**କେନ ଉପନିଷଦ :**

ଏହି ଉପନିଷଦର ଆରମ୍ଭ ହୋଇଛି, 'କେନେଷିତଂ ପତତି' ପଙ୍‌କ୍ତିଟିରୁ । ଏଣୁ ଏହାର ନାମ ରଖା ଯାଇଛି କେନ ଉପନିଷଦ । କାହାଙ୍କ ଇଚ୍ଛାରେ ଗଛରୁ ପତ୍ରଟିଏ ପଡ଼ୁଛି,

କାହାଙ୍କ ଇଚ୍ଛାରେ ଫୁଲଟିଏ ଫୁଟୁଛି, ଏହିପରି ନାନା ପ୍ରଶ୍ନ ଉପନିଷଦର ଋଷି ନିଜକୁ ପଚାରିଛନ୍ତି ଏବଂ ଶେଷରେ ନିଜେ ହିଁ ତାହାର ଉତ୍ତର ଦେଇ କହିଛନ୍ତି, ଏହା ସବୁ ଘଟୁଛି ସେହି ବ୍ରହ୍ମଙ୍କ ପ୍ରଭାବରୁ । ଏହି ଉପନିଷଦଟି ଅତି କ୍ଷୁଦ୍ର ; ଜମା ଚାରି ଖଣ୍ଡରେ ବିଭକ୍ତ । କିନ୍ତୁ ଏହାର ଗୁରୁତ୍ୱ କିଛି କମ୍ ନୁହେଁ । ଏଥିରେ ଉପାସ୍ୟ ବ୍ରହ୍ମ ଓ ନିର୍ଗୁଣ ବ୍ରହ୍ମଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ବିଷୟରେ ଆଲୋଚନା କରାଯାଇଛି । ତୃତୀୟ ଓ ଚତୁର୍ଥ ଖଣ୍ଡରେ ପରମ ବ୍ରହ୍ମଙ୍କର ମହିମା, ଯେ କି ଉମା ହୈମବତୀ ରୂପରେ ଆବିର୍ଭୂତା ହୋଇଥିଲେ, ତାହା ଏକ ରୋଚକ ଆଖ୍ୟାୟିକା ମାଧ୍ୟମରେ ବର୍ଣ୍ଣନା କରାଯାଇଛି । ଥରେ ଦେବତା-ମାନଙ୍କ ମଧ୍ୟରେ କିଏ ବଡ଼ ବୋଲି ବିବାଦ ହେଲା । ଏହି ବିବାଦର ପରୀକ୍ଷା କରାଗଲା କୁଟା ଖିଅଟିଏ ଉପରେ । ଅଗ୍ନି ଶତ ଚେଷ୍ଟା କରି ମଧ୍ୟ ତାହାକୁ ପୋଡ଼ି ପାରିଲେ ନାହିଁ । ସେହିପରି ବାୟୁ ମଧ୍ୟ ତାହାକୁ ଉଡ଼ାଇ ପାରିଲେ ନାହିଁ । ସେମାନଙ୍କ ସମସ୍ତ ମୁଣ୍ଡ ନିଜରେ ନଇଁଗଲା । ଏହି ସମୟରେ ବ୍ରହ୍ମସ୍ୱରୂପିଣୀ ହୈମବତୀ ଉମା ଆବିର୍ଭୂତା ହୋଇ ସେମାନଙ୍କ ସନ୍ଦେହ ଦୂର କରିଦେଲେ ଏବଂ ମୋହ ଭାଙ୍ଗି ଦେଲେ । ସେ କହିଲେ ଯେ, ଏକମାତ୍ର ଶକ୍ତି ଅଛି ବ୍ରହ୍ମଙ୍କଠାରେ । ତାଙ୍କ ବିନା ସାହାଯ୍ୟରେ କୌଣସି ଦେବତା କିଛି କରି ପାରିବେ ନାହିଁ । ଏହି ଆଖ୍ୟାୟିକାଟିରୁ ଜଣାପଡ଼େ ଯେ ସେତେବେଳେ ଶକ୍ତି-ଉପାସନାର ଏକ ଭ୍ରୂଣାତ୍ମକ ବିକାଶ ଘଟିଥିଲା । ପରେ ଅବଶ୍ୟ ଏହାର ଭୂୟିଷ୍ଠବିକାଶ ଘଟି ଏହା ଉପାସନାର ଏକ ସ୍ୱତନ୍ତ୍ର ମାର୍ଗ ହିସାବରେ ପ୍ରସିଦ୍ଧି ଲାଭ କରିଥିଲା ।

## କଠ ଉପନିଷଦ :

କଠ ଉପନିଷଦ ହେଉଛି କୃଷ୍ଣ ଯଜୁର୍ବେଦୀୟ କଠ ଶାଖାର ଉପନିଷଦ । ଏହା କଠ ଗଣରାଜ୍ୟରେ ସୃଷ୍ଟ ହୋଇଥିଲା । ଏହି ଉପନିଷଦରେ ଅଦ୍ୱୈତବାଦ ଗମ୍ଭୀର ଭାବରେ ବ୍ୟାଖ୍ୟାତ । ନଚିକେତା ଉପାଖ୍ୟାନଟି ଏହି ଉପନିଷଦର ଅନ୍ତର୍ଗତ । ଯେଉଁ ବିଦ୍ୟାରେ ଅମୃତତ୍ୱ ମିଳିବ, ନଚିକେତା ସେହି ବିଦ୍ୟା ଜାଣିବା ପାଇଁ ଆଗ୍ରହୀ ହୋଇ ଉଠିଥିଲେ ଏବଂ ଯମଙ୍କ ପାଖକୁ ଯାଇ ସେହି ବିଦ୍ୟା ଶିଖିବାକୁ ଚାହିଁଥିଲେ । ଏହି ବ୍ରହ୍ମବିଦ୍ୟାର ତାତ୍ପର୍ଯ୍ୟ କ'ଣ, ତାହା ଯମ ନଚିକେତାଙ୍କୁ ବୁଝାଇଥିଲେ । ବ୍ରହ୍ମଜ୍ଞାନ ବିଷୟକ ଚର୍ଚ୍ଚା ହେଉଛି ମୁଖ୍ୟତଃ ଏହି ଉପନିଷଦର ବିଷୟବସ୍ତୁ । ଆତ୍ମା ବା ପରଂବ୍ରହ୍ମ କିପରି ଭାବରେ ସାଧକଙ୍କୁ ଲବ୍ଧ ହେବେ ସେ ସମ୍ପର୍କରେ ଏହି ଉପନିଷଦରେ ଠିଏ କୁହା ଯାଇଛି :

"ନାୟମାତ୍ମା ପ୍ରବଚନେନ ଲଭ୍ୟୋ
ନ ମେଧୟା ନ ବହୁନା ଶ୍ରୁତେନ ।
ଯମେବୈଷ ବୃଣୁତେ ତେନ ଲଭ୍ୟ-
ସ୍ତସ୍ୟୈଷ ଆତ୍ମା ବିବୃଣୁତେ ତନୂଂ ସ୍ୱାମ୍ ॥" (୪୧)

ଅର୍ଥାତ୍ ଏହି ଆତ୍ମା ବେଦପାଠରେ ମିଳି ପାରିବେ ନାହିଁ ; ବୁଦ୍ଧି ଦ୍ୱାରା ମିଳି ପାରିବେ ନାହିଁ କିମ୍ବା ଗୁରୁଙ୍କ ଉପଦେଶ ବାଣୀ ଶୁଣିବା ଦ୍ୱାରା ମିଳି ପାରିବେ ନାହିଁ । ଏହି ସାଧକ ଯେଉଁ ଆତ୍ମାଙ୍କୁ ବରଣ କରନ୍ତି, ତାଙ୍କୁ ସେ ପାଇ ପାରନ୍ତି । ତାଙ୍କ ପାଇଁକି ସେହି ଆତ୍ମା ନିଜକୁ ଅଭିବ୍ୟକ୍ତ କରି ଦେଇଥାନ୍ତି । ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନ କେବଳ ନିଷ୍ଠାର ସହିତ ଶ୍ରଦ୍ଧା କଲେ ଯେ ଅନୁଭୂତି ମାଧ୍ୟମରେ ମିଳି ପାରିବ, ଏହି କଥାଟି ଏଠାରେ ବ୍ୟକ୍ତ । ଶରୀରରେ ଆତ୍ମା କିପରି ରଥୀ ଭାବରେ ଅବସ୍ଥିତ ସେ କଥା ଯମ ନଚିକେତାଙ୍କୁ ବୁଝାଇବାକୁ ଯାଇ କହୁଛନ୍ତି ଃ

"ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥମେବ ତୁ ।
ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃ ପ୍ରଗ୍ରହମେବ ଚ ।।" (୪୨)

ଅର୍ଥାତ୍ ତୁମେ ଆତ୍ମାଙ୍କୁ ରଥୀ ବୋଲି ଜାଣ ; ଶରୀରକୁ ରଥ ବୋଲି ଜାଣ ; ବୁଦ୍ଧିକୁ ସାରଥି ବୋଲି ଜାଣ ; ଏବଂ ମନକୁ ଲଗାମ ବୋଲି ଜାଣ । ନିଜ ଶରୀର ଭିତରେ ଯେ ଆତ୍ମା ବିଦ୍ୟମାନ, ଏହି ଭାବଟି ଏଠାରେ ଦ୍ୟୋତିତ । ଭଗବଦ୍‌ଗୀତାରେ ମଧ୍ୟ ଅବିକଳ ଏହି ଧ୍ୱନି ଅନୁରଣିତ ।

## ପ୍ରଶ୍ନ ଉପନିଷଦ :

ଏହି ଉପନିଷଦରେ ଛଅ ଜଣ ଋଷି ବ୍ରହ୍ମବିଦ୍ୟାର ଅନୁସନ୍ଧାନରେ ଯାଇ ମହର୍ଷି ପିପ୍‌ପଲାଦଙ୍କୁ ସାକ୍ଷାତ କଲେ ଏବଂ ତାଙ୍କୁ ଏ ସମ୍ପର୍କରେ ନାନା ପ୍ରଶ୍ନ ପଚାରିଲେ । ତାଙ୍କ ଉତ୍ତରଗୁଡ଼ିକ ଏହି ଉପନିଷଦରେ ବର୍ଣ୍ଣିତ । ଅଧ୍ୟାତ୍ମ ଜ୍ଞାନ ବିଷୟକ ପ୍ରଶ୍ନ ଓ ଉତ୍ତର ଏଥିରେ ରହିଥିବାରୁ ଏହାର ନାମ ହୋଇଛି ପ୍ରଶ୍ନ ଉପନିଷଦ । ପ୍ରଶ୍ନଗୁଡ଼ିକ ସ୍ଥୂଳତଃ ନିମ୍ନଲିଖିତ ବିଷୟ ନେଇ ପଚରା ଯାଇଛି ;

(କ) ପ୍ରଜାମାନଙ୍କ ସମ୍ଭବ କେଉଁଠାରୁ ହୋଇଛି ?
(ଖ) କେତେ ଜଣ ଦେବତା ପ୍ରଜାମାନଙ୍କୁ ଧାରଣ କରିଛନ୍ତି ?
(ଗ) କେଉଁ ଦେବତାମାନଙ୍କ ମହିମାରେ ଏମାନେ ପ୍ରକାଶିତ ?
(ଘ) ଦେବତାମାନଙ୍କ ମଧ୍ୟରେ କିଏ ବଡ଼ ଓ କିଏ ସାନ ?
(ଙ) ଶରୀର ଓ ପ୍ରାଣର ଉତ୍ପତ୍ତି କିପରି ହୋଇଛି ?
(ଚ) ସ୍ୱପ୍ନ, ଜାଗରଣ ଓ ସ୍ୱପ୍ନ ଦର୍ଶନର ତାତ୍ପର୍ଯ୍ୟ କ'ଣ ?
(ଛ) ଓଁକାର ପୁରୁଷଙ୍କର କିପରି ଆରାଧନା କରିବାକୁ ହେବ ?
(ଜ) ଷୋଡ଼ଶକଳା ସମ୍ପନ୍ନ ପୁରୁଷ କାହାଙ୍କୁ କୁହାଯାଏ ?

ଏହି ଉପନିଷଦରେ ପ୍ରାଣଙ୍କୁ ଆବାହନ କରି ଋଷି କହୁଛନ୍ତି :

"ଇନ୍ଦ୍ରସ୍ତ୍ୱଂ ପ୍ରାଣ ତେଜସା ରୁଦ୍ରୋଽସି ପରିରକ୍ଷିତା ।
ତ୍ୱମନ୍ତରୀକ୍ଷେ ଚରସି ସୂର୍ଯ୍ୟସ୍ତ୍ୱଂ ଜ୍ୟୋତିଷାଂ ପତିଃ ।।

ଅର୍ଥାତ୍ ହେ ପ୍ରାଣ ! ତୁମେ ହେଉଛ ଇନ୍ଦ୍ର ; ନିଜ ତେଜ ବଳରେ ତୁମେ ହେଉଛ ରୁଦ୍ର ; ପୁଣି ସୌମ୍ୟ ରୂପରେ ସବୁ ଦିଗକୁ ତୁମେ ରକ୍ଷା କରୁଛ ; ତୁମେ ଜ୍ୟୋତିଷ୍କମାନଙ୍କର ରାଜା ସୂର୍ଯ୍ୟ ହୋଇ ଆକାଶରେ ବିଚରଣ କରୁଛ । ପ୍ରାଣ ଅର୍ଥ ଏଠାରେ ବ୍ରହ୍ମ ଯାହାଙ୍କର ବିଦ୍ୟମାନତାରେ ହିଁ ବସ୍ତୁର ବସ୍ତୁତ୍ୱ ରହିଥାଏ । ଏଠାରେ ସାରା ବିଶ୍ୱରେ ଗୋଟିଏ ଆତ୍ମାର ସତ୍ତ୍ୱର ଅଛି ବୋଲି କୁହା ଯାଇଛି । ବିଶ୍ୱର ଆପାତ ପ୍ରତୀୟମାନ ବିଭିନ୍ନତା ମଧ୍ୟରେ ଏହା ହିଁ ହେଉଛି ଏକତାର ଏକ ମାତ୍ର ସୂତ୍ର ଯାହା କି ସମସ୍ତଙ୍କୁ ବାନ୍ଧି ରଖିଛି ଏବଂ ସମସ୍ତଙ୍କଠାରେ ଐକ୍ୟ-ପ୍ରତିପାଦନ କରାଇ ପାରିଛି ।

**ମୁଣ୍ଡକ-ଉପନିଷଦ :**

ଏହା ଅଥର୍ବ ବେଦୀୟ ଏକ ଉପନିଷଦ । ଏଥିରେ ତିନୋଟି 'ମୁଣ୍ଡକ' ଅଛି ଏବଂ ପ୍ରତ୍ୟେକ 'ମୁଣ୍ଡକ'ରେ ଦୁଇଟି ଲେଖାଏଁ ଖଣ୍ଡ ଅଛି । ବଳଦେବ ଉପାଧ୍ୟାୟଙ୍କ ମତରେ 'ଏହା ମୁଣ୍ଡନ-ସମ୍ପନ୍ନ ବ୍ୟକ୍ତିମାନଙ୍କ ପାଇଁ ଉଦ୍ଦିଷ୍ଟ ।' (୪୩) ବୁଦ୍ଧଦେବଙ୍କ ସମୟକୁ ମଧ୍ୟ (ଖ୍ରୀ ପୂ. ୬ଷ୍ଠ ଶତାବ୍ଦୀ) ମୁଣ୍ଡିତ-ମସ୍ତକ ଥିବା ଏହିଭଳି ଗୋଟିଏ ଗୋଷ୍ଠୀ ଥିଲେ ବୋଲି ଆମେ 'ଅଙ୍ଗୁତ୍ତର-ନିକାୟ' ଗ୍ରନ୍ଥରେ ଦେଖିବାକୁ ପାଇଥାଉଁ । ସେମାନଙ୍କୁ କୁହାଯାଉଥିଲା 'ମୁଣ୍ଡ-ସାବକ' (ସଂସ୍କୃତରେ ମୁଣ୍ଡ-ଶ୍ରାବକ) । (୪୪) ସେମାନେ ହୁଏତ ଏହି 'ମୁଣ୍ଡକ' ଗୋଷ୍ଠୀର ଲୋକ ହୋଇ ପାରନ୍ତି । ଏହି ଉପନିଷଦରେ ବ୍ରହ୍ମା ତାଙ୍କ ବଡ଼ ପୁଅ ଅଥର୍ବାଙ୍କୁ ବ୍ରହ୍ମବିଦ୍ୟା ସମ୍ପର୍କରେ ଉପଦେଶ ଦେଉଛନ୍ତି । ସେ ସ୍ପଷ୍ଟ ଭାବରେ କହୁଛନ୍ତି ଯେ ଯଜ୍ଞୀୟ ଅନୁଷ୍ଠାନ ଦ୍ୱାରା ସଂସାର-ସାଗରକୁ କଦାପି ପାର ହେବା ସମ୍ଭବ ନୁହେଁ । ଏହା ଏକ ଅଦୃଢ଼ ପ୍ଲବ ; ଏଥି ପାଇଁ 'ବ୍ରହ୍ମବିଦ୍ୟା'ର ଦୃଢ଼ ପ୍ଲବଟିର ଆବଶ୍ୟକତା ରହିଛି । ଏଥିରେ କର୍ମ-କାଣ୍ଡକୁ ତୁଚ୍ଛ ବୋଲି କୁହାଯାଇ ତାହାର ଊର୍ଦ୍ଧ୍ୱରେ ଥିବା ଜ୍ଞାନ-ମାର୍ଗ ଉପରେ ପ୍ରାଧାନ୍ୟ ଦିଆ ଯାଇଛି ଏବଂ ମାନବ ଜୀବନର ଚରମ ଲକ୍ଷ୍ୟ ନିଃଶ୍ରେୟସ୍ ଲାଭ କରିବାକୁ ହେଲେ ସର୍ବୋଚ୍ଚ ଜ୍ଞାନ ହେଉଛି ବ୍ରହ୍ମଜ୍ଞାନ ବୋଲି କୁହାଯାଇଛି । ଏଥିରେ ସ୍ପଷ୍ଟ ଭାବରେ କୁହାଯାଇଛି ଯେ କର୍ମକାଣ୍ଡର ଅନୁଗାମୀମାନେ ହୁଏତ ସ୍ୱର୍ଗକୁ ଯାଇ ପାରନ୍ତି । କିନ୍ତୁ ସେମାନଙ୍କ ପୁଣ୍ୟ ଶେଷ ହୋଇଗଲେ, ସେମାନଙ୍କୁ ସ୍ୱୀୟ କର୍ମ-ଫଳ ଭୋଗିବାକୁ ପୁଣି ଥରେ ପୃଥିବୀରେ ଜନ୍ମ ନେବାକୁ ପଡ଼ିବ । (୪୫) ଏହି ସ୍ୱର୍ଗକୁ କିଏ କହେ ଈଶ୍ୱର ; ଆଉ ବା କିଏ କହେ ହିରଣ୍ୟଗର୍ଭ । ଏହା ସୃଷ୍ଟ ; ଅତଏବ ବିନାଶଶୀଳ । ଏହା ଶେଷରେ ଯାଇ ଲୀନ ହେବ ପରଂବ୍ରହ୍ମଙ୍କ ସହିତ, ଯେ 'ସତ୍' ବା ସଦା ବିରାଜିତ ଏବଂ ଯାହାଙ୍କର ସୃଷ୍ଟି ନାହିଁ କିମ୍ବା ଅନ୍ତ ନାହିଁ । ରାଧାକୃଷ୍ଣନ୍ ଠିକ୍ ଏଇଆ ହିଁ କହିଛନ୍ତି । ତାଙ୍କ ମତ ହେଲା :

"The liberated individuals attain communion with *Iswara* and not *Brahman*. Sankara supports

the view of *Moksya* as attaining the nature of *Iswara*. When all the *Jivas* attain liberation, the world with the liberated souls lapses into the Absolute, where there is neither subject nor object, neithre world nor God.'' (୪୬)

ବାସ୍ତବିକ, ଏହି ତତ୍ତ୍ୱ ଉପରେ ହିଁ ଭିତ୍ତି କରି ପରବର୍ତ୍ତୀ ଯୁଗରେ ବୌଦ୍ଧଧର୍ମର ମହାଯାନ-ଚିନ୍ତାଧାରାର ଉଦ୍ଭବ ହୋଇଛି । ଏହି ଚିନ୍ତାଧାରା ଅନୁଯାୟୀ ସାରା ବିଶ୍ୱ, ଏପରିକି କୀଟାନୁକୀଟ ପର୍ଯ୍ୟନ୍ତ ସମସ୍ତେ ନିର୍ବାଣ ପାଇବା ଲାଗି ଯୋଗ୍ୟ ନ ହେବା ପର୍ଯ୍ୟନ୍ତ ବୁଦ୍ଧଦେବଙ୍କୁ ବୋଧିସତ୍ତ୍ୱ ରୂପରେ ବାରମ୍ବାର ଜନ୍ମ ଗ୍ରହଣ କରିବାକୁ ପଡ଼ୁଥିବ ଏବଂ ସମସ୍ତଙ୍କୁ ସେହି ନିର୍ବାଣର ଅମୃତ ଚଖାଇବା ଲାଗି ଉଦ୍ୟମ କରିବାକୁ ପଡ଼ୁଥିବ ।

ଏହି ଉପନିଷଦର ଆଉ ଗୋଟିଏ ବିଶେଷତ୍ୱ ହେଉଛି, 'ଜୀବାତ୍ମା' ଓ 'ପରମାତ୍ମା' ମଧ୍ୟରେ ଦ୍ୱୈତ ଭାବର କଳ୍ପନା । ଋଗ୍‌ବେଦରୁ ମୁଣ୍ଡକ ଉପନିଷଦରେ 'ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା' ମନ୍ତ୍ରଟି ଆହୃତ । ଏହାକୁ ଭିତ୍ତି କରି ଦ୍ୱୈତବାଦୀମାନେ ସେମାନଙ୍କ ମତର ଯଥାର୍ଥତା ପ୍ରତିପାଦନ ଲାଗି ଚେଷ୍ଟା କରିଥାନ୍ତି । (୪୭) ଆଉ ମଧ୍ୟ ଏଥିରେ (୩।୨।୬) ସର୍ବ ପ୍ରଥମ ଥର ପାଇଁ 'ବେଦାନ୍ତ' ଶବ୍ଦର ଉଲ୍ଲେଖ କରାଯାଇଛି ।

ଏଥିରେ (୧।୧।୭) ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ସମ୍ପର୍କରେ କେତୋଟି ସୁନ୍ଦର ଲୌକିକ ଉଦାହରଣ ଦେଇ ବୁଝାଇ ଦିଆଯାଇଛି । ଏଠି କୁହା ଯାଇଛି, "ବୁଢ଼ିଆଣି ଯେପରି ତା'ର ସୂତାକୁ ଖାଇଯାଏ ଏବଂ ବାହାର କରି ଦିଏ, ଯେମିତି ମାଟି ଉପରେ ଓଷଧିର ବୁଦା ଓ ଗଛମାନ ଜନ୍ମ ନିଅନ୍ତି; ଯେମିତି ମଣିଷର ମୁଣ୍ଡରେ ବାଳ ଉଠେ, ଠିକ୍ ସେମିତି ଅବିନାଶୀ ବ୍ରହ୍ମଙ୍କଠାରୁ ସାରା ବିଶ୍ୱ ଜନ୍ମ ନେଇଥାଏ ।' ଏହି ଅବିନାଶୀ ବ୍ରହ୍ମ କ'ଣ ସେ ବିଷୟରେ ମଧ୍ୟ ଶଂସିତ ଉପନିଷଦରେ ଚିନ୍ତା କରାଯାଇଛି । ସେ 'ଏହା ନୁହନ୍ତି', 'ଏହା ନୁହନ୍ତି' ବୋଲି କେତେକ ନେତିବାଚକ ବାକ୍ୟରେ ତାଙ୍କର ସ୍ୱରୂପ ବିଷୟରେ ବର୍ଣ୍ଣନା କରାଯାଇଛି । (୪୮) ବ୍ରହ୍ମଙ୍କ ସ୍ୱରୂପ ଠିକ୍ ଭାବରେ ବ୍ୟାଖ୍ୟା କରି ଯାଇ ନାହିଁ ବୋଲି ଯେ 'ବ୍ରହ୍ମ'ଙ୍କର ଅସ୍ତିତ୍ୱ ନାହିଁ, ଏହା ଭାବିବା ଠିକ୍ ନୁହେଁ । କାରଣ ତାଙ୍କୁ ଅନ୍ୟତ୍ର କୁହା ଯାଇଛି 'ଅବାଙ୍ଗ୍ ମାନସ-ଗୋଚର' ବୋଲି । ଅର୍ଥାତ୍ ସେ ହେଉଛନ୍ତି ବାକ୍ ଓ ମନର ଅଗୋଚର । ତାଙ୍କୁ ମନରେ ଚିନ୍ତା କରି ହେବ ନାହିଁ କିମ୍ବା ବାକ୍ୟରେ ପ୍ରକାଶ କରି ହେବ ନାହିଁ । ଏହି ଅଚିନ୍ତନୀୟତା ଓ ଅନିର୍ବଚନୀୟତା ବ୍ରହ୍ମଙ୍କୁ ଏକ ସ୍ଥିତି ଆଣି ଦେଇଛି ଯାହାକୁ ପ୍ରକାଶ କରି ହେବ ନାହିଁ । ସେ ସ୍ଥିତି ଅତୀବ ରହସ୍ୟମୟ ! ଋଗ୍‌ବେଦର

ଋଷି ମଧ୍ୟ ସେହିଭଳି ପ୍ରଜାପତିଙ୍କୁ ବିଶ୍ୱର ସ୍ରଷ୍ଟା ଓ ନିୟନ୍ତା ବୋଲି କହି ତାଙ୍କର ଅଶେଷ ସ୍ତୁତି କରିଥିଲେ ଏବଂ ପ୍ରତିଟି ସ୍ତୁତି ମନ୍ତ୍ରର ଶେଷରେ କହିଥିଲେ :

"କସ୍ମୈ ଦେବାୟ ହବିଷା ବିଧେମ ।" (୪-କ)

ଅର୍ଥାତ୍ ଆମେ କେଉଁ ଦେବତାଙ୍କ ଲାଗି ହବି ଅର୍ପଣ କରୁଛୁ ? ଏହାର ଅର୍ଥ ନୁହେଁ ଯେ ଋଷିଙ୍କ ମନରେ ଦେବତାଙ୍କ ଅସ୍ତିତ୍ୱ ବିଷୟରେ ସନ୍ଦେହ ଥିଲା । ଯେ ଯାହାର ଅତି ପ୍ରିୟ, ସେ ତାହାର ସକଳ କାର୍ଯ୍ୟ ବିଷୟରେ ସୁନିଶ୍ଚିତ ହେଲେ ମଧ୍ୟ ସନ୍ଦେହ ପ୍ରକାଶକ ସ୍ୱରରେ ବକ୍ତବ୍ୟ ଦେଇଥାଏ । ଏ ସ୍ୱର ଅସ୍ତିତ୍ୱକୁ ଆହୁରି ଅଧିକ ଦୃଢ଼ କରିଥାଏ । ଗୋଟିଏ ସରଳ ଉଦାହରଣ ନିଆଯାଉ । ମାଆର ସ୍ନେହମୟ ଶିଶୁଟିଏ ; ଡାକ ନାଁ ତାର ଟିକୁ । ମାଆ ପୁଅକୁ ଗେଲ କଲାବେଳେ କହିଥାନ୍ତି, "ମୋ' ଟିକୁ କାହିଁରେ ? ମୋ' ଟିକୁ ହସୁଛି କି ?" ଇତ୍ୟାଦି । ପିଲାଟିର ଅସ୍ତିତ୍ୱ ଅଛି, ଅଥଚ ମାଆ ତାହା ଜାଣି ମଧ୍ୟ ପଚାରୁଛନ୍ତି ମୋ' ପୁଅ କାହିଁ ବୋଲି । ପିଲାଟି ହସୁଛି ; ଅଥଚ ମାଆ ତାହା ଜାଣି ମଧ୍ୟ ପଚାରୁଛନ୍ତି ସେ ହସୁଛି କି ନାହିଁ ବୋଲି । ମାଆ ଏଭଳି କହିବା ଦ୍ୱାରା ପିଲାଟିର ଅସ୍ତିତ୍ୱ ଓ ହସିବାକୁ ଅଧିକତର ଦୃଢ଼ ଭାବରେ ସ୍ୱୀକାର କରୁଛନ୍ତି ବୋଲି ବୁଝିବାକୁ ହେବ । ବୈଦିକ ଋଷି ଭଗବାନଙ୍କ ବିଷୟରେ ଏଭଳି ଆପାତପ୍ରତୀୟମାନ ସନ୍ଦେହାତ୍ମକ ଭାଷା ପ୍ରୟୋଗ କରିବା ଦ୍ୱାରା ତାଙ୍କର ଅସ୍ତିତ୍ୱକୁ ଦୃଢ଼ ଭାବରେ ସ୍ୱୀକାର କରୁଛନ୍ତି ବୋଲି ବୁଝିବାକୁ ହେବ । ଏହା ତାଙ୍କର ଭଗବାନଙ୍କ ପ୍ରତି ଅତ୍ୟଧିକ ସ୍ନେହପ୍ରବଣତାର ଫଳଶ୍ରୁତି ।

**ମାଣ୍ଡୂକ୍ୟ ଉପନିଷଦ :**

ମାଣ୍ଡୂକ୍ୟ ଉପନିଷଦ ଆକାରରେ ଖୁବ୍ କ୍ଷୁଦ୍ର । ଏଥିରେ ବାର ଗୋଟି ମାତ୍ର ଖଣ୍ଡ ବା ବାକ୍ୟ ଅଛି । କିନ୍ତୁ ବିଷୟବସ୍ତୁର ଆଲୋଚନା ଦୃଷ୍ଟିରୁ ଏହାର ଖୁବ୍ ପ୍ରାଧାନ୍ୟ ଅଛି । ଏହା ମଣ୍ଡୂକ ଋଷିଙ୍କ ବଂଶଧରମାନଙ୍କ ଦ୍ୱାରା ସୃଷ୍ଟ । ଏଥିରେ ପ୍ରଣବ ମନ୍ତ୍ର 'ଓଁ'ର ତାତ୍ପର୍ଯ୍ୟ ସମ୍ପର୍କରେ ବିସ୍ତୃତ ଆଲୋଚନା କରା ଯାଇଛି । ଆଉ ମଧ୍ୟ ଚେତନାର ଚାରି ଅବସ୍ଥା, ଯଥା, ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟ ବିଷୟରେ ଆଲୋକପାତ କରାଯାଇଛି । ଏଥିରେ ନିରପେକ୍ଷ ବ୍ରହ୍ମଙ୍କ ବିଷୟରେ କୁହା ଯାଇଛି, 'ଏହି ବ୍ରହ୍ମଙ୍କୁ ଜଗତର ଆଧାର ଓ ସୃଷ୍ଟୀକରଣ ବୋଲି କୁହା ଯାଉଥିବାରୁ ତାଙ୍କୁ ସମସ୍ତଙ୍କର ସ୍ୱାମୀ, ସର୍ବଜ୍ଞ ଓ ସମସ୍ତଙ୍କର ଆନ୍ତରିକ ନିୟନ୍ତ୍ରକ ବୋଲି କଳ୍ପନା କରାଯାଇଛି ।' (୪୯) ସେ ଶରୀରକୁ ନିୟନ୍ତ୍ରଣ କରୁଛନ୍ତି; ଶରୀର ସେଙ୍କୁ ନିୟନ୍ତ୍ରଣ କରୁ ନାହିଁ । ସେ ଶରୀର ଭିତରେ ନାହାନ୍ତି ; ଶରୀର ସେଙ୍କ ଭିତରେ ଅଛି । ସେ ଶରୀର ପାଇଁକି ନାହାନ୍ତି ; ଶରୀର ସେଙ୍କ ପାଇଁକି ଅଛି । ସେ ବୁଲିଗଲେ

ଶରୀରର ଶରୀରତ୍ୱ ନାହିଁ; 'ମୁଁ'ର 'ମୁଁତ୍ୱ' ନାହିଁ । ସେଠି ମୃତ୍ୟୁ ଆସିଗଲା ବୋଲି କୁହା ଯାଉଛି । ମହାଭାରତରେ ମୃତ୍ୟୁ ଓ ଅମରତ୍ୱକୁ ଏକ ତାତ୍ତ୍ୱିକ ଅର୍ଥ ଦିଆ ଯାଇଛି ଏବଂ କୁହା ଯାଇଛି ଯେ ମଣିଷ ଶରୀରରେ ଅମରତ୍ୱ ଓ ମୃତ୍ୟୁ ଏହି ଦୁଇଟିଯାକ ନିହିତ ଅଛି । ମଣିଷ ମୋହର ବଶବର୍ତ୍ତୀ ହେଲେ ତା'କୁ ଗ୍ରାସ କରେ ଏବଂ ସତ୍ୟର ଅନୁସରଣ କଲେ ଅମରତ୍ୱ ପାଇଥାଏ । ଉଦ୍ଧୃତ ପଙ୍କ୍ତିଟି ହେଲା :

"ଅମୃତଂ ଚୈବ ମୃତ୍ୟୁଶ୍ଚ ଦ୍ୱୟଂ ଦେହେ ପ୍ରତିଷ୍ଠିତମ୍ ।
ମୃତ୍ୟୁମାପଦ୍ୟତେ ମୋହାତ୍ ସତ୍ୟେନାପଦ୍ୟତେଽମୃତମ୍ ॥

ଅତଏବ, ସତ୍ୟର ମାଧ୍ୟମରେ ଯେ ଅମୃତତ୍ୱ ପାଇ ହେବ, ଏହା ହେଲା ଏଥିର ତାତ୍ପର୍ଯ୍ୟ । ଆତ୍ମା ବା ବ୍ରହ୍ମ ହେଉଛନ୍ତି 'ସତ୍ୟସ୍ୟ ସତ୍ୟଂ' ବା 'ସତ୍ୟର ସତ୍ୟ' ବା ପରମ ସତ୍ୟ । ଅତଏବ, ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନ ହିଁ କେବଳ ଅମୃତତ୍ୱ ଆଣି ଦେବାରେ ସମର୍ଥ ।

## ତୈତ୍ତିରୀୟ ଉପନିଷଦ :

ତୈତ୍ତିରୀୟ ଉପନିଷଦ ହେଉଛି ତୈତ୍ତିରୀୟ ଆରଣ୍ୟକର ସପ୍ତମ, ଅଷ୍ଟମ ଓ ନବମ ଖଣ୍ଡର ସମ୍ମିଳିତ ଅଂଶ । ବାସ୍ତବିକ ଆରଣ୍ୟକଗୁଡ଼ିକର ଅଂଶ ହେଉଛି ଉପନିଷଦ । ଗୋଟିଏ ଉପନିଷଦର ନାମ ମଧ୍ୟ ଆରଣ୍ୟକ ରଖା ଯାଇଛି । ତାହା ହେଲା 'ବୃହଦ୍ ଆରଣ୍ୟକ ଉପନିଷଦ' । ଉଇଣ୍ଟରନିଜ୍ (Winternitz) ସ୍ପଷ୍ଟ ଭାବରେ କହିଛନ୍ତି ଯେ ଆରଣ୍ୟକ ଓ ଉପନିଷଦ ମଧ୍ୟରେ ସୀମା ରେଖାଟିଏ ଟାଣି ଦେବା ନିତାନ୍ତ ଅସମ୍ଭବ । ତାଙ୍କ ମନ୍ତବ୍ୟ ହେଲା :

"It is often difficult to draw the line of demarcation between the *Āranyakas* and the *Upanishads*." (୫୦)

ଏହି ହିସାବରେ ତୈତ୍ତିରୀୟ ଉପନିଷଦ ହେଉଛି ତୈତ୍ତିରୀୟ ଆରଣ୍ୟକର ଅଂଶ ବିଶେଷ ।

ଏହି ଉପନିଷଦ୍ କେତେଗୁଡ଼ିଏ ବଲ୍ଲୀରେ ବିଭକ୍ତ । ଏଥିରେ 'ବ୍ରହ୍ମାନନ୍ଦ ବଲ୍ଲୀ' ଓ 'ଭୃଗୁବଲ୍ଲୀ'ର ପ୍ରାଧାନ୍ୟ ରହିଛି । ଭୃଗୁ ମହର୍ଷିଙ୍କ ଉପଦେଶାବଳୀ ଧାରଣ କରିଥିବାରୁ ଏହି ବଲ୍ଲୀଟିର ନାମ ହୋଇଛି 'ଭୃଗୁବଲ୍ଲୀ' । ଏଥିରେ ବ୍ରହ୍ମଙ୍କର ସ୍ୱରୂପ ବିଷୟରେ ଆଲୋଚନା କରାଯାଇଛି । ତାଙ୍କୁ ମନରେ ଚିନ୍ତା କରିହେବ ନାହିଁ କିମ୍ବା ବାକ୍ୟରେ ପ୍ରକାଶ କରି ହେବ-ନାହିଁ । ସେ ହେଉଛନ୍ତି ଅନିର୍ବଚନୀୟ ଓ ଅଚିନ୍ତନୀୟ । ସେଠି କୁହାଯାଇଛି :

"ଯତୋ ବାଚଃ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ ।"

ଅର୍ଥାତ୍ ଯାହାଙ୍କୁ ନ ପାଇ, ମନ ସହିତ ସକଳ ବାଣୀ ଫେରି ଆସେ (ସେ ବ୍ରହ୍ମ) । ଏଥିରେ ଥିବା 'ଶିକ୍ଷାବଲ୍ଲୀ'ରେ ଗୁରୁ-ଶିଷ୍ୟ ସମ୍ପର୍କୀୟ ଶିକ୍ଷାଗୁରୁ ବିଷୟରେ ବର୍ଣ୍ଣନା କରାଯାଇଛି । ଏହା ଥିଲା ଶିଷ୍ୟମାନଙ୍କର ସର୍ବାଦୌ ଧ୍ୟେୟ । ଏତଦନ୍ତର୍ଗତ 'ବ୍ରହ୍ମାନନ୍ଦ ବଲ୍ଲୀ'ରେ ବ୍ରହ୍ମଙ୍କୁ ଆନନ୍ଦମୟ ବୋଲି କୁହାଯାଇଛି ଏବଂ ସେହି ପରମ ଆନନ୍ଦରେ ମଗ୍ନ ରହିବା ପାଇଁ ଉପାସକଙ୍କୁ ଉପଦେଶ ଦିଆଯାଇଛି । ସେଠାରେ କୁହାଯାଇଛି :

''ଆନନ୍ଦୋ ବ୍ରହ୍ମେତି ବ୍ୟାଜନାତ୍,
ଆନନ୍ଦାଦେବ ଖଲ୍ୱିମାନି ଭୂତାନି ଜାୟନ୍ତେ,
ଆନନ୍ଦେନ ଜାତାନି ଜୀବନ୍ତି,
ଆନନ୍ଦଂ ପ୍ରୟନ୍ତ୍ୟଭିସଂବିଶନ୍ତି ।।''

ଏହାର ଅର୍ଥ ହେଲା, 'ଆନନ୍ଦ ହେଉଛି ବ୍ରହ୍ମ, ଏହା ଜାଣିଥାଅ । ସାରା ସଂସାର ଆନନ୍ଦରୁ ସୃଷ୍ଟି । ଏହା ଆନନ୍ଦର ଆଧାରରେ ବଞ୍ଚି ରହିଥାଏ ଏବଂ ପରିଶେଷରେ ଏହା ଆନନ୍ଦରେ ଲୀନ ହୋଇ ଯାଇଥାଏ ।' ଏଠାରେ ପ୍ରଶ୍ନ ହୋଇପାରେ, ସାରା ଜଗତ୍ ଯଦି ଆନନ୍ଦରୁ ସୃଷ୍ଟି ଓ ଆନନ୍ଦ ଦ୍ୱାରା ଜୀବିତ, ତେବେ ମାନବଜୀବନରେ ନିରାନନ୍ଦ ଆସେ କାହିଁକି ? ଦୁଃଖ ଆସେ କାହିଁକି ? ମଣିଷ ହା ହୁତାଶରେ ଜଳି ଉଠେ କାହିଁକି ? ଏହାର ଉତ୍ତର ଅତି ସହଜ, ଯାହାକି ଆମେ ଏହି ଉପନିଷଦରୁ ହିଁ ପାଇଥାଉଁ । 'ଏଥିରେ ଜୀବନର ଆନନ୍ଦ' ପାଇବା ପାଇଁ ଉପଦେଶ ଦିଆ ଯାଇଛି ; 'ଜୀବନରେ ଆନନ୍ଦ' ପାଇବା ପାଇଁ କିନ୍ତୁ ନୁହେଁ । ଭଲ ଖିଆପିଆ, ମଉଜ ମଜଲିସ୍ କଲେ 'ଜୀବନରେ ଆନନ୍ଦ' ମିଳିପାରେ । ତାହା କ୍ଷଣସ୍ଥାୟୀ । କିନ୍ତୁ ତାହା 'ଜୀବନର ଆନନ୍ଦ' ନୁହେଁ । ଜୀବନର ଏକ ଉଚ୍ଚତର ଆନନ୍ଦ ଅଛି, ଯାହାକୁ ଥରେ ପାଇଲେ ଆଉ ହରାଇବାର ଅବକାଶ ନଥାଏ । ଏହାକୁ ପାଇଲେ ମଣିଷ ସାରା ବିଶ୍ୱର ଆନନ୍ଦମୟ ସ୍ଥିତି ସହିତ ନିଜକୁ ସାମିଲ କରି ଦେଇଥାଏ ; ପରଂବ୍ରହ୍ମଙ୍କ ଆନନ୍ଦମୟ ସ୍ଥିତି ସହିତ ମଧ୍ୟ ନିଜକୁ ସାମିଲ କରି ଦେଇଥାଏ । ଏହି 'ଜୀବନର ଆନନ୍ଦ' ଏକ ଉଚ୍ଚ ମାନସିକ ସ୍ଥିତି ଏବଂ ମଣିଷ ଜୀବନରେ ହିଁ ଉପଲଭ୍ୟ । ଏହା ହେଉଛି ଶଂସିତ ଉପନିଷଦର ବକ୍ତବ୍ୟ । ଏହି ଦୃଷ୍ଟିରୁ 'ବ୍ରହ୍ମବିଦ୍ୟା' ଅଧ୍ୟୟନ ପରିପ୍ରେକ୍ଷୀରେ ତୈତ୍ତିରୀୟ ଉପନିଷଦର ଯଥେଷ୍ଟ ଗୁରୁତ୍ୱ ରହିଅଛି ।

## ଐତରେୟ ଉପନିଷଦ :

ଐତରେୟ ଉପନିଷଦ ହେଉଛି ଋଗ୍‌ବେଦୀୟ ଉପନିଷଦ । ଏହା ଐତରେୟ ଆରଣ୍ୟକର ଚତୁର୍ଥ ଅଧ୍ୟାୟରୁ ଷଷ୍ଠ ଅଧ୍ୟାୟକୁ ନେଇ ଗଠିତ । ଏଥିରେ ସର୍ବମୋଟ ତିନୋଟି ଅଧ୍ୟାୟ ଅଛି । ପରମ୍ପରା ଅନୁଯାୟୀ ଏହା ଇତରା ନାମ୍ନୀ ଜଣେ ଶୂଦ୍ରାଣୀ ଗର୍ଭରୁ

ବ୍ରାହ୍ମଣଙ୍କ ଔରସରୁ ଜନ୍ମିଥିବା 'ମହୀଦାସ'ଙ୍କ ଦ୍ୱାରା ସୃଷ୍ଟ । ମହୀଦାସ ଥିଲେ ଇତରାଙ୍କ ନନ୍ଦନ ବା 'ଐତରେୟ' । ଏଣୁ ତାଙ୍କ ସୃଷ୍ଟ ଉପନିଷଦର ନାମ ହେଉଛି ଐତରେୟ । ଏଥିରୁ ଏହି ସୂଚନା ମିଳୁଛି ଯେ ସେତେବେଳେ ବ୍ରହ୍ମଜ୍ଞାନର ଅଧିକାରୀ ହେବା ପାଇଁ ଶୂଦ୍ରଙ୍କ ପାଇଁ କିଛି ବାରଣ ନଥିଲା । ଜାତି ବିଭାଗର ଦୃଢତା ସମାଜରେ ପରବର୍ତ୍ତୀ କାଳରେ ହିଁ ଦେଖା ଦେଇଥିଲା । ଉପନିଷଦ ଯୁଗରେ ଏ ବିଷୟ ନେଇ ନାନା ବିତର୍କ ହୋଇଥିଲା ଏବଂ କେତେକ ବ୍ୟକ୍ତି ଜନ୍ମ ଅନୁଯାୟୀ ଜାତିକୁ ସ୍ଥିର କରିବା ପାଇଁ ମତ ଦେଇଥିଲେ । କିନ୍ତୁ ବିଜ୍ଞ ଜନମାନଙ୍କ ଦ୍ୱାରା ତାହା ଗୃହୀତ ହୋଇ ନଥିଲା । ଛାନ୍ଦୋଗ୍ୟ ଉପନିଷଦରେ ଥିବା ସତ୍ୟକାମ-ଜବାଲା ଉପାଖ୍ୟାନ ଏହାର ସୂଚନା ଦିଏ । ଏହି ଉପାଖ୍ୟାନ ପ୍ରସଙ୍ଗରେ ଅବଶ୍ୟ 'ଛାନ୍ଦୋଗ୍ୟ ଉପନିଷଦ' ଶୀର୍ଷକରେ ପରେ ଆଲୋଚନା କରାଯିବ । ଗୁଣ ଓ କର୍ମକୁ ନେଇ ଯେ ଚାରି ବର୍ଣ୍ଣର ସୃଷ୍ଟି କରାଯାଇଛି ଏ କଥା ସ୍ପଷ୍ଟ ଭାବରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଛନ୍ତି । ସେ କହିଛନ୍ତି :

'ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ' । (୬୧)

ଅର୍ଥାତ୍ ମୁଁ ଗୁଣ ଓ କର୍ମକୁ ନେଇ ଚାରି ବର୍ଣ୍ଣର ସୃଷ୍ଟି କରିଛି । ଏହି ପୃଷ୍ଠଭୂମିରେ ବ୍ରାହ୍ମଣେତର ଜଣେ ବ୍ୟକ୍ତିଙ୍କ ଦ୍ୱାରା ଐତରେୟ ଉପନିଷଦର ସୃଷ୍ଟି ହୋଇ ମଧ୍ୟ ତାହା ସର୍ବଜନାଦୃତ ହୋଇ ପାରିଥିଲା ।

ଏହି ଉପନିଷଦର ପ୍ରଥମ ଅଧ୍ୟାୟ ତିନି ଖଣ୍ଡରେ ବିଭକ୍ତ । ଏଥିରେ ସୃଷ୍ଟିତତ୍ତ୍ୱ, ପୁରୁଷ ବା ଆତ୍ମାଙ୍କର ମାନବ-ଶରୀରରେ ପ୍ରବେଶ, ଅନ୍ୟ ଦେବତାମାନଙ୍କର ତହିଁରେ ପ୍ରବେଶ ଇତ୍ୟାଦି ବିଷୟ ଅତି ମାର୍ମିକ ଓ ରୋଚକ ଭାବରେ ବର୍ଣ୍ଣିତ । ସୃଷ୍ଟିର ଆରମ୍ଭରେ କେବଳ ସେହି ଗୋଟିଏ ଜିନିଷ ଥିଲା । ସେହି ତତ୍ତ୍ୱକୁ କୁହାଯିବ ଆତ୍ମା ବା ବ୍ରହ୍ମ, ଯେ ଚିରନ୍ତନ । ସେଥିପାଇଁ ଶଂସିତ ଉପନିଷଦରେ କୁହା ଯାଇଛି :

"ଆତ୍ମା ବା ଇଦମେକ ଏବାଗ୍ର ଆସୀତ୍ । ନାନ୍ୟତ୍ କିଞ୍ଚନ
ମିଷତ୍ । ସ ଈକ୍ଷତ ଲୋକାନ୍ ନୁ ସୃଜା ଇତି ।। (୬୨)

ଅର୍ଥାତ୍ ପ୍ରଥମେ ଏକମାତ୍ର ଆତ୍ମା ହିଁ ଥିଲେ । ତାଙ୍କ ଛଡ଼ା ଆଉ କେହି ନଥିଲେ । ସେ ଭାବିଲେ, "ମୁଁ ଏ ଜଗତ୍‌କୁ ସୃଷ୍ଟି କରେଁ ।" ଆତ୍ମାଙ୍କର ଏହି ଯେଉଁ କାମନା ହେଲା, ସେଇଥିରୁ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ହେଲା । ସେ ଚାହିଁଲେ, 'ଏକୋଽହଂ ବହୁ ସ୍ୟାମ୍' । ଅର୍ଥାତ୍ 'ମୁଁ ଏକ ; ବହୁ ରୂପରେ ପ୍ରକଟିତ ହୁଏଁ' । ଏହି କାମନା କରିବା ପାଇଁ ନୁହୁଁତିକର କେତେ ଲକ୍ଷ ଅଂଶ ସମସ୍ତ ହୁଏତ ଲାଗିଥିବ । ତାହାର ଫଳଶ୍ରୁତି ସ୍ୱରୂପ ଦେଖା ଦେଲା ଏହି ବିରାଟ ବିଶ୍ୱବ୍ରହ୍ମାଣ୍ଡ । ଋଗ୍‌ବେଦର ସୃଷ୍ଟି ସମ୍ବନ୍ଧୀୟ 'ନାସଦୀୟ ସୂକ୍ତ'ରେ

ଠିକ୍ ଏହି ଭାବଟି ବର୍ଣ୍ଣିତ । ଯେତେବେଳେ କିଛି ନଥିଲା, ସେତେବେଳେ ବିରାଟ ପୁରୁଷଙ୍କ ମନରେ 'କାମ' ବା ସୃଷ୍ଟି କରିବାର ଇଚ୍ଛା ଜାତ ହେଲା । ତାହାର ଫଳଶ୍ରୁତି ହେଲା ସମସ୍ତ ବିଶ୍ୱବ୍ରହ୍ମାଣ୍ଡ । ତଦନ୍ତର୍ଗତ 'କାମସ୍ତଦଗ୍ରେ ସମବର୍ତ୍ତତାଧି' ପଙ୍କ୍ତିଟି ଏ ସମ୍ପର୍କରେ ଦ୍ରଷ୍ଟବ୍ୟ । ଖ୍ରୀଷ୍ଟିଆନ୍‌ମାନେ ମଧ୍ୟ ଭଗବାନ୍‌ଙ୍କ ଇଚ୍ଛାରେ ଜଗତର ସୃଷ୍ଟି ହେଲା ବୋଲି ବିଶ୍ୱାସ କରନ୍ତି । ବାଇବେଲ୍ ବର୍ଣ୍ଣିତ 'He said, let there be light ; and there was light' ଆଦି ପଙ୍କ୍ତିମାନ ଏହି ଚିନ୍ତାଧାରା ଦ୍ୱାରା ପ୍ରଣୋଦିତ । ଏହି ସୃଷ୍ଟିର ଇଚ୍ଛା ଆସିବା ପରେ, 'ସଃ ଇମାନ୍ ଲୋକାନ ସୃଜତ' ବା ସେ ଏହି ଲୋକଗୁଡ଼ିକ ସୃଷ୍ଟି କଲେ । (୫୩) ଏହି 'ଆତ୍ମା' ବା 'ବ୍ରହ୍ମ' ଜଗତ୍‌କୁ ସୃଷ୍ଟି କରି ମଧ୍ୟ ତାହା ଭିତରେ ରହିଗଲେ । ଯେ ଅକ୍ଷର ଓ ଅମୃତ, ସେ ଯେ କିପରି କ୍ଷର ଓ ମରଣଶୀଳ ଶରୀର ମଧ୍ୟରେ ରହି ପାରିଛନ୍ତି, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ରାଧାକୃଷ୍ଣନ୍ ତାହାକୁ ହିଁ କହିଛନ୍ତି ମାୟା, ଯାହା କି ଅନିର୍ବଚନୀୟ ବା ଯାହାକୁ କଥାରେ ପ୍ରକାଶ କରି ହେବ ନାହିଁ ।

ମାନବ ଶରୀର ଯେ ଅତି ପାବନ ଏ କଥା ଐତରେୟ ଉପନିଷଦରେ ବର୍ଣ୍ଣିତ । ଏହା ହେଉଛି ସକଳ ଦେବତାଙ୍କର ଆଶ୍ରୟସ୍ଥଳୀ । ବହୁ ପୁଣ୍ୟବଳରେ ଜୀବ ଏ ଜନ୍ମ ପାଇଥାଏ । ଐତରେୟ ଉପନିଷଦରେ କିପରି ବିଭିନ୍ନ ଦେବତାମାନେ ମାନବ-ଶରୀରରେ ପ୍ରବେଶ କଲେ ସେ ସମ୍ପର୍କରେ କୁହାଯାଇଛି :

"ଅଗ୍ନିର୍ବାଗ୍ ଭୂତ୍ୱା ମୁଖେ ପ୍ରାବିଶତ୍,<br>
ବାୟୁଃ ପ୍ରାଣୋ ଭୂତ୍ୱା ନାସିକାୟାଂ ପ୍ରାବିଶତ୍,<br>
ଆଦିତ୍ୟ ଶ୍ଚକ୍ଷୁର୍ଭୂତ୍ୱାକ୍ଷିଣୀ ପ୍ରାବିଶତ୍,<br>
ଦିଶଃ ଶ୍ରୋତ୍ରଂ ଭୂତ୍ୱା କର୍ଣ୍ଣୌ ପ୍ରାବିଶତ୍" । ଇତ୍ୟାଦି

ଅର୍ଥାତ, 'ଅଗ୍ନି ବାଣୀ ହୋଇ ମୁଖରେ ପ୍ରବେଶ କଲେ; ବାୟୁ ପ୍ରାଣ ହୋଇ ନାସିକାରେ ପ୍ରବେଶ କଲେ ; ସୂର୍ଯ୍ୟ ଆଖି ହୋଇ ଦୁଇ ଆଖିରେ ପ୍ରବେଶ କଲେ ; ଦିଗ୍‌ସବୁ କାନ ହୋଇ ଦୁଇ କାନରେ ପ୍ରବେଶ କଲେ' ଇତ୍ୟାଦି । ଐତରେୟ ଉପନିଷଦରେ ସ୍ପଷ୍ଟତଃ କୁହା ଯାଇଛି ଯେ ମାନବ ଶରୀର ଧରି, ଏହି ଜୀବନରେ ହିଁ ପରମ ଜ୍ଞାନ ଲାଭ କରିବା ସମ୍ଭବ ; ଦିବ୍ୟ ଆନନ୍ଦରେ ମଜ୍ଜି ରହି ସାରା ବିଶ୍ୱରେ ଥିବା ଅନିର୍ବଚନୀୟ ଐକ୍ୟକୁ ଉପଲବ୍ଧି କରିବା ସମ୍ଭବ । ଅତଏବ ମାନବ ଶରୀର ଆତ୍ମାଙ୍କର ନିବାସ-ସ୍ଥଳ ହୋଇଥିବାରୁ ଏହା ନିରର୍ଥକ ନୁହେଁ ; ମାନବ-ଜୀବନ ଅନନ୍ତ-ଜୀବନର ଏକ ଅଂଶ ହୋଇଥିବାରୁ ମୂଲ୍ୟହୀନ ନୁହେଁ । ମର୍ତ୍ତ୍ୟର ମାଧ୍ୟମରେ ଅମର୍ତ୍ତ୍ୟର ସ୍ୱାଦ ଗ୍ରହିବା ପାଇଁ ଏହି ଉପନିଷଦ ଆମକୁ ଉପଦେଶ ଦେଇଥାଏ ।

ଛାନ୍ଦୋଗ୍ୟ ଉପନିଷଦ :

ଏହା ଏକ ସୁବୃହତ୍ ଉପନିଷଦ । ଏହା ସାମବେଦର ଅନ୍ତର୍ଗତ । ବଳଦେବ ଉପାଧ୍ୟାୟଙ୍କ ମତରେ :

"ଯହ ସାମବେଦୀୟ ଉପନିଷଦ୍ ପ୍ରାଚୀନତା, ଗମ୍ଭୀରତା, ତଥା ବ୍ରହ୍ମଜ୍ଞାନ ପ୍ରତିପାଦନ କୀ ଦୃଷ୍ଟି ସେ ନିତାନ୍ତ ପୌଢ଼, ପ୍ରାମାଣିକ ତଥା ପ୍ରମେୟବହୁଲ ହୈ ।" (୫୪)

ବୃହଦାରଣ୍ୟକ ଉପନିଷଦରେ ଯାଜ୍ଞବଲ୍‌କ୍ୟ ଯେପରି ବ୍ରହ୍ମ ସମ୍ପର୍କୀୟ ଉପଦେଶମାନ ଦେଇଛନ୍ତି, ଛାନ୍ଦୋଗ୍ୟ ଉପନିଷଦରେ ମଧ୍ୟ ଠିକ୍ ସେମିତି ଆରୁଣି ଉପଦେଶମାନ ଦେଇଛନ୍ତି । ସେ ତାଙ୍କ ଶିଷ୍ୟଙ୍କୁ ବ୍ରହ୍ମ ବିଷୟରେ ବୁଝାଇବାକୁ ଯାଇ କହିଛନ୍ତି :

"ତତ୍ ତ୍ୱଂ ଅସି" (୫୫)

ଅର୍ଥାତ୍ ତୁମେ ହେଉଛ ସେହି (ବ୍ରହ୍ମ) । ଏହାର ତାତ୍ପର୍ଯ୍ୟ ହେଲା, ଜଣେ ମଣିଷ ଯେ ସେହି ଚିରନ୍ତନ ବିରାଜମାନ ବ୍ରହ୍ମଙ୍କର ଏକ ଅଂଶ, ତାଙ୍କର ସ୍ଫୁରଣ, ଏ କଥା ସେ ଅନୁଭବ କରିବା ଉଚିତ । ଏହି ଅନୁଭବଟି ଆସିଗଲେ ତା'କୁ ବ୍ରହ୍ମଜ୍ଞାନ ମିଳିଗଲା ବୋଲି ବୁଝିବାକୁ ହେବ । ଏହା ହେଉଛି ଅଦ୍ୱୈତବାଦର ମୂଳ ମନ୍ତ୍ର । ଅଦ୍ୱୈତବାଦୀମାନେ ସେମାନଙ୍କ ମତବାଦର ଯଥାର୍ଥତା ପ୍ରତିପାଦନ କରିବା ପାଇଁ ବହୁବାର ଶଂସିତ ଉପନିଷଦର ଏହି ପଙ୍‌କ୍ତିଟିକୁ ଉଦ୍ଧାର କରିଥାନ୍ତି । ସେମାନେ ଆଉ ଗୋଟିଏ ପଙ୍‌କ୍ତି ମଧ୍ୟ ବାରମ୍ବାର ଉଦ୍ଧାର କରିଥାନ୍ତି । ତାହା ହେଲା :

"ସର୍ବଂ ଖଲ୍ୱିଦଂ ବ୍ରହ୍ମ ।" (୫୬)

ଅର୍ଥାତ୍ ଏ ସବୁ ଯାହା ଅଛି, ସବୁ ହେଉଛି ବ୍ରହ୍ମ । ଏହାର ତାତ୍ପର୍ଯ୍ୟ ହେଲା, ସର୍ବତ୍ର ବ୍ରହ୍ମଙ୍କର ସ୍ଫୁରଣ ବିଦ୍ୟମାନ ।

ଏହି ଉପନିଷଦରେ (୩।୧୭) କୃଷ୍ଣ ଘୋର ଅଙ୍ଗୀରସ ମୁନିଙ୍କ ନିକଟରେ ଯଜ୍ଞ ସମ୍ପର୍କୀୟ ଶିକ୍ଷା ପାଇଥିବା କଥା ଉଲ୍ଲିଖିତ । ସେ ଅହିଂସ ଯଜ୍ଞ ବିଷୟରେ ଗୁରୁଙ୍କଠାରୁ ଶିକ୍ଷା ପାଇଥିଲେ । ସେ ଅର୍ଜୁନଙ୍କୁ ଭଗବଦ୍ ଗୀତାରେ ସେହି ଅହିଂସ ଯଜ୍ଞ ବିଷୟରେ ହିଁ ଶିକ୍ଷା ଦେଇଛନ୍ତି । ଅତଏବ ଉତ୍ତମ ଯଜ୍ଞ ଯେ ଅହିଂସ ହେବା ଉଚିତ, ଏ ଧାରଣା ସେତେବେଳେ ବିଜ୍ଞ ଜନମାନଙ୍କ ମଧ୍ୟରେ ଥିଲା ଏବଂ ତାହା ହିଁ ଶିଷ୍ୟମାନଙ୍କୁ ଶିକ୍ଷା ଦିଆ ଯାଉଥିଲା ।

ଏଥିରେ ଥିବା ସତ୍ୟକାମ ଜାବାଲ ଉପାଖ୍ୟାନରେ ଆମେ ପ୍ରକୃତ ବ୍ରାହ୍ମଣ କିଏ ସେ ସମ୍ପର୍କରେ ସମ୍ୟକ ଜ୍ଞାନ ଅର୍ଜନ କରିଥାଉଁ । କାହାଣୀଟି ହେଲା ଏହି । ଜବାଲା ବୋଲି ଦାସୀଟିଏ ଥିଲା । ତା'ର ପୁଅର ନାଁ ଥିଲା ସତ୍ୟକାମ । ସେତେବେଳେ ଗୌତମ ନାଁରେ ଜଣେ ଋଷି ଥିଲେ । ତାଙ୍କର ବ୍ରାହ୍ମଣ ବୋଲି ଖୁବ ଅଭିମାନ ଥିଲା । ସେ ବ୍ରାହ୍ମଣ ଛଡ଼ା ଆଉ କାହାକୁ ଶିଷ୍ୟ ରୂପେ ଗ୍ରହଣ କରୁ ନଥିଲେ । ଶିଷ୍ୟଙ୍କୁ ପ୍ରଥମରେ ତା'ର ଗୋତ୍ର ବିଷୟରେ ସେ ପ୍ରଶ୍ନ କରନ୍ତି ଏବଂ ବ୍ରାହ୍ମଣ ବୋଲି ତା'ର ପରିଚୟ ପାଇଲେ ଯାଇ ତା'କୁ ସେ ଶିଷ୍ୟ ରୂପେ ଗ୍ରହଣ କରନ୍ତି । ସତ୍ୟକାମର ଗୌତମଙ୍କ ଶିଷ୍ୟ ହେବା ପାଇଁ ଖୁବ ଇଚ୍ଛା ହେଲା । ସେ ତା'ର ମାଆଙ୍କୁ ତା'ର ପିତୃପରିଚୟ ପଚାରିଲା । ମାଆ ଥିଲେ ସତ୍ୟବତୀ । ସେ ନିର୍ବିକାର ଚିତ୍ତରେ କହିଲେ :

"ବହ୍ୱହଂ ଚରନ୍ତୀ ପରିଚାରିଣୀ ଯୌବନେ ତ୍ୱାମଲଭେ,
ନ ଜାନେ କଂ ଗୋତ୍ରୋଽସି ।"

ଅର୍ଥାତ୍ ମୁଁ ଯୁବତୀ ଥିଲି ; ଘରକୁ ଘର ଦାସୀ ହୋଇ ବୁଲୁଥିଲି । ସେହି ସମୟରେ ତତେ ମୁଁ ପାଇଥିଲି । ତେଣୁ ତୋ'ର ଗୋତ୍ର କ'ଣ ମୁଁ କହି ପାରିବି ନାହିଁ । ସତ୍ୟକାମ ଏହି ପିତୃପରିଚୟଟି ନେଇ ଗୌତମ ଋଷିଙ୍କ ପାଖକୁ ଗଲା । ଗୌତମ ତା'କୁ ଗୋତ୍ର ବିଷୟରେ ପଚାରିବାରୁ ସେ ମାଆଙ୍କ ଠାରୁ ଯାହା ଶୁଣିଥିଲା, ତାହା ନିର୍ବିକାର ଚିତ୍ତରେ କହିଗଲା । ଗୌତମ ଋଷି ଯୁଗପତ୍ ଆନନ୍ଦ ଓ ବିସ୍ମୟରେ ଅଧୀର ହୋଇ ଉଠିଲେ । ସତ୍ୟକାମ ଯେ ପ୍ରକୃତ ବ୍ରାହ୍ମଣ ସନ୍ତାନ ଏ କଥା ସେ ସବୁ ଶିଷ୍ୟଙ୍କ ଆଗରେ ବୁଝାଇ କହିଲେ । ତାଙ୍କ ମତରେ ଯାହାର ମାଆ ଏ ଭଳି ସତ୍ୟକୁ ନିର୍ବିକାର ଚିତ୍ତରେ ନିଜ ପୁଅ ଆଗରେ କହି ଦେଇ ପାରେ ଏବଂ ଯେଉଁ ପୁଅ ସମସ୍ତଙ୍କ ଆଗରେ ସ୍ୱଚ୍ଛ ହୃଦୟରେ ତାହା ପ୍ରକାଶ କରିପାରେ, ସେ ନିଶ୍ଚିତ ଭାବରେ ବ୍ରାହ୍ମଣ । ଏଥିରୁ ଏହି ସତ୍ୟ ନିଷ୍କାସିତ ହେଉଛି ଯେ ଜାତିର ବିଚାର କର୍ମ ଭିତ୍ତିରେ କରିବାକୁ ହେବ, ଜନ୍ମ ଭିତ୍ତିରେ କଦାପି ନୁହେଁ । ଏଥିରୁ ଆଉ ମଧ୍ୟ ଜଣା ପଡ଼ୁଛି ଯେ ସେତେବେଳେ ଜାତିର ନିର୍ଣ୍ଣୟ ନେଇ ଏହି ଦୁଇ ଗୋଷ୍ଠୀ ମଧ୍ୟରେ ବିବାଦ ଲାଗି ଥିଲା ଏବଂ ପରିଶେଷରେ କର୍ମ-ଭିତ୍ତିରେ ଜାତିର ନିର୍ଣ୍ଣୟ ହେବା ଉଚିତ ବୋଲି ଯେଉଁ ଗୋଷ୍ଠୀ କହୁଥିଲେ, ସେହିମାନଙ୍କର ହିଁ ବିଜୟ ହୋଇଥିଲା । ଏହିସବୁ ଦୃଷ୍ଟିରୁ ବିଚାର କଲେ ସମଗ୍ର ଉପନିଷଦ ସାହିତ୍ୟରେ ଛାନ୍ଦୋଗ୍ୟ ଉପନିଷଦ୍ ଏକ ମହତ୍ତ୍ୱପୂର୍ଣ୍ଣ ଆସନ ଅଧିକାର କରିଛି ବୋଲି ବୁଝିବାକୁ ହେବ ।

## ବୃହଦାରଣ୍ୟକ ଉପନିଷଦ :

ଏହା ଆକାରରେ ଯେପରି ବିପୁଳ, ତତ୍ତ୍ୱଜ୍ଞାନରେ ମଧ୍ୟ ସେହିପରି ଭରପୂର । ଏହାକୁ ପ୍ରାଚୀନତମ ଉପନିଷଦ୍ ବୋଲି ପଣ୍ଡିତମାନେ କହିଥାନ୍ତି । ଏଥିରେ ବ୍ରହ୍ମବିଦ୍ୟା

ସମ୍ପର୍କରେ ଉପଦେଷ୍ଟା ପ୍ରଖ୍ୟାତ ମୁନି ହେଉଛନ୍ତି ଯାଜ୍ଞବଲ୍କ୍ୟ । ସେ ତାଙ୍କ ସ୍ତ୍ରୀ ମୈତ୍ରେୟୀଙ୍କୁ ବ୍ରହ୍ମବିଦ୍ୟା ସମ୍ପର୍କରେ ଯେଉଁ ଉପଦେଶମାନ ଦେଇଛନ୍ତି, ସେଗୁଡ଼ିକ ଅତି ରୋଚକ ଭାବରେ ଏଥିରେ ବର୍ଣ୍ଣିତ । ଆତ୍ମଜ୍ଞାନ କିପରି ଉପାୟରେ ପାଇବାକୁ ହେବ, ତାହା ବତାଇବାକୁ ଯାଇ ମୈତ୍ରେୟୀଙ୍କୁ ସେ କହୁଛନ୍ତି :

"ଆତ୍ମା ବା ଅରେ ଦ୍ରଷ୍ଟବ୍ୟଃ ଶ୍ରୋତବ୍ୟଃ ମନ୍ତବ୍ୟଃ
ନିଦିଧ୍ୟାସିତବ୍ୟଃ ମୈତ୍ରେୟି ।" (୫୭)

ଅର୍ଥାତ୍ ଆଗୋ ମୈତ୍ରେୟି ! ଆତ୍ମାଙ୍କୁ ଦେଖିବା ଉଚିତ, ଆତ୍ମା ବିଷୟରେ ଶୁଣିବା ଉଚିତ; ଆତ୍ମା ବିଷୟରେ ଚିନ୍ତା କରିବା ଉଚିତ ; ଏବଂ ଆତ୍ମା ବିଷୟରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ନେଇ ପରୀକ୍ଷା ନିରୀକ୍ଷା କରି ଦେଖିବା ଉଚିତ । ଏହାର ତାତ୍ପର୍ଯ୍ୟ ହେଲା ଆତ୍ମା ବା ପରଂବ୍ରହ୍ମଙ୍କୁ ଦେଖିବାକୁ ହେବ । ତାଙ୍କର ସ୍ଥିତି ଯେ ସବୁଠି ବିଦ୍ୟମାନ ତାହା ଅନୁସନ୍ଧାନ କରିବାକୁ ହେବ । ନିଜେ ଖାଲି ଦେଖି ଦେଲେ ଚଳିବ ନାହିଁ ; ଅନ୍ୟମାନେ ସେ ବିଷୟରେ କ'ଣ କହୁଛନ୍ତି ତାହା ମଧ୍ୟ ଶୁଣିବାକୁ ହେବ । ତା'ହେଲେ ଯାଇ ଦେଖିବା ଓ ଶୁଣିବା ଭିତରେ ସାମଞ୍ଜସ୍ୟ ବା ଅସାମଞ୍ଜସ୍ୟ ବାହାର କରି ହେବ । ଖାଲି ଶୁଣି ଦେଲେ ମଧ୍ୟ ଚଳିବ ନାହିଁ; ସେ ବିଷୟରେ ମନନ କରିବାକୁ ହେବ । କେବଳ ମନନ କଲେ ସତ୍ୟ ବାହାରିବ ନାହିଁ । କାରଣ ଏଥି ପୂର୍ବରୁ ଯାହା ଶୁଣା ଯାଇଥିବ, ତାହାର ପ୍ରଭାବ ମନନ କ୍ରିୟା ଉପରେ ପଡ଼ିଥିବ । ତେଣୁ ମନନର ଫଳଶ୍ରୁତି ସବୁବେଳେ ସତ୍ୟନିଷ୍ଠ ହୋଇ ନପାରେ । ବେଳେବେଳେ ତାହା ପୂର୍ବରୁ ଶୁଣିଥିବା କଥାକୁ ଅନୁସରଣ କରିପାରେ । ସେଥିପାଇଁ ଏ ବିଷୟରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ନେଇ ଦେଖିବାକୁ ହେବ । ସେପରି କରିବା ଫଳରେ ଯାହା ଯୁକ୍ତିଯୁକ୍ତ ବୋଲି ମନେ ହେବ, ତାହାକୁ ହିଁ ଶେଷରେ ଗ୍ରହଣ କରିବାକୁ ପଡ଼ିବ । ପୂର୍ବରୁ କିଏ କ'ଣ କହି ଦେଇଛନ୍ତି, ତାହାକୁ କଦାପି ଅନ୍ଧ ଭାବରେ ଗ୍ରହଣ କରିବାକୁ ହେବ ନାହିଁ । ହେତୁବାଦର କଷଟି ପଥରରେ ଘଷି ସାରିବା ପରେ ତାହା ଯଦି ଗ୍ରହଣୀୟ ବୋଲି ଜଣା ପଡ଼ିବ, ତା'ହେଲେ ଯାଇ ତାହାକୁ ଗ୍ରହଣ କରିବାକୁ ହେବ । ସେ ପରଂବ୍ରହ୍ମ ଏବଂ ଯାହାଙ୍କର ସ୍ଥିତି ବିଷୟରେ ଆଦୌ ସନ୍ଦେହ ନାହିଁ, ତାଙ୍କ ପାଇଁ ମଧ୍ୟ ଆର୍ଯ୍ୟ ଋଷି ଏଭଳି ଏକ କଠିନ ପରୀକ୍ଷାର ବ୍ୟବସ୍ଥା କରିଛନ୍ତି । ତାଙ୍କର ସ୍ଥିତିକୁ ମଧ୍ୟ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର କଷଟି ପଥରରେ ପରୀକ୍ଷା କରାଇ ନେବା ପାଇଁ ସେ ଉପଦେଶ ଦେଇଛନ୍ତି । ଏଥିରୁ ଜଣା ପଡ଼ୁଛି ଯେ ଆର୍ଯ୍ୟମାନେ ହେତୁବାଦୀ ଚିନ୍ତାଧାରାରେ ଅଟଳ ବିଶ୍ୱାସୀ ଥିଲେ ଏବଂ ଅନ୍ଧ ବିଶ୍ୱାସକୁ ଆଦୌ ଗ୍ରହଣ କରୁ ନଥିଲେ । ଏହି ଦୃଷ୍ଟିରୁ ବୃହଦାରଣ୍ୟକ ଉପନିଷଦ ଅଧ୍ୟାତ୍ମ-ବିଦ୍ୟା କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଆସନରେ ସମାସୀନ ।

ଏଗୁଡ଼ିକ ଛଡ଼ା ଶ୍ୱେତାଶ୍ୱତର ଉପନିଷଦ, କୌଷୀତକି ଉପନିଷଦ, ସଂହିତୋପନିଷଦ,

ମୈତ୍ରାୟଣୀ ଉପନିଷଦ, ମହାନାରାୟଣୋପନିଷଦ, ବାଷ୍କଲମନ୍ତ୍ରୋପନିଷଦ, ଛାଗଲେୟୋପନିଷଦ, ଆର୍ଷେୟୋପନିଷଦ, ଶୌନକୋପନିଷଦ ଆଦି ଆହୁରି ଅନେକ ଉପନିଷଦ ଅଛି । ସ୍ଥୂଳତଃ ଏହି ସବୁ ଉପନିଷଦଗୁଡ଼ିକର ଆଲୋଚ୍ୟ ବିଷୟ ହେଉଛି ବ୍ରହ୍ମବିଦ୍ୟା ।

ଉପର୍ଯ୍ୟୁକ୍ତ ଆଲୋଚନା ଦୃଷ୍ଟେ ସାମଗ୍ରିକ ଉପନିଷଦ ସାହିତ୍ୟରେ କ'ଣ କ'ଣ ଅଛି ସେ ବିଷୟରେ ଆମେ ନିମ୍ନଲିଖିତ ନିଷ୍କର୍ଷରେ ପହଞ୍ଚି ପାରିବା :

(କ) ଏଥିରେ ବ୍ରହ୍ମବିଦ୍ୟା ପ୍ରଖ୍ୟାପିତ; ବ୍ରହ୍ମଙ୍କର ସ୍ୱରୂପ ବର୍ଣ୍ଣିତ ।

(ଖ) ସୃଷ୍ଟିର ଆଦ୍ୟରେ ଯେ ଏକମାତ୍ର ବ୍ରହ୍ମ ଥିଲେ, ତାହା ଏଥିରେ ପ୍ରତିପାଦିତ ।

(ଗ) ସାରା ଜଗତ୍ ବ୍ରହ୍ମଙ୍କର ସ୍ଫୁରଣ ବୋଲି ଏଥିରେ ପ୍ରଖ୍ୟାପିତ । ଜଗତରେ ଜୀବର ବ୍ରହ୍ମ ରହିଛନ୍ତି ତାହା ଏକ ଅନିର୍ବଚନୀୟ ରହସ୍ୟ ବୋଲି ଏଥିରେ କୁହା ଯାଇଛି । ତାହାକୁ କୁହା ଯାଇଛି ମାୟା ।

(ଘ) ବିଭିନ୍ନତା ସତ୍ତ୍ୱେ ସାରା ବିଶ୍ୱରେ ଯେଉଁ ଐକ୍ୟ ବିରାଜିତ, ସେ ବିଷୟ ଏଥିରେ ପ୍ରତିପାଦିତ ।

(ଙ) ଏଥିରେ ବେଦାନ୍ତ ଦର୍ଶନ ପ୍ରତିପାଦିତ ।

(ଚ) ଏଥିରେ 'ଦ୍ୱୈତବାଦ' ଓ 'ଅଦ୍ୱୈତବାଦ' ଉଭୟ ମତବାଦର ମୂଳବୀଜ ବିଦ୍ୟମାନ ।

(ଛ) ଏଥିରେ ଦାର୍ଶନିକତା ଓ ଅଧ୍ୟାତ୍ମବାଦର ଏକ ସମନ୍ୱୟ ଘଟିଛି ।

(ଜ) ବ୍ରହ୍ମଙ୍କୁ ଏଥିରେ 'ସତ୍ୟର ସତ୍ୟ' ବା ପରମ ସତ୍ୟ ବୋଲି କୁହା ଯାଇଛି ।

(ଝ) ବ୍ରହ୍ମ ହେଉଛନ୍ତି ସତ୍, ଚିତ୍ ଓ ଆନନ୍ଦମୟ ।

(ଞ) ବ୍ରହ୍ମ ହେଉଛନ୍ତି ଅବିନାଶୀ ଓ ସଦା ପରିପୂର୍ଣ୍ଣ । ଏହାଙ୍କଠାରୁ ନିଖିଳ ବିଶ୍ୱ ଉଦ୍ଭୂତ ହେଲେ ମଧ୍ୟ ତଦ୍ୱାରା ଏହାଙ୍କ ପୂର୍ଣ୍ଣତା ସାମାନ୍ୟ ହେଲେ ହ୍ରାସ ପାଏ ନାହିଁ ।

(ଟ) ତ୍ୟାଗ ଓ ଭୋଗ ମଧ୍ୟରେ, ବିଦ୍ୟା ଓ ଅବିଦ୍ୟା ମଧ୍ୟରେ, ଜ୍ଞାନ ଓ କର୍ମ ମଧ୍ୟରେ, ବସ୍ତୁବାଦ ଓ ଅଧ୍ୟାତ୍ମବାଦ ମଧ୍ୟରେ ସମନ୍ୱୟ ଆଣିବା ପାଇଁ ଏଥିରେ ଉପଦେଶ ଦିଆ ଯାଇଛି ଏବଂ ତଦ୍ୱାରା ଏକ ସଫଳ ଓ ପରିପୂର୍ଣ୍ଣ ଜୀବନ ଯାପନ କରି ହେବ ବୋଲି କୁହା ଯାଇଛି ।

(ଠ) ଜୀବାତ୍ମା ଓ ପରମାତ୍ମାଙ୍କ ସ୍ୱରୂପ ବିଷୟ ଏଥିରେ ବର୍ଣ୍ଣିତ ଏବଂ ଏ ଦୁହିଙ୍କ ଭିତରେ କିପରି ଐକ୍ୟ ବିଦ୍ୟମାନ, ତାହା ମଧ୍ୟ ବିବକ୍ଷିତ ।

(ଡ଼) ଏଥିରେ ବିଭିନ୍ନ ସଦାଚାର ବିଷୟରେ ଉପଦେଶ ଦିଆ ଯାଇଛି ।

(ଢ଼) କେତେକ କ୍ଷେତ୍ରରେ ତତ୍‌କାଳୀନ ସାମାଜିକ ଚିତ୍ରର ମଧ୍ୟ ଅବତାରଣା କରି ଯାଇଛି ।

**ବେଦାଙ୍ଗ :**

ଏହି ପୁସ୍ତକର ପ୍ରଥମ ଭାଗସ୍ଥ ଶେଷ ପରିଚ୍ଛେଦରେ ବେଦାଙ୍ଗ ବିଷୟରେ ପ୍ରାରମ୍ଭିକ ସୂଚନା ଦେବା କ୍ରମରେ କୁହା ଯାଇଛି ଯେ ଏହା ନିମ୍ନଲିଖିତ ବିଭାଗଗୁଡ଼ିକୁ ନେଇ ଗଠିତ :

(କ) ଶିକ୍ଷା (ଧ୍ୱନିତତ୍ତ୍ୱ)
(ଖ) କଳ୍ପ (କର୍ମକାଣ୍ଡ)
(ଗ) ବ୍ୟାକରଣ
(ଘ) ନିରୁକ୍ତ (ଶବ୍ଦତତ୍ତ୍ୱ)
(ଙ) ଛନ୍ଦ
(ଚ) ଜ୍ୟୋତିଷ

ଏହି ଛଅଟି ଅଙ୍ଗକୁ କୁହା ଯାଇଥାଏ 'ଷଡ଼ଙ୍ଗ' । ଆଜି କାଲି ଯେଉଁ 'ଷଡ଼ଙ୍ଗୀ', ସାଙ୍ଗାଧୀଶ ବ୍ରାହ୍ମଣମାନେ ଅଛନ୍ତି, ସେମାନଙ୍କର ପୂର୍ବଜମାନେ ହୁଏତ ଏହି 'ଷଡ଼ଙ୍ଗ' ବିଦ୍ୟାରେ ପ୍ରବୀଣ ଥିଲେ । ବେଦାଙ୍ଗକୁ ବେଦର ଅଙ୍ଗ କହିବାର ଅର୍ଥ ନୁହେଁ ଯେ ଏହା ବେଦର ଅଂଶ ସ୍ୱରୂପ । ଭାରତୀୟ ପରମ୍ପରାରେ ବେଦକୁ ଋଷିମାନେ ସେମାନଙ୍କର ଦିବ୍ୟ ଜ୍ଞାନ ଫଳରେ ପାଇଛନ୍ତି ବୋଲି ବିଶ୍ୱାସ କରାଯାଏ । ସେଥିପାଇଁ ଯାସ୍କଙ୍କ ମତରେ 'ଋଷୟଃ ମନ୍ତ୍ରଦ୍ରଷ୍ଟାରଃ' ; ଅର୍ଥାତ୍ ଋଷିମାନେ ହେଉଛନ୍ତି ମନ୍ତ୍ରର ଦ୍ରଷ୍ଟା । ଋଷିମାନେ ଏହାକୁ ଅନ୍ତରତମ ପ୍ରଦେଶର ଦିବ୍ୟ କର୍ଣ୍ଣରେ ଶୁଣିଥିଲେ ବୋଲି ଏହାକୁ କୁହାଯାଏ 'ଶ୍ରୁତି' । କିନ୍ତୁ ବେଦାଙ୍ଗ ବେଦ ସୃଷ୍ଟିର ବହୁ ବର୍ଷ ପରେ ହୋଇଥିଲା ଏବଂ ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା କିପରି ଠିକ ଭାବରେ ବୈଦିକ ମନ୍ତ୍ରଗୁଡ଼ିକୁ ପାଠ କରିବାକୁ ହେବ, କିପରି ଠିକ୍ ସମୟରେ ବୈଦିକ କର୍ମକାଣ୍ଡ ଆଦି ସମାହିତ କରିବାକୁ ହେବ ଇତ୍ୟାଦି । ବେଦର ଶୁଦ୍ଧତା ରକ୍ଷା କରିବା ହିଁ ଥିଲା ଏହାର ଉଦ୍ଦେଶ୍ୟ । ଗୁରୁ-ଶିଷ୍ୟ ପରମ୍ପରା କ୍ରମେ ଏହାର ଶିକ୍ଷା ଆମ ଦେଶରେ ଚାଲି ଆସିଥିଲା । ଏହା ତେଣୁ 'ସ୍ମୃତି' ଶାସ୍ତ୍ରର ଅନ୍ତର୍ଗତ । 'ସ୍ମୃତି' ସବୁବେଳେ 'ଶ୍ରୁତି'କୁ ଆଶ୍ରୟ କରିଛି । ଯଦି କୌଣସି କ୍ଷେତ୍ରରେ 'ସ୍ମୃତି' ଓ 'ଶ୍ରୁତି ବାକ୍ୟ' ମଧ୍ୟରେ ପାରସ୍ପରିକ ସଂଘର୍ଷ ଉପୁଜେ, ତେବେ ଶ୍ରୁତିବାକ୍ୟ ହିଁ ଗ୍ରହଣୀୟ ହୋଇଥାଏ । ସଂକ୍ଷେପରେ କହିବାକୁ ଗଲେ ମନ୍ତ୍ରର ସଠିକ ଉଚ୍ଚାରଣ ଲାଗି 'ଶିକ୍ଷା'ର ଆବଶ୍ୟକତା ହୋଇଥିଲା । କର୍ମକାଣ୍ଡ ଓ

ଯଜ୍ଞୀୟ ଅନୁଷ୍ଠାନ ଲାଗି 'କଳ୍ପ'ର ଆବଶ୍ୟକତା ହୋଇଥିଲା । ଶବ୍ଦଗୁଡ଼ିକର ସ୍ୱରୂପ ସମ୍ପର୍କରେ ଜ୍ଞାନ ଅର୍ଜନ କରିବା ଲାଗି ବ୍ୟାକରଣର ଆବଶ୍ୟକତା ଏବଂ ଶବ୍ଦତାତ୍ତ୍ୱିକ ଦୃଷ୍ଟିରୁ ବିଭିନ୍ନ ଶବ୍ଦଗୁଡ଼ିକୁ ବିଚାର କରିବା ଲାଗି 'ନିରୁକ୍ତ'ର ଆବଶ୍ୟକତା ହୋଇଥିଲା । ଉଚିତ ସ୍ୱରଲୟ ରଖି ବୈଦିକ ମନ୍ତ୍ରଗୁଡ଼ିକ ବୋଲିବା ଲାଗି 'ଛନ୍ଦ'ର ଆବଶ୍ୟକତା ହୋଇଥିଲା । ଉଚିତ କାଳ-ନିର୍ଣ୍ଣୟ ଲାଗି ଜ୍ୟୋତିଷର ଆବଶ୍ୟକତା ପଡ଼ିଥିଲା । ଏହିପରି ଭାବରେ ବେଦର ଶୁଦ୍ଧତା ରକ୍ଷା କରିବା ଲାଗି ଉପରୋକ୍ତ ଛଅ ପ୍ରକାର ଶାସ୍ତ୍ର ଗଢ଼ି ଉଠିଥିଲା । ସେ ଗୁଡ଼ିକର ସମଷ୍ଟି ହେଉଛି ବେଦାଙ୍ଗ । 'ବେଦ' ଓ 'ବେଦାଙ୍ଗ' ମଧ୍ୟରେ ଏହା ହିଁ ହେଉଛି ପାରମ୍ପରିକ ସମ୍ପର୍କ । ଏହି ଛଅଟିଯାକ ବେଦାଙ୍ଗ ବିଷୟରେ ବୈଦିକ ବିଦ୍ୟାଳୟ ଗୁଡ଼ିକରେ ବିଧିବଦ୍ଧ ଭାବରେ ଶିକ୍ଷା ଦିଆ ଯାଉଥିଲା । ଏଥି ପ୍ରତି ଲକ୍ଷ୍ୟ କରି ଆପ୍ଟେ କହିଛନ୍ତି :

> "Thus, the six Vedangas were formulated and systematised within the curricula and syllabi of the various schools." (୬୮)

ପାଣିନି ବ୍ୟାକରଣରେ ବେଦକୁ ଦେବତା ଜ୍ଞାନ କରି ଏହି ଦେବତାଙ୍କର ଛଅ ଅଙ୍ଗକୁ ବେଦାଙ୍ଗ ବୋଲି କୁହା ଯାଇଛି । ଗୋଟିଏ ଅତି ସୁନ୍ଦର ରୂପକ ମାଧ୍ୟମରେ କୁହା ଯାଇଛି 'ଶିକ୍ଷା' ହେଲା ବେଦ-ଦେବତାଙ୍କ ନାସିକା, 'କଳ୍ପ' ହେଲା ହାତ, ବ୍ୟାକରଣ ହେଲା ମୁଖ, ନିରୁକ୍ତ ହେଲା କର୍ଣ୍ଣ ଏବଂ ଛନ୍ଦ ଓ ଜ୍ୟୋତିଷ ହେଲା ଦୁଇ ଚକ୍ଷୁ । ଏହି ଦୃଷ୍ଟିରୁ ବୈଦିକ ସାହିତ୍ୟରେ 'ବେଦାଙ୍ଗ'ର ମାହାତ୍ମ୍ୟ ରହିଅଛି ।

ବର୍ତ୍ତମାନ ବେଦାଙ୍ଗର କାଳ ବିଷୟ ବିଚାର୍ଯ୍ୟ । ଏହାର ସୃଷ୍ଟି ନିଶ୍ଚିତ ଭାବରେ ବୈଦିକ ସଂହିତାର ପରବର୍ତ୍ତୀ କାଳରେ । ଗୋପଥ ବ୍ରାହ୍ମଣ (୧।୨୭), ବୌଧାୟନ ଧର୍ମସୂତ୍ର (୨।୧୪୨) ଏବଂ ରାମାୟଣ (ବାଳକାଣ୍ଡ, ୭।୧୫) ଆଦି ଗ୍ରନ୍ଥରେ ବେଦାଙ୍ଗ ବିଷୟରେ ଉଲ୍ଲେଖ ଅଛି । ଏଥିରୁ କେତେକ ପ୍ରାଚୀନ ଏବଂ ଆଉ କେତେକ ଅର୍ବାଚୀନ ଗ୍ରନ୍ଥ । ଏହି ଦୃଷ୍ଟିରୁ ବିଚାର କଲେ ବେଦାଙ୍ଗଗୁଡ଼ିକର ପ୍ରାଚୀନତା ଓ ପ୍ରସିଦ୍ଧି ସମ୍ପର୍କରେ ଆଉ ସନ୍ଦେହର ଅବକାଶ ରହିବ ନାହିଁ । ଅନେକ ବିଦ୍ୱାନ୍ ବେଦାଙ୍ଗର ପ୍ରାଚୀନତମ କାଳକୁ ଖ୍ରୀ. ପୂ. ୧୫୦୦ ଶତାବ୍ଦୀରେ ସ୍ଥାପିତ କରିଥାନ୍ତି ଏବଂ ଏହା ଖ୍ରୀ. ପୂ. ୫୦୦ ଶତାବ୍ଦୀଠାରୁ ଆଉ ଅର୍ବାଚୀନ ନୁହେଁ ବୋଲି କହିଥାନ୍ତି । ପ୍ରସିଦ୍ଧ ବେଦଜ୍ଞ ଓ ଜ୍ୟୋତିର୍ବିଦ୍ ପଣ୍ଡିତ ଶଙ୍କର ବାଳକୃଷ୍ଣ ଦୀକ୍ଷିତଙ୍କର ଏହା ହିଁ ମତ । ତାଙ୍କ କହିବା ଅନୁସାରେ ମେଷାଦି ରାଶିଙ୍କର ନାମ ବେଦାଙ୍ଗ ଜ୍ୟୋତିଷରେ ପ୍ରଥମେ ନଥିଲା । ଏ ଗୁଡ଼ିକର ନାମ ଖ୍ରୀ. ପୂ. ୫୦୦ ଶତାବ୍ଦୀରୁ ହିଁ ପ୍ରବେଶ କରିଛି । ଅତଏବ, ବେଦାଙ୍ଗ ଜ୍ୟୋତିଷର ସୃଷ୍ଟି ନିଶ୍ଚିତ

ଭାବରେ ଖ୍ରୀ. ପୂ. ୫୦୦ ଶତାବ୍ଦୀର ବହୁ ବର୍ଷ ପୂର୍ବରୁ । 'ଜ୍ୟୋତିଷ' ବେଦାଙ୍ଗର ଗୋଟିଏ ଭାଗ ହୋଇଥିବାରୁ ଏହି ସାମଗ୍ରିକ ବେଦାଙ୍ଗ ଶାସ୍ତ୍ର ନିର୍ଣ୍ଣିତ ଭାବରେ ଏହାର ବହୁ ବର୍ଷ ପୂର୍ବରୁ ରଚିତ ହୋଇଥିଲା । (୫୯) ଗୋପଥ-ବ୍ରାହ୍ମଣରେ ଏହାର ନାମୋଲ୍ଲେଖ ଥିବାରୁ ବ୍ରାହ୍ମଣ ଯୁଗରେ ଏହାର ପ୍ରାଧାନ୍ୟ ଜନସମାଜରେ ଅନୁଭୂତ ହୋଇଥିବା ପରି ମନେ ହୁଏ । ଏହି ଦୃଷ୍ଟିରୁ ବିଚାର କଲେ ବେଦାଙ୍ଗର ସୃଷ୍ଟି ଖ୍ରୀ ପୂ. ୫୦୦ ଶତାବ୍ଦୀର ମଧ୍ୟରେ ବୋଲି ଗ୍ରହଣ କରିବାକୁ ହେବ ।

ବର୍ତ୍ତମାନ ବେଦାଙ୍ଗର ବିଭିନ୍ନ ବିଭାଗ ବିଷୟରେ ପୃଥକ୍ ପୃଥକ୍ ଆଲୋଚନା କରିବା ।

## ଶିକ୍ଷା :

ବେଦାଙ୍ଗରେ ଶିକ୍ଷା ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ଯେଉଁଥିରେ ଶବ୍ଦର ସ୍ୱର, ବର୍ଣ୍ଣ ଆଦି ଉଚ୍ଚାରଣ ସମ୍ପର୍କରେ ଉପଦେଶ ଦିଆ ଯାଇଥାଏ ତାହାକୁ ଶିକ୍ଷା କୁହନ୍ତି । ଏହାର ଅନ୍ୟ ନାମ ସ୍ୱରଶାସ୍ତ୍ର (Phonology) । ବେଦରେ ତିନି ପ୍ରକାର ସ୍ୱର ଅଛି । ସେଗୁଡ଼ିକ ହେଲା (କ) ଉଦାତ୍ତ, (ଖ) ଅନୁଦାତ୍ତ ଓ (ଗ) ସ୍ୱରିତ । ଉଚ୍ଚ ସ୍ୱରରେ ଉଚ୍ଚାରଣ କଲେ, ତାହାକୁ କୁହାଯାଏ ଉଦାତ୍ତ । ନିମ୍ନ ସ୍ୱରରେ ଉଚ୍ଚାରଣ କଲେ ତାହାକୁ କୁହାଯାଏ ଅନୁଦାତ୍ତ । ଉଚ୍ଚ ଓ ନିମ୍ନର ମଧ୍ୟବର୍ତ୍ତୀ ସ୍ୱରରେ ଉଚ୍ଚାରଣ କଲେ ତାହାକୁ କୁହାଯାଏ ସ୍ୱରିତ । ଉଚ୍ଚାରଣର ବିଭିନ୍ନତାରେ ଅର୍ଥର ବିଭିନ୍ନତା ଆସିଯାଏ ଏବଂ ତଦ୍ଦ୍ୱାରା ବେଦମନ୍ତ୍ରର ଫଳାଫଳ ମଧ୍ୟ ଭିନ୍ନ ହୋଇଉଠେ । ବେଳେ ବେଳେ ଏହା ବିପରୀତ ଫଳ ଆଣି ଦେଇଥାଏ । ଏହି ବିଷୟରେ ଗୋଟିଏ ସୁନ୍ଦର ବୈଦିକ ଗଳ୍ପ ଅଛି । ବୃତ୍ରାସୁର ନିଜ ଶତ୍ରୁ ଇନ୍ଦ୍ରଙ୍କୁ ମାରିବା ପାଇଁ ଏକ ଯଜ୍ଞର ଆୟୋଜନ କରିଥିଲା । ଏହି ଯଜ୍ଞର ଆହୁତି-ମନ୍ତ୍ର ହେଲା 'ଇନ୍ଦ୍ରଶତ୍ରୁର୍ବର୍ଧସ୍ୱ' । ଅର୍ଥାତ୍ ଇନ୍ଦ୍ରଙ୍କ ଶତ୍ରୁ ବା ବୃତ୍ରାସୁର ବିଜୟ ଲାଭ କରୁ । ଆହୁତି-ମନ୍ତ୍ରରେ ଏହି ପ୍ରକାର ଷଷ୍ଠୀ ତତ୍ପୁରୁଷ ସମାସରେ ସୃଷ୍ଟ ଶବ୍ଦଟିକୁ ଉଚ୍ଚାରଣ କରିବାର ଉଦ୍ଦେଶ୍ୟ ଥିଲା । କିନ୍ତୁ ଏହି ଅର୍ଥଟି ବାହାରିବାକୁ ହେଲେ ଅନ୍ୟ ବର୍ଣ୍ଣଟି ଅର୍ଥାତ୍ 'ତ୍ରୁ', ଏହି ବର୍ଣ୍ଣଟି ଉଦାତ୍ତ ସ୍ୱରରେ ଉଚ୍ଚାରଣ କରିବା କଥା । କିନ୍ତୁ ଅସାବଧାନତା ବଶତଃ ଆଦ୍ୟବର୍ଣ୍ଣ ଅର୍ଥାତ୍ 'ଇ' ଏହି ବର୍ଣ୍ଣଟି ଉଦାତ୍ତ ସ୍ୱରରେ ଉଚ୍ଚାରିତ ହୋଇଗଲା । ଏପରି ଉଚ୍ଚାରଣ ହେବା ଫଳରେ 'ଇନ୍ଦ୍ରଶତ୍ରୁ'ର ଅର୍ଥ ହେଲା ସ୍ୱୟଂ ଇନ୍ଦ୍ର । ମଧ୍ୟପଦ ଲୋପୀ କର୍ମଧାରୟ ସମାସରେ ହେଲା ଇନ୍ଦ୍ର ଅଟନ୍ତି ଶତ୍ରୁ—ଇନ୍ଦ୍ରଶତ୍ରୁ ଅର୍ଥାତ୍ ସ୍ୱୟଂ ଇନ୍ଦ୍ର । ଏହିପରି ଭୁଲ୍ ଉଚ୍ଚାରଣ କରିବା ଫଳରେ ବୃତ୍ରାସୁରର ନିଧନ ହେଲା ଏବଂ ଇନ୍ଦ୍ରଙ୍କର ବିଜୟ ହେଲା । ଏଥିରୁ ଅନୁମିତ ହେବ ଯେ ଆର୍ଯ୍ୟମାନେ ଉଚ୍ଚାରଣରେ ଶୁଦ୍ଧତା ଉପରେ ଖୁବ୍ ଗୁରୁତ୍ୱ ଦେଉଥିଲେ । ବାଚସ୍ପତି ଗୈରୋଲା ଏଥି ପ୍ରତି ଲକ୍ଷ୍ୟ କରି କହିଛନ୍ତି :

"ବେଦପାଠ ମେଁ ଶୁଦ୍ଧ ଶବ୍ଦୋଚ୍ଚାରଣ ଔର୍ ଉଚିତ ସ୍ୱରନିୟା କା ହୋନା

ଆବଶ୍ୟକ ହୁଏ । ଉଚ୍ଚାରଣ-ସ୍ଖଳିତ ଔର୍ ସ୍ୱରଭ୍ରଷ୍ଟ ବେଦପାଠ ନ କେବଳ ନିଷ୍ଫଳ ହୋତା ହୈ, ଅପିତୁ ଜସ୍ ଇଷ୍ଟସିଦ୍ଧି କେ ଲିୟେ ଓ୍ୱୁ କିୟା ଜାତା ହୈ, ଉସକେ ବିପରୀତ, ଅର୍ଥାତ୍ ଅନିଷ୍ଟକାରୀ ହୋ ଜାତା ହୈ ।'' (୬୦)

'ପାଣିନି-ଶିକ୍ଷା' ଗ୍ରନ୍ଥରେ (ପାଣିନିଙ୍କ ଭାଇ ପିଙ୍ଗଳଙ୍କ କୃତ) କୁହା ଯାଇଛି ଯେ ଯେଉଁ ବେଦପାଠୀ ବ୍ୟକ୍ତି ଶୁଦ୍ଧ ଭାବରେ ବେଦ-ମନ୍ତ୍ର ଉଚ୍ଚାରଣ କରନ୍ତି, ସେ ଏହି ଇହଲୋକ ଓ ବ୍ରହ୍ମଲୋକ, ଉଭୟରେ ସମ୍ମାନ ପାଇଥାନ୍ତି । ପାଣିନିଙ୍କ 'ଅଷ୍ଟାଧ୍ୟାୟୀ'ର ଭାଷ୍ୟକାର ପତଞ୍ଜଳି ତାଙ୍କ 'ମହାଭାଷ୍ୟରେ' କହିଛନ୍ତି :

''ଏକଃ ଶବ୍ଦଃ ସମ୍ୟଗ୍‌ଜ୍ଞାତଃ ସୁପ୍ରଯୁକ୍ତଃ ସ୍ୱର୍ଗେ ଲୋକେ ଚ କାମଧୁଗ୍ ଭବତି''

ଅର୍ଥାତ୍ ଶବ୍ଦଟିକୁ ଭଲ ଭାବରେ ଜାଣିଥିଲେ ଏବଂ ଭଲ ଭାବରେ ପ୍ରୟୋଗ କରିଥିଲେ ତାହା ଇହଲୋକ ଓ ସ୍ୱର୍ଗଲୋକ ଉଭୟରେ ସକଳ କାମନା ପୂରଣ କରିଥାଏ ।

ପ୍ରାଚୀନ ଭାରତରେ ବହୁତ ଗୁଡ଼ିଏ ଶିକ୍ଷା ଗ୍ରନ୍ଥ ଥିଲା । ତନ୍ମଧ୍ୟରୁ 'ପାଣିନୀୟ-ଶିକ୍ଷା' ପ୍ରଧାନ । ଏହା ପାଣିନି ବ୍ୟାକରଣର ସୂତ୍ରଗୁଡ଼ିକ ଉପରେ ଆଧାରିତ । ଏହାର ରଚୟିତା ପାଣିନି ନୁହନ୍ତି । ତାଙ୍କ ଭାଇ ପିଙ୍ଗଳ ଏହାର ରଚୟିତା ବୋଲି ପଣ୍ଡିତମାନେ ମତ ଦେଇଥାନ୍ତି । ଏତେ ଗୁଡ଼ିଏ ଶିକ୍ଷାଗ୍ରନ୍ଥର ରଚନାରୁ ଏହି ସୂଚନା ମିଳୁଛି ଯେ ବେଦାଧ୍ୟୟନ ଲାଗି ଶିକ୍ଷା ଏକ ଅପରିହାର୍ଯ୍ୟ ଶାସ୍ତ୍ର ହିସାବରେ ସେତେବେଳେ ଗଣ୍ୟ ହେଉଥିଲା । (୬୧)

**କଳ୍ପ :**

କର୍ମକାଣ୍ଡକୁ ନେଇ ବେଦାଙ୍ଗର 'କଳ୍ପ' ଭାଗଟି ଗଢ଼ି ଉଠିଛି । ଏହା ସୂତ୍ର ଆକାରରେ ରହିଅଛି । 'କଳ୍ପ' ଅର୍ଥ ହେଲା ବିଧି ବା ନିୟମ । 'ସୂତ୍ର' ଅର୍ଥ ହେଲା ଯାହା ସଂକ୍ଷେପରେ କୁହାଯାଏ । ଅତି ସଂକ୍ଷେପରେ କର୍ମକାଣ୍ଡର ବିଧିମାନ ଲେଖା ଯାଇଥିବା ଗ୍ରନ୍ଥକୁ କୁହାଯାଏ କଳ୍ପସୂତ୍ର । ଇତିହାସ ଓ ପରମ୍ପରାଗତ ଦୃଷ୍ଟିକୋଣରୁ କଳ୍ପସୂତ୍ରର ଖୁବ୍ ପ୍ରାଧାନ୍ୟ ଅଛି । କାଳ ଗଡ଼ିଯିବା ସଙ୍ଗେ ସଙ୍ଗେ ସଂସ୍କୃତ ଭାଷାରେ ଅସଂଖ୍ୟ ଗ୍ରନ୍ଥର ସୃଷ୍ଟି ହୋଇଥିଲା ଏବଂ ସେଗୁଡ଼ିକ ଅଧ୍ୟୟନ କରିବା ଲାଗି ନାନା ପ୍ରକାର ବିଧିବିଧାନମାନ ଲେଖା ଯାଇଥିଲା । ସେଗୁଡ଼ିକର ବିପୁଳତା ଦୃଷ୍ଟିରୁ ତନ୍ନିର୍ଦ୍ଦିଷ୍ଟ ବିଧିବିଧାନମାନ ମନେ ରଖିବା ଆଉ ସମ୍ଭବପର ହେଲା ନାହିଁ । ଏଣୁ ସେଗୁଡ଼ିକୁ ସଂକ୍ଷେପରେ ପ୍ରକାଶ କରିବାର ଆବଶ୍ୟକତା ଅନୁଭୂତ ହେଲା । ଏହି ଆବଶ୍ୟକତା ମେଣ୍ଟାଇବା ଲାଗି ହେଲା କଳ୍ପସୂତ୍ରର ସୃଷ୍ଟି ।

କଳ୍ପ ସୂତ୍ରର ତିନୋଟି ବିଭାଗ : ଶ୍ରୌତସୂତ୍ର, ଗୃହ୍ୟସୂତ୍ର ଓ ଧର୍ମସୂତ୍ର । ପ୍ରାଚୀନ

ଗ୍ରନ୍ଥମାନଙ୍କରେ ଅବଶ୍ୟ ଏକ ହଜାରରୁ ଅଧିକ କଳ୍ପସୂତ୍ରମାନଙ୍କର ନାମୋଲ୍ଲେଖ କରା ଯାଇଛି । କିନ୍ତୁ ସେଗୁଡ଼ିକ ମଧ୍ୟରୁ ଆମ ପାଇଁକି ଏବେ ୪୦ଟି କଳ୍ପସୂତ୍ର ଉପଲବ୍ଧ । ଏଥିରେ ମୁଖ୍ୟତଃ ୪୨ଟି କର୍ମ ବିଷୟ ବର୍ଣ୍ଣିତ । ସେହି କର୍ମଗୁଡ଼ିକ ମଧ୍ୟରେ ୧୪ ଶ୍ରୌତ ଯଜ୍ଞ, ୫ ମହାଯଜ୍ଞ ଓ ୧୬ ସଂସ୍କାର ଅନ୍ତର୍ଗତ ।

'ଶ୍ରୌତସୂତ୍ର'ରେ ବ୍ରାହ୍ମଣ ଗ୍ରନ୍ଥ ଭଳି ବୈଦିକ କର୍ମକାଣ୍ଡ ବର୍ଣ୍ଣିତ । କିନ୍ତୁ ଏହି ବର୍ଣ୍ଣନାରେ ପାର୍ଥକ୍ୟ ଅଛି । ଶ୍ରୌତସୂତ୍ରରେ ବୈଦିକ କର୍ମକାଣ୍ଡକୁ ସହଜରେ ମନେ ରଖିବା ଲାଗି ସୂତ୍ରାନ୍ୱିତ କରାଯାଇଛି ; କର୍ମକାଣ୍ଡଗତ ବିଧିବିଧାନକୁ ସଂକ୍ଷେପରେ ବର୍ଣ୍ଣନା କରା-ଯାଇଛି । କେତେକ ବିଶିଷ୍ଟ ଶ୍ରୌତସୂତ୍ରର ନାମ ହେଲା ଆଶ୍ୱଳାୟନ, ଶାଙ୍ଖାୟନ, ମାନବ, ବୌଧାୟନ, ଆପସ୍ତମ୍ବ, ହିରଣ୍ୟକେଶୀ, କାତ୍ୟାୟନ, ଦ୍ରାହ୍ୟାୟଣ, ଜୈମିନୀୟ ଏବଂ ବୈଖାନ । ଶ୍ରୌତସୂତ୍ରଗୁଡ଼ିକ ବିଭିନ୍ନ ବେଦର ଅଧୀନ । ଉଦାହରଣ ସ୍ୱରୂପ ଆଶ୍ୱଳାୟନ ଶ୍ରୌତସୂତ୍ର ଋଗ୍‌ବେଦର ଅଧୀନ ହେଲା ବେଳକୁ ବୌଧାୟନ, ଆପସ୍ତମ୍ବ ଓ ମାନବ ଶ୍ରୌତସୂତ୍ରଗୁଡ଼ିକ ହେଉଛି କୃଷ୍ଣ ଯଜୁର୍ବେଦର ଅଧୀନ । ଅନ୍ୟାନ୍ୟ ଶ୍ରୌତସୂତ୍ରଗୁଡ଼ିକ ସେହିପରି ଅନ୍ୟ ବେଦ-ଗୁଡ଼ିକର ଅଧୀନ ଅଟନ୍ତି ।

'ଗୃହ୍ୟସୂତ୍ର'ରେ ଗୃହସ୍ଥ କର୍ମ ସମ୍ପର୍କରେ ଯାବତୀୟ ବିଧିବିଧାନମାନ ବର୍ଣ୍ଣିତ । ଗର୍ଭାଧାନଠାରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ଯେଉଁ ଷୋଡ଼ଶ ସଂସ୍କାର ବିଧି ଅଛି, ତାହା ଏଥିରେ ବର୍ଣ୍ଣିତ । ଏଥିରେ ସାତ ଗୃହଯଜ୍ଞ ଓ ପାଞ୍ଚ ମହାଯଜ୍ଞ ବିଶେଷ ଭାବରେ ବର୍ଣ୍ଣିତ । (୬୨)

'ଗୃହ୍ୟସୂତ୍ର' ହେଉଛି ବ୍ୟକ୍ତିକୈନ୍ଦ୍ରିକ । ଏହା ବ୍ୟକ୍ତି ପାଇଁ ଏବଂ ପରିବାର ପାଇଁ ଉଦ୍ଦିଷ୍ଟ । କିପରି ବୈୟକ୍ତିକ ଜୀବନରେ ଉଭୟ ଐହିକ ଓ ପାରଲୌକିକ ସୁଖ ଆଣି ହେବ, ତାହା ଏଥିରେ ବିବକ୍ଷିତ । ଅନ୍ୟ ପକ୍ଷରେ 'ଧର୍ମସୂତ୍ର'ରେ ସାମାଜିକ ସୁଖ ସ୍ୱାଚ୍ଛନ୍ଦ୍ୟ କିପରି ଆଣି ହେବ, ତାହା ବର୍ଣ୍ଣିତ । ସମାଜରେ କିପରି ପରସ୍ପର ସହିତ ସୁସମ୍ପର୍କ ରଖି ଚଳିବାକୁ ହେବ, କିପରି ବିବାହ ଆଦି ସାମାଜିକ ଅନୁଷ୍ଠାନମାନ ସମାହିତ କରିବାକୁ ହେବ, ଇତ୍ୟାଦି ବହୁ ବିଷୟ ଏଥିରେ ବିଶଦ ଭାବରେ ବର୍ଣ୍ଣିତ । ଏ ସମ୍ପର୍କରେ 'ଗୌତମ-ଧର୍ମସୂତ୍ର'ରେ ଥିବା ଉଦାର ଭାବାନ୍ୱିତ ବିଧିବିଧାନମାନ ଉଲ୍ଲେଖନୀୟ । ରାଜ୍ୟ ଶାସନ ବ୍ୟବସ୍ଥା, ରାଜା-ପ୍ରଜା ସମ୍ପର୍କ, ଚାରି ବର୍ଣ୍ଣ ଓ ସେମାନଙ୍କର ଅଧିକାରର ପାର୍ଥକ୍ୟ ଆଦି ମଧ୍ୟ ଏଥିରେ ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ । ବିଶିଷ୍ଟ ଧର୍ମସୂତ୍ରଗୁଡ଼ିକର ନାମ ହେଲା ବଶିଷ୍ଠ, ମାନବ, ବୌଧାୟନ, ଆପସ୍ତମ୍ବ ଓ ଗୌତମ ।

ସୂତ୍ରଗ୍ରନ୍ଥଗୁଡ଼ିକର ରଚନାକାଳ ବିଷୟରେ ନାନା ମୁନିଙ୍କର ନାନା ମତ । ତେବେ ଅଧିକାଂଶ ସୂତ୍ର ଗ୍ରନ୍ଥ ଯେ ବୁଦ୍ଧଙ୍କ (ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀ) ପୂର୍ବରୁ ରଚିତ, ଏଥିରେ ସନ୍ଦେହ

ନାହିଁ । ଖ୍ରୀ. ପୂ. ୭୦୦ରୁ ଖ୍ରୀ ପୂ. ୨୦୦ ମଧ୍ୟରେ ବିଭିନ୍ନ ସୂତ୍ରଗ୍ରନ୍ଥ ରଚିତ ବୋଲି ଅଧିକାଂଶ ବିଦ୍ୱାନ ମତ ଦେଇଥାନ୍ତି ।

**ବ୍ୟାକରଣ :**

ପରଂପରା କ୍ରମେ ବ୍ୟାକରଣ ହେଉଛି ବେଦାଙ୍ଗର ଚତୁର୍ଥ ଭାଗ । ବେଦ ମନ୍ତ୍ରର ବନାନ ଶୁଦ୍ଧି ତଥା ଉଚ୍ଚାରଣ-ଶୁଦ୍ଧି ରକ୍ଷା କରିବା ହେଉଛି ବ୍ୟାକରଣର କର୍ତ୍ତବ୍ୟ । ଏହା ଅତି ପ୍ରାଚୀନ ପରଂପରା ଉପରେ ପ୍ରତିଷ୍ଠିତ । ପାଣିନି (ଖ୍ରୀ. ପୂ. ୪ର୍ଥ ଶତାବ୍ଦୀ) ଅବଶ୍ୟ ତାଙ୍କ ଅଷ୍ଟାଧ୍ୟାୟୀ ଗ୍ରନ୍ଥରେ ବ୍ୟାକରଣର ନିୟମକୁ ଏକ ବାଧ୍ୟବାଧକତା ଆଣି ଦେଲେ । ତାହାର ଅର୍ଥ ନୁହେଁ ଯେ ଏଥି ପୂର୍ବରୁ ବ୍ୟାକରଣ ବୋଲି କିଛି ନଥିଲା । ତାଙ୍କ ପୂର୍ବରୁ ନିରୁକ୍ତକାର ଯାସ୍କ (ଖ୍ରୀ, ପୂ ୭ମ ଶତାବ୍ଦୀ) ଥିଲେ ଯେ କି ବିଭିନ୍ନ ବୈଦିକ ଶବ୍ଦର ଶବ୍ଦତାତ୍ତ୍ୱିକ ଅର୍ଥ କରିଥିଲେ । ଯାସ୍କଙ୍କ ପୂର୍ବରୁ ମଧ୍ୟ ଶାକଟାୟନ, ଶାକପୁଣି, ଗାଲବ ଆଦି କେତେକ ମନୀଷୀ ଏ ବିଷୟରେ ଚର୍ଚ୍ଚା କରିଥିଲେ । କିନ୍ତୁ ପାଣିନି ସମସ୍ତଙ୍କୁ ଅତିକ୍ରମ କରି ଯାଇଥିଲେ । ସେ ସଂସ୍କୃତ ବ୍ୟାକରଣର ଯେଉଁ ଅଷ୍ଟାଧ୍ୟାୟୀ ଗ୍ରନ୍ଥଟି ଲେଖି ଯାଇଛନ୍ତି ତାହା ପ୍ରାୟ ଅଢ଼େଇ ହଜାର ବର୍ଷରୁ କିଛି ଊର୍ଦ୍ଧ୍ୱ କାଳ ପରେ ବି ଏବେ ପୂର୍ବ ଭଳି ସଂସ୍କୃତ ସାହିତ୍ୟକୁ ନିୟନ୍ତ୍ରଣ କରୁଛି । ଏ ସଂପର୍କରେ ଡେଣ୍ଟ ଯଥାର୍ଥରେ କୁହା ଯାଇଛି :

> "Panini may be regarded as the startirg point of the Sanskrit age, the literuature of which is almost entirely dominated by the linguistic standards fixed by him. His methodology, logic and the very apparatus of thinking have disciplined for about twenty five centuries Sanskrit authors of all classes." (୭୨-କ)

ପାଣିନିଙ୍କ ଅଷ୍ଟାଧ୍ୟାୟୀର ବ୍ୟାଖ୍ୟାକାର ପତଞ୍ଜଳି (ଖ୍ରୀ. ପୂ. ୨ୟ ଶତାବ୍ଦୀ) ଏହି ଗ୍ରନ୍ଥର ଶ୍ରେଷ୍ଠତା ପ୍ରତିପାଦନ କରିବାକୁ ଯାଇ ତାଙ୍କ 'ମହାଭାଷ୍ୟ'ରେ କହିଛନ୍ତି, ଏହା ହେଉଛି, 'ମହତ୍ତ୍ୱ ଶାସ୍ତ୍ରୌଘ' ବା 'ଶାସ୍ତ୍ରର ମହାସମୁଦ୍ର' । ଶବ୍ଦଗୁଡ଼ିକର ମୌଳିକ ଧାତୁ ନିର୍ଣ୍ଣୟ କରି ସଂକ୍ଷେପରେ ଓ ଅର୍ଥଗର୍ଭକ ଭାବରେ ପ୍ରକାଶ କରିବା ପାଇଁ ପାଣିନିଙ୍କ ଅଷ୍ଟାଧ୍ୟାୟୀ ଗ୍ରନ୍ଥ ଛଡ଼ା ପୃଥିବୀର ଆଉ କୌଣସି ଗ୍ରନ୍ଥରେ ଏ ପର୍ଯ୍ୟନ୍ତ ଉଦ୍ୟମ ହୋଇନାହିଁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ଘର ଥିଲା ଆଧୁନିକ ଆଫଗାନିସ୍ଥାନର 'ସଲତୁର' ଗ୍ରାମରେ । ଏହି ଗ୍ରାମର ଏଭଳି ପ୍ରସିଦ୍ଧି ଥିଲା ଯେ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ହୁଏନ୍‌ସାଂ ମଧ୍ୟ ସେଠାକୁ ଯାଇଥିଲେ ।

ସେତେବେଳେ ମଧ୍ୟ ସେହି ଅଞ୍ଚଳ ବହୁ ବୈୟାକରଣ ପଣ୍ଡିତଙ୍କ ଦ୍ୱାରା ଅଧ୍ୟୁଷିତ ଥିବାର କଥା ସେ ତାଙ୍କ ବିବରଣୀରେ ଉଲ୍ଲେଖ କରିଛନ୍ତି ।

ପୂର୍ବରୁ କୁହା ଯାଇଛି ପାଣିନିଙ୍କ ପୂର୍ବରୁ ମଧ୍ୟ ବୈଦିକ ବ୍ୟାକରଣ ଗ୍ରନ୍ଥ ଥିଲା । ଏଗୁଡ଼ିକୁ କୁହା ଯାଉଥିଲା 'ପ୍ରାତିଶାଖ୍ୟ' । ଏ ଗୁଡ଼ିକ ଭିନ୍ନ ଭିନ୍ନ ବେଦକୁ ଆଶ୍ରୟ କରି ରଚିତ ଥିଲା । ବେଦର ବହୁ ଶାଖାକୁ ଆଶ୍ରୟ କରି ବହୁ ପ୍ରାତିଶାଖ୍ୟ ଗ୍ରନ୍ଥମାନ ଥିଲେ ମଧ୍ୟ ବର୍ତ୍ତମାନ ଆମକୁ ଛଅଗୋଟି ମାତ୍ର ପ୍ରାତିଶାଖ୍ୟ ଗ୍ରନ୍ଥ ଉପଲବ୍ଧ । ସେଗୁଡ଼ିକ ହେଲେ (କ) ଋକ୍ ପ୍ରାତିଶାଖ୍ୟ, (ଖ) ଶୁକ୍ଳ ଯଜୁଃ-ପ୍ରାତିଶାଖ୍ୟ, (ଗ) ସାମବେଦ-ପ୍ରାତିଶାଖ୍ୟ, (ଘ) ଅଥର୍ବବେଦ-ପ୍ରାତିଶାଖ୍ୟ, (ଙ) ତୈତ୍ତିରୀୟ ପ୍ରାତିଶାଖ୍ୟ ଏବଂ (ଚ) କୃଷ୍ଣଯଜୁଃ-ପ୍ରାତିଶାଖ୍ୟ । ଏହି ପ୍ରାତିଶାଖ୍ୟ ଗ୍ରନ୍ଥଗୁଡ଼ିକ ଭିନ୍ନ ଭିନ୍ନ ବେଦ ସହିତ ସମ୍ବନ୍ଧିତ ଥିବା ହେତୁ ଏଗୁଡ଼ିକ ସଂପୃକ୍ତ ବେଦଗୁଡ଼ିକର ପ୍ରାଧାନ୍ୟ ପ୍ରତିପାଦିତ କରିବା ପାଇଁ ଚେଷ୍ଟା କରିଥିଲେ । ଦ୍ୱିତୀୟତଃ ଏଗୁଡ଼ିକ ଖଣ୍ଡିତ ଭାବରେ ଥିବାରୁ ଏକ ସ୍ୱୟଂସମ୍ପୂର୍ଣ୍ଣ ବ୍ୟାକରଣ ଗ୍ରନ୍ଥର ମର୍ଯ୍ୟାଦା ହାସଲ କରି ପାରି ନଥିଲେ । ତୃତୀୟତଃ ଏଗୁଡ଼ିକରେ କେବଳ ବର୍ଣ୍ଣ-ବିଚାର, ପଦ-ବିଭାଗ, ସନ୍ଧି ବିଚ୍ଛେଦ ଏବଂ ସ୍ୱରବିଧିର ଉପରେ ଆଲୋଚନା କରା ଯାଇଥିଲା । ଚତୁର୍ଥତଃ ଏଗୁଡ଼ିକରେ ଶବ୍ଦଗୁଡ଼ିକର ବ୍ୟୁତ୍ପତ୍ତିଗତ ଅର୍ଥ ବିଷୟରେ ଆଦୌ ବିଚାର କରାଯାଇ ନଥିଲା । ପଞ୍ଚମତଃ ସ୍ୱୀୟ ଶାଖାର ଶ୍ରେଷ୍ଠତା ପ୍ରତିପାଦନ କରିବା ପାଇଁ ଏଗୁଡ଼ିକରେ ବହୁ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରିବା ଫଳରେ ବେଳେବେଳେ ପ୍ରକୃତ ସତ୍ୟ ପ୍ରକଟିତ ହୋଇ ନଥିଲା । ବୈଦିକ 'ପ୍ରାତିଶାଖ୍ୟ' ଗ୍ରନ୍ଥଗୁଡ଼ିକରେ ଏହି ସବୁ ଦୋଷତ୍ରୁଟି ପରିଲକ୍ଷିତ ହୋଇଥିଲା । ଏଗୁଡ଼ିକୁ ଦୂର କରି ପାଣିନି ତାଙ୍କ 'ଅଷ୍ଟାଧ୍ୟାୟୀ' ବ୍ୟାକରଣ ଗ୍ରନ୍ଥର ମନ୍ଦିରଟି ତୋଳିଥିଲେ ।

ପାଣିନିଙ୍କ 'ଅଷ୍ଟାଧ୍ୟାୟୀ' ଗ୍ରନ୍ଥରେ କେବଳ ଯେ ବ୍ୟାକରଣଗତ ସିଦ୍ଧାନ୍ତମାନ ଅଛି ତାହା ନୁହେଁ ; ଏହି ସିଦ୍ଧାନ୍ତମାନ ଗଢ଼ିବା ଲାଗି ଯେଉଁ ଆଲୋଚନା କରାଯାଇଛି, ତାହା ଅନୁଧ୍ୟାନ କଲେ ଆମେ ତତ୍କାଳୀନ ଦେଶର ସାମାଜିକ ଓ ରାଜନୈତିକ ଅବସ୍ଥା ସମ୍ପର୍କରେ ମଧ୍ୟ କିଛିଟା ଆଲୋକ ପାଇଥାଉଁ । ଉଦାହରଣ ସ୍ୱରୂପ ଆମେ ସେଥିରୁ ଜାଣି ପାରୁଁ ଯେ ;

(କ) ରାଜାଙ୍କର 'ମନ୍ତ୍ରୀ-ପରିଷଦ'ଟିଏ ଥିଲା ଏବଂ ଏହି ମନ୍ତ୍ରୀ-ପରିଷଦ ଥିଲା 'ରାଜକର୍ତ୍ତା' । ଏହି ପରିଷଦ ରାଜାଙ୍କୁ ନିର୍ବାଚିତ କରୁଥିଲା ଏବଂ ଆବଶ୍ୟକ ହେଲେ ତାଙ୍କୁ ଗାଦିରୁ ମଧ୍ୟ ହଟାଇ ଦେଇ ପାରୁଥିଲା । ମନ୍ତ୍ରୀ-ପରିଷଦଟି କେତେ ଦୂର କ୍ଷମତାଶାଳୀ ଥିଲା, ତାହା ସହଜରେ ଏଥିରୁ ଅନୁମେୟ ।

(ଖ) ରାଜାଙ୍କର ବ୍ୟକ୍ତିଗତ ଦେହରକ୍ଷୀ ଥିଲେ । ସେମାନଙ୍କୁ କୁହା ଯାଉଥିଲା 'ରାଜପ୍ରତୋଷଣ' ।

(ଗ) ଦୁଇ ପ୍ରକାର ରାଷ୍ଟ୍ର ଥିଲା । ଗୋଟିକୁ କୁହା ଯାଉଥିଲା 'ଏକରାଜ', ଯାହାର ମୁଖ୍ୟ ଥିଲେ ରାଜା । ଅପରଟିକୁ କୁହା ଯାଉଥିଲା 'ସଂଘ' ବା 'ଗଣ' ଯହିଁରେ ଗଣତନ୍ତ୍ର ଶାସନ ଚାଲୁଥିଲା ।

(ଘ) ଗ୍ରାମର ପ୍ରଧାନଙ୍କୁ 'ଗ୍ରାମଣୀ' କୁହା ଯାଉଥିଲା । ସେ ଥିଲେ ଗ୍ରାମସ୍ତରୀୟ କର୍ମଚାରୀ ।

ସେଥିପାଇଁ ଯଥାର୍ଥରେ କୁହା ଯାଇଛି :

"The picture of cultural and historical import portrayed in the Astadhyayi enhances the depth and interest of that great book which is a compendium of ancient institutions." (୭ :-ଖ)

ଉପର୍ଯ୍ୟୁକ୍ତ ଆଲୋଚନାରୁ ସାଧାରଣ ଭାବରେ ବ୍ୟାକରଣର ମହତ୍ତ୍ୱ ତଥା ବିଶେଷ ଭାବରେ ପାଣିନିକୃତ 'ଅଷ୍ଟାଧ୍ୟାୟୀ' ବ୍ୟାକରଣର ମହତ୍ତ୍ୱ ସହଜରେ ଉପଲବ୍‌ଧ ହେବ ।

## ନିରୁକ୍ତ :

'ନିରୁକ୍ତ' ହେଉଛି ବେଦାଙ୍ଗର ଆଉ ଗୋଟିଏ ଭାଗ । ବର୍ତ୍ତମାନ ଆମକୁ ଯେଉଁ ନିରୁକ୍ତ ଉପଲବ୍‌ଧ, ତାହାର ସ୍ରଷ୍ଟା ହେଉଛନ୍ତି ଯାସ୍କ, ଯେ କି ଥିଲେ ଖ୍ରୀ. ପୂ. ୭ମ ଶତାବ୍ଦୀର ବ୍ୟକ୍ତି । ଏଥିରେ ବୈଦିକ ମନ୍ତ୍ରଗୁଡ଼ିକର ଶବ୍ଦ-ବ୍ୟୁତ୍ପତ୍ତି ଓ ଶବ୍ଦବୋଧ ଉଭୟ ବର୍ଣ୍ଣିତ । ଏହା ହିଁ ତ ଅଟେ ସ୍ଥୂଳତଃ ବ୍ୟାକରଣର ଆଲୋଚ୍ୟ ବିଷୟ । ଅତଏବ ନିରୁକ୍ତ ଓ ବ୍ୟାକରଣ ପରସ୍ପର ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ବ୍ୟାକରଣ-ଜ୍ଞାନ ବିନା ନିରୁକ୍ତକୁ ବୁଝି ହେବ ନାହିଁ । ସ୍ୱୟଂ ଯାସ୍କ ହିଁ ଏ କଥା କହିଛନ୍ତି । ସେ କହିଛନ୍ତି ତାଙ୍କ ନିରୁକ୍ତ ଗ୍ରନ୍ଥଟି :

'ନାବୈୟାକରଣାୟ'

ଅର୍ଥାତ୍ ବ୍ୟାକରଣ ଜାଣି ନଥିବା ବ୍ୟକ୍ତିଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ବର୍ତ୍ତମାନ ପ୍ରଶ୍ନ ହୋଇପାରେ, ଯାସ୍କ ତ ଖ୍ରୀ. ପୂ ୭ମ ଶତାବ୍ଦୀରେ ତାଙ୍କର ନିରୁକ୍ତ ଗ୍ରନ୍ଥ ଲେଖିଲେ । ତତ୍ପୂର୍ବରୁ କପରି ଭାବରେ ବୈଦିକ ଶବ୍ଦଗୁଡ଼ିକୁ ଅର୍ଥ କରି ଯାଉଥିଲା ? ଆଗରୁ କ'ଣ ସେହିଭଳି କୌଣସି ଗ୍ରନ୍ଥ ନଥିଲା ? ଏହାର ଉତ୍ତର 'ନା' ହେବ । ବାସ୍ତବିକ ବହୁ 'ନିରୁକ୍ତ' ଗ୍ରନ୍ଥ ପୂର୍ବରୁ ଥିଲା ; ସେଗୁଡ଼ିକ ଲୋପ ପାଇଯାଇଛି । କିନ୍ତୁ ସେଗୁଡ଼ିକର ନାମ ଯାସ୍କଙ୍କ ନିରୁକ୍ତ ଗ୍ରନ୍ଥରେ ଉଲ୍ଲେଖ ଅଛି । ଶବ୍ଦଗୁଡ଼ିକର ବ୍ୟୁତ୍ପତ୍ତିଗତ ଅର୍ଥ ଆଲୋଚନା ପ୍ରସଙ୍ଗରେ

ସେଗୁଡ଼ିକ ପୂର୍ବଜମାନଙ୍କ ଦ୍ୱାରା କି ଭଳି ଭାବରେ ବ୍ୟାଖ୍ୟାତ, ଯାସ୍କ ତାହା ଉଲ୍ଲେଖ କରିଛନ୍ତି । ତାଙ୍କ ନିରୁକ୍ତ ଅନୁଧ୍ୟାନ କଲେ ଆମେ ଅଠର ଜଣ ନିରୁକ୍ତକାର, ବୈୟାକରଣ, କୋଷକାରଙ୍କ ନାମ ସମ୍ପର୍କରେ ଆସିଥାଉଁ । (୭୩) ଏହି ଗ୍ରନ୍ଥଗୁଡ଼ିକ ଅବଶ୍ୟ କେବେ ରଚିତ ହୋଇଥିଲା, ତାହା କହି ହେବ ନାହିଁ । ତେବେ ଏ କଥା ନିଶ୍ଚିତ ଯେ ବୈଦିକ ନିରୁକ୍ତର ଅଧ୍ୟୟନର ପରମ୍ପରା ଯେ ବହୁ ପ୍ରାଚୀନ କାଳରୁ ଏବଂ ଯାସ୍କଙ୍କର ବହୁ ପୂର୍ବରୁ ଚାଲି ଆସୁଛି, ଏଥିରେ ସନ୍ଦେହ ନାହିଁ ।

'ନିରୁକ୍ତ'ର ପୂର୍ବରୁ ଆଉ ଗୋଟିଏ ବୈଦିକ ଶବ୍ଦକୋଷ ଥିଲା, ଯାହାର ନାମ ହେଉଛି 'ନିଘଣ୍ଟୁ' । ଯାସ୍କ ଏହି 'ନିଘଣ୍ଟୁ' ଗ୍ରନ୍ଥ ଉପରେ ଟୀକା ସ୍ୱରୂପ 'ନିରୁକ୍ତ' ଗ୍ରନ୍ଥ ଲେଖି ଯାଇଛନ୍ତି । 'ନିଘଣ୍ଟୁ'ରେ ତିନୋଟି କାଣ୍ଡ ଅଛି, ନୈଘଣ୍ଟୁକ, ନୈଗମ ଓ ଦୈବତ । ପ୍ରଥମ ନୈଘଣ୍ଟୁକ କାଣ୍ଡରେ ଏକାର୍ଥବୋଧକ ବହୁ ଶବ୍ଦର ସଂକଳନ କରା ଯାଇଛି । ଉଦାହରଣ ସ୍ୱରୂପ ପୃଥିବୀବାଚକ ଏକୋଇଶ ଶବ୍ଦ ଦିଆଯାଇଛି । ଦ୍ୱିତୀୟ ନୈଗମ କାଣ୍ଡରେ ବହୁ ଅର୍ଥବୋଧକ ଗୋଟିଏ ଗୋଟିଏ ଶବ୍ଦର ସଂକଳନ କରା ଯାଇଛି । ତୃତୀୟ ଦୈବତ କାଣ୍ଡରେ ଋଗ୍ ବେଦରେ ଥିବା ସମସ୍ତ ଦେବତାଙ୍କ ନାମ ସଙ୍କଳିତ ହୋଇଛି । ଏହି କାଣ୍ଡ ତିନୋଟିରେ ଯଥାକ୍ରମେ ୧୬୮୦, ୨୭୮, ୧୫୧ ସଂଖ୍ୟକ ଶବ୍ଦ ସଙ୍କଳିତ । ନିରୁକ୍ତ ମଧ୍ୟ ଏହିପରି ତିନି ଭାଗରେ ବିଭକ୍ତ । ପ୍ରଥମ ଭାଗର ନାମ ହେଉଛି ନୈଘଣ୍ଟୁକ କାଣ୍ଡ । ଏଥିରେ ନିଘଣ୍ଟୁ ବର୍ଣ୍ଣିତ ୧୬୮୦ ଶବ୍ଦ ସମେତ ବେଦର ଆହୁରି ଅଧିକ ୧୩୧୦ ଶବ୍ଦ ସ୍ଥାନିତ । ଏହି ଶବ୍ଦଗୁଡ଼ିକ ଶବ୍ଦତାତ୍ତ୍ୱିକ ଦୃଷ୍ଟିକୋଣରୁ କିଭଳି ଭାବରେ ସୃଷ୍ଟି ହୋଇଛନ୍ତି, ତାହା ଏଥିରେ ବର୍ଣ୍ଣିତ । ଦ୍ୱିତୀୟ ଭାଗଟିର ନାମ ହେଲା ନୈଗମ କାଣ୍ଡ । ଏଥିରେ ୨୭୮ ଗୋଟି ଶବ୍ଦର ଶବ୍ଦତାତ୍ତ୍ୱିକ ବ୍ୟାଖ୍ୟା ସଙ୍କଳିତ । ତୃତୀୟ ଭାଗଟିର ନାମ ହେଉଛି ଦୈବତ କାଣ୍ଡ, ଯହିଁରେ ୧୫୧ ସଂଖ୍ୟକ ଦେବତାଙ୍କର ଶବ୍ଦତାତ୍ତ୍ୱିକ ବ୍ୟାଖ୍ୟା କରା ଯାଇଛି । ନିଘଣ୍ଟୁ ହେଉଛି ମୌଳିକ ଗ୍ରନ୍ଥ ଏବଂ ନିରୁକ୍ତ ହେଉଛି ଭାଷ୍ୟ ଗ୍ରନ୍ଥ । କିନ୍ତୁ ଷଡ଼ ବେଦାଙ୍ଗରେ ନିଘଣ୍ଟୁର ନାମ ଅନ୍ତର୍ଭୁକ୍ତ ନ ଥାଇ ନିରୁକ୍ତର ନାମ ଅନ୍ତର୍ଭୁକ୍ତ ଅଛି । ଏହା ନିରୁକ୍ତର ମହତ୍ତ୍ୱ ସୂଚାଇଥାଏ । ମହାଭାରତରେ (ଶାନ୍ତିପର୍ବ, ୩୪୨ତମ ଅଧ୍ୟାୟ) ମଧ୍ୟ ନିରୁକ୍ତକାର ଯାସ୍କଙ୍କର ଯଶୋଗାନ କରା ଯାଇଛି । ନିରୁକ୍ତକାର ତାଙ୍କ ଗ୍ରନ୍ଥରେ ଅନେକ ପରିମାଣରେ ସ୍ୱତନ୍ତ୍ରତା ଦର୍ଶାଇଛନ୍ତି । ଏଥିରେ ଭାଷା ବିଜ୍ଞାନ, ସାହିତ୍ୟ, ସମାଜଶାସ୍ତ୍ର, ଇତିହାସ ଆଦିର ଏକ ସମନ୍ୱୟ ସଂଘଟିତ । ସେହି ଦୃଷ୍ଟିରୁ ବେଦାଙ୍ଗ ମଧ୍ୟରେ ଏହାର ପ୍ରାଧାନ୍ୟ ଏଭଳି ଭାବରେ ସ୍ୱୀକୃତ ।

**ଛନ୍ଦ :**

ଛନ୍ଦ ହେଉଛି ବେଦାଙ୍ଗର ପଞ୍ଚମ ଅଙ୍ଗ । ସମସ୍ତ ବେଦ ହେଉଛି ଛନ୍ଦୋବଦ୍ଧ । ଶୁଦ୍ଧ ଛନ୍ଦର ସ୍ୱରଲୟ ରକ୍ଷି ଗାଇବାର ସ୍ୱାତନ୍ତ୍ର୍ୟ ବିଦ୍ୟମାନ । ଏହି ସ୍ୱାତନ୍ତ୍ର୍ୟକୁ ରକ୍ଷା କରି

ଠିକ୍ ଭାବରେ ବେଦମନ୍ତ୍ରଗୁଡ଼ିକୁ ଗାଇବା ଲାଗି ଛନ୍ଦ-ଶାସ୍ତ୍ରର ଆବଶ୍ୟକତା ରହିଛି । ଉପଯୁକ୍ତ ସ୍ୱରଲୟରେ ବେଦମନ୍ତ୍ରଗୁଡ଼ିକୁ ନ ବୋଲିଲେ, ସୁଫଳ ତ ମିଳିବ ନାହିଁ, ବରଂ କୁଫଳ ମିଳିବ ବୋଲି ବୈଦିକ ଆର୍ଯ୍ୟମାନଙ୍କର ବିଶ୍ୱାସ ଥିଲା । ପରବର୍ତ୍ତୀ କାଳରେ ଭାରତୀୟ ଛନ୍ଦର ଯେଉଁ ଭୂୟୋବିକାଶ ସଂଘଟିତ ହୋଇଛି, ତାହା ଏହି ବେଦାଙ୍ଗର ଛନ୍ଦ-ଶାସ୍ତ୍ରକୁ ହିଁ ଭିତ୍ତି କରିଛି । ପ୍ରତିଟି ଛନ୍ଦ ନିର୍ଦ୍ଦିଷ୍ଟ ସଂଖ୍ୟକ ବର୍ଣ୍ଣକୁ ଅନୁସରଣ କରିଥାଏ । ଉଦାହରଣ ସ୍ୱରୂପ ଗାୟତ୍ରୀ ଛନ୍ଦରେ ବର୍ଣ୍ଣ-ସଂଖ୍ୟା ୨୪ ହେଲାବେଳେ ଜଗତୀ ଛନ୍ଦରେ ବର୍ଣ୍ଣ-ସଂଖ୍ୟା ହେଉଛି ୪୮ । ବେଦରେ ପ୍ରଧାନ ପ୍ରଧାନ ୧୭ଟି ଛନ୍ଦ ବ୍ୟବହୃତ । (୬୪)

ବୈଦିକ ଆର୍ଯ୍ୟମାନଙ୍କ ନିକଟରେ ବେଦମନ୍ତ୍ରଗୁଡ଼ିକ ଭଳି ଛନ୍ଦଗୁଡ଼ିକ ମଧ୍ୟ ଥିଲେ ପବିତ୍ର ଓ ପୂଜ୍ୟ । ସେଗୁଡ଼ିକୁ ଦୈବ-ସମ୍ଭବ ବୋଲି ସେମାନେ ଜ୍ଞାନ କରୁଥିଲେ । ଉଦାହରଣ ସ୍ୱରୂପ ସେମାନଙ୍କର ବିଶ୍ୱାସ ଥିଲା ଯେ ଗାୟତ୍ରୀ ଛନ୍ଦ ଅଗ୍ନି ଦେବତାଙ୍କ ଠାରୁ ସମ୍ଭୂତ, ଉଷ୍ଣିକ୍ ଛନ୍ଦ ସବିତା ଦେବତାଙ୍କଠାରୁ ସମ୍ଭୂତ, ଅନୁଷ୍ଟୁପ୍ ଛନ୍ଦ ସୋମ ଦେବତାଙ୍କ ଠାରୁ ସମ୍ଭୂତ ଇତ୍ୟାଦି । ଛନ୍ଦର ଶୁଦ୍ଧତା ରକ୍ଷା କରିବା ଉଦ୍ଦେଶ୍ୟରେ ସମସ୍ତ ଅଳଙ୍କାର ଶାସ୍ତ୍ରରେ ତେଣୁ କୁହା ଯାଇଛି ଯେ, କାବ୍ୟରେ ଅନ୍ୟ ସବୁ ଦୋଷକୁ କ୍ଷମା ଦିଆ ଯାଇପାରେ ; କିନ୍ତୁ ଛନ୍ଦ ଭଙ୍ଗ ଦୋଷକୁ କ୍ଷମା ଦିଆ ଯାଇ ପାରିବ ନାହିଁ । ଏବେ ଅବଶ୍ୟ ଭାରତୀୟ ସାହିତ୍ୟରେ ପାଶ୍ଚାତ୍ୟ ସାହିତ୍ୟର ଅନୁକରଣରେ ଗଦ୍ୟ କବିତା ପ୍ରବେଶ କଲାଣି । କିନ୍ତୁ ଗଦ୍ୟ-କବିତାରେ ମଧ୍ୟ ଏକ ଛନ୍ଦ ଅଛି ବୋଲି ଆଧୁନିକ କବିମାନେ ସ୍ୱୀକାର କରନ୍ତି । ଅତଏବ, ଛନ୍ଦ ନଥିଲେ କବିତା କଦାପି କବିତା ବାଚ୍ୟ ହୋଇ ନପାରେ । ଏହିସବୁ ଦୃଷ୍ଟିରୁ ବିଚାର କଲେ ଆମେ ଜାଣି ପାରିବା ଯେ ବେଦାଙ୍ଗରେ ଛନ୍ଦଶାସ୍ତ୍ର ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି ।

**ଜ୍ୟୋତିଷ :**

ଜ୍ୟୋତିଷ ହେଉଛି ବେଦାଙ୍ଗର ଷଷ୍ଠ ଅଙ୍ଗ ସ୍ୱରୂପ । ଏହା ମଧ୍ୟ ଅନ୍ୟାନ୍ୟ ଅଙ୍ଗ ଭଳି ସମଧିକ ପ୍ରଧାନ ଓ ମହତ୍ତ୍ୱପୂର୍ଣ୍ଣ । ବର୍ତ୍ତମାନ ଆମ ପାଖରେ 'ବେଦାଙ୍ଗ ଜ୍ୟୋତିଷ' ନାମରେ ଯେଉଁ ଗ୍ରନ୍ଥଟି ଉପଲବ୍ଧ, ତାହାର ସ୍ରଷ୍ଟା 'ଲଗଧ' ବୋଲି କୁହା ଯାଇଥାଏ । ଏଥିରେ ନିମ୍ନଲିଖିତ ସଂଖ୍ୟକ ବୈଦିକ ମନ୍ତ୍ରମାନ ସ୍ଥାନିତ :

(କ) ଋଗ୍‌ବେଦରୁ— ୩୬ ମନ୍ତ୍ର
(ଖ) ଯଜୁର୍ବେଦରୁ— ୪୩ ମନ୍ତ୍ର
(ଗ) ଅଥର୍ବ ବେଦରୁ— ୧୬୨ ମନ୍ତ୍ର

ବେଦାଙ୍ଗ ଜ୍ୟୋତିଷର କାଳ ବିଷୟରେ ନାନା ମୁନିଙ୍କର ନାନା ମତ । ମ୍ୟାକ୍ସ-ମୁଲର୍ ଏହାକୁ ଖ୍ରୀ. ପୂ. ୩୦୦ରେ ସ୍ଥାନିତ କରାବେଳେ ହ୍ୱିଟ୍‌ନେ ଏହାକୁ ଖ୍ରୀ. ପୂ. ୧୪୦୮ରେ ସ୍ଥାନିତ କରିଥାନ୍ତି । ପୁଣି ବାଳଗଙ୍ଗାଧର ତିଳକ ଏହାକୁ ଖ୍ରୀ. ପୂ. ୧୨୦୦ରୁ ଖ୍ରୀ. ପୂ. ୧୪୦୦ ମଧ୍ୟରେ ସ୍ଥାନିତ କରିଥାନ୍ତି । 'ବ୍ରାହ୍ମଣ' ଓ 'ଉପନିଷଦ' ଗ୍ରନ୍ଥମାନଙ୍କରେ ନକ୍ଷତ୍ର ଆଦିର ବହୁଳ ଉଲ୍ଲେଖ ଅଛି । ଏଣୁ ଏହି ଶାସ୍ତ୍ର ମ୍ୟାକ୍ସମୁଲାର୍ କହିଲା ଭଳି ଏତେ ଅର୍ବାଚୀନ ହୋଇ ନ ପାରେ । ଜାତକ-ଗଳ୍ପଗୁଡ଼ିକରେ ମଧ୍ୟ ନକ୍ଷତ୍ର-ବିଦ୍ୟାର ଉଲ୍ଲେଖ ଅଛି । ଅତଏବ ଜ୍ୟୋତିଷର ସୃଷ୍ଟି ନିଶ୍ଚିତ ଭାବରେ ବୁଦ୍ଧଙ୍କର (ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀ) ପୂର୍ବବର୍ତ୍ତୀ ।

ଜ୍ୟୋତିଷର ସୃଷ୍ଟି ଯଜ୍ଞ-କର୍ମ ସହିତ ସମ୍ବନ୍ଧିତ । ଆମେ ଉଭୟ ଋଗ୍‌ବୈଦିକ ଓ ଋଗ୍‌ବେଦୋତ୍ତର ମନ୍ତ୍ରଗୁଡ଼ିକ ଅନୁଧ୍ୟାନ କଲେ ଜାଣି ପାରୁ ଯେ ଯଜ୍ଞ-କର୍ମ ଏକ ବାଧ୍ୟବାଧ୍ୟ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ହୋଇଥିଲା । ଏହାର ଆରମ୍ଭ ଓ ଶେଷ ନିର୍ଦ୍ଦିଷ୍ଟ ସମୟରେ ଓ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ କରାଯାଉଥିଲା । ପ୍ରାଥମିକ ଅବସ୍ଥାରେ ବର୍ଷର ଗଣନା ଯଜ୍ଞ ଭିତ୍ତିକ ହିଁ ଥିଲା । 'ସତ୍ର' ନାମଧେୟ ଯଜ୍ଞ ଏକ ବର୍ଷ ଧରି ଚାଲୁଥିଲା । ଏହା ସୂର୍ଯ୍ୟଙ୍କର ବାର୍ଷିକ ଗତିକୁ ଅନୁସରଣ କରି କରା ଯାଉଥିଲା । ଠିକଣା ସମୟରେ ଯଜ୍ଞ-କାର୍ଯ୍ୟ ସମାହିତ କରିବା ଲାଗି ଦିନ, ମାସ, ଋତୁ ଓ ବର୍ଷ ସମ୍ପର୍କରେ ଜ୍ଞାନ ଅର୍ଜନ କରିବାର ଆବଶ୍ୟକ ପଡ଼ିଲା । ଏହି ପରିପ୍ରେକ୍ଷୀରେ ହୋଇଥିଲା ଜ୍ୟୋତିଷର ସୃଷ୍ଟି । ବାସ୍ତବିକ, ବୈଦିକ ଗ୍ରନ୍ଥଗୁଡ଼ିକରେ ଯାଜ୍ଞିକ ବ୍ରାହ୍ମଣଙ୍କୁ 'ଋତ୍ୱିକ୍' ବୋଲି କୁହା ଯାଇଛି । ଯେ 'ଋତୁ'ରେ 'ଯଜ୍ଞ' କରନ୍ତି, ସେ ହେଲେ 'ଋତ୍ୱିକ୍' । ବିଭିନ୍ନ ଋତୁକୁ ଚିହ୍ନି ପାରି ଯେ ବିଭିନ୍ନ ପ୍ରକାର ଯଜ୍ଞ କରନ୍ତି ସେ ହେଲେ 'ଋତ୍ୱିକ୍' । ଅତଏବ 'ଜ୍ୟୋତିଷ' କିପରି ଭାବରେ ଯଜ୍ଞକର୍ମ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ, ତାହା ଏଥିରୁ ସହଜରେ ଅନୁମିତ ହେବ ।

ବିଭିନ୍ନ ବୈଦିକ ଗ୍ରନ୍ଥରେ ଜ୍ୟୋତିଷ ସମ୍ପର୍କରେ ବିଭିନ୍ନ ପ୍ରକାର ଉଲ୍ଲେଖ କରା ଯାଇଛି । ସେଥିରୁ କେତୋଟି ପ୍ରଧାନ ପ୍ରଧାନ ପଂକ୍ତି ବିଷୟ ନିମ୍ନରେ ଦର୍ଶା ଯାଉଅଛି :

(କ) ସୂର୍ଯ୍ୟ ବିଷୁବ-ରେଖାର ଉତ୍ତରକୁ ଗତି କରୁଥିବା ସମୟକୁ ଋଗ୍ ବେଦରେ (୧୬୨।୬) 'ଦେବଯାନ' ବୋଲି କୁହା ଯାଇଛି । ଛାନ୍ଦୋଗ୍ୟ ଉପନିଷଦରେ ମଧ୍ୟ ଏହି 'ଦେବଯାନ' ବିଷୟ ଉଲ୍ଲିଖିତ । ଏହା ହେଉଛି ସୂର୍ଯ୍ୟଙ୍କର ଛଅ ମାସ ଧରି ହେଉଥିବା ଉତ୍ତରାୟଣ ।

(ଖ) ଋକ୍‌ବେଦସ୍ଥ (୫।୪୦) ଗୋଟିଏ ସୂକ୍ତରେ ଅତ୍ରି ମୁନି ପୂର୍ଣ୍ଣ ସୂର୍ଯ୍ୟୋପରାଗ ଦେଖିଥିବା କଥା ଉଲ୍ଲିଖିତ ।

(ଗ) ତୈତ୍ତିରୀୟ ବ୍ରାହ୍ମଣରେ ବର୍ଷର ନାମକୁ 'ସମ୍ବତ୍ସର' ବୋଲି କୁହା ଯାଇଛି ।

(ଘ) ଋଗ୍‌ବେଦରେ (୧୦।୧୯୦।୨) ଦିନ ଓ ରାତ୍ରିକୁ ଏକତ୍ର 'ଅହୋରାତ୍ର' ବୋଲି କୁହା ଯାଇଛି ।

(ଙ) ଋଗ୍‌ବେଦରେ (।୧୬୩।୮) ଦିନ ଓ ରାତି ମଧ୍ୟରେ ବିଭାଜନ କରା ଯାଇଥିବା କଥା ଉଲ୍ଲିଖିତ ।

(ଚ) ଋଗ୍‌ବେଦରେ (୭।୯।୧) ଦିନକୁ 'ଅର୍ଜୁନ' ବା ପ୍ରକାଶମୟ ବୋଲି କୁହା ଯାଇଛି ଏବଂ ରାତିକୁ 'କୃଷ୍ଣ' ବୋଲି କୁହା ଯାଇଛି ।

(ଛ) ଋଗ୍‌ବେଦରେ (୧।୧୬୪।୧୧) ବାର ରାଶିର ଗଣନାରେ ବର୍ଷର ୩୬୦ ଦିନ ବୋଲି ଧରା ଯାଇଛି ।

(ଜ) ତୈତ୍ତିରୀୟ ସଂହିତାରେ (୧।୪।୧୪) ବାର ମାସର ନାମ ଉଲ୍ଲିଖିତ । ଏହି ନାମଗୁଡ଼ିକ ହେଲେ ମଧୁ, ମାଧବ, ଶୁକ୍ର, ଶୁଚି, ନଭସ୍, ନଭସ୍ୟ, ଇଷ, ଊର୍ଜ, ସହସ, ସହସ୍ୟ, ତପସ ଓ ତପସ୍ୟ ।

(ଝ) ଋଗ୍‌ବେଦରେ (୧।୧୦୩।୪) ସମସ୍ତ ଜ୍ଞାନର ନିଦର୍ଶନ ସ୍ୱରୂପ ଆମେ 'ଯୁଗ' ଶବ୍ଦର ପ୍ରୟୋଗ ଦେଖିଥାଉଁ ।

(ଞ) ଅଥର୍ବବେଦରେ (୧୩।୬।୧୭) ଉଲ୍ଲେଖ ଅଛି ଯେ ସର୍ବଶକ୍ତିମାନ୍ ସୂର୍ଯ୍ୟଙ୍କ ଆଗମନରେ ନକ୍ଷତ୍ର, ତାରା ଓ ରାତି ଚୋର ଭଳି ପଳାଇ ଯାଆନ୍ତି ।

(ଟ) ଶତପଥ ବ୍ରାହ୍ମଣ ଗ୍ରନ୍ଥରେ (୬।୧।୬।୪) 'ସପ୍ତର୍ଷି ମଣ୍ଡଳ'ର ନାମୋଲ୍ଲେଖ ଅଛି । ଏହାକୁ 'ଋକ୍ଷ' ବୋଲି କୁହା ଯାଇଛି ।

(ଠ) ଶତପଥ-ବ୍ରାହ୍ମଣରେ (୪।୬।୧) ଉଜ୍ଜ୍ୱଳ ଜ୍ୟୋତିଷ୍କକୁ 'ଶୁକ୍ର' ବୋଲି କୁହା ଯାଇଛି ।

(ଡ) ଛାନ୍ଦୋଗ୍ୟ ଉପନିଷଦ (୭।୧।୨।୪) ଅନୁସାରେ ନାରଦ ଥରେ ଋଷି ସନତ୍କୁମାରଙ୍କ ପାଖକୁ ବ୍ରହ୍ମବିଦ୍ୟା ଶିଖିବା ପାଇଁ ଯାଇଥିଲେ । ସେ କ'ଣ କ'ଣ ପଢ଼ିଛନ୍ତି ବୋଲି ସନତ୍କୁମାର ପଚାରିଥିଲେ । ଉତ୍ତର ସ୍ୱରୂପ

ନାରଦ କହିଥିଲେ ଯେ ଅନ୍ୟାନ୍ୟ ବିଦ୍ୟା ସମେତ ସେ 'ନକ୍ଷତ୍ର ବିଦ୍ୟା' ପଢ଼ିଛନ୍ତି ।

(ଚ) ଶ୍ରୌତ ସୂତ୍ରରେ (୪।୧୨) 'ମଧୁ-ମାଧବ'ର ଉଲ୍ଲେଖ ଅଛି ଏବଂ ବସନ୍ତରୁ ମାସର ଗଣନା କରା ଯାଇଛି ।

(ଛ) ଯାସ୍କଙ୍କ ନିରୁକ୍ତରେ (୨।୨୫ ; ୧।୨୭) ମୁହୂର୍ତ୍ତ, ସପ୍ତର୍ଷି, ଦିନ, ରାତ୍ରି, ଶୁକ୍ଳ ପକ୍ଷ, କୃଷ୍ଣପକ୍ଷ, ଉତ୍ତରାୟଣ ଓ ଦକ୍ଷିଣାୟନ ପ୍ରଭୃତି ଶବ୍ଦଗୁଡ଼ିକର ଉଲ୍ଲେଖ ଅଛି ।

ଏହିପରି ଅନେକ ବୈଦିକ ଗ୍ରନ୍ଥରେ ଜ୍ୟୋତିଷ-ଚର୍ଚ୍ଚା ସମ୍ପର୍କରେ ଆହୁରି ଅନେକ ତଥ୍ୟ ଦେଖିବାକୁ ମିଳିଥାଏ । ଏତଦ୍ୱାରା ଜ୍ୟୋତିଷର ମାହାତ୍ମ୍ୟ ସୂଚିତ ହୁଏ ।

## ଅନୁକ୍ରମଣୀ ଓ ବୃହଦ୍‌ଦେବତା :

ପୂର୍ବେ ଶୁଣି ଶୁଣି ବେଦମନ୍ତ୍ରଗୁଡ଼ିକୁ ମନେ ରଖା ଯାଉଥିଲା । ଏଭଳି ପରିସ୍ଥିତିରେ ମନ୍ତ୍ର, ଦେବତା ଓ ଋଷିମାନଙ୍କର ନାମ ଉଚ୍ଚାରଣ କରିବାରେ ବ୍ୟତିକ୍ରମ ହେବାର ସମ୍ଭାବନା ଥିଲା । ଏହି ସମ୍ଭାବନାକୁ ଦୂର କରି ବୈଦିକ ମନ୍ତ୍ରଗୁଡ଼ିକର ଶୁଦ୍ଧତା ରକ୍ଷା କରିବା ଉଦ୍ଦେଶ୍ୟରେ ଅନୁକ୍ରମଣୀ ଓ ବୃହଦ୍ଦେବତା ଗ୍ରନ୍ଥ ଆଦିର ସୃଷ୍ଟି ହୋଇଥିଲା ।

ଅନୁକ୍ରମଣୀ ସ୍ଥୂଳତଃ ବେଦମନ୍ତ୍ର ଗୁଡ଼ିକର କ୍ରମବଦ୍ଧ ସୂଚୀ । ଏଥିରେ ବିଭିନ୍ନ ମନ୍ତ୍ରଗୁଡ଼ିକର ଦେବତା, ଋଷି, ଛନ୍ଦ, ମନ୍ତ୍ରପାଠର କ୍ରମ ଆଦି ବିଷୟ ଉଲ୍ଲିଖିତ । ଏଭଳି ବ୍ୟବସ୍ଥା ଥିବାରୁ ବେଦ-ମନ୍ତ୍ରଗୁଡ଼ିକରେ ଆଉ ପ୍ରକ୍ଷିପ୍ତ ପାଠ ଏପର୍ଯ୍ୟନ୍ତ ପଶି ପାରି ନାହିଁ । ଶୌନକ ଋଷିଙ୍କ କୃତ ଦଶଗୋଟି ଅନୁକ୍ରମଣୀ ବିଷୟରେ କାତ୍ୟାୟନ ତାଙ୍କ କୃତ 'ଋକ୍-ସର୍ବାନୁକ୍ରମଣୀ' ଗ୍ରନ୍ଥର ଭୂମିକାରେ ଉଲ୍ଲେଖ କରିଛନ୍ତି । (୬୫) ଅନୁକ୍ରମଣୀମାନଙ୍କ ମଧ୍ୟରେ କାତ୍ୟାୟନକୃତ ଉପରୋକ୍ତ ଗ୍ରନ୍ଥଟି ସର୍ବବୃହତ୍ ଓ ସର୍ବପ୍ରଧାନ ଅଟେ । ଏହି ଅନୁକ୍ରମଣୀର ରଚୟିତା କାତ୍ୟାୟନ ଓ ବୈୟାକରଣ କାତ୍ୟାୟନ ଭିନ୍ନ ବ୍ୟକ୍ତି ଅଟନ୍ତି । ବୈୟାକରଣ କାତ୍ୟାୟନ, ପାଣିନିଙ୍କର (ଖ୍ରୀ ପୂ. ୪ର୍ଥ ଶତାବ୍ଦୀ) ପରବର୍ତ୍ତୀ ; କିନ୍ତୁ 'ଋକ୍ ସର୍ବାନୁକ୍ରମଣୀ' ରଚୟିତା କାତ୍ୟାୟନ ପାଣିନିଙ୍କର ପୂର୍ବବର୍ତ୍ତୀ । (୬୬) ଛାନ୍ଦୋଗ୍ୟ ଉପନିଷଦରେ କାତ୍ୟାୟନ ବୋଲି ଜଣେ ଋଷିଙ୍କ ନାମ ଉଲ୍ଲିଖିତ । ସେ ହୁଏ ତ ସେହି କାତ୍ୟାୟନ ହୋଇ ପାରନ୍ତି ।

ବୃହଦ୍ଦେବତା ଗ୍ରନ୍ଥରେ ବିଭିନ୍ନ ବୈଦିକ ଦେବତାମାନଙ୍କର ମହତ୍ତ୍ୱ ପ୍ରତିପାଦିତ କରାଯାଇଛି । ଏହା କରିବାକୁ ଯାଇ ସେଥିରେ ବହୁ ରୋଚକ କାହାଣୀର ଅବତାରଣା କରା

ଯାଇଛି । ବହୁ କାହାଣୀ ମଧ୍ୟ ଋଷି ଓ ରାଜାମାନଙ୍କୁ ନେଇ ସୃଷ୍ଟ । ଏଥିରେ ମଧ୍ୟ ବ୍ୟାକରଣ ସବନ୍ଧୀୟ ଉପସର୍ଗ, ଲିଙ୍ଗ, ସର୍ବନାମ, ସମାସ, ସନ୍ଧି, ଆଦି ବିଷୟ ବର୍ଣ୍ଣିତ । ସ୍ଥୂଳତଃ ଏଥିରେ ବୈଦିକ ଓ ଲୌକିକ ଉଭୟ ବିଷୟବସ୍ତୁର ସମନ୍ୱୟ ଘଟିଛି ।

ଉପର୍ଯୁକ୍ତ ଆଲୋଚନା ମାଧ୍ୟମରେ ଆମେ ବୈଦିକ ସଂହିତୋତ୍ତର ଯୁଗରେ କିଭଳି ଭାବରେ ସାହିତ୍ୟର ବିକାଶ ଘଟିଥିଲା, ସେ ସମ୍ପର୍କରେ ଏକ ସ୍ଥୂଳ ଧାରଣା କରି ପାରିବା । ଏଥିରୁ ସ୍ପଷ୍ଟ ସୂଚନା ମିଳିବ ଯେ ଲୌକିକ ଓ ଆଧ୍ୟାତ୍ମିକ ଚନ୍ତାଧାରାର ସମନ୍ୱୟରେ ଏହି ସଂହିତୋତ୍ତର ସାହିତ୍ୟର ଏକ ବିରାଟ ମନ୍ଦିର ଗଢ଼ି ଉଠିଥିଲା, ଯାହା କି ପରବର୍ତ୍ତୀ ଭାରତୀୟ ସାହିତ୍ୟର ଦୃଢ଼ ଭିତ୍ତିଭୂମି ସ୍ୱରୂପ କାର୍ଯ୍ୟ କରିଥିଲା ।

## ଟିପ୍ପଣୀ

୧ । ଶତପଥ ବ୍ରାହ୍ମଣ, ୧।୭।୧।୫ ।

୨ । Jogiraj Basu : India of the Age of the Brahmanas (1969) : Introduction : p. ii.

୩ । Batakrushna Ghose : Collection of Fragments of Lost Brahmanas, Calcutta (1953)

ଏହି ପୁସ୍ତକ ଅନୁସାରେ ନିମ୍ନଲିଖିତ ବ୍ରାହ୍ମଣଗୁଡ଼ିକ ବର୍ତ୍ତମାନ ଅବଲୁପ୍ତ ।

(କ) ଶାଟ୍ୟାୟନ ବ୍ରାହ୍ମଣ (ଆଂଶିକ ଅବଲୁପ୍ତ), (ଖ) ଭାଲ୍ଲବି ବ୍ରାହ୍ମଣ, (ଗ) ଜୈମିନୀୟ ବା ତଲବକାର ବ୍ରାହ୍ମଣ, (ଘ) ଆହ୍ୱରକ ବ୍ରାହ୍ମଣ, (ଙ) କଙ୍କତି ବ୍ରାହ୍ମଣ, (ଚ) କାଳବବି ବ୍ରାହ୍ମଣ, (ଛ) ଚରକ ବ୍ରାହ୍ମଣ, (ଜ) ଛାଗଲେୟ ବ୍ରାହ୍ମଣ, (ଝ) ଜାବାଲି ବ୍ରାହ୍ମଣ, (ଞ) ପୈଙ୍ଗାୟନ ବ୍ରାହ୍ମଣ, (ଟ) ମାଷ ଶରାବ ବ୍ରାହ୍ମଣ, (ଠ) ମୈତ୍ରାୟଣୀୟ ବ୍ରାହ୍ମଣ, (ଡ) ରୌରୁକ ବ୍ରାହ୍ମଣ, (ଢ) ଶୈଳାଲି ବ୍ରାହ୍ମଣ, (ଣ) ଶ୍ୱେତାଶ୍ୱତର ବ୍ରାହ୍ମଣ, (ତ) ହାରିଦ୍ରବିକ ବ୍ରାହ୍ମଣ, (ଥ) କାଠକ ବ୍ରାହ୍ମଣ, (ଦ) ଖାଣ୍ଡିକେୟ ବ୍ରାହ୍ମଣ, (ଧ) ଔଖେୟ ବ୍ରାହ୍ମଣ, (ନ) ଗାଲବ ବ୍ରାହ୍ମଣ, (ପ) ତୁମ୍ବୁରୁ ବ୍ରାହ୍ମଣ, (ଫ) ଆରୁଣେୟ ବ୍ରାହ୍ମଣ, (ବ) ସୌଲଭ ବ୍ରାହ୍ମଣ, (ଭ) ପରାଶର ବ୍ରାହ୍ମଣ ଇତ୍ୟାଦି ।

୪ । ବଲଦେବ ଉପାଧ୍ୟାୟ : ବୈଦିକ ସାହିତ୍ୟ ଔର୍ ସଂସ୍କୃତି : ପୃ. ୧୭୧ ।

୫ । Max Muller : History of Ancient Sanskrit Literature : p. 408 ।

୬ । ଐତରେୟ ବ୍ରାହ୍ମଣରେ (୮।୬) ଗୋଟିଏ ପଙ୍‌କ୍ତି ଅଛି :
"ଧ୍ରୁବାୟାଂ ମଧ୍ୟମାୟାଂ ପ୍ରତିଷ୍ଠାୟାଂ ଦିଶି" ।

ଏହାର ଅର୍ଥ ହେଲା "ଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇଥିବା ମଧ୍ୟଦେଶର ଦିଗରେ ।" ଏହାର ତାତ୍ପର୍ଯ୍ୟ ହେଲା ମଧ୍ୟଦେଶରେ ସେତେବେଳେ ଦୃଢ଼ତା ଓ ଶାନ୍ତି ବିରାଜମାନ କରୁଥିଲା । ଏଥିରୁ ବେଶ୍ ଅନୁମିତ ହୁଏ ଯେ ଐତରେୟ ବ୍ରାହ୍ମଣ ମଧ୍ୟଦେଶରେ ସୃଷ୍ଟ ।

୭ । କୌଷୀତକି ବ୍ରାହ୍ମଣ, ୮।୯ ; ୨୬।୩ ; ୧୧।୫ ; ୨୫।୧୫ ।

୮ । ଋଗ୍‌ବେଦ, ୨୫।୧୩ ।

୯ । କୌଷୀତକି ବ୍ରାହ୍ମଣର ନିମ୍ନଲିଖିତ ପଙ୍‌କ୍ତିଟି ଏ ସମ୍ପର୍କରେ ଦ୍ରଷ୍ଟବ୍ୟ :
"ଅଗ୍ନିରବରାର୍ଦ୍ଧ୍ୟଃ ବିଷ୍ଣୁଃ ପରାର୍ଦ୍ଧ୍ୟଃ"

ଅର୍ଥାତ୍ ଅଗ୍ନି ଅଛନ୍ତି ତଳେ ଏବଂ ବିଷ୍ଣୁ ଅଛନ୍ତି ତାଙ୍କ ଉପରେ ।

୧୦ । Bal Gangadhar Tilak : Arctic Home in the Vedas : p. 387.

୧୧ । ବଳଦେବ ଉପାଧ୍ୟାୟ : ବୈଦିକ ସାହିତ୍ୟ ଔର୍ ସଂସ୍କୃତି : ପୃ, ୨୦୩ ।

୧୨ । ଶତପଥ ବ୍ରାହ୍ମଣ, ୧୪।୩।୧।୩୫ ।

୧୩ । Jogiraj Basu : India of the Age of the Brahmanas ; Introduciton : p. x x x i.

୧୪ । ତୈତ୍ତିରୀୟ ବ୍ରାହ୍ମଣ, ୩।୧।୩ ।

୧୫ । ଋଗ୍‌ବେଦ, ୨୫ ଶ ଅଧ୍ୟାୟ ।

୧୬ । ଏହି ନୈମିଷାରଣ୍ୟ କଥା କୌଷୀତକୀ ବ୍ରାହ୍ମଣରେ (୨୫।୫) ମଧ୍ୟ ଉଲ୍ଲେଖ ଅଛି । ଆଧୁନିକ 'ନିମ୍‌ସର' ଅଞ୍ଚଳକୁ ପ୍ରାଚୀନ ନୈମିଷାରଣ୍ୟ ସହିତ ପଣ୍ଡିତମାନେ ଚିହ୍ନିତ କରିଥାନ୍ତି । ଏହା ସୀତାପୁରଠାରୁ ୨୦ ମାଇଲ ଦୂରରେ ଏବଂ ଲକ୍ଷ୍ନୌଠାରୁ ୪୮ ମାଇଲ୍ ଉତ୍ତରକୁ ଅବସ୍ଥିତ । ଏହି ନୈମିଷାରଣ୍ୟରେ ସୂତ ମୁନି ସମବେତ ମୁନିମାନଙ୍କ ଆଗରେ 'ମହାଭାରତ' ଓ ଭାଗବତ ଶୁଣାଇଥିଲେ ବୋଲି ଭାରତୀୟ ପରମ୍ପରା ବିଶ୍ୱାସ କରେ ।

ଦେଖନ୍ତୁ R. N. Saletore : Encyclopaedia of Indian Culture, vol iii : p. 1026.

୧୭ । ଷଡ଼୍‌ବିଂଶ ବ୍ରାହ୍ମଣ, ୫।୫।୪ ।

୧୮ । ସାମବିଧାନ ବ୍ରାହ୍ମଣ, ୨।୭।୧୪ ।

୧୯ । ଋଗ୍ବେଦ, ୩।୩।୩ ।

୨୦ । ବଳଦେବ ଉପାଧ୍ୟାୟ : ବୈଦିକ ସାହିତ୍ୟ ଔର୍ ସଂସ୍କୃତି : ପୃ, ୨୧୭ ।

୨୧ । ଅଥର୍ବ ବେଦର ଏହି ନଅ ଶାଖାଗୁଡ଼ିକ ହେଲେ :

(କ) ପୈପ୍‌ପଳାଦ, (ଖ) ସ୍ତୌଦା, (ଗ) ଶୌନକୀୟା, (ଘ) ଜାଜଲା, (ଙ) ଜଳଦା, (ଚ) ବ୍ରହ୍ମବଦା, (ଛ) ଦେବଦର୍ଶୀ, (ଜ) ଚାରଣବଦ୍ୟା (ଝ) ମୌଦା ।

୨୨ । ମାଣ୍ଡୁକ୍ୟୋପନିଷଦ, ୩।୨।୭ ।

୨୩ । The Orissa Historical Research Journal, vol, VII, No. 3 & 4; "OM" : Article by Nilakantha Das : p. 37.

୨୪ । ଗୋପଥ ବ୍ରାହ୍ମଣ, ୨।୨୧ ।

୨୫ । 'ଅରଣ୍ୟ ଶବ୍ଦରୁ 'ବୁଞ୍' ପ୍ରତ୍ୟୟ ହୋଇ 'ଆରଣ୍ୟକ' ଶବ୍ଦର ଉଦ୍ଭବ ହୋଇଛି । 'ଅରଣ୍ୟେ ଭବମିତ ଆରଣ୍ୟକମ୍' ; ଅର୍ଥାତ୍ ଅରଣ୍ୟରେ ଯାହାର ସୃଷ୍ଟି, ତାହା ହେଲା ଆରଣ୍ୟକ ।

୨୬ । ବୌଧାୟନ ଧର୍ମସୂତ୍ର, ୩।୭।୭।୧୬ ।

୨୭ । ସର୍ବପଲ୍ଲୀ ରାଧାକୃଷ୍ଣନ୍ : ଉପନିଷଦୋଂ କୀ ଭୂମିକା (ମୂଳ ଇଂରାଜୀର ହିନ୍ଦୀ ଅନୁବାଦ) ; ପୃ. ୪୭ ।

୨୮ । ଐତରେୟ ଆରଣ୍ୟକ, ୨।୧।୩ ; ୨।୧।୪ ; ୨।୧।୭ ।

୨୯ । ସାୟଣାଚାର୍ଯ୍ୟ : ତୈତ୍ତିରୀୟ ସଂହିତା ଭାଷ୍ୟ : ପୃ-୨ ।

୨୯-କ । Swami Prabhavananda : Vedic Religion and Philosophy : Schopenhauer quoted : p. 43

୨୯-ଖ । W. S. Urquhart : The Upanishads and Life : Gian Publishing House (1986) : p. 5

୩୦ । S. Radhakrishnan : The Principal Upanishads : Introduction : p. 18

ସ୍ୱାମୀ ପ୍ରଭବାନନ୍ଦ କିନ୍ତୁ ଏଗୁଡ଼ିକର ସୃଷ୍ଟିକାଳ ଆହୁରି ପଛକୁ ନେଇ ଯାଇଛନ୍ତି । ସେ କୁହନ୍ତି :

"The most anthoritative opinion assings the earliest of them to a period between 800 B. C. to 3000 B. C."

ଦେଖନ୍ତୁ Swami Prabhavananda : Vedic Religion and Philosophy. p. 42.

୩୧ । R, K. Mookerji : Men and Thought in Ancient India : p-5

୩୨ । Jawaharlal Nehru : Discovery of India (Sixth Impression, 1988) : p. 89.

୩୩ । କଠ ଉପନିଷଦ, ୨।୨।୩ ।

୩୪ । ବୃହଦାରଣ୍ୟକ ଉପନିଷଦ, ୧।୪।୧୦ ।

୩୫ । Donald A. Braue : Maya in Radhakrishnan's Thought : Radhakrishnan quoted : p. 73.

୩୬ । ରାଧାକୃଷ୍ଣନ୍ : ଉପନିଷଦୋଂ କୀ ଭୂମିକା (ହିନ୍ଦୀ ଅନୁବାଦ) : ପୃ. ୧୨୩ ।

୩୭ । Donald A. Braue ; op. cit : Radhakrishnan quoted : p. 104.

ମାୟା ଶବ୍ଦର ଏହି ଅର୍ଥ ସମେତ ଛଅ ପ୍ରକାର ଅର୍ଥ ରାଧାକୃଷ୍ଣନ୍ କହିଛନ୍ତି । ତାହା ଏହି ପୁସ୍ତକର ଚତୁର୍ଥ ଅଧ୍ୟାୟରେ ପୃ. ୧୦୦-୧୩୪ରେ ବର୍ଣ୍ଣିତ । ବିଶେଷ ବିବରଣୀ ପାଇଁ ତାହା ଦ୍ରଷ୍ଟବ୍ୟ ।

୩୮ । ରାଧାକୃଷ୍ଣନ୍ : ଉପନିଷଦୋଂ କୀ ଭୂମିକା (ହିନ୍ଦୀ ଅନୁବାଦ) ; ପୃ. ୮୮ ।

୩୯ । S. Radhakrishnan : The Principal Upanishads (1953) : p. 571.

୪୦ । ନିମ୍ନଲିଖିତ ପଙ୍କ୍ତିଗୁଡ଼ିକରେ ରାଧାକୃଷ୍ଣନ୍ ଏହି ଐକ୍ୟବୋଧକୁ ତତ୍ତ୍ୱ-ପାର୍ଶ୍ୱରେ ବର୍ଣ୍ଣା ଯାଇଥିବା ବିଭିନ୍ନ ପୁସ୍ତକରେ ଦର୍ଶାଇଛନ୍ତି ।

(i) "Indian people were more intent to seeking the unity of things than emphasizing their sharpness and separation. (Indian Philosophy, Vol I : p. 30.)

(ii) "We have also the conviction of the unity of the universe" (An Idealist View of Life, p.109 )

(iii) "The unity of all life, which is the intellectual assumption of science, becomes the consuming conviction of the sage."

(Eastern Religions and western Thought, p. 52)

(iv) "Though the world is always changing, it has a unity and meaning"

(Eastern Religions and Western Thought, p. 89)

(v) "Oneness of things is the pivotal principle of absolutism"

(The Reign of Religion in Contemporary Philosophy, p. 234)

(vi) "The first principle of the universe possesses unity" (An Idealist View of Life : p. 332)

(vii) "All life is a unity and the unity is derived from the initial impetus"

(The Reign of Religion in Contemporary Philosophy, p. 150)

୪୧ । କଠ ଉପନିଷଦ, ୧।୨।୨୩ ।
୪୨ । ତତ୍ରୈବ, ୧।୩।୩ ।
୪୩ । ବଳଦେବ ଉପାଧ୍ୟାୟ : ବୈଦିକ ସାହିତ୍ୟ ଔର୍ ସଂସ୍କୃତି : ପୃ. ୨୪୭ ।
୪୪ । Rhys Davids : Budhist India : pp. 143-146.
୪୫ । ମୁଣ୍ଡକ ଉପନିଷଦ, ୧।୨।୧୦ ।

୪୬ । The Cultural Heritage of India, vol. I
Introduction by S. Radhakrishnan.

୪୭ । ମୁଣ୍ଡକ ଉପନିଷଦ, ୩।୧।୧ ।

୪୮ । ତତ୍ରୈବ, ୧।୧।୬ ।

୪୮-କ । ଋଗ୍‌ବେଦ, ୧୦।୧୨୧ ।

୪୯ । ମାଣ୍ଡୂକ୍ୟ, ୬ ।

୫୦ । Winternitz : History of Indian Literature, vol. I : p. 234.

୫୧ । ଗୀତା, ୪।୩ ।

୫୨ । ଐତରେୟ ଉପନିଷଦ, ୧।୧।୧ ।

୫୩ । ତତ୍ରୈବ, ୧।୧।୨ ।

୫୪ । ବଳଦେବ ଉପାଧ୍ୟାୟ : ବୈଦିକ ସାହିତ୍ୟ ଔର୍ ସଂସ୍କୃତି, ପୃ. ୨୪୮ ।

୫୫ । ଛାନ୍ଦୋଗ୍ୟ ଉପନିଷଦ, ୬।୮।୭ ।

୫୬ । ତତ୍ରୈବ, ୩।୧୪।୧ ।

୫୭ । ବୃହଦାରଣ୍ୟକ ଉପନିଷଦ, ୪।୫।୬ ।

୫୮ । The Cultural Heritage of India, vol-1 : "The Vedangas". Article by V. M. Apte : p. 265.

୫୯ । ଶଙ୍କର ବାଳକୃଷ୍ଣ ଦୀକ୍ଷିତ : ଭାରତୀୟ ଜ୍ୟୋତିଷ (ହିନ୍ଦୀ) : ପୃ. ୧୯୪-୧୯୬ ।

୬୦ । ବାଚସ୍ପତି ଗୈରୋଲା; ବୈଦିକ ସାହିତ୍ୟ ଔର୍ ସଂସ୍କୃତି : ପୃ. ୧୩୦ ।

୬୧ । 'ପାଣିନୀୟ ଶିକ୍ଷା' ଗ୍ରନ୍ଥକୁ ଛାଡ଼ି ଦେଲେ ନିମ୍ନଲିଖିତ ଶିକ୍ଷା ଗ୍ରନ୍ଥମାନ ରହିଅଛି :

(କ) ଯାଜ୍ଞବଲ୍କ୍ୟ ଶିକ୍ଷା, (ଖ) ବାଶିଷ୍ଠୀ ଶିକ୍ଷା, (ଗ) କାତ୍ୟାୟନୀ ଶିକ୍ଷା, (ଘ) ପାରାଶରୀ ଶିକ୍ଷା, (ଙ) ମାଣ୍ଡବ୍ୟ ଶିକ୍ଷା, (ଚ) ଅମୋଘାନନ୍ଦିନୀ ଶିକ୍ଷା, (ଛ) ମାଧ୍ୟନ୍ଦିନୀ ଶିକ୍ଷା, (ଜ) ବର୍ଣ୍ଣରତ୍ନ ପ୍ରଦୀପିକା ଶିକ୍ଷା, (ଝ) କେଶବୀ ଶିକ୍ଷା, (ଞ) ମଲ୍ଲଶର୍ମ-ଶିକ୍ଷା, (ଟ) ସ୍ୱରାଙ୍କଶ ଶିକ୍ଷା, (ଠ) ଷୋଡ଼ଶଶ୍ଳୋକୀ ଶିକ୍ଷା, (ଡ) ଅବସାନ ନିର୍ଣ୍ଣୟ ଶିକ୍ଷା,

(ଛ) ସ୍ୱରଭକ୍ତି ଲକ୍ଷଣ ଶିକ୍ଷା, (ଣ) ପ୍ରାତିଶାଖ୍ୟପ୍ରଦୀପ ଶିକ୍ଷା, (ତ) ନାରଦୀୟ ଶିକ୍ଷା, (ଥ) ମାଣ୍ଡୂକୀ ଶିକ୍ଷା ଓ (ଦ) ମନଃ ସ୍ୱାର ଶିକ୍ଷା ।

୬୨ । ସାତ 'ଗୃହ୍ୟଯଜ୍ଞ' ହେଲା ପିତୃଯଜ୍ଞ, ପାର୍ବଣ ଯଜ୍ଞ ଅଷ୍ଟକା ଯଜ୍ଞ, ଶ୍ରାବଣୀ ଯଜ୍ଞ, ଅଶ୍ୱାଯୁଜୀ ଯଜ୍ଞ, ଆଗ୍ରହାୟଣୀୟ ଯଜ୍ଞ ଓ ଚୈତ୍ରୀ ଯଜ୍ଞ । ସେହିପରି ପଞ୍ଚ ମହାଯଜ୍ଞ ହେଲା ଦେବଯଜ୍ଞ, ପିତୃଯଜ୍ଞ, ଭୂତ ଯଜ୍ଞ, ଋଷିଯଜ୍ଞ, ମନୁଷ୍ୟ ଯଜ୍ଞ । ଦେବଯଜ୍ଞ ଦ୍ୱାରା ଦେବତାମାନଙ୍କୁ ପୂଜା କରା ଯାଇଥାଏ । ପିତୃଯଜ୍ଞ ଦ୍ୱାରା ଶ୍ରାଦ୍ଧାଦିରେ ପିତୃପୁରୁଷମାନଙ୍କୁ ପୂଜା କରା ଯାଇଥାଏ । ଭୂତଯଜ୍ଞ ଦ୍ୱାରା ପଶୁପକ୍ଷୀମାନଙ୍କ ଆହାର ଲାଗି ଖାଦ୍ୟ ଅର୍ପଣ କରା ଯାଇଥାଏ । ବିଦ୍ୟାଧ୍ୟୟନକୁ ଋଷିଯଜ୍ଞ କୁହାଯାଏ । ଅତିଥି-ସତ୍କାର ଦ୍ୱାରା ମନୁଷ୍ୟଯଜ୍ଞ ସମାହିତ କରା ଯାଇଥାଏ ।

୬୨-କ । The Cultural Heritage of India : "Yaska and Panini" : Article by V. S. Agrawala ; p. 301.

୬୨-ଖ । Ibid, p. 310.

୬୩ । ଯାସ୍କ ତାଙ୍କ ନିରୁକ୍ତରେ ନିମ୍ନଲିଖିତ ୧୮ ଜଣ ନିରୁକ୍ତକାର, ବୈୟାକରଣ, କୋଷକାର ଆଦିଙ୍କ ନାମ ଉଲ୍ଲେଖ କରିଛନ୍ତି :

(୧) ଆଗ୍ରାୟଣ, (୨) ଔଦୁମ୍ବରାୟଣ, (୩) ଔର୍ଣ୍ଣନାଭ, (୪) କାଥକ୍ୟ, (୫) କ୍ରୋଷ୍ଟୁକି, (୬) ଗାର୍ଗ୍ୟ, (୭) ଗାଲବ, (୮) ଚର୍ମଶିରା, (୯) ତୈଟୀକି, (୧୦) ଶତବଲାକ୍ଷ, (୧୧) ଶାକପୂଣି, (୧୨) ସ୍ଥୌଲାଷ୍ଠୀବି, (୧୩) ଔପମନ୍ୟବ, (୧୪) ଶାକଟାୟନ, (୧୫) ଶାକ୍ଲ୍ୟ, (୧୬) କୌତ୍ସ, (୧୭) ଔର୍ଣ୍ଣବାଭ ଏବଂ (୧୮) ବାର୍ଷାୟଣି ।

ଏହା ଛଡା 'ଅନ୍ୟେ', 'ଅପରେ', 'ଆଚାର୍ଯ୍ୟାଃ' ଆଦି ଶବ୍ଦଗୁଡିକର ପ୍ରୟୋଗ ଦ୍ୱାରା ସେ ସୂଚାଇ ଦେଇଛନ୍ତି ଯେ ଏମାନଙ୍କୁ ଛାଡ଼ି ଆହୁରି ଅନେକ ନିରୁକ୍ତକାର ମଧ୍ୟ ଥିଲେ । ଏତେଗୁଡ଼ିଏ ଗ୍ରନ୍ଥ ଆମ ଦେଶରୁ ଲୋପ ପାଇଯିବା କଥା ବାସ୍ତବିକ ଅତି କ୍ଷୋଭର ବିଷୟ ।

୬୪ । ବେଦରେ ନିମ୍ନଲିଖିତ ଛନ୍ଦ ବ୍ୟବହୃତ । କେଉଁ ଛନ୍ଦରେ କେତୋଟି ବର୍ଣ୍ଣ ବିଦ୍ୟମାନ, ତାହା ପ୍ରତିଟିର ପାର୍ଶ୍ୱରେ ଦର୍ଶା ଯାଇଛି ।

| କ୍ରମିକ ସଂଖ୍ୟା | ଛନ୍ଦର ନାମ | ବର୍ଣ୍ଣ ସଂଖ୍ୟା |
|---|---|---|
| (୧) | ଗାୟତ୍ରୀ | ୨୪ |
| (୨) | ଉଷ୍ଣିକ୍ | ୨୮ |
| (୩) | ଅନୁଷ୍ଟୁପ୍ | ୩୨ |
| (୪) | ବୃହତୀ | ୩୬ |
| (୫) | ପଙ୍କ୍ତି | ୪୦ |
| (୬) | ତ୍ରିଷ୍ଟୁପ୍ | ୪୪ |
| (୭) | ଜଗତୀ | ୪୮ |
| (୮) | ଅତିଜଗତୀ | ୫୨ |
| (୯) | ଶକ୍ୱରୀ | ୫୬ |
| (୧୦) | ଅତିଶକ୍ୱରୀ | ୬୬ |
| (୧୧) | କୃତି | ୮୦ |
| (୧୨) | ପ୍ରକୃତି | ୮୪ |
| (୧୩) | ଆକୃତି | ୮୮ |
| (୧୪) | ବିକୃତି | ୯୨ |
| (୧୫) | ସଂସ୍କୃତି | ୯୬ |
| (୧୬) | ଅଭିକୃତି | ୧୦୦ |
| (୧୭) | ଉତ୍କୃତି | ୧୦୪ |

୬୫ । ଏହି ଦଶ ଗୋଟି ଅନୁକ୍ରମଣୀ ହେଲେ :

(କ) ଆର୍ଷାନୁକ୍ରମଣୀ, (ଖ) ଛନ୍ଦୋଽନୁକ୍ରମଣୀ, (ଗ) ଦେବତାନୁକ୍ରମଣୀ, (ଘ) ଅନୁବାକାନୁକ୍ରମଣୀ, (ଙ) ସୂକ୍ତାନୁକ୍ରମଣୀ, (ଚ) ଋଗ୍ବିଧାନ, (ଛ) ପାଦବିଧାନ, (ଜ) ବୃହଦ୍ଦେବତାନୁକ୍ରମଣୀ, (ଝ) ପ୍ରାତିଶାଖ୍ୟ ଅନୁକ୍ରମଣୀ ଓ (ଞ) ଶୌନକସ୍ମୃତି ଅନୁକ୍ରମଣୀ ।

୬୬ । ବଳଦେବ ଉପାଧ୍ୟାୟ : ବୈଦିକ ସାହିତ୍ୟ ଔର୍ ସଂସ୍କୃତି : ପୃ. ୩୬୮ ।

●

## ଦ୍ୱିତୀୟ ପରିଚ୍ଛେଦ

# ବୈଦିକ ଆଖ୍ୟାନ

ବୈଦିକ ସାହିତ୍ୟ ବହୁ ଆଖ୍ୟାନରେ ଭରପୂର । ବେଦ, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ ଗ୍ରନ୍ଥମାନଙ୍କରେ ଏଗୁଡ଼ିକ ବହୁଳ ଭାବରେ, ବହୁ ପୃଷ୍ଠଭୂମି ନେଇ ଏବଂ ବହୁ ଅର୍ଥରେ ସନ୍ନିବେଶିତ । ସାଧାରଣତଃ ଏଗୁଡ଼ିକର ବେଦ ମନ୍ତ୍ର ଭଳି, ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ, ଏହିପରି ତିନି ପ୍ରକାର ଅର୍ଥ କରାଯାଇଥାଏ । ଆର୍ଯ୍ୟ ଋଷିମାନେ ଯାହା ନିଜ ଆଖିରେ ଦେଖିଛନ୍ତି ଅଥବା ପୂର୍ବ ପୁରୁଷମାନଙ୍କ ଠାରୁ ବା ଆଉ କାହାଠାରୁ ଶୁଣିଛନ୍ତି, ତାହାକୁ ରୋଚକ ଆଖ୍ୟାନ ଆକାରରେ ପରିବେଷିତ କରିଛନ୍ତି । ଆର୍ଯ୍ୟ-ସମାଜରେ ଯାହା ଯାହା ଘଟି ଯାଉଥିଲା, ସେହି ଘଟଣାମାନ ତେଣୁ ଆଖ୍ୟାନଗୁଡ଼ିକରେ ପ୍ରତିଭାତ ହୋଇଛି । ତାହା ଛଡ଼ା ଆଜିର ଇତିହାସ କାଳର ଆଖ୍ୟାନରେ ପରିଣତ ହୋଇଛି । ଅତଏବ ଏହି ଆଖ୍ୟାନଗୁଡ଼ିକରେ ବୈଦିକ କାଳର ଉଭୟ ସାମାଜିକ ଓ ଐତିହାସିକ ଚିତ୍ର ପ୍ରକଟିତ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏତଦ୍‌ବ୍ୟତୀତ ଆର୍ଯ୍ୟ ଋଷିମାନଙ୍କର ଆଧ୍ୟାତ୍ମିକ ଅଭୀପ୍‌ସା ମଧ୍ୟ ପ୍ରତୀକାତ୍ମକ ଭାବରେ କେତେକ ଆଖ୍ୟାନ ମଧ୍ୟରେ ପ୍ରତିଫଳିତ ହୋଇଛି । ଏହା ହେବା ସ୍ୱାଭାବିକ; କାରଣ ଆର୍ଯ୍ୟ ଜୀବନର ମୂଳ ଲକ୍ଷ୍ୟ ଥିଲା ଦେହ ମଧ୍ୟରେ ଦେହାତୀତର ସନ୍ଧାନ ପାଇବା; ମୃତ୍ୟୁ ମଧ୍ୟରେ ଅମରତ୍ୱକୁ ଆବିଷ୍କାର କରିବା ଏବଂ ରୂପରାଜ୍ୟରୁ ଅରୂପ-ରାଜ୍ୟକୁ ଉଡ଼ି ଉଡ଼ି ଚାଲିଯିବା । ଏଣୁ କେତେକ ଆଖ୍ୟାନରେ ସେମାନଙ୍କର ସହଜାତ-ଜ୍ଞାନ (intuition) କଳ୍ପନାର ରାଗରେ ଅନୁରଞ୍ଜିତ ହୋଇ ଉଠି ଆଖ୍ୟାନଗୁଡ଼ିକୁ ଅତ୍ୟନ୍ତ ପ୍ରାଣସ୍ପର୍ଶୀ ଓ ରୋଚକ କରି ପାରିଛି ।

ଇତିହାସ କିପରି ଭାବରେ ଆଖ୍ୟାନର ରୂପ ନେଇଛି, ତାହାର ଗୋଟିଏ ଉଦାହରଣ ଦାଣ୍ଡେକର୍ ଦର୍ଶାଇଛନ୍ତି । ତାଙ୍କ ମତରେ ଋଗ୍‌ବେଦକାଳୀନ ଆର୍ଯ୍ୟମାନେ ସେମାନଙ୍କ ସଭ୍ୟତା ଓ ସଂସ୍କୃତିର ବିସ୍ତାର ଲାଗି ସତତ ଉଦ୍ୟମଶୀଳ ଥିଲେ । 'କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟମ୍' ବା 'ସାରା ବିଶ୍ୱକୁ ଆମେ ଆର୍ଯ୍ୟ କରାଇନେବୁ ବା ସଭ୍ୟ କରାଇ ନେବୁ' ବୋଲି ସେମାନେ ଥିଲେ ପ୍ରତିଶ୍ରୁତିବଦ୍ଧ । ଏହା କରିବାକୁ ଗଲାବେଳେ ସେମାନଙ୍କୁ ବହୁ ବାଧାବିଘ୍ନ ଦେଇ ଗତି କରିବାକୁ ପଡ଼ୁଥିଲା ଏବଂ ଆର୍ଯ୍ୟେତର ବହୁ ବିରୋଧୀ ମୂଲ୍ୟବୋଧମାନଙ୍କର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ସେମାନେ ଏଗୁଡ଼ିକୁ କହୁଥିଲେ 'ବୃତାଣି' ବା 'ଆଚ୍ଛନ୍ନ କରି ରଖିଥିବା ମୂଲ୍ୟବୋଧମାନ' । ଯେଉଁ ବୀର ପୁରୁଷ ସେମାନଙ୍କୁ ଏ ବିପଦରୁ ମୁକ୍ତ କରି

ଦେଇଥିଲେ ଏବଂ ସେମାନଙ୍କୁ ଲଢେଇରେ ନେତୃତ୍ୱ ଦେଇଥିଲେ, ସେ ଥିଲେ ଇନ୍ଦ୍ର ନାମରେ ଖ୍ୟାତ । ତାଙ୍କୁ କୁହା ଯାଉଥିଲା 'ବୃତ୍ରହା' ବା 'ବୃତ୍ରର ହତ୍ୟାକାରୀ' । ସେହି ବୀର ପୁରୁଷ ଇନ୍ଦ୍ର କାଳକ୍ରମେ ସମର-ଦେବତା ଭାବରେ ରୂପାନ୍ତରିତ ହୋଇଗଲେ ଏବଂ ବେଦର ଛନ୍ଦେ ଛନ୍ଦେ ବହୁଳ ଭାବରେ ତାଙ୍କର ସ୍ତୁତି କରାଯିବାକୁ ଲାଗିଲା । ଏହି ପୃଷ୍ଠଭୂମିରେ ଇନ୍ଦ୍ର-ବୃତ୍ର ଆଖ୍ୟାନର ସୃଷ୍ଟି ହୋଇଛି ବୋଲି ଦାଣ୍ଡେକର ସ୍ପଷ୍ଟ ଭାବରେ କହିଛନ୍ତି । ତାଙ୍କର ନିମ୍ନଲିଖିତ ମତ ଏ ସମ୍ପର୍କରେ ପ୍ରଣିଧାନଯୋଗ୍ୟ :

> "The early settlements in Saptasindhu which had been beset with many impediments (Vritrani), natural and human, gave rise to the mythology of Vritrahan Indra, the human hero who was transformed into a war-god. This was the result of mytholisation of history. Understandably enough, the Rigveda, a major part of which constitutes a saga of Aryan conquest and colonisation, is dominated by the figure of Indra."
> (୧)

ଅତଏବ, ଇତିହାସ କପରି ଭାବରେ ଭବିଷ୍ୟତରେ ଆଖ୍ୟାନ ରୂପ ଗ୍ରହଣ କରେ ଏବଂ ସାଧାରଣ ମନୁଷ୍ୟ ତା'ର ଅସାଧାରଣ ଶୌର୍ଯ୍ୟ, ବୀର୍ଯ୍ୟ ଓ ପ୍ରତିଭା ବଳରେ କପରି ଦେବତା ଭଳି ପୂଜା ପାଏ, ଇନ୍ଦ୍ର-ବୃତ୍ର ଆଖ୍ୟାନ ହେଉଛି ତାହାର ଏକ ନିଦର୍ଶନ । ସାଧାରଣ ଲୋକଙ୍କୁ ଦେବତାର ଆସନ ଦେଇ ପୂଜା କରିବାର ପରମ୍ପରା ବହୁ ଯୁଗରୁ ଆମ ଦେଶରେ ଚାଲି ଆସୁଛି । ରାମ, କୃଷ୍ଣ, ବୁଦ୍ଧ ଆଦି ଏହି ପରମ୍ପରାର ଅନୁସରଣ ଦ୍ୱାରା ହିଁ ଆଜି ପୂଜିତ । ବଶିଷ୍ଠ ଓ ବିଶ୍ୱାମିତ୍ରଙ୍କ ବିବାଦ କଉଳି ଭାବରେ ଘନୀଭୂତ ହୋଇ ଶେଷରେ 'ଦାଶରାଜ୍ଞ ଯୁଦ୍ଧ'ରେ (ଦଶ ରାଜାଙ୍କ ଯୁଦ୍ଧ) ପରିଣତ ହୋଇଥିଲା, ତାହା ମଧ୍ୟ ଏକ ରୋମାଞ୍ଚକର ଐତିହାସିକ ଘଟଣା । ତାହା ମଧ୍ୟ ଋଗ୍‌ବେଦରେ ଏକ ଆଖ୍ୟାୟିକା ରୂପ ନେଇଛି, ଯାହାର ବିଶଦ ବର୍ଣ୍ଣନା ଏହି ପୁସ୍ତକର ପ୍ରଥମ ଭାଗରେ ଏକ ସ୍ୱତନ୍ତ୍ର ପରିଚ୍ଛେଦରେ କରା ଯାଇଛି ।

ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ସାର୍ ଉଇଲିଅମ୍ ଜୋନ୍‌ସ୍ ତୁଳନାତ୍ମକ ଭାଷାତତ୍ତ୍ୱର ଯେଉଁ ବୀଜଟି ବୁଣିଥିଲେ, ତାହା ଅଙ୍କୁରିତ ହୋଇ କ୍ରମେ ଏକ ବିରାଟ ବୃକ୍ଷରେ ପରିଣତ ହୋଇଥିଲା ଏବଂ ଊନବିଂଶ ଶତାବ୍ଦୀରେ ବିଶେଷ ଭାବରେ ଫଳପୁଷ୍ପାନ୍ୱିତ

ହୋଇଥିଲା । ବହୁ ପାଶ୍ଚାତ୍ୟ ଗବେଷକ ତୁଳନାତ୍ମକ ଭାଷାତତ୍ତ୍ୱ ପ୍ରତି ଆକୃଷ୍ଟ ହେବାକୁ ଲାଗିଲେ ଏବଂ ସଂସ୍କୃତ ଓ ଜେନ୍ଦ ଆବେସ୍ତାର ଭାଷା ସହିତ ଇଉରୋପୀୟ ଭାଷାମାନଙ୍କର ସାମ୍ୟ ଆବିଷ୍କାର କରିବାକୁ ଲାଗିଲେ । ଏହି ସମସ୍ତ ଭାଷାକୁ ସେମାନେ କହିବାକୁ ଲାଗିଲେ ଭାରତୀୟ-ଇଉରୋପୀୟ (Indo-European) । ସେମାନଙ୍କର ମତ ହେଲା, ଇଉରୋପୀୟ, ଇରାନୀୟ ଓ ଭାରତୀୟ ଆର୍ଯ୍ୟମାନେ ଥରେ ଗୋଟିଏ ଜାଗାରେ (ମଧ୍ୟ ଏସିଆ କମ୍ବା ଇଉରୋପରେ) ଥିଲେ ; ଗୋଟିଏ ଭାଷା କହୁଥିଲେ ଏବଂ ଗୋଟିଏ ସଂସ୍କୃତିର ଅଧିକାରୀ ଥିଲେ । କାଳକ୍ରମେ ସେମାନେ ଭାଗ ଭାଗ ହୋଇଗଲେ । ଗୋଟିଏ ଭାଗ ଗଲେ ଭାରତର ସପ୍ତସିନ୍ଧୁ ଅଞ୍ଚଳକୁ, ଯେଉଁମାନେ ହେଲେ ବୈଦିକ ଆର୍ଯ୍ୟ । ଗୋଟିଏ ଭାଗ ଗଲେ ଇରାନ୍‌କୁ ଏବଂ ଅନ୍ୟ ଭାଗଟି ଇଉରୋପର ବିଭିନ୍ନ ଦେଶକୁ ଗଲେ । ବିଭିନ୍ନ ଭାଷାଗତ ସାମ୍ୟ ବିଷୟ ନେଇ ବିଦ୍ୱାନ୍‌ମାନେ ଏଭଳି ଉଚ୍ଚକିତ ଓ ଚମତ୍କୃତ ହୋଇଗଲେ ଯେ ମ୍ୟାକ୍‌ସମୁଲର୍ ଏହି କଥାର ଉଲ୍ଲେଖ କରି କହିବାକୁ ଲାଗିଲେ, ଏହା ହେଉଛି ଊନବିଂଶ ଶତାବ୍ଦୀର ଶ୍ରେଷ୍ଠ ଆବିଷ୍କାର । ସେ ୧୮୯୧ ମସିହାର ଗ୍ଲାସ୍‌ଗୋ ବିଶ୍ୱବିଦ୍ୟାଳୟରେ 'Gifford Lectures on Anthropological Religion' ପ୍ରସଙ୍ଗରେ ଭାଷଣ ଦେଇ ନିମ୍ନଲିଖିତ ଉଲ୍ଲେଖନୀୟ କଥାଟି କହିଥିଲେ :

> "If I were asked what I consider the most important discovery which has been made in the nineteenth century, with respect to the ancient history of mankind, I should say it was the simple etymological equation : Sankrit Dyaus Pitar= Greek Zeul Pater = Latin Jupiter =Old Norse Tyre" (୨)

ଏଥିରୁ ଜଣା ପଡ଼ୁଛି ଯେ ସଂସ୍କୃତିର ଅନୁଧ୍ୟାନ ଓ ଅଧ୍ୟୟନ ଲାଗି ଭାଷା ଉପରେ ସେତେବେଳେ ଖୁବ୍ ଗୁରୁତ୍ୱ ଦିଆ ଯାଉଥିଲା । ଏଭଳି କି ପ୍ରତ୍ନତାତ୍ତ୍ୱିକ ଧ୍ୱଂସାବଶେଷଠାରୁ ଏହା ସଂସ୍କୃତି ସମ୍ପର୍କରେ ଅଧିକତର ଆଲୋକ ସପାତ କରିବ ବୋଲି ବିଶ୍ୱାସ କରି ଯାଉଥିଲା । ସେହି ମର୍ମରେ ଗୃଇଲ୍‌ଡ୍ କହିବାକୁ ଆରମ୍ଭ କଲେ :

> "Language, albeit an abstraction, is yet a more subtle and pervasive criterion of individuality than the culture-group formed by comparing flints and potsherds of the races of skull measures." (୩)

ଏଥିରୁ ଅନୁମିତ ହେଉଛି, କଭଳି ଭାବରେ ତୁଳନାତ୍ମକ ଭାଷାତତ୍ତ୍ୱ ଉପରେ ସେତେବେଳେ ଗୁରୁତ୍ୱ ଦିଆ ଯାଉଥିଲା ।

ତୁଳନାତ୍ମକ ଭାଷାତତ୍ତ୍ୱ ସାଥେ ସାଥେ ତୁଳନାତ୍ମକ ଆଖ୍ୟାନର ମଧ୍ୟ ବିଚାର-ଆଲୋଚନା ଚାଲିବାକୁ ଲାଗିଲା । ପାଶ୍ଚାତ୍ୟ ପଣ୍ଡିତମାନେ କହିବାକୁ ଲାଗିଲେ, ଯଦି ଭାରତୀୟ-ଇଉରୋପୀୟ ଆର୍ଯ୍ୟମାନେ ପ୍ରଥମେ ଗୋଟିଏ ଜାଗାରେ ଥିଲେ ଏବଂ ଗୋଟିଏ ଭାଷା କହୁଥିଲେ, ତେବେ ସେମାନଙ୍କର ପରମ୍ପରା କ୍ରମେ ଗଢ଼ି ଆସୁଥିବା ଆଖ୍ୟାନଗୁଡ଼ିକରେ ସାମ୍ୟ ରହିବା କଥା । ବାସ୍ତବିକ, ଏହିଭଳି କେତେକ ସାମ୍ୟ ସେମାନେ ଆବିଷ୍କାର କଲେ ।· ଉଦାହରଣ ସ୍ୱରୂପ ଋଗ୍‌ବେଦୀୟ ସରମା ଉପାଖ୍ୟାନର ସରମାକୁ ସେମାନେ ଆବିଷ୍କାର କଲେ ଗ୍ରୀକ୍‌ମାନଙ୍କର କେର୍‌ବେରସ୍ (Kerberos) ଠାରେ । ସେହିପରି 'ପଣି' ଓ ଗାଈମାନଙ୍କ ସମ୍ପର୍କରେ ଥିବା ଋଗ୍‌ବେଦୀୟ ଉପାଖ୍ୟାନର ଅବିକଳ ପ୍ରତିଧ୍ୱନି ସେମାନେ ଶୁଣି ପାରିଲେ ଗ୍ରୀସୀୟ କ୍ୟାକସ୍ (Cacus) ଓ ଇଭାଣ୍ଡର୍ (Evander) ଆଖ୍ୟାନ ମଧ୍ୟରେ । ଏହିଭଳି ଆହୁରି ଅନେକ ଆଖ୍ୟାୟିକାତ୍ମକ ସାମ୍ୟ ପାଶ୍ଚାତ୍ୟ ପଣ୍ଡିତମାନେ ଆବିଷ୍କାର କରିଛନ୍ତି । ଦାଣ୍ଡେକରଙ୍କ ମତରେ କେତେକ ବୈଦିକ ଆଖ୍ୟାନର ଆୟର୍ଲାଣ୍ଡର ଆଖ୍ୟାନ ସହିତ ସାମ୍ୟ ଅଛି । ସେ ଲେଖନ୍ତି :

> "The Vedic Samvada-Suktas, the Brahmana legends and the post Vedic epic motifs have clear counterparts in Irish sagas." (୩-କ)

ଏଭଳି ଭାଷାଗତ ସାମ୍ୟ କିମ୍ବା ଆଖ୍ୟାୟିକାତ୍ମକ ସାମ୍ୟକୁ କେହି ବିରୋଧ କରୁନାହିଁ । କିନ୍ତୁ ପ୍ରକୃତ ବିରୋଧର କଥା ହେଲା, ଏହାକୁ ଭିତ୍ତି କରି ସେମାନେ କରିଥିବା ନିଷ୍ପତ୍ତି । ସେମାନଙ୍କ ନିଷ୍ପତ୍ତି ହେଲା, ବୈଦିକ ଆର୍ଯ୍ୟ ଓ ଇଉରୋପୀୟମାନଙ୍କ ପୂର୍ବଜମାନେ ମଧ୍ୟଏସିଆରେ କିମ୍ବା ଇଉରୋପରେ କୌଣସି ସ୍ଥାନରେ ରହୁଥିଲେ । ଏହି ନିଷ୍ପତ୍ତିକୁ ବିରୋଧ କରିବାର ଅବକାଶ ଅଛି । ଏହି ପୁସ୍ତକର ପ୍ରଥମ ଭାଗରେ ଆର୍ଯ୍ୟମାନଙ୍କ ମୂଳ ନିବାସ ଆଲୋଚନା ପ୍ରସଙ୍ଗରେ ତୁଳନାତ୍ମକ ଭାଷାତତ୍ତ୍ୱ ଭିତ୍ତିରେ ଇଉରୋପୀୟ ପଣ୍ଡିତମାନେ ଯେଉଁ ନିଷ୍ପତ୍ତିଗୁଡ଼ିକ କରିଛନ୍ତି, ସେଗୁଡ଼ିକର ଅଯଥାର୍ଥତା ବିଷୟରେ ଆଲୋଚନା କରାଯାଇଛି ଏବଂ ଦର୍ଶାଇ ଦିଆ ଯାଇଛି ଯେ ବୈଦିକ ଭାଷା ସହିତ ଇଉରୋପୀୟ ଭାଷାମାନଙ୍କର ଯେଉଁ ସୌହାର୍ଦ୍ଦ୍ୟ ରହିଛି, ତାହା ହେଉଛି ମୁଖ୍ୟତଃ ଆର୍ଯ୍ୟ ସଂସ୍କୃତିର ପରିପ୍ରସାରର ଫଳ । ଦ୍ୱିତୀୟତଃ ପଣି, ଅସୁର ଓ ଦସ୍ୟୁମାନେ ଆର୍ଯ୍ୟମାନଙ୍କ ଦ୍ୱାରା ପରାଭୂତ ହୋଇ ସପ୍ତସିନ୍ଧୁ ଅଞ୍ଚଳରୁ ବିତାଡ଼ିତ ହେବା ଫଳରେ ସେମାନଙ୍କର ସଂସ୍କୃତିକୁ ସପ୍ତସିନ୍ଧୁର ବାହାରେ ପ୍ରଚାରିତ ଓ ପ୍ରସାରିତ କରିଛନ୍ତି । ଅତଏବ ମୂଳ ସଂସ୍କୃତି ହେଉଛି ବୈଦିକ ସଂସ୍କୃତି; ମୂଳ ଭାଷା ହେଉଛି ବୈଦିକ

ସଂସ୍କୃତ ଭାଷା, ଏବଂ ମୂଳ ଆଖ୍ୟାନ ହେଉଛି ବୈଦିକ ଆଖ୍ୟାନ । ଏଥିରୁ ଅନୁମିତ ହେବ, ବୈଦିକ ଆଖ୍ୟାନଗୁଡ଼ିକ କେତେ ପ୍ରାଚୀନ । ଋଗ୍‌ବେଦ ହେଉଛି ପୃଥିବୀର ସର୍ବ ପ୍ରାଚୀନ ଗ୍ରନ୍ଥ । ସେଥିରେ ଅନେକ ଆଖ୍ୟାନ ସନ୍ନିବେଶିତ । ଅତଏବ, ଏ କଥା ନିଶ୍ଚିତ ଯେ ଋଗ୍‌ବେଦର ଏହି ଆଖ୍ୟାନଗୁଡ଼ିକ ହେଉଛନ୍ତି ପୃଥିବୀର ସର୍ବପ୍ରଥମ ଆଖ୍ୟାନ । ବାସ୍ତବିକ, ଏଗୁଡ଼ିକ ହେଉଛନ୍ତି ପୃଥିବୀର କଥା ସାହିତ୍ୟର ଜନକ ସଦୃଶ । ସେହି ଦୃଷ୍ଟିରୁ ଏଗୁଡ଼ିକୁ ଅନୁଧ୍ୟାନ କରିବା ନିଶ୍ଚିତ ଭାବରେ ମହତ୍ତ୍ୱପୂର୍ଣ୍ଣ ଓ କୌତୂହଳୋଦ୍ଦୀପକ । ଏଥି ପ୍ରତି ଲକ୍ଷ୍ୟ କରି ବଳଦେବ ଉପାଧ୍ୟାୟ ଯଥାର୍ଥରେ କହିଛନ୍ତି :

> "ପରନ୍ତୁ ହମେଂ ଯହି ନ ଭୂଲନା ଚାହିଏ କି କଥା-ସାହିତ୍ୟ କା ଉଦୟ ଇସୀ ଭାରତବର୍ଷ ମେଂ ହୁଆ ଔର୍ ଇସ୍‌ନେ ହୀ ସଂସାର କେ ସାମନେ ଇସ୍ ସାହିତ୍ୟକ ସାଧନ କୀ ଉପଯୋଗିତା ସର୍ବପ୍ରଥମ ପ୍ରଦର୍ଶିତ କୀ । ଭାରତୀୟ ସାହିତ୍ୟ କୀ ବିଶ୍ୱସାହିତ୍ୟ କେ ଲିୟେ ଜୋ ଜୋ ଦେନ୍ ହୈ, ଉନମେଂ ଇସ୍ ସାହିତ୍ୟକ କଥା' କୀ ଦେନ୍ ବିଶେଷ ମହତ୍ତ୍ୱ ରଖ୍‌ତୀ ହୈ ।" (୪)

କେବଳ ତ ବୈଦିକ ଆଖ୍ୟାନ ନୁହେଁ, ପଞ୍ଚତନ୍ତ୍ର, ବୃହତ୍ କଥା ଓ ବୌଦ୍ଧ-ଜାତକ ଗଳ୍ପଗୁଡ଼ିକର ମଧ୍ୟ ବିଶ୍ୱର କଥା-ସାହିତ୍ୟକୁ ଅବଦାନ ଅନନ୍ୟ ଓ ଅବିସ୍ମରଣୀୟ । ଏହି ବୈଦିକ କାହାଣୀଗୁଡ଼ିକର ଉଦ୍ଦେଶ୍ୟ ନଥିଲା କେବଳ ମନୋରଞ୍ଜନ କରିବା ପାଇଁ କିମ୍ବା କେବଳ ଶୁଷ୍କ ଉପଦେଶ-ବାଣୀ ଦେବା ପାଇଁ । ଏହା ନଥିଲା ପାଣ୍ଡିତ୍ୟସୁଲଭ ସାହିତ୍ୟ । ଏ ଗୁଡ଼ିକରେ ଅତି ରୋଚକ ଭାବରେ ବୈଦିକ ସମାଜର ଚିତ୍ର, ଆଧ୍ୟାତ୍ମିକ ଅଭୀପ୍ସା ଏବଂ ଧର୍ମ-ସମ୍ବନ୍ଧୀୟ ଜିଜ୍ଞାସା ଆଦି ପରିବେଷିତ ହୋଇଛି । ତେଣୁ ବଳଦେବ ଉପାଧ୍ୟାୟଙ୍କ ମତରେ :

> "ଇନ୍ କଥାନକୋଂ ମେଂ ବୈଦିକ ଯୁଗ କୀ ବିଚାରଧାରା ଅପନେ ବିଶୁଦ୍ଧ ରୂପ ମେଂ ହମାରେ ସାମନେ ଆତୀ ହୈ । ବୈଦିକ ଯୁଗ କେ ଧର୍ମ କା, ସମାଜ କା, ଆଧ୍ୟାତ୍ମିକ ଚିନ୍ତନ କା, ତଥା ରହନସହନ କା ସଂକ୍ଷିପ୍ତ, ପରନ୍ତୁ ପ୍ରାମାଣିକ ବିବରଣ ୟହାଁ ପୃଷ୍ଠଭୂମି କେ ରୂପ ମେଂ ପ୍ରସ୍ତୁତ କିୟା ଗୟା ହୈ ।" (୪-କ)

ବର୍ତ୍ତମାନ ଆମେ ବିଭିନ୍ନ ବୈଦିକ ଆଖ୍ୟାନଗୁଡ଼ିକ ଉପରେ ଆଲୋଚନା କରିବା ସଙ୍ଗେ ସଙ୍ଗେ ଐତିହାସିକ, ସାଂସ୍କୃତିକ, ସାମାଜିକ, ଧାର୍ମିକ, ତଥା ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ସେଗୁଡ଼ିକର ମହତ୍ତ୍ୱ ବିଷୟରେ ବିଚାର କରିବା । ଏହି ଆଲୋଚନାରୁ 'ପୁରୂରବା-ଉର୍ବଶୀ ଓ ଇନ୍ଦ୍ର-ବୃତ୍ର' ଆଖ୍ୟାନ ଦ୍ୱୟଙ୍କୁ ବାଦ ଦିଆ ଯାଉଛି ; କାରଣ ଏହି ବିଷୟରେ ପୁସ୍ତକଟିର ପରବର୍ତ୍ତୀ ଭାଗରେ 'ବେଦରେ ପ୍ରତୀକତା' ଶୀର୍ଷକ ପରିଚ୍ଛେଦରେ ସ୍ୱତନ୍ତ୍ର ଭାବରେ ଆଲୋଚନା

କରାଯିବ । ଆଉ ମଧ୍ୟ ବଶିଷ୍ଠ-ବିଶ୍ୱାମିତ୍ର ବିବାଦ ସମ୍ପର୍କିତ ଆଖ୍ୟାନଟିକୁ ଏଥିରୁ ବାଦ ଦିଆ ଯାଉଛି ; କାରଣ ଏହି ବିଷୟରେ ପ୍ରଥମ ଭାଗସ୍ଥ ଚତୁର୍ଥ ପରିଚ୍ଛେଦରେ ଦାଶରାଜ୍ଞ ଯୁଦ୍ଧ ପ୍ରସଙ୍ଗରେ ସବିଶେଷ ଆଲୋଚନା କରା ଯାଇଛି ।

**ଅପାଳା ଆଖ୍ୟାନ :**

ଅପାଳା ଥିଲେ ଋଗ୍‌ବେଦର ଜଣେ ଋଷିକା ଏବଂ ଅତ୍ରି ମୁନିଙ୍କ କନ୍ୟା । ସେ ଯେଉଁ ସୂକ୍ତଟିକୁ ନିଜେ ଲେଖିଛନ୍ତି, ତହିଁରୁ ତାଙ୍କ ଜୀବନୀ ବିଷୟରେ ଆମେ କେତେକ ସୂଚନା ପାଇଥାଉଁ । (*) ରୁଗ୍‌ଣା ସ୍ତ୍ରୀଟିଏ ପତିପରିତ୍ୟକ୍ତା ହୋଇ କିଭଳି ଦୁଃଖରେ ଜୀବନ ବିତାଉଛି ଏବଂ ପରେ ଇନ୍ଦ୍ରଙ୍କ ପୂଜା ଆରାଧନା କରି କିପରି ଭାବରେ ସେ ପୂର୍ବର ସୌନ୍ଦର୍ଯ୍ୟ ପୁଣି ଫେରି ପାଉଛି ଏବଂ କିପରି ଭାବରେ ତା'ର ପୁଣି ପତିଙ୍କ ସହିତ ପୁନର୍ମିଳନ ଘଟୁଛି, ଏହା ଅତି ରୋଚକ ଭାବରେ ଉକ୍ତ ସୂକ୍ତରେ ବର୍ଣ୍ଣିତ । ଏହି ଲେଖାଗୁଡ଼ିକ ଅନୁଭୂତିମୂଳକ ହୋଇଥିବାରୁ ଏବଂ ସ୍ୱୟଂ ପତିବିରହିଣୀଙ୍କ ଅନ୍ତସ୍ତଳରୁ ଝରି ପଡ଼ିଥିବାରୁ ଅତି ହୃଦୟସ୍ପର୍ଶୀ ହୋଇଛି । ମନେ ହେବ, ସତେ ଯେମିତି ଅପାଳା ହେଉଛନ୍ତି ଆଜିକାର ଶତ ଶତ ପତିପରିତ୍ୟକ୍ତା ନାରୀମାନଙ୍କର ଏକ ପ୍ରତିଭୂ । ଅପାଳାଙ୍କ ଆତ୍ମା ସେମାନଙ୍କ ସମସ୍ତଙ୍କ ଠାରେ ପ୍ରତିଭାତ ! ଅପାଳାଙ୍କ ବିରହାଶ୍ରୁ ସେମାନଙ୍କ ସମସ୍ତଙ୍କ ଅଶ୍ରୁଧାରାରେ ସ୍ପନ୍ଦିତ ! !

ଗଳ୍ପଟି ହେଲା, ଅତ୍ରିକନ୍ୟା ଅପାଳା ଥିଲେ ଖୁବ୍ ସୁନ୍ଦରୀ । ଏକମାତ୍ର ଝିଅ ବୋଲି ବାପାମାଆଙ୍କର ସ୍ନେହ ତାଙ୍କ ଉପରେ ଅଜାଡ଼ି ହୋଇ ପଡ଼ୁଥିଲା । ବାପାଙ୍କ ଆଶ୍ରମରେ ଖୁବ୍ ସୁଖ ଶରଧାରେ ଅପାଳା ବଢ଼ିବାକୁ ଲାଗିଲେ । କାଳକ୍ରମେ ତାଙ୍କ ଦେହରେ ଦୁରାରୋଗ୍ୟ ଧବଳ କୁଷ୍ଠ ଦେଖାଦେଲା । ଅତ୍ରି ମୁନି ଗେଲବସରିଆ ଝିଅଟିର ଏଭଳି ଅବସ୍ଥା ଦେଖି ଖୁବ୍ ଚିନ୍ତିତ ହୋଇ ପଡ଼ିଲେ । ତାଙ୍କର ନାନା ପ୍ରକାର ଚିକିତ୍ସା କରାଗଲା । ବୈଦ୍ୟଙ୍କ କହିବା ଅନୁସାରେ ତାଙ୍କ ଦେହରେ ନାନା ପ୍ରକାର ପ୍ରଲେପ ଲଗା ଗଲା । କିନ୍ତୁ କିଛି ଫଳ ହେଲା ନାହିଁ ; କୁଷ୍ଠର ଚିହ୍ନଟିମାନ ବରଂ ବଢ଼ିବାକୁ ଲାଗିଲା ଏବଂ ତାହା ଦେହର ଏକାଧିକ ସ୍ଥାନରେ ଦେଖା ଦେବାକୁ ଲାଗିଲା । ଅପାଳା ଥିଲେ ଖୁବ୍ ବୁଦ୍ଧିମତୀ ଓ ବିଦୁଷୀ । ସେ ବାପାଙ୍କ ଆଶ୍ରମରେ ପାଠ ପଢ଼ି ଖୁବ୍ ଶୀଘ୍ର ବେଦ-ବିଦ୍ୟାରେ ପ୍ରବୀଣା ହୋଇ ଉଠିଲେ । ତାଙ୍କ ବୟଃପ୍ରାପ୍ତି ସଙ୍ଗେ ସଙ୍ଗେ କିପରି ଭାବରେ ଜଣେ ଯୋଗ୍ୟ ପାତ୍ରଙ୍କ ହାତରେ ତାଙ୍କୁ ସମର୍ପି ଦେବେ, ସେଥିପାଇଁ ଅତ୍ରି ଉଦ୍‌ବିଗ୍ନ ହୋଇ ଉଠିଲେ । ରୁଗ୍‌ଣା ଝିଅଟିକୁ ହାତରୁ ଦି ହାତ କରିଦେବା ପାଇଁ ସବୁ ବାପାମାଆ ସବୁ କାଳରେ ଏମିତି ବ୍ୟାକୁଳ ହୋଇ ଉଠିଥାନ୍ତି । ଶେଷକୁ କୃଶାଶ୍ୱ ବୋଲି ଜଣେ ଗୁଣୀ ଯୁବକଙ୍କ ସହିତ ଅପାଳାଙ୍କର ବିବାହ ହେଲା । ପ୍ରାଥମିକ ଅବସ୍ଥାରେ ଅପାଳାଙ୍କର ଦାମ୍ପତ୍ୟ ଜୀବନ ଖୁବ୍ ସୁଖରେ କଟିଲା । ତାଙ୍କ ସ୍ୱାମୀ କିମ୍ବା ଶାଶୂ ଶଶୁର କେହି ତାଙ୍କ

ରୋଗ ବିଷୟରେ କିଛି ହିଁ ଠେର ପାଇ ନଥିଲେ । କିନ୍ତୁ ସତ କଥା ବେଶି ଦିନ ଲୁଚି ରହେ ନାହିଁ ; ଦିନେ ନା ଦିନେ ତାହାର ପ୍ରକାଶ ଘଟେ । ଏ କ୍ଷେତ୍ରରେ ତାହା ହିଁ ହେଲା । ଶାଶୁ, ଶଶୁର ଓ ସ୍ୱାମୀ ଅପାଳାଙ୍କ ରୋଗ କଥା ଜାଣି ପାରିଲେ । ଏହାର ଫଳଶ୍ରୁତି ସ୍ୱରୂପ ସେମାନେ ତାଙ୍କୁ ଘୃଣା କରିବାକୁ ଲାଗିଲେ । ଶେଷକୁ ଅପାଳା ହେଲେ ସ୍ୱାମୀପରିତ୍ୟକ୍ତା । ଏଭଳି ପରିସ୍ଥିତିରେ ସାଧାରଣ ସ୍ତ୍ରୀଙ୍କ ପକ୍ଷରେ ଯାହା ଘଟେ, ତାଙ୍କ ପକ୍ଷରେ ଠିକ୍ ତାହା ହିଁ ଘଟିଲା । ନିରୁପାୟ ହୋଇ ଶେଷରେ ସେ ଆସି ବାପାଙ୍କ ପାଖରେ ରହିଲେ ।

ଅତ୍ରି ମୁନି ଅପାଳାଙ୍କୁ ଉପଦେଶ ଦେଇ କହିଲେ ଯେ ଏ ବିପଦରୁ ଏକମାତ୍ର ଇନ୍ଦ୍ର ହିଁ ମୁକୁଳାଇ ଦେଇ ପାରିବେ । ସୋମରସ ତାଙ୍କର ଅତି ପ୍ରିୟ । ତେଣୁ ସୋମରସ ଅର୍ପଣ କରି ତାଙ୍କୁ ପୂଜା କରିବାକୁ ହେବ । ସୋମରସ ସୋମ ଲତାରୁ ତିଆରି ହେଉଥିଲା ଏବଂ ଏହା 'ମୁଜବନ୍ତ' ପର୍ବତରେ ମିଳୁଥିଲା । (୭) କିନ୍ତୁ ସେତେବେଳକୁ ଏହା ପ୍ରାୟ ମିଳୁ ନଥିଲା କହିଲେ ଚଳେ ; ଯଦିଓ ମିଳୁଥିଲା, ତେବେ ଖୁବ୍ କଷ୍ଟରେ ମିଳୁଥିଲା । ଅପାଳା ସୋମରସ ପାଇ ନପାରି ବଡ଼ ଦୁଃଖରେ ଦିନ କାଟିବାକୁ ଲାଗିଲେ ।

ଦିନକର କଥା । ସନ୍ଧ୍ୟା ସମୟ । ଅପାଳା ମାଠିଆରେ ଝରଣାରୁ ପାଣି ଧରି ଆଶ୍ରମକୁ ଫେରୁଥାନ୍ତି । ଆକାଶରେ ଜହ୍ନ ଚଢ଼ିହି ଉଠୁଥାଏ । ଏହି ସମୟରେ ହଠାତ୍ ଜଙ୍ଗଲରେ ଝଟକି ଉଠୁଥିବା ଗୋଟିଏ ଲତା ସେ ଦେଖି ପାରିଲେ । ଲତାଟିକୁ ସେ ଚିହ୍ନି ପାରିଲେ । ତାହା ହେଉଛି ସୋମଲତା । ଏତେ ଦିନେ ତାଙ୍କ ଆଶା ପୂରଣ ହେଲା ବୋଲି ଭାବି ସେ ଆନନ୍ଦରେ ଅଧୀର ହୋଇ ଉଠିଲେ । ତଥାପି ତାଙ୍କ ମନରେ ସନ୍ଦେହ ଥିଲା । ତାହା ପ୍ରକୃତ ସୋମଲତା କି ନୁହେଁ, ସେ କଥା ସେ ପରୀକ୍ଷା କରିବାକୁ ଚାହିଁଲେ । ସେ ତହିଁରୁ କେତୋଟି ପତ୍ର ଆଣି ଚୋବାଇଲେ । ଦାନ୍ତରୁ ଦାନ୍ତ ଘର୍ଷି ହେବା ଫଳରେ ଯେଉଁ ଶବ୍ଦ ହେଲା, ଇନ୍ଦ୍ର ତାହା ଶୁଣି ପାରିଲେ । ଶିଳରେ ବାଟି ସୋମରସ ତିଆରି କରି ଯାଇଥାଏ । ଇନ୍ଦ୍ର ତେଣୁ ଯୁଗ ଯୁଗ ଧରି ସୋମର ପ୍ରସ୍ତୁତି ବିଷୟରେ ଆଁନ୍ତ ପରିଚିତ । କେଉଁଠି ସୋମରସ ତିଆରି ହେଲେ, ସେ ଜାଣି ପାରନ୍ତି । ଅପାଳାଙ୍କ ମୁଖ ମଧ୍ୟରେ ଏହି ଯେଉଁ ସୋମରସ ତିଆରି ହେଲା, ସେ କଥା ସେ ଜାଣି ପାରିଲେ । ସେ ଅପାଳାଙ୍କ ଆଗରେ ଠିଆ ହୋଇ ସୋମରସ ମାଗିଲେ । ଅପାଳା ଇନ୍ଦ୍ରଙ୍କୁ ଚିହ୍ନି ପାରିଲେ ମଧ୍ୟ ନିଜ ଉଚ୍ଛିଷ୍ଟ ତାଙ୍କୁ ଦେବା ଲାଗି ପ୍ରଥମେ କୁଣ୍ଠିତ ହେଉଥିଲେ । ଇନ୍ଦ୍ର ଭକ୍ତଙ୍କର ମନକଥା ବୁଝି ପାରିଲେ ଏବଂ କହିଲେ ଯେ ସେହି ଉଚ୍ଛିଷ୍ଟ ହିଁ ତାଙ୍କର ପ୍ରାପ୍ୟ ; ତାହା ପାଇବା ପାଇଁ ସେ ଖୁବ୍ ଲାଳାୟିତ । ଅପାଳା ସେହି ସୋମରସକୁ ଇନ୍ଦ୍ରଙ୍କୁ ଅର୍ପଣ କଲେ ଏବଂ ତାହା ପାନ କରି ସେ ଖୁବ୍ ତୃପ୍ତ ହେଲେ । ଇନ୍ଦ୍ରଙ୍କ ପାଟିରେ ଧୀରେ

ଧୀରେ ସୋମରସକୁ ଚିବାଇ ଚିବାଇ କରି ଋଷି ପତ୍ନୀ ପାଇଁ ଅପାଳା ଯେଉଁ ପ୍ରାର୍ଥନା କରିଥିଲେ, ତାହା ଅତି ରୋଚକ ଭାବରେ ଉକ୍ତ ସୂକ୍ତରେ ବର୍ଣ୍ଣିତ ।

ଇନ୍ଦ୍ର ପ୍ରସନ୍ନ ହୋଇ ଅପାଳାଙ୍କୁ ବର ମାଗିବାକୁ କହିଲେ । ଅପାଳା ତିନୋଟି ବର ମାଗିଲେ । ତାଙ୍କ ବାପା ବୁଢ଼ା ଓ ଟକଲା ହୋଇ ଯାଇଥିଲେ । ପ୍ରଥମ ବରରେ ତାଙ୍କ ବାପାଙ୍କ ଟକଲା ମୁଣ୍ଡରେ ବାଳ ହେବା ପାଇଁ ସେ ପ୍ରାର୍ଥନା କଲେ । ଦ୍ୱିତୀୟ ବରରେ ତାଙ୍କ ବାପାଙ୍କ ଅନୁର୍ବର କ୍ଷେତ ଉର୍ବର ହେଉ ବୋଲି ସେ ପ୍ରାର୍ଥନା କଲେ । ତୃତୀୟ ବରରେ ତାଙ୍କର ଧବଳ କୁଷ୍ଠ ରୋଗ ଭଲ ହୋଇ ଯାଇ ସେ ପୁଣି ପତିଙ୍କର ଆଦର ସୋହାଗ ପାଇ ପାରନ୍ତୁ ବୋଲି ପ୍ରାର୍ଥନା କଲେ । ଇନ୍ଦ୍ର 'ତଥାସ୍ତୁ' କହି ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ତାଙ୍କର ବର ଫଳିଲା । ଅତ୍ରିଙ୍କ ଟକଲା ମୁଣ୍ଡରେ ବାଳ ଭରପୁର ହୋଇ ଉଠିଲା । ତାଙ୍କ କ୍ଷେତବାଡ଼ି ଖୁବ୍ ଉର୍ବର ହୋଇ ପ୍ରଚୁର ଶସ୍ୟ ଉତ୍ପାଦନ କଲା । ଅପାଳା ତାଙ୍କ ପୂର୍ବ ସୌନ୍ଦର୍ଯ୍ୟ ଫେରି ପାଇଲେ ଏବଂ ତାଙ୍କ ରୋଗ ଦୂର ହୋଇଗଲା । ସେ ଏକ ଅପରୂପା କନ୍ୟାର ରୂପଶ୍ରୀ ଧରି ଆଶ୍ରମକୁ ଫେରିଲେ । ପରେ ପରେ ସେ ସ୍ୱାମୀ-ଗୃହକୁ ଗଲେ ଏବଂ ସୁଖରେ ଦାମ୍ପତ୍ୟଜୀବନ ଯାପନ କରିବାକୁ ଲାଗିଲେ ।

ଏହି ଆଖ୍ୟାନଟିକୁ ଗଭୀର ଭାବରେ ଅନୁଧ୍ୟାନ କଲେ ଆମେ ନିମ୍ନଲିଖିତ ନିର୍ଣ୍ଣୟରେ ପହଞ୍ଚି ପାରିବା :

(କ) ବୈଦିକ କାଳରେ ପୁଅମାନଙ୍କ ପରି ଝିଅମାନଙ୍କୁ ମଧ୍ୟ ବିଦ୍ୟାଧ୍ୟୟନର ସୁଯୋଗ ଦିଆ ଯାଉଥିଲା । ଅପାଳା ସ୍ୱୟଂ ଥିଲେ ଜଣେ ଋଷିକା ।

(ଖ) ଧବଳ କୁଷ୍ଠ ସେତେବେଳେ ଥିଲା ଏକ ଦୁରାରୋଗ୍ୟ ବ୍ୟାଧି ।

(ଗ) ଆଜିକାଲି ଭଳି ପୁଅ ଝିଅ ଙ୍କ ବିବାହ ଲାଗି ବେଳେ ବେଳେ ବାପାମାଆ-ମାନେ ସେମାନଙ୍କ ଦୁରାରୋଗ୍ୟ ରୋଗ କଥା ଲୁଚାଉଥିଲେ । ଏହା ଅତିରିକ୍ତ ବାତ୍ସଲ୍ୟ ମମତାର ଫଳ । ସତ୍ୟାଶ୍ରୟୀ ମୁନି ଋଷିମାନେ ମଧ୍ୟ ଏଥିରୁ ବାଦ ପଡ଼ୁ ନଥିଲେ ।

(ଘ) ସ୍ତ୍ରୀ ଦୁରାରୋଗ୍ୟ ରୋଗରେ ପୀଡ଼ିତା ହେଲେ ପତିପରିତ୍ୟକ୍ତା ହେଉଥିଲା ଏବଂ ଆରୋଗ୍ୟ ହୋଇ ସାରିବା ପରେ ପୁନର୍ବାର ପତିଙ୍କ ଦ୍ୱାରା ଗୃହୀତା ହେଉଥିଲା ।

(ଙ) ପତିପରିତ୍ୟକ୍ତା ସ୍ତ୍ରୀ ଲାଗି ବାପଘର ଥିଲା ଆଶ୍ରୟସ୍ଥଳ ।

(ଚ) ବୈଦିକ ଦେବମଣ୍ଡଳରେ ଇନ୍ଦ୍ର ଜଣେ ପ୍ରମୁଖ ଦେବତା ରୂପରେ ଗଣ୍ୟ

ହେଉଥିଲେ ଏବଂ ସେ ଥିଲେ ସୋମପାୟୀ । ସୋମରସ ଅର୍ପଣ ଦ୍ୱାରା ତାଙ୍କୁ ପ୍ରସନ୍ନ କରା ଯାଉଥିଲା ।

(ଛ) ସୋମରସର ବହୁଳ ବ୍ୟବହାର ଫଳରେ ସୋମଲତା କ୍ରମେ କ୍ରମେ ଦୁର୍ଲଭ ହୋଇ ଉଠୁଥିଲା ।

(ଜ) ଆର୍ଯ୍ୟମାନଙ୍କ ମୁଣ୍ଡରେ ପ୍ରାୟ ପ୍ରଚୁର ବାଳ ରହୁଥିଲା । ଚନ୍ଦା ମୁଣ୍ଡିଆ ଲୋକ ଖୁବ୍ କମ୍ ଥିଲେ ଏବଂ ଚନ୍ଦା ମୁଣ୍ଡକୁ ଲୋକେ ପସନ୍ଦ କରୁନଥିଲେ ।

(ଝ) ଅପାଲାଙ୍କ ମୁହଁରୁ ଝରୁଥିବା ସୋମରସ ଇନ୍ଦ୍ର ପାନ କରିଥିଲେ ବୋଲି ଯେଉଁ ବର୍ଣ୍ଣନା ଦିଆ ଯାଇଛି, ପରବର୍ତ୍ତୀ କାଳରେ ତାହାର ପ୍ରଭାବ ରାମାୟଣକାର ବାଲ୍ମୀକିଙ୍କ ଉପରେ ପଡ଼ିଥିବାର ମନେ ହୁଏ । ସିଦ୍ଧା ଶବରୀ ଫଳକୁ ଅଇଁଠା କରି ରାମଚନ୍ଦ୍ରଙ୍କୁ ଅର୍ପଣ କରିଥିବାର ଯେଉଁ ବର୍ଣ୍ଣନା ସେ କରିଛନ୍ତି, ତାହା ଏହାର ନିଦର୍ଶନ ।

(ଞ) ମୁନି-ଆଶ୍ରମର କ୍ଷେତମାନ ସେତେବେଳକୁ ଅନୁର୍ବର ହେବାକୁ ଆରମ୍ଭ କଲିଣି । ବୋଧହୁଏ ପ୍ରାକୃତିକ ସମ୍ପଦଗୁଡ଼ିକର ଅତ୍ୟଧିକ ବିନିଯୋଗ ଫଳରେ ଏହା ଘଟିଥିବ ।

ଅପାଲାଙ୍କ ମୁଖରୁ ଝରୁଥିବା ସୋମ-ରସକୁ ଇନ୍ଦ୍ର ପାନ କଲେ ବୋଲି ଏହି ଆଖ୍ୟାନଟିରେ ଯେଉଁ ବର୍ଣ୍ଣନା ଅଛି, ତାହାକୁ ଲକ୍ଷ୍ୟ କରି କେତେକ ବିଦ୍ୱାନ୍ (ବିଶେଷ କରି ପାଶ୍ଚାତ୍ୟ ବିଦ୍ୱାନ) ଅପାଲାଙ୍କ ସହିତ ଇନ୍ଦ୍ରଙ୍କର ଅବୈଧ ସମ୍ପର୍କ ସଂଘଟିତ ହୋଇଥିଲା ବୋଲି କହୁଥାନ୍ତି । ସେମାନଙ୍କ ମତରେ ସାନ୍ଧ୍ୟ ମଦମାୟା ପରିବେଶ ମଧ୍ୟରେ ଇନ୍ଦ୍ର ଅପାଲାଙ୍କ ଅଧର-ମଦ୍ୟ ପାନ କରିଥିଲେ । ପରବର୍ତ୍ତୀ କାଳରେ ପୁରାଣ-ଯୁଗରେ ଇନ୍ଦ୍ରଙ୍କ ଚରିତ୍ର ସମ୍ପର୍କରେ ଯେଉଁ ଯେଉଁ ବର୍ଣ୍ଣନାମାନ ଅଛି, ସେଥି ପ୍ରତି ଲକ୍ଷ୍ୟ କରି ସେମାନେ ଏଭଳି ଘଟିଥିବ ବୋଲି ବିଶ୍ୱାସ କରନ୍ତି । ଏହା କିନ୍ତୁ ଭ୍ରମାତ୍ମକ । ବୈଦିକ ଇନ୍ଦ୍ରଙ୍କଠାରେ କୌଣସି ଜାଗାରେ କାମନାଜର୍ଜରିତାର ଆକ୍ଷେପ କରା ଯାଇନାହିଁ । ଅତି ସିଧା ସଳଖ ଭାବରେ ଅପାଲା ଓ ଇନ୍ଦ୍ରଙ୍କ ସମ୍ପର୍କକୁ ଯଦି ଭକ୍ତ ଓ ଭଗବାନଙ୍କ ସମ୍ପର୍କ ଭାବରେ ଅର୍ଥ କରା ଯାଇ ପାରୁଛି, ତେବେ ସେଠାକୁ ଟାଣି ଓଟାରି କରି କାହିଁକି ଆମେ ବା ଯୌନ-ଭାବନା ଆଣିବା ? ଅପାଲା ଯଦି ଇନ୍ଦ୍ରଙ୍କ ଦ୍ୱାରା ଭ୍ରଷ୍ଟା ହୋଇଥାନ୍ତେ, ତେବେ ତାଙ୍କ ସ୍ୱାମୀ ତାଙ୍କୁ ପୁନର୍ବାର ଗ୍ରହଣ କରିଥାନ୍ତେ କି ? ଅତଏବ, ଅପାଲା ଓ ଇନ୍ଦ୍ରଙ୍କ ସମ୍ପର୍କକୁ ଭକ୍ତ ଓ ଭଗବାନଙ୍କ ସମ୍ପର୍କ ବୋଲି ଅର୍ଥ କରିବା ସମୀଚୀନ ହେବ । ପାଶ୍ଚାତ୍ୟ ପଣ୍ଡିତମାନଙ୍କର ଧାରଣା ଯେ 'ଭକ୍ତିବାଦ' ବୈଦିକ ନୁହେଁ । ଏହା ଆର୍ଯ୍ୟେତର ଗୋଷ୍ଠୀରୁ ଆସିଛି । ଏ

ଧାରଣା କରୁ ଭ୍ରମାତ୍ମକ ବୋଲି ଏବଂ ପ୍ରମାଣିତ ହେଉଛି । ଦାଣ୍ଡେକର ଋଗ୍‌ବେଦର ସପ୍ତମ ମଣ୍ଡଳରେ ଥିବା ବରୁଣ-ସୂକ୍ତଗୁଡ଼ିକୁ (୭।୮୬-୮୯) ପରୀକ୍ଷା କରି କହିଛନ୍ତି ଯେ ସେଗୁଡ଼ିକ ଭକ୍ତିବାଦର ଉଜ୍ଜ୍ୱଳ ଉଚ୍ଛ୍ୱାସରେ ଭରପୂର । ତାଙ୍କର ଏ ସମ୍ପର୍କରେ ମତ ହେଲା :

> "The theory that the doctrine of Bhakti was originally borrowed from some non-Indian sources has now become obsolete and is hardly given any credence. On the contrary, it can be clearly demonstrated that perhaps the earliest Indian literary evidence of Bhakti is provided by the Varuna-hymns in the seventh Mandala of the Rig-Veda." (୭)

ଅତଏବ ଅପାଲାଙ୍କ କ୍ଷେତ୍ରରେ ଏହି ଭକ୍ତିବାଦକୁ ଆରୋପ କରିବାରେ କିଛି ଅସୁବିଧା କିମ୍ବା ଅଯଥାର୍ଥତା ନାହିଁ । ଏଣୁ ଇନ୍ଦ୍ର-ଅପାଲାଙ୍କ ଅବୈଧ ସମ୍ପର୍କ ନେଇ କରି ଯାଉଥିବା ଅର୍ଥଟି ସର୍ବଥା ପରିହାର୍ଯ୍ୟ ।

### ତ୍ରୈବୃଷ୍ଣ-ବୃଶ ଆଖ୍ୟାନ :

ଏହି ଆଖ୍ୟାନଟି ହେଉଛି ଋଗ୍‌ବେଦର । ତାଣ୍ଡ୍ୟ ବ୍ରାହ୍ମଣ ଓ ବୃହଦ୍ଦେବତାରେ ମଧ୍ୟ ଏହାର ଉଲ୍ଲେଖ ଅଛି । ବୈଦିକ ପୁରୋହିତଙ୍କର ମାହାତ୍ମ୍ୟ ପ୍ରତିପାଦିତ କରିବା ହେଉଛି ମୁଖ୍ୟତଃ ଏହି କାହାଣୀର ଲକ୍ଷ୍ୟ । (୮) ଗଳ୍ପଟିର କଥାବସ୍ତୁ ନିମ୍ନରେ ଦର୍ଶା ଯାଉଛି :

ଇକ୍ଷ୍ୱାକୁ ରାଜବଂଶ ଥିଲା ଏକ ପ୍ରାଚୀନ ଓ ପ୍ରଖ୍ୟାତ ରାଜବଂଶ । ରାଜା ତ୍ରୈବୃଷ୍ଣ ତ୍ର୍ୟରୁଣ ଥିଲେ ଏହି ବଂଶର ଜଣେ ଅତି ପ୍ରତିପତ୍ତିଶାଳୀ ରାଜା । ସେ ଯେଉଁଭଳି ବଳବାନ ଥିଲେ, ଠିକ୍ ଅନୁରୂପ ଭାବରେ ଥିଲେ ପ୍ରଜ୍ଞାବାନ୍ । ସେ ନିଜେ ଥିଲେ କେତେକ ଋକ୍ ମନ୍ତ୍ରର ଦ୍ରଷ୍ଟା । (୯) ତାଙ୍କ ପୁରୋହିତଙ୍କ ନାଁ ଥିଲା ମହର୍ଷି ବୃଶ । ବୃଶଙ୍କ ବାପାଙ୍କ ନାଁ ଥିଲା ଜନ । ତେଣୁ ସେ 'ବୃଶ ଜାନ' ନାମରେ ପ୍ରସିଦ୍ଧ ଥିଲେ । ତ୍ରୈବୃଷ୍ଣ ଓ ବୃଶଙ୍କ ମଧ୍ୟରେ ଖୁବ୍ ଭଲ ସମ୍ପର୍କ ଥିଲା । ତ୍ରୈବୃଷ୍ଣ ବୃଶଙ୍କୁ ଖୁବ୍ ଭକ୍ତି କରୁଥିଲେ ଓ ସମ୍ମାନ ଦେଖାଉଥିଲେ । ବୃଶ ମଧ୍ୟ ତ୍ରୈବୃଷ୍ଣଙ୍କୁ ସ୍ନେହ, ଶ୍ରଦ୍ଧା ତଥା ଆଶୀର୍ବାଦ କରୁଥିଲେ । ଇକ୍ଷ୍ୱାକୁ ରାଜ୍ୟ ସୁଖସମୃଦ୍ଧିରେ ଭରି ଉଠିଥିଲା ।

ତ୍ରୈବୃଷ୍ଣ ନୂଆ ନୂଆ ରାଜ୍ୟ ଜିଣି ତାଙ୍କ ରାଜ୍ୟର ସୀମାକୁ ବଢ଼ାଇବାକୁ ଚାହିଁଲେ । ତେଣୁ ସେ ଦିଗ୍‌ବିଜୟରେ ବାହାରିବା ପାଇଁ ଠିକ୍ କଲେ । କିନ୍ତୁ ଏ ଦିଗ୍‌ବିଜୟ ଯାତ୍ରାରେ

ସାରଥି ବାଛିବା ପାଇଁ ତାଙ୍କ ମନରେ ଏକ ବିଚିତ୍ର ଭାବନା ଆସିଲା । ସେ ଚାହିଁଲେ, ପୁରୋହିତ ବୃଶ ତାଙ୍କ ରଥର ସାରଥି ହୁଅନ୍ତୁ । ସେଥିପାଇଁ ସେ ବୃଶଙ୍କୁ ପ୍ରାର୍ଥନା କଲେ । ବୃଶ ଯଜମାନ ରାଜାଙ୍କ ପ୍ରାର୍ଥନାକୁ ପୂରଣ କଲେ । ଶ୍ରୈବୃଷ୍ଣ ଦିଗ୍‌ବିଜୟରେ ବାହାରିଲେ ଏବଂ ତାଙ୍କ ରଥରେ ସାରଥି ହେଲେ ପୁରୋହିତ ବୃଶ । ସେ ବହୁ ଦେଶ ଜୟ କରିବା ପରେ ଶେଷକୁ ସ୍ୱରାଜ୍ୟକୁ ଫେରି ଆସିଲେ । ବହୁ ଧୂମ୍‌ଧାମରେ ରାଜାଙ୍କର ବିଜୟ-ବାହୁଡ଼ାକୁ ପ୍ରଜାମାନେ ମାନିବାକୁ ଲାଗିଲେ । କ୍ରମେ ରାଜଧାନୀ ପାଖ ହୋଇ ଆସିଲା; ଲୋକ ଗହଳି ବି ବଢ଼ି ଉଠିଲା । ଏହି ଗହଳି ଭିତରେ ରାଜାଙ୍କ ରଥ ଚାଲୁଥିବା ସମୟରେ ରଥ-ଚକ ମାଡ଼ି ଯାଇ ଗୋଟିଏ ବ୍ରାହ୍ମଣ ପିଲା ଜୀବନ ହରାଇ ବସିଲା । ବ୍ରହ୍ମହତ୍ୟା ମହାପାପ । ସମସ୍ତେ ହାହାକାର କରି ଉଠିଲେ । ଏ ଦୋଷ କାହାକୁ ଲାଗିବ, ଏହି ବିଷୟରେ ଯୁକ୍ତିତର୍କ ଓ ବାଦାନୁବାଦ ଚାଲିଲା । ରାଜା ଏ ଦୋଷକୁ ମୁଣ୍ଡାଇବାକୁ ପ୍ରସ୍ତୁତ ହେଲେ ନାହିଁ । ସେ ପୁରୋହିତ ବୃଶଙ୍କୁ ଏଥିପାଇଁ ଦୋଷ ଦେଲେ ଏବଂ କହିଲେ ଯେ ତାଙ୍କ ଅସାବଧାନତାରୁ ବ୍ରାହ୍ମଣ ପିଲା ମରିଛି ; ତେଣୁ ଏ ଦୋଷ ତାଙ୍କର । ବୃଶଙ୍କ ଯୁକ୍ତି ହେଲା, ସେ ରଥସ୍ୱାମୀଙ୍କର ଭୃତ୍ୟ ; ଏବଂ ତାଙ୍କରି ନିର୍ଦ୍ଦେଶରେ ହିଁ ସେ ରଥ ଚଲାଉଥିଲେ । ତାହାର ଭଲ ମନ୍ଦ ଫଳର ଦାୟିତ୍ୱ ରଥସ୍ୱାମୀଙ୍କ ଉପରେ । ତେଣୁ ବ୍ରହ୍ମହତ୍ୟା ଦୋଷ ରାଜାଙ୍କୁ ଲାଗିବ । ଅନେକ ଖୋସାମଦିଆ ପ୍ରଜା ଓ ମନ୍ତ୍ରୀ ଥିଲେ । ସେମାନେ ସମସ୍ତେ ରାଜାଙ୍କ ପକ୍ଷକୁ ସମର୍ଥନ କଲେ । ତେଣୁ ବୃଶଙ୍କ ଉପରେ ବ୍ରହ୍ମ-ହତ୍ୟାର ଦୋଷ ଆରୋପ କରାଗଲା । ସେଥିପାଇଁ ବୃଶ ଖୁବ୍ ଦୁଃଖିତ ହେଲେ । ସେ ନିଜର ସାମର୍ଥ୍ୟ ଦେଖାଇବାକୁ ଯାଇ ମନ୍ତ୍ର ପ୍ରୟୋଗ ଦ୍ୱାରା ବ୍ରାହ୍ମଣ ପିଲାଟିକୁ ବଞ୍ଚାଇ ଦେଲେ । କିନ୍ତୁ ପରେ ପରେ ଆଉ ଏଭଳି ଅପମାନଜନକ ପରିସ୍ଥିତିରେ ରହିବେ ନାହିଁ ବୋଲି ବିଚାରି ଶ୍ରୈବୃଷ୍ଣଙ୍କ ରାଜ୍ୟ ଛାଡ଼ି ଚାଲିଗଲେ ।

ପୁରୋହିତ ସାକ୍ଷାତ ବୈଶ୍ୱାନର ବା ଅଗ୍ନି ସଦୃଶ । ସେ ରାଜ୍ୟରୁ ଚାଲି ଯିବା ପରେ ଅଗ୍ନିଙ୍କ ଦାହିକା ଶକ୍ତି ନଷ୍ଟ ହୋଇଗଲା । ଅଗ୍ନି ଥାଇ ମଧ୍ୟ ନଥିଲା ଭଳି ହୋଇ ରହିଲେ । ଲୋକେ ଆଉ ରୁଷେଇବାସ କରି ଖିଆପିଆ କରି ପାରିଲେ ନାହିଁ । ଚାରିଆଡ଼େ ଆର୍ତ୍ତନାଦ ଭରି ଉଠିଲା । ରାଜା ମନ୍ତ୍ରୀମାନଙ୍କ ସହିତ ପରାମର୍ଶ କରି ବୁଝି ପାରିଲେ ଯେ ବୃଶଙ୍କର .ରାଜ୍ୟତ୍ୟାଗ ହେଉଛି ଏହାର ଏକମାତ୍ର କାରଣ । ସେ ବୃଶଙ୍କୁ ବହୁ ଖୋଜା ଖୋଜି ପରେ ଶେଷରେ ପାଇଲେ ଏବଂ ରାଜ୍ୟର ଓ ପ୍ରଜାମାନଙ୍କର ଦୁଃଖ-ଦୁର୍ଦ୍ଦଶା ବର୍ଣ୍ଣନା କରି ପୁରୋହିତ-ପଦ ପୁନର୍ବାର ଗ୍ରହଣ କରିବାକୁ ଅନୁରୋଧ କଲେ । ବୃଶଙ୍କର ରାଜାଙ୍କ ଉପରେ ଦୟା ହେଲା ; ସେ କ୍ରୋଧ ଛାଡ଼ିଲେ । ସେ ଧ୍ୟାନ ବଳରେ ଜାଣି ପାରିଲେ ଯେ ରାଜାଙ୍କ ସ୍ତ୍ରୀମାନଙ୍କ ମଧ୍ୟରେ ଜଣେ ପିଶାଚୀ ଅଛି । ତାଙ୍କ ଯିବା ପରେ ପରେ ସେ ଅଗ୍ନିଙ୍କୁ ନିଜ ଶେଯ-ତଳେ ଲୁଚାଇ ରଖିଛି । ସେଇଠୁ ସେ ଆସି ସେହି ଶେଯ ପାଖରେ ଠିଆ ହୋଇ ଅଗ୍ନିଙ୍କୁ ପ୍ରାର୍ଥନା କଲେ । ଅଗ୍ନିଙ୍କର ଦାହିକା-ଶକ୍ତି ଫେରି ଆସିଲା ଏବଂ ସେ ପୂର୍ବ ଭଳି ପ୍ରଦୀପ୍ତ ହୋଇ ଉଠିଲେ । ସେହି ନିଆଁରେ ରାଜାଙ୍କ ପିଶାଚୀ ସ୍ତ୍ରୀ ଜଣକ ପୋଡ଼ି

ପାଉଁଶ ହୋଇଗଲା । ଅଗ୍ନି ଫେରି ଆସିବାରୁ ବୈଦେହ ମାଥବଙ୍କ ରାଜ୍ୟର ପ୍ରଜାମାନେ ପୁଣି ସୁଖୀ ହୋଇ ଉଠିଲେ । ତୃଣ ପୁନର୍ବାର ପୌରୋହିତ୍ୟ ଗ୍ରହଣ କରିବାରେ ରାଜା ମଧ୍ୟ ସମଧିକ ସୁଖୀ ହେଲେ ।

ଏହି ଗଳ୍ପଟିରେ ପୁରୋହିତଙ୍କର ପ୍ରାଧାନ୍ୟ ପ୍ରତିପାଦିତ କରାଯିବା ସଙ୍ଗେ ସଙ୍ଗେ ସେ କିପରି ରାଜା, ପ୍ରଜା ଓ ରାଜ୍ୟର ସୁଖଦୁଃଖ ପାଇଁ ଦାୟୀ, ତାହା ଦର୍ଶାଯାଇଛି । ଯେ ସବୁବେଳେ ଆଗରେ ଥାଆନ୍ତି ତାଙ୍କୁ କୁହାଯାଏ ପୁରୋହିତ । ଯୁଦ୍ଧରେ ହେଉ ଅଥବା ଯଜ୍ଞକର୍ମରେ ହେଉ ଅଥବା ମନ୍ତ୍ରଣା-ସଭାରେ ହେଉ, ସର୍ବଦା ପୁରୋହିତ ଅଗ୍ରଭୂମିକା ଗ୍ରହଣ କରିଥାନ୍ତି । ସେଥିପାଇଁ ତାଙ୍କୁ ଏଭଳି ସର୍ବଶ୍ରେଷ୍ଠ ଆସନ ଦିଆ ଯାଇଥିଲା । ଅଥର୍ବ ବେଦରେ ପୁରୋହିତମାନେ ନିଜ ବିଷୟରେ ଠାଏ କହୁଛନ୍ତି :

"ବୟଂ ରାଷ୍ଟ୍ରେ ଜାଗୃୟାମଃ ପୁରୋହିତାଃ" (୯-କ)

ଅର୍ଥାତ୍ ଆମେ ପୁରୋହିତମାନେ ରାଷ୍ଟ୍ରରେ ସଦାଜାଗ୍ରତ ରହି ଅଛୁଁ । ସମସ୍ତେ ଶୋଇ ପାରନ୍ତି ; ଏପରି କି ରାଜା ବି ଶୋଇ ପାରନ୍ତି । କିନ୍ତୁ ପୁରୋହିତ ଶୋଇ ପାରିବେ ନାହିଁ । ସେ ରାଷ୍ଟ୍ରର ଜଣେ ସଦାଜାଗ୍ରତ ପ୍ରହରୀ । ରାଷ୍ଟ୍ରର ମଙ୍ଗଳ ଲାଗି, ସମାଜର ମଙ୍ଗଳ ଲାଗି ତାଙ୍କୁ ସର୍ବଦା ଜାଗ୍ରତ ରହିବାକୁ ହେବ । ସେଥିପାଇଁ ଐତରେୟ ବ୍ରାହ୍ମଣରେ ଯଥାର୍ଥରେ କୁହାଯାଇଛି :

"ତସ୍ମୈ ବିଶଃ ସଂଜାନତେ ସମ୍ମୁଖା ଏକମନସଃ ।
ଯସ୍ୟୈବ ବିଦ୍ୱାନ୍ ବ୍ରାହ୍ମଣୋ ରାଷ୍ଟ୍ରଗୋପଃ ପୁରୋହିତଃ ॥" (୧୦)

ଅର୍ଥାତ୍ ବିଦ୍ୱାନ୍ ବ୍ରାହ୍ମଣ ପୁରୋହିତ ଯାହାଙ୍କ ରାଷ୍ଟ୍ରର ରକ୍ଷକ ଭାବରେ ବିଦ୍ୟମାନ, ତାଙ୍କ ପ୍ରଜାମାନେ ସମସ୍ତେ ଏକ ମନ ହୋଇ ରାଜାଙ୍କ ଅଧୀନତା ସ୍ୱୀକାର କରନ୍ତି । ପୁରୋହିତଙ୍କୁ 'ରାଷ୍ଟ୍ରଗୋପଃ' ବା 'ରାଷ୍ଟ୍ରର ରକ୍ଷାକାରୀ' ବୋଲି କହିବାର ତାତ୍ପର୍ଯ୍ୟ ଅଛି ଏଇଠି । ପୁରୋହିତ-ମାନଙ୍କର ଏହି ସାମାଜିକ ପ୍ରତିଷ୍ଠା ପ୍ରତି ଲକ୍ଷ୍ୟ କରି ବାଳଶାସ୍ତ୍ରୀ ହରିଦାସ ଯାହା କହିଛନ୍ତି, ତାହା ଏଠାରେ ଉଲ୍ଲେଖନୀୟ :

"All this was achieved by this class of Brahmans, which was always engaged in the pursuit and quest of knowledge and the practice of highest principles of life. It is no wonder that the class should have gathered universal popularity and

acquired for itself a place of honour, confidence and worship." (୧୧)

ଏଇଥିରୁ ବୈଦିକ ପୁରୋହିତଙ୍କ ଆସନ କେତେ ଉଚ୍ଚରେ ଥିଲା, ତାହା ସହଜରେ ଅନୁମିତ ହେବ ।

ଉପରୋକ୍ତ କାହାଣୀଟିକୁ ଅନୁଧ୍ୟାନ କଲେ ଆମେ ନିମ୍ନଲିଖିତ ନିଷ୍କର୍ଷରେ ପହଞ୍ଚି ପାରିବା ।

(କ) ସେତେବେଳେ ଭାରତ ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟରେ ବିଭକ୍ତ ଥିଲା ଏବଂ ବଳବାନ୍ ରାଜା ଦୁର୍ବଳ ରାଜାମାନଙ୍କୁ ପରାସ୍ତ କରି ନିଜ ରାଜ୍ୟର ସୀମା ବଢ଼ାଇବାରେ ପ୍ରୟାସୀ ହେଉଥିଲେ ।

(ଖ) ପୁରୋହିତ ସବୁ କାର୍ଯ୍ୟରେ ଅଗ୍ରଣୀ ଥିଲେ ।

(ଗ) ପୁରୋହିତଙ୍କର ସାମାଜିକ ସ୍ଥିତି ଖୁବ୍ ଉଚ୍ଚରେ ଥିଲା । ଏପରି କି ତାଙ୍କୁ ଅଗ୍ନିଙ୍କ ସହିତ ତୁଳନା କରା ଯାଉଥିଲା । ସେ ଥିଲେ ରାଜା ସମେତ ସମସ୍ତଙ୍କର ବନ୍ଦନୀୟ ।

(ଘ) ପୁରୋହିତହୀନ ରାଜ୍ୟ ଦୁଃଖରେ ପଡ଼ୁଥିଲା ।

(ଙ) ବ୍ରାହ୍ମଣଙ୍କର ସାରଥି ହେବା ଘଟଣାରୁ ଜଣା ପଡ଼ୁଛି ଯେ ବର୍ଣ୍ଣର ଭେଦରେ କର୍ମର ବର୍ଣ୍ଣନ ଲାଗି ସର୍ବଦା ଦୃଢ଼ ନୀତି ଅନୁସୃତ ହେଉ ନଥିଲା । ସାରଥି ହେବାଟା କିଛି ନୀଚ କର୍ମ ନଥିଲା । କାରଣ ପରବର୍ତ୍ତୀ କାଳରେ ମହାଭାରତ ଯୁଗରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ରଥରେ ସାରଥି ହୋଇ ଥିବାର ଦୃଷ୍ଟାନ୍ତ ଆମେ ଦେଖିବାକୁ ପାଇ ଥାଉଁ ।

(ଚ) ବ୍ରାହ୍ମଣେତର ବ୍ୟକ୍ତିମାନେ ମଧ୍ୟ ବେଦ-ମନ୍ତ୍ରର ଦ୍ରଷ୍ଟା ହୋଇ ପାରୁଥିଲେ ।

(ଛ) କ୍ଷତ୍ରିୟଙ୍କ ବଳ ଏବଂ ବ୍ରାହ୍ମଣଙ୍କ ଜ୍ଞାନର ସମ୍ମିଶ୍ରଣରେ ହିଁ ରାଜ୍ୟର ସମୃଦ୍ଧି ଆଣି ଯାଇ ପାରୁଥିଲା ।

(ଜ) ଏବେ ଯେମିତି ଆମେ ଡ଼ାଆଣୀ ସ୍ତ୍ରୀ ଥିବା କଥା ବିଶ୍ୱାସ କରୁଛୁ । ସେତେବେଳେ ମଧ୍ୟ ସେହିପରି ଅନ୍ଧବିଶ୍ୱାସ ଆର୍ଯ୍ୟମାନଙ୍କ ମଧ୍ୟରେ ଥିଲା । ସେଭଳି ସ୍ତ୍ରୀକୁ କୁହା ଯାଉଥିଲା 'ପିଶାଚୀ' । ଏତେ ଜ୍ଞାନର ଅଧିକାରୀ ହୋଇ ମଧ୍ୟ ଆର୍ଯ୍ୟମାନେ ଅନ୍ଧବିଶ୍ୱାସର କବଳରୁ ମୁକ୍ତ ହୋଇ ପାରି ନଥିଲେ ।

**ଚ୍ୟବାନ-ସୁକନ୍ୟା ଆଖ୍ୟାନ :**

ଏହି କାହାଣୀଟି ସମ୍ପର୍କରେ ଋଗ୍‌ବେଦର ପ୍ରଥମ ଓ ଦଶମ ମଣ୍ଡଳରେ ଉଭୟନ୍ତ୍ର ଆମେ ସୂଚନା ପାଇଥାଉଁ । ଆହି ମଧ୍ୟ ଶ୍ରୀମଦ୍‌ ଭାଗବତରେ ଏହାକୁ ସାମାନ୍ୟ ପରିବର୍ତ୍ତନ ସହିତ ଦେଖିବାକୁ ମିଳିଥାଏ । (୧୨) ରାଜ୍ୟର ରକ୍ଷା ଲାଗି ରାଜ-ଜେମା ସୁକନ୍ୟା କପରି ଚରମ ତ୍ୟାଗ ସ୍ୱୀକାର କରି ନିଜକୁ ବୃଦ୍ଧ ଚ୍ୟବାନ ଋଷିଙ୍କଠାରେ ସମର୍ପଣ କରିଥିଲେ, ତାହାର ପରାକାଷ୍ଠା ଏହି କାହାଣୀରେ ବର୍ଣ୍ଣିତ । ସଂକ୍ଷେପରେ କଥାବସ୍ତୁଟି ହେଲା :

ମହର୍ଷି ଭୃଗୁଙ୍କର ଆଶ୍ରମ ଅବାବତ ସମୁଦ୍ର (ଆରବ ସାଗର) ଉପକୂଳରେ ଏକ ମନୋରମ ସ୍ଥାନରେ ଥିଲା । ଭୃଗୁଙ୍କ ଅନ୍ତେ ତାଙ୍କ ଉତ୍ତର ପୁରୁଷମାନେ ଯେଉଁ ଅଞ୍ଚଳରେ ରହିଥିଲେ, ତାହାକୁ କୁହା ଯାଉଥିଲା 'ଭୃଗୁ-କଚ୍ଛ' ବା ଭୃଗୁମାନଙ୍କ ବାସସ୍ଥାନ । ତାହାକୁ ଆଧୁନିକ ବ୍ରୋଚ୍‌ (Broach) ସହିତ ଚିହ୍ନିତ କରାଯାଏ । ଏହି ଆଶ୍ରମରେ ସେ ତାଙ୍କ ସ୍ତ୍ରୀ ପୁଲୋମାଙ୍କ ସହିତ ରହୁଥିଲେ । କାଳକ୍ରମେ ପୁଲୋମା ଗର୍ଭବତୀ ହେଲେ । କୌଣସି କାରଣରୁ ଭୃଗୁଙ୍କୁ ଆଶ୍ରମରୁ ବହୁ ଦିନ ପାଇଁ ବାହାରକୁ ଯିବାକୁ ପଡ଼ିଲା । ସେ ପୁଲୋମାଙ୍କୁ ଆଶ୍ରମରେ ଏକାକିନୀ ଛାଡ଼ିଗଲେ ଏବଂ ଗଲାବେଳେ ଆଶ୍ରମର ଯଜ୍ଞାଗ୍ନି 'ବୈତାନ'ଙ୍କୁ ତାଙ୍କ ରକ୍ଷାର ଭାର ଅର୍ପଣ କରି ଗଲେ ।

ପୁଲୋମା ନାମକ ଜଣେ ଅସୁର ଭୃଗୁପତ୍ନୀଙ୍କୁ ଦେଖି ମୋହିତ ହୋଇ ଉଠିଲା ଏବଂ ଆଶ୍ରମରେ ତାଙ୍କୁ ଏକାକିନୀ ଦେଖି ତାଙ୍କ ଉପରେ ବଳାତ୍କାର କଲା । ଋଷି-ପତ୍ନୀ ଅସୁର-କବଳରୁ ନିଜକୁ ରକ୍ଷା କରି ପାରିଲେ ନାହିଁ । ଅଗ୍ନିଦେବ ମଧ୍ୟ ତାଙ୍କୁ ରକ୍ଷା କରିବାରେ ଅସମର୍ଥ ହେଲେ । ଅସୁର ପୁଲୋମାର ବଳାତ୍କାର ଫଳରେ ଋଷି-ପତ୍ନୀଙ୍କର ଗର୍ଭପାତ ହେଲା । ଅଗ୍ନିଙ୍କ ଭଳି ତେଜସ୍ୱୀ ଯେଉଁ ସନ୍ତାନ ଭୂମିଷ୍ଠ ହେଲେ ତାଙ୍କୁ କୁହାଗଲା 'ଚ୍ୟବାନ' (ପୌରାଣିକ ନାମ ଚ୍ୟବନ) । ସେ ଗର୍ଭରୁ ବିଚ୍ୟୁତ ହୋଇଥିଲେ ବୋଲି ତାଙ୍କୁ କୁହାଗଲା 'ଚ୍ୟବାନ' । ତାଙ୍କ ତେଜଃରେ ଅସୁର ପୁଲୋମା ସଙ୍ଗେ ସଙ୍ଗେ ପୋଡ଼ି ପାଉଁଶ ହୋଇଗଲା ।

କିଛି ଦିନ ପରେ ଭୃଗୁ ଋଷି ଆଶ୍ରମକୁ ଫେରି ସବୁ କଥା ଅବଗତ ହେଲେ । ଅଗ୍ନିଦେବ ତାଙ୍କ ପତ୍ନୀଙ୍କୁ ରକ୍ଷା କରି ପାରି ନଥିବାରୁ ସେ ତାଙ୍କୁ ଅଭିଶାପ ଦେଇ କହିଲେ ଯେ ସେ ଏଣିକି ଶବ ଖାଇବେ ଏବଂ ଆଉ ସବୁ ଯାହା ଯାହା ଅଖାଦ୍ୟ ତାହା ଖାଇବେ । (୧୩) ସେହି ଦିନଠାରୁ ଅଗ୍ନିଙ୍କୁ ସେହି ଅଭିଶାପ ଭୋଗ କରିବାକୁ ପଡ଼ିଲା ଏବଂ ଏବେ ଭୋଗ କରିବାକୁ ପଡ଼ୁଛି ମଧ୍ୟ ।

କାଳକ୍ରମେ ଚ୍ୟବାନ ବଡ଼ ହେଲେ ଏବଂ ସାରା ଭାରତରେ ଜଣେ ବିଶିଷ୍ଟ ଋଷି ନାମରେ ପ୍ରସିଦ୍ଧ ହେଲେ । ସେ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ନିରନ୍ତର କଠୋର ତପସ୍ୟାରେ

ରତ ରହିଲେ । ଥରେ ପଶ୍ଚିମ ଆର୍ଯ୍ୟାବର୍ତ୍ତର ରାଜା ଶର୍ଯ୍ୟାତି ମୃଗୟା କରିବାକୁ ଆସି ଚ୍ୟବାନ ଋଷିଙ୍କ ଆଶ୍ରମରେ ପହଞ୍ଚିଲେ । ଅତି ବୃଦ୍ଧ ଓ ତପସ୍ୟାରତ ଋଷି ଚ୍ୟବାନଙ୍କୁ ଦେଖି ରାଜାଙ୍କ ସୈନ୍ୟସାମନ୍ତମାନେ ତାଙ୍କୁ ଯଥୋଚିତ ସମ୍ମାନ ଦେଖାଇଲେ । କିନ୍ତୁ ରାଜାଙ୍କ ଦଳରେ ଥିବା ପିଲମାନେ ଭଲ ମନ୍ଦ ଫଳ କିଛି ବୁଝି ନପାରି ଋଷିଙ୍କ ଉପରକୁ ଟେକା ଫୋପାଡ଼ିଲେ ଏବଂ ତାଙ୍କୁ ନାନା ପ୍ରକାର ଅପମାନିତ କରିବାକୁ ଲାଗିଲେ । ଚ୍ୟବାନ ଋଷିଙ୍କର ଖୁବ୍ ରାଗ ହେଲା । ସେ କିଛି ଗୋଟାଏ ଅଭିଶାପ ଦେଇ ରାଜାଙ୍କର କ୍ଷତି ସାଧନ କରିବାକୁ ଯାଉଥିଲେ । କିନ୍ତୁ ରାଜା ଏ ଖବର ପାଇ ତାଙ୍କୁ କ୍ଷମା ମାଗିଲେ । ଚ୍ୟବାନ ଗୋଟିଏ ସର୍ତ୍ତରେ କ୍ରୋଧ ସମ୍ବରଣ କରିବାକୁ ରାଜି ହେଲେ । ତାହା ହେଉଛି, ରାଜାଙ୍କୁ ତାଙ୍କ କନ୍ୟା ସୁକନ୍ୟାଙ୍କୁ ମୁନିଙ୍କ ହାତରେ ସମର୍ପଣ କରିବାକୁ ପଡ଼ିବ । ରାଜା ଅନନ୍ୟୋପାୟ ହୋଇ ଏଥିରେ ରାଜି ହେଲେ । ସୁକନ୍ୟା ମଧ୍ୟ ରାଜ୍ୟର ହିତ ଦୃଷ୍ଟିରୁ ଏବଂ ପ୍ରଜାମାନଙ୍କର ହିତ ଦୃଷ୍ଟିରୁ ଚ୍ୟବାନଙ୍କ ପତ୍ନୀ ହେଲେ ।

ଥରେ ଦେବବୈଦ୍ୟ ଅଶ୍ୱିନୀକୁମାର ଦ୍ୱୟ (ଏହାଙ୍କୁ ନାସତ୍ୟ ବୋଲି ମଧ୍ୟ କୁହାଯାଏ) ସୁନ୍ଦରୀ ସୁକନ୍ୟାଙ୍କୁ ଦେଖି ତାଙ୍କ ପାତିବ୍ରତ୍ୟ ପରୀକ୍ଷା କରିବାକୁ ଚାହିଁଲେ । ଉଭୟ ଥିଲେ ଖୁବ୍ ସୁନ୍ଦର । ବୃଦ୍ଧ ଚ୍ୟବାନଙ୍କୁ ଛାଡ଼ି ସେ ଦୁହିଁଙ୍କ ମଧ୍ୟରୁ ଜଣଙ୍କୁ ପତି ଭାବରେ ବରଣ କରିବା ପାଇଁ ସେମାନେ ସୁକନ୍ୟାଙ୍କୁ ଅନୁରୋଧ କଲେ । ସୁକନ୍ୟାଙ୍କ ପତିଭକ୍ତି ଥିଲା ଅଟଳ । ସେ ଏ ପ୍ରସ୍ତାବରେ ରାଜି ନହୋଇ ତାଙ୍କ ଆଗରେ ପତିଙ୍କ ନିନ୍ଦା କରିଥିବାରୁ ଅଶ୍ୱିନୀକୁମାରଙ୍କୁ ତିରସ୍କାର କଲେ । ଦେବତା ହୋଇ ସେମାନେ ଏଭଳି ପାପ-କଥା କପରି ମୁଣ୍ଡରେ ଧରି ପାରିଲେ ବୋଲି ସେ ପ୍ରତିପ୍ରଶ୍ନ କଲେ । ଏଥିରେ ଅଶ୍ୱିନୀକୁମାର ଖୁବ୍ ଖୁସି ହୋଇଗଲେ ଏବଂ ଚ୍ୟବାନ ଋଷିଙ୍କୁ ସାଥିରେ ଧରି ପାଖରେ ଥିବା ଗୋଟିଏ ପଦ୍ମ ପୋଖରୀରେ ବୁଡ଼ି କରି ଗାଧୋଇଲେ । ପାଣିରୁ ଉପରକୁ ଉଠିଲା ବେଳକୁ ସୁକନ୍ୟା ଦେଖି ପାରିଲେ ଯେ ତିନି ଜଣ ଅଶ୍ୱିନୀକୁମାର ଠିଆ ହୋଇଛନ୍ତି । ଏହା ମଧ୍ୟ ତାଙ୍କ ପାଇଁକି ଥିଲା ଆଉ ଏକ ପରୀକ୍ଷା । ସେହି ତିନି ଜଣଙ୍କ ମଧ୍ୟରୁ ତାଙ୍କ ପତି କିଏ, ତାଙ୍କୁ ନିର୍ବାଚନ କରିବାକୁ ହେବ । ସେ ମଧ୍ୟ ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣା ହେଲେ ଏବଂ ଏହା ଫଳରେ ତାଙ୍କ ପତିଙ୍କୁ ଏକ ସୁନ୍ଦର ଯୁବକ ରୂପରେ ଫେରି ପାଇଲେ ।

ରାଜା ଶର୍ଯ୍ୟାତିଙ୍କ କାନରେ ଏ କଥା ପଡ଼ିବାରୁ ସେ ଭାରି ଖୁସି ହେଲେ । ସେ ଏକ 'ସୋମ-ଯାଗ'ର ଆୟୋଜନ କଲେ । ଏହି ଯାଗରେ ପୌରୋହିତ୍ୟ କଲେ ଋଷି ଚ୍ୟବାନ । ଚ୍ୟବାନ ଥିଲେ ଅଶ୍ୱିନୀକୁମାରଙ୍କ ପ୍ରତି ଗଭୀର ଭାବରେ କୃତଜ୍ଞ । ସେ ତେଣୁ ଅଶ୍ୱିନୀକୁମାରଙ୍କୁ ସର୍ବ ପ୍ରଥମେ ସୋମ-ରସ ଅର୍ପଣ କରିବାକୁ ଚାହିଁଲେ । ଦେବରାଜ ଇନ୍ଦ୍ରଙ୍କର ଏଥିରେ ରାଗ ହେଲା । ସେ ଆସି ଏଥିରେ ବାଧା ଦେଲେ ଏବଂ କହିଲେ

ଯେ ଅଶ୍ୱିନୀକୁମାର ଦ୍ୱୟ ହେଉଛନ୍ତି ବୈଦ୍ୟ ଲୋକ । ସେ ଦୁହିଁଙ୍କ ଠାରେ ସେଭଳି କିଛି ଦେବତ୍ୱ ନାହିଁ । ଅତଏବ, ସେ ଦୁହେଁ ସୋମ-ରସ ପାଇବାର ଅଧିକାରୀ ନୁହନ୍ତି । ଚ୍ୟବାନ ବହୁ ସ୍ତବରେ ଅଶ୍ୱିନୀକୁମାରଙ୍କ ଗୁଣ ବଖାଣିଲେ ଏବଂ ପୂର୍ବେ ସେ ଦୁହେଁ କ'ଣ କ'ଣ ଅଲୌକିକ କାର୍ଯ୍ୟ କରିଛନ୍ତି, ତାହାର ଉଦାହରଣ ଦେଲେ । (୧୪) ଏହାପରି ସ୍ତବରେ ଅଶ୍ୱିନୀକୁମାରଙ୍କର ବହୁ ଗୁଣ ଗାନ ପରେ ଚ୍ୟବାନ ତାଙ୍କୁ ସୋମରସ ଅର୍ପଣ କରିବାକୁ ପ୍ରସ୍ତୁତ ହେଲେ । ଇନ୍ଦ୍ର ଏଥିରେ ବାଧା ଦେବାକୁ ଯାଇ ବଜ୍ର-ପ୍ରହାର କରିବାକୁ ବସିଲେ । କିନ୍ତୁ ତାଙ୍କର ବାହୁ-ସ୍ତମ୍ଭନ ହୋଇଗଲା; ସେ ଏହା କରି ପାରିଲେ ନାହିଁ । ଚ୍ୟବାନଙ୍କ ଆଧ୍ୟାତ୍ମିକ ଶକ୍ତି ନିକଟରେ ଇନ୍ଦ୍ର ପରାଭବ ମାନିଲେ । ଅଶ୍ୱିନୀକୁମାର ସୋମ-ରସ ଗ୍ରହଣ କରି ଖୁବ୍ ପ୍ରସନ୍ନ ହେଲେ । ଚ୍ୟବାନଙ୍କ ଯୋଗରୁ ହିଁ ଅଶ୍ୱିନୀକୁମାରଙ୍କ ଗୌରବ ରକ୍ଷା କରି ଯାଇ ପାରିଲା ।

ଏହି ଉପାଖ୍ୟାନଟି ଅନୁଧ୍ୟାନ କଲେ ଆମେ ନିମ୍ନଲିଖିତ ନିଷ୍କର୍ଷରେ ପହଞ୍ଚି ପାରିବା :

(କ) ମୁନି ଋଷିମାନଙ୍କର ତପସ୍ୟା ବାଧାବିଘ୍ନହୀନ ନଥିଲା । ବେଳେ ବେଳେ ଆର୍ଯ୍ୟନୀତି ଓ ଆର୍ଯ୍ୟ ମୂଲ୍ୟବୋଧଗୁଡ଼ିକରେ ବିଶ୍ୱାସ କରୁ ନଥିବା ଅସୁର-ମାନେ ସେମାନଙ୍କୁ ଓ ସେମାନଙ୍କ ପରିବାରବର୍ଗଙ୍କୁ ନାନା ପ୍ରକାର ଯାତନା ଦେଉଥିଲେ ।

(ଖ) ଆର୍ଯ୍ୟମାନଙ୍କ ମଧ୍ୟରୁ 'ଭୃଗୁ' ନାମକ ଗୋଟିଏ ଗୋଷ୍ଠୀ ସପ୍ତସିନ୍ଧୁ ଅଞ୍ଚଳରୁ ଆସି ଭାରତର ପଶ୍ଚିମ ଉପକୂଳରେ ବସତି ସ୍ଥାପନ କରିଥିଲେ ।

(ଗ) ପ୍ରାଥମିକ ଅବସ୍ଥାରେ ବୈଦିକ ଆର୍ଯ୍ୟମାନେ ମୃତ ବ୍ୟକ୍ତିର ଶବକୁ କବର ଦେଉଥିଲେ; କିନ୍ତୁ ପରେ ଶବ-ସଂସ୍କାର ପଦ୍ଧତି ଓ କବର ଦେବା ପଦ୍ଧତି ଉଭୟ ପ୍ରଚଳିତ ହୋଇଥିଲା । ବାସ୍ତବିକ, ଯଜୁର୍ବେଦ ବେଳକୁ କେବଳ ଶବ-ସଂସ୍କାର ପଦ୍ଧତି ପ୍ରଚଳିତ ଥିଲା ବୋଲି ବିଶ୍ୱାସ କରାଯାଏ । ଶୁକ୍ଳ ଯଜୁର୍ବେଦରେ 'ଭସ୍ମାନ୍ତଂ ଶରୀରଂ' ବା 'ଶରୀରର ଅବଶେଷ ପାଉଁଶରେ' କହିବାର ତାତ୍ପର୍ଯ୍ୟ ଅଛି ଏଇଠି ।

(ଘ) ପାତିବ୍ରତ୍ୟ ଆର୍ଯ୍ୟ ସ୍ତ୍ରୀମାନଙ୍କର ଏକ ମହତ୍ତ୍ୱପୂର୍ଣ୍ଣ ଗୁଣ ଥିଲା ।

(ଙ) 'ଲୁହାର ଗୋଡ଼' ଲଗାଇବା, ଚକ୍ଷୁ-କ୍ଷେପଣ କରିବା ଆଦିରୁ ଜଣା ପଡ଼ୁଛି ଯେ ସେତେବେଳେ ସୂକ୍ଷ୍ମ ଶଲ୍ୟ- ଚିକିତ୍ସା (plastic surgery) ଆର୍ଯ୍ୟ-ମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା । ଏ ବିଷୟରେ ବିଶାରଦ ଜ୍ଞାନ ଥିଲା 'ନାସତ୍ୟ' ବା ଅଶ୍ୱିନୀକୁମାରଙ୍କର ।

(ଚ) ଆର୍ଯ୍ୟମାନେ ପୋତର ବ୍ୟବହାର ଜାଣିଥିଲେ ଏବଂ ସମୁଦ୍ର ସହିତ ପରିଚିତ ଥିଲେ । ସେମାନେ ଦେଶରୁ ଦେଶାନ୍ତର ଯାଇ ବାଣିଜ୍ୟ-ବ୍ୟବସାୟ କରୁଥିଲେ ବୋଲି ବିଶ୍ବାସ କରାଯାଏ ।

(ଛ) ଋଷିଙ୍କର ପୋତରେ ଯିବା ଘଟଣାରୁ ଜଣା ପଡୁଛି ଯେ ଆର୍ଯ୍ୟମାନେ ଦୂର ଦେଶକୁ ଯାଇ ସେଠାରେ ସେମାନଙ୍କ ସଂସ୍କୃତିର ପ୍ରଚାର ଓ ପ୍ରସାର ପାଇଁ ମଧ୍ୟ ଚେଷ୍ଟା କରୁଥିଲେ ।

(ଜ) ବୈଦିକ ଦେବ-ମଣ୍ଡଳକୁ ଇନ୍ଦ୍ର ଆସିଥିଲେ ଆଗ ଏବଂ 'ନାସତ୍ୟ' ବା ଅଶ୍ବିନୀକୁମାର ଆସିଲେ ପଛରେ । ନାସତ୍ୟଙ୍କୁ ଦେବ-ମଣ୍ଡଳକୁ ଆଣିବା ସମୟରେ ଉଭୟ ଦେବତାଙ୍କ ଅନୁଗାମୀମାନଙ୍କ ମଧ୍ୟରେ ସଂଘର୍ଷ ହୋଇଥିଲା । ଏହି ସଂଘର୍ଷରେ ନାସତ୍ୟପୂଜକ ଗୋଷ୍ଠୀମାନେ ବିଜୟୀ ହୋଇଥିଲେ ।

(ଝ) ଋଷିମାନଙ୍କ ଆଧ୍ୟାତ୍ମିକ ବଳ ନିକଟରେ ଦେବତାମାନେ ଯେ ପରାଭୂତ ହୁଅନ୍ତି, ଏ ବିଶ୍ବାସ ବୈଦିକ ଆର୍ଯ୍ୟମାନଙ୍କର ଥିଲା ।

(ଞ) ରାଜ୍ୟ ଓ ପ୍ରଜାମାନଙ୍କର ହିତ-ସାଧନ କରିବା ଥିଲା ରାଜାଙ୍କର ପରମ ଧର୍ମ । ଏହି କର୍ତ୍ତବ୍ୟ-ପାଳନରେ ତାଙ୍କ ପରିବାରର ସଭ୍ୟମାନେ ମଧ୍ୟ ତାଙ୍କୁ ସାହାଯ୍ୟ କରୁଥିଲେ । ସୁକନ୍ୟାଙ୍କ ସ୍ବାର୍ଥତ୍ୟାଗ ଓ ବୃଦ୍ଧ ଚ୍ୟବନଙ୍କ ସହିତ ବିବାହ ଏହାର ନିଦର୍ଶନ ।

(ଟ) ସ୍ବାମୀଙ୍କର ଯୁଦ୍ଧ କ୍ଷେତ୍ରରେ ମୃତ୍ୟୁ ପରେ ରାଣୀ ବିଶ୍ପଳା ଅସୁରମାନଙ୍କ ସହିତ ହେଉଥିବା ଯୁଦ୍ଧକୁ ଚଳାଇ ରଖିଥିଲେ । ତାଙ୍କ କଟା ଗୋଡ଼ରେ ଲୁହାର ଗୋଡଟିଏ ଲଗାଇ ସେ ଲଢ଼ାଇ କରି କରି ଚାଲିଥିଲେ । ଏଥିରୁ ଜଣା ପଡୁଛି ଯେ କ୍ଷତ୍ରିୟ-ରମଣୀମାନଙ୍କୁ ଶସ୍ତ୍ରବିଦ୍ୟା ଶିକ୍ଷା ଦିଆ ଯାଉଥିଲା ।

(ଠ) ଆର୍ଯ୍ୟମାନଙ୍କର ଦେଶ କ୍ଷୁଦ୍ର କ୍ଷୁଦ୍ର-ରାଜ୍ୟରେ ବିଭକ୍ତ ହୋଇଥିଲା ଏବଂ ବଳବାନ୍ ରାଜା ଦିଗ୍‌ବିଜୟ କରି ସେଗୁଡିକୁ ଜିଣି ନିଜ ରାଜ୍ୟ ସହିତ ସାମିଲ କରି ଦେବା ପାଇଁ ସଦା ଚେଷ୍ଟିତ ଥିଲେ ।

(ଡ) ଆର୍ଯ୍ୟମାନଙ୍କର ଅସୁରମାନଙ୍କ ସହିତ ସର୍ବଦା ଯୁଦ୍ଧ ବିଗ୍ରହ ଲାଗି ରହିଥିଲା ।

**ଶ୍ୟାବାଶ୍ବ-ମନୋରମା ଆଖ୍ୟାନ :**

ଏହି ଆଖ୍ୟାନଟି ଋଗ୍‌ବେଦରେ ଅଛି । ଶତପଥ ବ୍ରାହ୍ମଣ ଓ ବୃହଦ୍ଦେବତାରେ ମଧ୍ୟ ଏହା ବିଷୟରେ ସୂଚନା ଦିଆ ଯାଇଛି । ସାଧନା ବଳରେ କବିଭି ଜଣେ ପ୍ରେମର

ପାତ୍ର ହୋଇ ପାରିବେ, ତାହାର ପ୍ରମାଣ ଏଥିରୁ ମିଳିଥାଏ । (୧୫) ଗଳ୍ପଟିର କଥାବସ୍ତୁ ହେଲା :

ରଥବୀତି ବୋଲି ଜଣେ ବଡ଼ ଋଷିପ୍ରତିମ ରାଜା ଥିଲେ । ତାଙ୍କୁ କୁହା ଯାଉଥିଲା ରାଜର୍ଷି । ସେ ଥରେ ଗୋଟିଏ ବଡ଼ ଯଜ୍ଞର ଆୟୋଜନ କଲେ । ଏହି ଯଜ୍ଞରେ ପୌରୋହିତ୍ୟ କରିବା ପାଇଁ ଅତ୍ରିଙ୍କ ପୁତ୍ର ଋଷି ଅର୍ଚ୍ଚନାନା ଆସିଥିଲେ । ସେ ତାଙ୍କ ପୁତ୍ର ଶ୍ୟାବାଶ୍ୱଙ୍କୁ ସାଥିରେ ଧରି ଆସିଥିଲେ । ଏହି ଅବସରରେ ସେ ରାଜକୁମାରୀ ମନୋରମାଙ୍କୁ ଦେଖିବାକୁ ପାଇଲେ । ତାଙ୍କୁ ଦେଖିବା ମାତ୍ରେ ତାଙ୍କ ହୃଦୟ ସ୍ନେହରେ ବିଗଳିତ ହେବାକୁ ଲାଗିଲା ଏବଂ ସେ ମନୋରମାଙ୍କୁ ବୋହୂ କରି ଆଣିବାକୁ ଚାହିଁଲେ । ସେ ଏହି ପ୍ରସ୍ତାବଟି ରଥବୀତଙ୍କ ଆଗରେ ଥୋଇଲେ । ଶ୍ୟାବାଶ୍ୱ ଥିଲେ ରୂପବାନ୍ ଓ ବିଦ୍ୱାନ୍ ଯୁବକ । ଏଣୁ ରାଜାଙ୍କର ଏହି ପ୍ରସ୍ତାବରେ ଅସମ୍ମତ ହେବାର କିଛି କାରଣ ନଥିଲା । ସେ କିନ୍ତୁ ପୂର୍ଣ୍ଣ ଜବାବ ଦେବା ପୂର୍ବରୁ ରାଣୀଙ୍କ ସହିତ ପରାମର୍ଶ କରିବାକୁ ଚାହିଁଲେ ।

ସେ ଆସି ରାଣୀଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା କଲେ । ରାଣୀ ଥିଲେ ସ୍ୱୟଂ ଜଣେ ବିଦୂଷୀ । ତାଙ୍କ ବାପା ଓ ସ୍ୱାମୀ ଉଭୟ ଥିଲେ ରାଜର୍ଷି । ତେଣୁ ବିଦ୍ୟା ଓ ଜ୍ଞାନର ମହତ୍ତ୍ୱ ତାଙ୍କୁ ଅଜଣା ନଥିଲା । ତାଙ୍କର ଇଚ୍ଛା ଥିଲା, ଆଦରିଣୀ ଝିଅଙ୍କୁ କୌଣସି ଜଣେ ଋଷିଙ୍କ ହାତରେ ଟେକି ଦେବା । ସେ ପର୍ଯ୍ୟନ୍ତ ଶ୍ୟାବାଶ୍ୱ ଜଣେ ମନ୍ତ୍ରଦ୍ରଷ୍ଟା ଋଷି ହୋଇ ନଥିଲେ । ସେ ଥିଲେ ମନ୍ତ୍ରବେତ୍ତା: କିନ୍ତୁ ମନ୍ତ୍ରଦ୍ରଷ୍ଟା ନୁହନ୍ତି । ମନ୍ତ୍ରବେତ୍ତା ଓ ମନ୍ତ୍ରଦ୍ରଷ୍ଟା ମଧ୍ୟରେ ଥିଲା ଯଥେଷ୍ଟ ତାରତମ୍ୟ । ଶ୍ୟାବାଶ୍ୱ ଏ ପର୍ଯ୍ୟନ୍ତ ଋଷିତ୍ୱର ମର୍ଯ୍ୟାଦା ପାଇ ନଥିବାରୁ, ତାଙ୍କୁ ଜ୍ୱାଇଁ ରୂପରେ ବରଣ କରିବାର ପ୍ରଶ୍ନ ଉଠୁନାହିଁ ବୋଲି ରାଣୀ ରାଜାଙ୍କୁ କହିଲେ । ରାଜାଙ୍କ ମନକୁ ଏହା ପାଇଲା । ସେ ଆସି ସଙ୍ଗେ ସଙ୍ଗେ ଆତ୍ରେୟ ଅର୍ଚ୍ଚନାନାଙ୍କୁ ଏହା ଜଣାଇଲେ । ଅର୍ଚ୍ଚନାନା ନିରାଶ ହେଲେ ; ଶ୍ୟାବାଶ୍ୱ ମଧ୍ୟ ସମଧିକ ନିରାଶ ଓ ଦୁଃଖିତ ହେଲେ ।

ଶ୍ୟାବାଶ୍ୱ କିନ୍ତୁ ସାମୟିକ ନୈରାଶ୍ୟରୁ ଉତ୍ତୀର୍ଣ୍ଣ ହୋଇଗଲେ । ତାଙ୍କର ସ୍ୱୀୟ ଉଦ୍ୟମ ଉପରେ ଖୁବ୍ ବିଶ୍ୱାସ ଥିଲା । ତେଣୁ ସେ ଉଦ୍ୟମ କରି ଋଷିତ୍ୱ ପାଇବା ପାଇଁ ଲାଗି ପଡ଼ିଲେ । ସେ କଠୋର ତପଶ୍ଚର୍ଯ୍ୟାରେ ମଗ୍ନ ରହିଲେ । ସେ ମରୁଦ୍‌ଗଣଙ୍କର ଆଶୀର୍ବାଦରେ ତପସ୍ୟାରେ ସିଦ୍ଧି ପାଇଲେ । ତାଙ୍କ ମୁଖମଣ୍ଡଳ ଦିବ୍ୟ ବ୍ରହ୍ମତେଜରେ ଉଦ୍ଭାସିତ ହୋଇ ଉଠିଲା । ସିଦ୍ଧି ପାଇବା ପରେ ସେ ବାପାଙ୍କ ଆଶ୍ରମକୁ ଫେରିବାକୁ ଲାଗିଲେ । ବାଟରେ ଆସିଲାବେଳେ ତାଙ୍କର ମହାରାଜା ତରନ୍ତ ଓ ତାଙ୍କ ରାଣୀ ଶଶୀୟସୀଙ୍କ ସହିତ ଭେଟ ହୋଇଥିଲା । ରାଜାରାଣୀ ଦୁହେଁ ଜ୍ଞାନୀ ଲୋକଙ୍କୁ ଆଦର ସମ୍ମାନ କରୁଥିଲେ । ଶ୍ୟାବାଶ୍ୱଙ୍କ ବ୍ରହ୍ମତେଜରେ ଅଭିଭୂତ ହୋଇ ସେ ଦୁହେଁ ତାଙ୍କ ପୂଜା କଲେ ; ଆଦର

ଅଭ୍ୟର୍ଥନା କଲେ । ତତ୍‌ପରେ ଋଷି ଶ୍ୟାବାଶ୍ୱଙ୍କୁ ନିଜ ସ୍ତ୍ରୀ ରାଜା ପୁରୁମୀଢ଼ଙ୍କ ପାଖକୁ ପଠାଇଲେ । ପୁରୁମୀଢ଼ ମଧ୍ୟ ତାଙ୍କୁ ଯଥୋଚିତ ଆଦର ଅଭ୍ୟର୍ଥନା କଲେ ଏବଂ ସମ୍ମାନ ଦେଖାଇଲେ । ତା'ପରେ ଶ୍ୟାବାଶ୍ୱ ଖୁସି ମନରେ ବାପାଙ୍କ ଆଶ୍ରମକୁ ଫେରି ଆସିଲେ ।

ତାଙ୍କୁ ଯେ ଋଷିତ୍ୱ ମିଳି ଯାଇଛି, ଏ ବିଶ୍ୱାସ ଶ୍ୟାବାଶ୍ୱଙ୍କର ଥିଲା । ତେଣୁ ଆଉ ଏଣିକି ମନୋରମାଙ୍କୁ ସ୍ତ୍ରୀ ରୂପରେ ପାଇବା କଷ୍ଟ ହେବ ନାହିଁ ବୋଲି ତାଙ୍କର ଦୃଢ଼ ଧାରଣା ହେଲା । ସେ ରାଜା ରଥବୀତିଙ୍କ ପାଖକୁ ନିଜେ ଯିବାକୁ ଚାହିଁଲେ । କିନ୍ତୁ ସେ ପରକ୍ଷଣରେ ଭାବିଲେ, କେମିତି ନିଜର ସିଦ୍ଧି କଥାଟା ଯାଇ ରାଜାଙ୍କ ଆଗରେ କହିବେ ? ନିଜ ବିଷୟରେ ପ୍ରଶଂସା କରି କେଉଁଠି କହିବା ଉଚିତ ନୁହେଁ । ସେ ତେଣୁ ରାତ୍ରି ଦେବୀଙ୍କୁ ଦୂତ କରି ରାଜାଙ୍କ ପାଖକୁ ପଠାଇଲେ । ରାତ୍ରିଦେବୀଙ୍କ ଠାରୁ ରାଜା ଓ ରାଣୀ ସବୁ କଥା ଶୁଣିବା ପରେ ଶ୍ୟାବାଶ୍ୱଙ୍କୁ ଆଦର ଅଭ୍ୟର୍ଥନା କରି ତାଙ୍କ ହାତରେ ନିଜ ଝିଅ ମନୋରମାଙ୍କୁ ଟେକି ଦେଲେ । ଏତେ ଦିନକେ ଶ୍ୟାବାଶ୍ୱଙ୍କ ପ୍ରେମର ସାଧନା ସଫଳ ହେଲା । କାଳକ୍ରମେ ରାଜା ରଥବୀତି ବାନପ୍ରସ୍ଥୀ ଓ ପରେ ସନ୍ନ୍ୟାସୀ ହୋଇ ଗୋମତୀ ନଦୀ ତୀରରେ ଆଶ୍ରମ ସ୍ଥାପନ କରି ତାଙ୍କର ଶେଷ ଜୀବନ କଟାଇଲେ । (୧୭)

ଏହି ଆଖ୍ୟାନଟିକୁ ଅନୁଧ୍ୟାନ କରିବା ଫଳରେ ଆମକୁ ନିମ୍ନଲିଖିତ ନିଷ୍କର୍ଷମାନ ମିଳି ପାରିବ :

(କ) ସେତେବେଳେ ବେଦମନ୍ତ୍ରର ଦ୍ରଷ୍ଟାଙ୍କୁ ହିଁ କେବଳ ଋଷି ବୋଲି କୁହା ଯାଉଥିଲା । ମନ୍ତ୍ରବେତ୍ତା ଓ ମନ୍ତ୍ରଦ୍ରଷ୍ଟା ମଧ୍ୟରେ ପାର୍ଥକ୍ୟ ଥିଲା । ଋଷିତ୍ୱ ଉତ୍ତରାଧିକାର ସୂତ୍ରରେ ମିଳି ପାରୁନଥିଲା । ଏଥିପାଇଁ ସମ୍ପୃକ୍ତ ବ୍ୟକ୍ତିଙ୍କୁ ସାଧନା କରିବାକୁ ପଡ଼ୁଥିଲା; ଘୋର ତପସ୍ୟା କରିବାକୁ ପଡ଼ୁଥିଲା ।

(ଖ) ରାଜା ଋଷି ଭଳି ଆଚରଣ କରି ମଧ୍ୟ ରାଜା ହୋଇ ରହି ପାରୁଥିଲେ । ତାଙ୍କୁ କୁହା ଯାଉଥିଲା ରାଜର୍ଷି । ରାଜା ରଥବୀତିଙ୍କ ଭଳି ଉପନିଷଦ ଯୁଗରେ ଆମେ ଆଉ କେତେ ଜଣ ରାଜର୍ଷିଙ୍କ ସମ୍ପର୍କରେ ଆସିଥାଉଁ । ସେମାନେ ହେଲେ ପ୍ରବାହଣ, ଜନକ ଇତ୍ୟାଦି ।

(ଗ) ଋଷିତ୍ୱ ଲାଭ କରିଥିବା ବ୍ୟକ୍ତିଙ୍କୁ ସର୍ବସାଧାରଣମାନଙ୍କଠାରୁ ଓ ରାଜ-ଦରବାରରେ ଖୁବ୍ ମାନସମ୍ମାନ ମିଳୁଥିଲା ।

(ଘ) ବ୍ରାହ୍ମଣ କ୍ଷତ୍ରିୟ-କୁଳରୁ କନ୍ୟା ଗ୍ରହଣ କରି ପାରୁଥିଲା । ନୀଚ କୁଳରୁ କନ୍ୟା

ଗ୍ରହଣ କଲେ ସେ ପ୍ରକାର ବିବାହକୁ ବୁଝା ଯାଉଥିଲା 'ଅନୁଲୋମ ବିବାହ ।'

(ଡ) ସେତେବେଳେ ସ୍ତ୍ରୀ ଶିକ୍ଷା ପ୍ରତି ଖୁବ୍ ପ୍ରାଧାନ୍ୟ ଦିଆ ଯାଉଥିଲା ।

**ସୌଭରି ଆଖ୍ୟାନ :**

ଏହି ଆଖ୍ୟାନଟି ବେଦ ଓ ପୁରାଣ ଉଭୟରେ ବର୍ଣ୍ଣିତ । ବୃହଦ୍ଦେବତାରେ ମଧ୍ୟ ଏ ସମ୍ପର୍କରେ ସୂଚନା ଦିଆ ଯାଇଛି । (୧୭) ଶ୍ରୀମଦ୍ଭାଗବତର ବର୍ଣ୍ଣନା ଅନୁସାରେ ସୌଭରି ଋଷିଙ୍କର ଆଶ୍ରମ ଯମୁନା ନଦୀ କୂଳରେ ଥିଲା । ତାଙ୍କ ଅଭିଶାପ ଫଳରେ ଗରୁଡ଼ ଯମୁନା-ନଦୀକୁ ଆସି ପାରୁ ନଥିଲା ଏବଂ ସେଥିପାଇଁ କାଳୀୟ ନାଗ ସେଠାରେ ରହି ବହୁ ଉପଦ୍ରବ କରି ପାରୁଥିଲା । ସୌଭରି ଥିଲେ ରାଜା ତ୍ରସଦସ୍ୟୁଙ୍କର ସମସାମୟିକ, ଯାହାଙ୍କ ରାଜଧାନୀ ଥିଲା 'ସୁବାସ୍ତୁ' ନଦୀ (ଆଧୁନିକ ଆଫଗାନିସ୍ଥାନର ସ୍ୱାଟ୍ ନଦୀ) ତୀରରେ ଅବସ୍ଥିତ । ମନୁଷ୍ୟଙ୍କୁ କିପରି ଭାବରେ କାମନା-ବାସନାର ମୋହ ସବୁବେଳେ ଟାଣି ରଖିଥାଏ ଏବଂ କିପରି ତପୋନିଷ୍ଠ ମୁନିଜନ ମଧ୍ୟ ଏହାର କବଳରୁ ରକ୍ଷା ପାଇ ପାରନ୍ତି ନାହିଁ, ସେ କଥା ଅତି ରୋଚକ ଭାବରେ ଏଥିରେ ବର୍ଣ୍ଣିତ । ପରିଶେଷରେ ଏହି କାମନାବାସନାଜନିତ 'ପ୍ରେୟଃ'କୁ ଛାଡ଼ି 'ଶ୍ରେୟଃ' ପଛରେ ଗଲେ ମନୁଷ୍ୟ କିପରି ଅନନ୍ତ ସୁଖର ଅଧିକାରୀ ହୋଇ ପାରିଥାଏ, ତାହାର ସୂଚନା ମଧ୍ୟ ଏଥିରେ ଦିଆ ଯାଇଛି । ଆଖ୍ୟାନଟିର କଥାବସ୍ତୁ ସଂକ୍ଷେପରେ ନିମ୍ନମତେ ବର୍ଣ୍ଣନା କରାଯାଉଛି :

ମହର୍ଷି ସୌଭରି ହେଉଛନ୍ତି କଣ୍ୱବଂଶଜ । ପିଲା ଦିନୁ ତାଙ୍କର ସଂସାର ପ୍ରତି ବୈରାଗ୍ୟ ଥିଲା ଏବଂ ସେ ସର୍ବଦା 'ବ୍ରହ୍ମ' ବିଷୟ ଚିନ୍ତନରେ ମଗ୍ନ ରହୁଥିଲେ । ସଂସାରର କୌଣସି କାମନା ବାସନା ତାଙ୍କୁ ଆକୃଷ୍ଟ କରି ପାରୁନଥିଲା । ବାପା ମାଆ ତାଙ୍କୁ ଗୃହସ୍ଥ ଜୀବନର ମାହାତ୍ମ୍ୟ ବୁଝାଇ ବିବାହ କରିବା ପାଇଁ ପରାମର୍ଶ ଦେଲେ । ସେ କିନ୍ତୁ ସାଂସାରିକ କୌଣସି ବନ୍ଧନରେ ବାନ୍ଧି ହୋଇ ରହିବେ ନାହିଁ ବୋଲି କହି ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ । ସେହିଦିନଠାରୁ ସେ ଆହୁରି କଠୋରତର ତପସ୍ୟାରେ ମଗ୍ନ ରହିଲେ । ତାଙ୍କୁ ଋଷିତ୍ୱ ମିଳିଲା ; ସିଦ୍ଧି ମିଳିଲା । ସେ କ୍ରମେ ବୁଢା ହୋଇଗଲେ ।

ଦିନକର କଥା । ସେ ଯମୁନା ନଦୀ ତୀରରେ ବସିଥିଲା ବେଳେ ମତ୍ସ୍ୟ-ଦମ୍ପତିଙ୍କର ମଧୁର ମିଳନ ଦୃଶ୍ୟ ଦେଖିବାକୁ ପାଇଲେ । ଏଠାରେ 'ମତ୍ସ୍ୟ' ଶବ୍ଦକୁ ମାଛ ଅର୍ଥରେ ନେବାକୁ ହେବ ନାହିଁ । 'ମତ୍ସ୍ୟ' ହେଉଛି ଗୋଟିଏ ଗୋଷ୍ଠୀର ନାମ । ଏମାନେ ପ୍ରବଳ ପରାକ୍ରମୀ ଓ ଧନୀ ଥିଲେ । ଋଗ୍ବେଦରେ (୭।୧୮।୬) ଏମାନେ 'ଭୃଗୁବଂଶ'ମାନଙ୍କର ଏବଂ ରାଜା ସୁଦାସଙ୍କର ବିରୋଧୀ ଥିଲେ ବୋଲି ବୁଝା ଯାଇଛି । ବହୁ କାଳ ପର୍ଯ୍ୟନ୍ତ ଏମାନଙ୍କର ପ୍ରାଧାନ୍ୟ ଥିଲା । ଏପରିକି ବୁଦ୍ଧଙ୍କ ସମୟରେ (ଖ୍ରୀ. ପୂ. ଷଷ୍ଠ ଶତାବ୍ଦୀ) ଆମେ 'ମତ୍ସ୍ୟ'

ମହାଜନପଦରେ ନାମ ଦେଖିବାକୁ ପାଉଥାଉଁ । ଏହି ମତ୍ସ୍ୟ ଗୋଷ୍ଠୀସ୍ଥ ଜଣେ ବ୍ରାହ୍ମଣ ବ୍ୟକ୍ତିଙ୍କର ତାଙ୍କ ସ୍ତ୍ରୀମାନଙ୍କ ସହିତ ଯମୁନା ନଦୀରେ ଜଳକେଳିର ଦୃଶ୍ୟ ଋଷି ସୌଭରି ଦେଖିବାକୁ ପାଇଥିଲେ ବୋଲି ଆମକୁ ଅର୍ଥ କରିବାକୁ ହେବ । ହଠାତ୍ ତାଙ୍କ ମନ ଚହଲି ଗଲା; ପ୍ରାଣ ଦାମ୍ପତ୍ୟ-ସୁଖ ଲାଗି ବ୍ୟାକୁଳ ହୋଇ ଉଠିଲା । ସେ ବିବାହ କରି ଘର-ସଂସାରରେ ମାତି ରହିବାକୁ ଚାହିଁଲେ । ସେ ନିଜ ଲାଗି ଏକ ସୁଯୋଗ୍ୟା କନ୍ୟାର ଅନୁସନ୍ଧାନରେ ବାହାରିଲେ । ସେତେବେଳେ ପୁରୁମାନଙ୍କର ରାଜା 'ତ୍ରସଦସ୍ୟୁ' ଥିଲେ ଖୁବ୍ ପ୍ରତାପୀ । ବହୁବାର 'ଦସ୍ୟୁ'ମାନଙ୍କ ସହିତ ଯୁଦ୍ଧ କରି ସେ ଆର୍ଯ୍ୟମାନଙ୍କୁ ଏବଂ ସେମାନଙ୍କ ସଂସ୍କୃତିକୁ ରକ୍ଷା କରୁଥିଲେ । ଦସ୍ୟୁମାନେ ତାଙ୍କ ନାଁ ଶୁଣିବା ମାତ୍ରେ ଥରହର ହେଉଥିଲେ । ସେଥିପାଇଁ ତାଙ୍କ ନାଁ ଥିଲା ତ୍ରସଦସ୍ୟୁ । ତାଙ୍କର ଝିଅମାନଙ୍କ ସଂଖ୍ୟା ଥିଲା ପଚାଶ । ସମସ୍ତେ ଥିଲେ ସୁନ୍ଦରୀ । ସେମାନଙ୍କ ମଧ୍ୟରୁ ଜଣଙ୍କୁ ବାହା ହେବା ପାଇଁ ସୌଭରି ଠିକ୍ କଲେ ଏବଂ ଯଥାସମୟରେ ତାଙ୍କ ପାଖକୁ ଯାଇ କନ୍ୟାଦାନ ପାଇଁ ତାଙ୍କୁ ଅନୁରୋଧ କଲେ ।

ତ୍ରସଦସ୍ୟୁ ଏହା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ଏଭଳି ବୃଦ୍ଧ ବୟସରେ ସୌଭରିଙ୍କର ବିବାହ କରିବାକୁ ମନ ହେଉଥିବାର ଜାଣି ସେ ମନେ ମନେ ହସିଲେ । ଏଭଳି ବୁଢା ଲୋକ ହାତରେ ନିଜ ଝିଅକୁ ଟେକି ଦେବାଲାଗି ସେ ଜମା ଚାହୁଁ ନଥିଲେ । କିନ୍ତୁ ଋଷିଙ୍କ କ୍ରୋଧକୁ ଭୟ କରି ସେ ତାଙ୍କୁ ସାଫ୍ ଠୋକ୍ ଭାବରେ ମନା କରି ଦେଇ ପାରିଲେ ନାହିଁ । ସେ କହିଲେ, "ଋଷିବର, ରାଜକୁମାରୀମାନେ ସମସ୍ତେ ପ୍ରାପ୍ତବୟସ୍କା । ଏଣୁ ବିଧି ଅନୁଯାୟୀ ସେମାନେ ନିଜ ନିଜର ପତିଙ୍କୁ ବରଣ କରିବାର କଥା । ଆପଣ ସେମାନଙ୍କ ପାଖକୁ ଚାଲନ୍ତୁ । ଯେ ଆପଣଙ୍କୁ ପତି ରୂପରେ ବରଣ କରିବ, ମୁଁ ତା'କୁ ହିଁ ଆପଣଙ୍କ ହାତରେ ଟେକି ଦେବି ।" ଏଭଳି କହିବାର ଉଦ୍ଦେଶ୍ୟ ହେଲା, ରାଜାଙ୍କର ପୂର୍ଣ୍ଣ ମାତ୍ରାରେ ବିଶ୍ୱାସ ଥିଲା ଯେ ସୌଭରିଙ୍କ ଜରାଜୀର୍ଣ୍ଣ ରୂପ ଦେଖି କୌଣସି ରାଜକୁମାରୀ ତାଙ୍କୁ ପତି ରୂପରେ ବରଣ କରିବେ ନାହିଁ । ସୌଭରି ଏହି ପ୍ରସ୍ତାବରେ ରାଜି ହେଲେ ।

ରାଜା ସୌଭରିଙ୍କୁ ନେଇ ଅନ୍ତଃପୁରକୁ ଚାଲିଲେ । ଇତି ମଧ୍ୟରେ ସୌଭରି ନିଜର ଋଦ୍ଧି ବଳରେ ନିଜକୁ ଜଣେ ସୁନ୍ଦର ଯୁବକ ରୂପରେ ପରିଣତ କରିଦେଲେ । ପଚାଶ ଜଣଯାକ ରାଜକୁମାରୀ ତାଙ୍କ ରୂପରେ ମୋହି ଯାଇ ତାଙ୍କୁ ପତି ରୂପରେ ବରଣ କଲେ । ପରେ ପରେ ପଚାଶ ଜଣ ରାଜକୁମାରୀଙ୍କ ସହିତ ତାଙ୍କର ବିବାହ ହେଲା । ରାଜା ତ୍ରସଦସ୍ୟୁ ଦାମ୍ପତ୍ୟ-ସୁଖ ଉପଭୋଗ ପାଇଁ ଯେଉଁ ଯେଉଁ ଭୋଗର ବସ୍ତୁଗୁଡ଼ିକ ଆବଶ୍ୟକ, ତାହା ସବୁ ସୌଭରିଙ୍କୁ ଯୋଗାଇ ଦେଲେ । ସୌଭରି ମଧ୍ୟ ଇନ୍ଦ୍ରଙ୍କଠାରୁ ଚିରଯୌବନ ପାଇବାର ବରଟି ହାସଲ କଲେ । ଏହିପରି ଭାବରେ ସେ ସ୍ତ୍ରୀମାନଙ୍କ ସହିତ ମହାନନ୍ଦରେ ଦାମ୍ପତ୍ୟ-ଜୀବନର ସୁଖ ଉପଭୋଗ କରିବାକୁ ଲାଗିଲେ ।

ସେ ଯେତେ ଯେତେ ଉପଭୋଗରେ ମାତିଲେ, ସେତେ ସେତେ କାମନାର ନିଆଁ ଅଧିକରୁ ଅଧିକ ପ୍ରଜ୍ୱଳିତ ହେବାକୁ ଲାଗିଲା । ମନରେ ଶାନ୍ତି ଆସିଲା ନାହିଁ ; ପ୍ରାଣରେ ତୃପ୍ତି ଆସିଲା ନାହିଁ । ଶେଷରେ ତାଙ୍କ ଆଖି ଖୋଲିଗଲା । ସେ ବୁଝି ପାରିଲେ ଯେ ପ୍ରକୃତ ଶାନ୍ତି ମିଳିବ କାମନା-ବାସନାକୁ ଛାଡ଼ିବା ଦ୍ୱାରା, ସେଥିରେ ବୁଡ଼ି ରହିବା ଦ୍ୱାରା ନୁହେଁ । ପ୍ରକୃତ ସୁଖ 'ପ୍ରେୟଃ'ର ସେବାରେ ନାହିଁ ; ତାହା ଅଛି 'ଶ୍ରେୟଃ'ର ସେବାରେ । ତେଣୁ ତାଙ୍କୁ ହେବ 'ଶ୍ରେୟଃ'ର ଅନୁସନ୍ଧାନ କରିବାକୁ ହେବ । ଏହା ଠିକ୍ କରି ସେ ଦାମ୍ପତ୍ୟର ବନ୍ଧନକୁ ଛିନ୍ନ କଲେ ଏବଂ ଜଙ୍ଗଲକୁ କଠୋର ତପସ୍ୟା କରିବା ପାଇଁ ଚାଲିଗଲେ । ସେଠାରେ ସେ ତ୍ୟାଗପୂତ ଜୀବନ ଯାପନ କଲେ । ତାଙ୍କ ଆଶ୍ରମ ଯମୁନା ନଦୀତୀରରେ କୌଣସି ଏକ ଜାଗାରେ ଥିଲା ।

ଏହି କାହାଣୀଟିର ଅନୁଧ୍ୟାନ ଫଳରେ ଆମକୁ ନିମ୍ନଲିଖିତ ନିଷ୍କର୍ଷମାନ ମିଳି ପାରିବ :

(କ) ପୁରୁମାନଙ୍କର ରାଜା ତ୍ରସଦସ୍ୟୁ ଜଣେ ବିଖ୍ୟାତ ରାଜା ଥିଲେ ଏବଂ ତାଙ୍କ ରାଜଧାନୀ ସୁବାସ୍ତୁ (ଆଧୁନିକ ସ୍ୱାତ୍) ନଦୀ ତୀରରେ ଥିଲା ।

(ଖ) ଦସ୍ୟୁମାନେ ତ୍ରସଦସ୍ୟୁଙ୍କୁ ଖୁବ୍ ଭୟ କରୁଥିଲେ ; ତେଣୁ ସେମାନେ ତାଙ୍କ ରାଜ୍ୟରେ ବିଶେଷ ଉପଦ୍ରବ କରି ପାରୁ ନଥିଲେ । ସେହି କାରଣରୁ ତାଙ୍କ ରାଜ୍ୟରେ ପ୍ରବାହିତ 'ସୁବାସ୍ତୁ' ନଦୀର ଉଭୟ ପାର୍ଶ୍ୱରେ ବସତି ସ୍ଥାପନ କରି ରହିବା ଲୋକମାନଙ୍କ ପକ୍ଷରେ ଖୁବ୍ ନିରାପଦ ଥିଲା । ସେହି ହେତୁ ବୋଧହୁଏ ନଦୀଟିର ନାମ ରଖା ଯାଇଥିଲା 'ସୁବାସ୍ତୁ' ବା 'ବସ୍ତି ଉପଯୋଗୀ ଉତ୍ତମ ସ୍ଥାନ' । ଏଥିରୁ ଜଣା ପଡ଼ୁଛି ଯେ ଆର୍ଯ୍ୟମାନଙ୍କ ପାଇଁ ଦସ୍ୟୁମାନଙ୍କ ଉପଦ୍ରବ ଏଭଳି କଷ୍ଟଦାୟକ ଓ ଅଶାନ୍ତିକର ଥିଲା ଯେ ଏହି ଉପଦ୍ରବର ବାହାରେ ଥିବା ସ୍ଥାନକୁ ସେମାନେ ଉତ୍ତମ ବାସଯୋଗ୍ୟ ସ୍ଥାନ ବୋଲି ବିଚାରୁଥିଲେ ।

(ଗ) ପ୍ରାପ୍ତବୟସ୍କା କନ୍ୟାମାନେ ନିଜ ଇଚ୍ଛାରେ ପତିମାନଙ୍କୁ ବରଣ କରୁଥିଲେ । କ୍ଷତ୍ରିୟ-କୁଳରେ ବିଶେଷ କରି ଏହି ପ୍ରଥା ପ୍ରଚଳିତ ଥିଲା ।

(ଘ) ଜଣେ ବ୍ୟକ୍ତି ଏକାଧିକ ପତ୍ନୀ ଗ୍ରହଣ କରି ପାରୁଥିଲେ ।

(ଙ) ତ୍ୟାଗ ଓ ଭୋଗ ମଧ୍ୟରେ ତ୍ୟାଗକୁ ଅଧିକତର ମାନ୍ୟତା ଦିଆ ଯାଉଥିଲା । ତ୍ୟାଗୀ ବ୍ୟକ୍ତି ସମାଜ ଦ୍ୱାରା ଅଧିକତର ସମ୍ମାନିତ ହେଉଥିଲେ ।

(ଚ) ସବୁ ମୁନି ଋଷି ଆଜନ୍ମ ବ୍ରହ୍ମଚାରୀ ହୋଇ ଜୀବନ କାଟୁ ନଥିଲେ ।

ସେମାନଙ୍କ ମଧ୍ୟରୁ ଅନେକ ବାହ୍ଲୀ ଯାହ୍ଲୀ ହୋଇ ଘର ସଂସାର କରି ରହୁଥିଲେ ।

(ଛ) ଯମୁନା ନଦୀର ନାମୋଲ୍ଲେଖରୁ ଜଣା ପଡ଼ୁଛି ଯେ ସେତେବେଳକୁ ଆର୍ଯ୍ୟମାନେ 'ସପ୍ତସିନ୍ଧୁ' ଅଞ୍ଚଳରୁ କ୍ରମେ କ୍ରମେ ପୂର୍ବ ଆଡ଼କୁ ଗତି କରିବାକୁ ଆରମ୍ଭ କରି ସାରିଲେଣି ଏବଂ ଯମୁନା ନଦୀ ସହିତ ସେମାନଙ୍କର ପରିଚୟ ସ୍ଥାପିତ ହୋଇ ସାରିଲାଣି ।

## ଶୁନଃଶେପ ଆଖ୍ୟାନ :

ଏହି ଆଖ୍ୟାନଟି ମଧ୍ୟ ପୂର୍ବୋକ୍ତ ଆଖ୍ୟାନ ଭଳି ଋଗ୍‌ବେଦରେ ସନ୍ନିବେଶିତ । ଋଗ୍‌ବେଦର ଅନ୍ତର୍ଗତ ଐତରେୟ ବ୍ରାହ୍ମଣରେ ମଧ୍ୟ ଆମେ ଏହାର ସୂଚନା ପାଇଥାଉଁ । (୧୮) ଏହି କାହାଣୀବର୍ଣ୍ଣିତ ଶୁନଃଶେପ ଥିଲେ ଜଣେ ବିଖ୍ୟାତ ଋଷି । ସେ ଋଗ୍‌ବେଦର ସାତ ଗୋଟି ସୂକ୍ତର ସ୍ରଷ୍ଟା । ଏହି କାହାଣୀର ରଜା ହରିଶ୍ଚନ୍ଦ୍ର ମଧ୍ୟ ସମଧିକ ବିଖ୍ୟାତ । ସେ ଥିଲେ ଖୁବ୍ ସତ୍ୟବାନ ଓ ଦାନୀ । ସତ୍ୟ ରକ୍ଷା କରିବା ଲାଗି ସେ ସ୍ତ୍ରୀ-ପୁତ୍ରଙ୍କୁ ବିଶ୍ୱାମିତ୍ର ଋଷିଙ୍କ ହାତରେ ଦାନ ଦେଇଥିଲେ ବୋଲି ପୁରାଣରେ (ବେଦରେ ନୁହେଁ) ବର୍ଣ୍ଣିତ । ପୁରାଣ କହିବା ଅନୁସାରୀ ଅଧୁନା ବନାରସ୍‌ର ହରିଶ୍ଚନ୍ଦ୍ର ଘାଟ ଶ୍ମଶାନଟି ରଜା ହରିଶ୍ଚନ୍ଦ୍ରଙ୍କ ନାମ ଅନୁସାରେ ହୋଇଛି । ଉଂସିତ କାହାଣୀରେ ଜଣେ ଲୋଭୀ ପିତା କପରି ଧନ ଲାଳସାରେ ନିଜ ପୁତ୍ରକୁ ବଳି ଦାନ କରିବାକୁ ବସିଥିଲେ, ତାହା ବର୍ଣ୍ଣିତ । ଆଉ ମଧ୍ୟ ଉକ୍ତ ପିତା ପୁତ୍ରକୁ ରକ୍ଷା କରିବାର କର୍ତ୍ତବ୍ୟ ପାଳନ କରି ନ ଥିବାରୁ କପରି ସ୍ୱାନରେ ପରେ ନନ୍ଦିତ ହୋଇଥିଲେ ଏବଂ ସେହି ପୁତ୍ରର ପିତୃତ୍ୱର ଗୌରବରୁ ବଞ୍ଚିତ ହୋଇଥିଲେ, ତାହା ମଧ୍ୟ ଅତି ସୁନ୍ଦର ଭାବରେ ବର୍ଣ୍ଣିତ । ଗଳ୍ପଟିରେ ବରୁଣ ଦେବତାଙ୍କ ମହତ୍ତ୍ୱ ପ୍ରତିପାଦିତ । ଋଗ୍‌ବେଦୋତ୍ତର କାଳରେ ବରୁଣଙ୍କ ବାସସ୍ଥାନ ସମୁଦ୍ରରେ ବୋଲି କଳ୍ପିତ । କିନ୍ତୁ ଋଗ୍‌ବେଦ ଅନୁସାରେ ସେ ହେଉଛନ୍ତି ଜଣେ ସ୍ୱର୍ଗର ଦେବତା । ସେ ହେଉଛନ୍ତି 'ଋତ' ବା ଚିରନ୍ତନ ନିୟମର ସ୍ରଷ୍ଟା ବା ନିୟାମକ । ବୈଦିକ କଳ୍ପନା ଅନୁସାରୀ ବରୁଣଙ୍କ ହାତରେ ପାଶ ଥାଏ । ଏହି ପାଶ ଦୁଇ ପ୍ରକାର କାମରେ ଲାଗେ । ପ୍ରଥମତଃ ଜଗତର ସମସ୍ତଙ୍କୁ ଏକ ଚିରନ୍ତନ ନିୟମରେ ବାନ୍ଧି ରଖିବାରେ ସାହାଯ୍ୟ କରେ । ଦ୍ୱିତୀୟତଃ ଯେ 'ଅନୃତ' ବା ଚିରନ୍ତନ ନିୟମର ପରିପନ୍ଥୀ, ତା'କୁ ବରୁଣ ଏହି ପାଶରେ ବାନ୍ଧି ଦଣ୍ଡ ଦେଇଥାନ୍ତି । ବରୁଣ ଦେବତାଙ୍କ ଏହି ଗୁଣ ପ୍ରତି ଲକ୍ଷ୍ୟ କରି ଦାଣ୍ଡେକର କହିଛନ୍ତି :

> "Varuna is basically the binder God who controls and regulates all the happenings in the universe, cosmic as well as human, by binding

down their operators. It is in this very concept that we have to seek the origin of the famous 'pasas' of Varuna." (୧୯)

ସେ ଯାହା ହେଉ, ଆମେ ବର୍ତ୍ତମାନ ମୂଳ ଆଖ୍ୟାନକୁ ଫେରିବା । ସଂକ୍ଷେପରେ ଏହାର କଥାବସ୍ତୁ ହେଲା :

ହରିଶ୍ଚନ୍ଦ୍ର ଥିଲେ ଇକ୍ଷ୍ୱାକୁ ବଂଶର ଜଣେ ବିଖ୍ୟାତ ରାଜା । ତାଙ୍କର ଶହେ ରାଣୀ ଥିଲେ ; କିନ୍ତୁ କୌଣସି ରାଣୀ ତାଙ୍କୁ ପୁଅଟିଏ ଦେଇ ପାରି ନଥିଲେ । ସେଥିପାଇଁ ତାଙ୍କ ମନରେ ଖୁବ୍ ଦୁଃଖ ଥିଲା । ଦେବର୍ଷି ନାରଦଙ୍କ ପରାମର୍ଶରେ ସେ ବରୁଣଙ୍କୁ ଆରାଧନା କରି ତାଙ୍କୁ ପୁଅଟିଏ ମାଗିଲେ ଏବଂ ପୁଅଟିଏ ହେଲେ ତାଙ୍କୁ (ବରୁଣଙ୍କୁ) ସମର୍ପଣ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ତାଙ୍କର ପ୍ରାର୍ଥନା ଫଳିଲା ଏବଂ ଖୁବ୍ ଶୀଘ୍ର ତାଙ୍କର ପୁଅଟିଏ ହେଲା । କାଳେ ହରିଶ୍ଚନ୍ଦ୍ର ତାଙ୍କ ପୂର୍ବ ପ୍ରତିଶ୍ରୁତିକୁ ଭୁଲିଯିବେ, ସେଥିପାଇଁ ତାଙ୍କୁ ଚେତେଇ ଦେବା ଲାଗି ବରୁଣ ଆସି ତାଙ୍କ ଆଗରେ ଉଭା ହେଲେ ଏବଂ ପୁଅଟିକୁ ତାଙ୍କୁ ସମର୍ପଣ କରିଦେବା ପାଇଁ କହିଲେ । ପିଲାଟି ଜନ୍ମ ହେବା ପରେ ହରିଶ୍ଚନ୍ଦ୍ରଙ୍କର ତା' ପ୍ରତି ମମତା ଆସି ଯାଇଥିଲା । ସେ ପ୍ରକୃତରେ ବରୁଣଙ୍କୁ ପିଲାଟିକୁ ଅର୍ପଣ କରିବାକୁ ଚାହୁଁ ନଥିଲେ । କିନ୍ତୁ ବରୁଣଙ୍କ କ୍ରୋଧକୁ ଭୟ କରି ସେ ଏ କଥା ସ୍ପଷ୍ଟ ଭାବରେ ତାଙ୍କୁ କହି ପାରି ନଥିଲେ । ସେ ବରୁଣଙ୍କୁ କହିଲେ, "ପ୍ରଭୋ, ବର୍ତ୍ତମାନ ଅବସ୍ଥାରେ ସଦ୍ୟଜାତ ଶିଶୁଟି ଅପବିତ୍ର ; ଯଜ୍ଞ ଲାଗି ଆଦୌ ଯୋଗ୍ୟ ନୁହେଁ । ମୁଁ ଦଶ ଦିନ ପରେ ତା'କୁ ଆପଣଙ୍କ ଠାରେ ଅର୍ପଣ କରି ଦେବି ।" ତାହା ଶୁଣି ବରୁଣ ଫେରିଗଲେ ଏବଂ ପୁଣି ଦଶ ଦିନ ପରେ ଆସିଲେ । ପିଲାଟିର ଦାନ୍ତ ଉଠିଲେ ତା'କୁ ସମର୍ପଣ କରିବେ ବୋଲି କହି ହରିଶ୍ଚନ୍ଦ୍ର ଏଥର ବି ବରୁଣଙ୍କୁ ଫେରାଇ ଦେଲେ । ଏହିପରି ଭାବରେ ବରୁଣ ବାରମ୍ବାର ଆସୁଥାନ୍ତି ଏବଂ ହରିଶ୍ଚନ୍ଦ୍ର କୌଣସି ନା କୌଣସି ଛଳ ଦେଖାଇ ତାଙ୍କୁ ଫେରାଇ ଦେଉଥାନ୍ତି ।

ନାମକରଣ ଦିନ ପିଲାଟିର ନାମ ରୋହିତ ରଖା ଯାଇଥିଲା । କ୍ରମେ ରୋହିତ ବଡ଼ ହୋଇ ଏକ ସୁନ୍ଦର ଯୁବକରେ ପରିଣତ ହେଲେ । ତାଙ୍କୁ ଯେ ନିଶ୍ଚିତ ଭାବରେ ହରାଇବାକୁ ହେବ, ଏ କଥା ଭାବିଲା ବେଳକୁ ହରିଶ୍ଚନ୍ଦ୍ରଙ୍କ ଛାତି ଦୁଃଖରେ ଫାଟି ପଡୁଥିଲା । ଶେଷରେ ସେ ମନକୁ ସ୍ଥିର କରି ସବୁ କଥା ରୋହିତଙ୍କୁ ଖୋଲି କରି କହିଦେଲେ । ରୋହିତଙ୍କ ଯୁବକ ରକ୍ତ ଟକ ମକ ଫୁଟୁଥିଲା । ସେ ଏଭଳି ଭାବରେ ବରୁଣଙ୍କ ଠାରେ ସମର୍ପିତ ହେବାକୁ ଚାହୁଁ ନଥିଲେ । ସେ ଏହି ପରିସ୍ଥିତିରୁ ନିଜକୁ ବଞ୍ଚାଇବା ଲାଗି ବଣକୁ ଚାଲିଗଲେ । ବରୁଣ ମାସ ମାସ ଧରି ପୂରା ଗୋଟିଏ ବର୍ଷ ଅପେକ୍ଷା କଲେ;

କିନ୍ତୁ ରୋହିତ ଫେରିଲେ ନାହିଁ । ତାଙ୍କର ଧାରଣା ହେଲା ଯେ ହରିଶ୍ଚନ୍ଦ୍ର ଜାଣି ଶୁଣି ନିଜ ପୁଅର ଜୀବନ ରଖିବା ପାଇଁ ଏଭଳି ପରିସ୍ଥିତିଟିଏ ଭିଆଇଛନ୍ତି । ତାଙ୍କର ଖୁବ୍ ରାଗ ହେଲା । ସେ ହରିଶ୍ଚନ୍ଦ୍ରଙ୍କୁ ଜଳୋଦର-ରୋଗରେ ପୀଡ଼ିତ ହେବା ପାଇଁ ଅଭିଶାପ ଦେଲେ । ଏହାର ଫଳପ୍ରସୂତ ସ୍ୱରୂପ ହରିଶ୍ଚନ୍ଦ୍ର ଜଳୋଦର ରୋଗରେ ପୀଡ଼ା ପାଇବାକୁ ଲାଗିଲେ ।

ରୋଗାକ୍ରାନ୍ତ ହରିଶ୍ଚନ୍ଦ୍ର ଦିନକୁ ଦିନ କ୍ଷୀଣ ହୋଇ ଉଠିଲେ । ତାଙ୍କର ପୂର୍ବ ରୂପଶ୍ରୀ ଆଉ ରହିଲା ନାହିଁ । ସେ ସ୍ପଷ୍ଟ ଭାବରେ ବୁଝି ପାରିଲେ ଯେ ବରୁଣଙ୍କ କ୍ରୋଧ ଫଳରେ ଏଭଳି ଘଟିଛି । କିନ୍ତୁ ଏଥିପାଇଁ କିଛି ପ୍ରତିକାର କରିବାର ଶକ୍ତି ତାଙ୍କର ନଥିଲା । ସେ କେବଳ ନୀରବରେ ହିଁ ଶେଷ ପରିଣତିକୁ ଅପେକ୍ଷା କରି ରହିଲେ । ସମସ୍ତେ ହାହାକାର କଲେ । ଏହି ଖବର ଯାଇ ରୋହିତଙ୍କ ପାଖରେ ପହଞ୍ଚିଲା । ବାପାଙ୍କର ଏଭଳି ବିପତ୍ତି ଲାଗି ସେ ଯେ ନିଜେ ଦାୟୀ, ଏ କଥା ଭାବି ଭାବି ସେ ଖୁବ୍ ମନ ଦୁଃଖ କଲେ । ଶେଷରେ ସେ ବାପାଙ୍କ ପାଖକୁ ଫେରି ଆସିବା ପାଇଁ ଠିକ୍ କଲେ । ଇନ୍ଦ୍ର ତାଙ୍କ ଫେରିବାଟା ଚାହୁଁ ନଥିଲେ । ସେ ବାଟରେ ବ୍ରାହ୍ମଣ ରୂପରେ ତାଙ୍କୁ ଦେଖା ଦେଇ କେତେକ ଉପଦେଶ ଦେଲେ । ସବୁ ଉପଦେଶ ଶେଷରେ 'ଚରୈବେତି ଚରୈବେତି' ବୋଲି ଅଛି । ଏହାର ଅର୍ଥ ହେଲା 'ଆଗେଇ ଚାଲ, ଆଗେଇ ଚାଲ' । ଏହାର ତାତ୍ପର୍ଯ୍ୟ ହେଲା ମନୁଷ୍ୟ ଫେରିବାକୁ ଚାହିଁବା ଉଚିତ ନୁହେଁ ; ସେ ସବୁବେଳେ ଆଗେଇ ଚାଲିବା ଉଚିତ । ସମୟ ଫେରି ଚାହେଁ ନାହିଁ ; ତାହା ଆଗେଇ ଚାଲିଯାଏ । ତେଣୁ ସମୟ ସହିତ ତାଳ ଦେଇ ଆଗେଇ ଚାଲିବାକୁ ହେଲେ ମଣିଷକୁ ଆଉ ପଛକୁ ଫେରିବାକୁ ହେବ ନାହିଁ । ଏହି ମର୍ମରେ ଇନ୍ଦ୍ର ରୋହିତଙ୍କୁ ଉପଦେଶ ଦେଇଥିଲେ । ତହିଁରୁ ଗୋଟିଏ ଉପଦେଶ ବାଣୀ ନିମ୍ନରେ ଉଦ୍ଧୃତ ହେଉଛି :

"ଆସ୍ତେ ଭଗ ଆସୀନସ୍ୟୋର୍ଦ୍ଧ୍ୱସ୍ତିଷ୍ଠତି ତିଷ୍ଠତଃ ।
ଶେତେ ନିପଦ୍ୟମାନସ୍ୟ ଚରତି ଚରତୋ ଭଗଃ
ଚରୈବେତି ଚରୈବେତି ।" (୨୦)

ଅର୍ଥାତ୍ ଯେ ବସିଥାଏ, ତା'ର ଭାଗ୍ୟ ମଧ୍ୟ ବସିଥାଏ । ଯେ ଉଠି ଠିଆ ହୁଏ, ତା'ର ଭାଗ୍ୟ ମଧ୍ୟ ଉଠି ଠିଆ ହୁଏ । ଯେ ଶୋଇପଡ଼େ, ତା'ର ଭାଗ୍ୟ ମଧ୍ୟ ଶୋଇପଡ଼େ । ଯେ ଆଗେଇ ଚାଲେ, ତା'ର ଭାଗ୍ୟ ମଧ୍ୟ ଆଗେଇ ଚାଲେ । ଅତଏବ, ଆଗେଇ ଚାଲ, ଆଗେଇ ଚାଲ । ଏହି ଉପଦେଶ ଶୁଣିବା ପରେ ରୋହିତ ଆଉ ଘରକୁ ଫେରିବା ପାଇଁ ଚାହିଁଲେ ନାହିଁ । ସେ ବନଭୂମିରେ ବିଚରଣ କରିବାକୁ ଲାଗିଲେ । ଦ୍ୱିତୀୟ ବର୍ଷ ସେ ଘରକୁ ଫେରିବାକୁ

ଗୃହିଁଲେ । ସେତେବେଳେ ମଧ୍ୟ ଇନ୍ଦ୍ର ବ୍ରାହ୍ମଣ ରୂପରେ ଆସି ତାଙ୍କୁ ଆଉ ଗୋଟିଏ ଉପଦେଶ ଦେଲେ ଏବଂ ଫେରିବାକୁ ବାରଣ କଲେ । ଏହିପରି ଭାବରେ ସେ ପାଞ୍ଚ ଥର ଘରକୁ ଫେରିବାକୁ ଗୃହିଁଲେ ଏବଂ ପାଞ୍ଚ ଥରଯାକ ଇନ୍ଦ୍ର ତାଙ୍କୁ ପାଞ୍ଚଟି ପୃଥକ୍ ପୃଥକ୍ ଉପଦେଶ ଦେଇ ଫେରିବାକୁ ବାରଣ କଲେ ।

ଇତି ମଧ୍ୟରେ ଏ ବିପତ୍ତିରୁ ଉଦ୍ଧାର ପାଇବା ପାଇଁ ସେ ମନେ ମନେ ଗୋଟିଏ ଉପାୟ ପାଞ୍ଚିନେଲେ । ତାଙ୍କ ସ୍ଥାନରେ ଆଉ ଜଣକୁ ବରୁଣଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିବାକୁ ହେବ । ଏହା କଲେ ବରୁଣ ସନ୍ତୁଷ୍ଟ ହେବେ ଏବଂ ତାଙ୍କ ପ୍ରାଣ ରହିଯିବ; ବାପାଙ୍କ ରୋଗ ବି ଭଲ ହୋଇଯିବ । ସେତେବେଳେ ଅଜୀଗର୍ତ୍ତ ବୋଲି ଜଣେ ଋଷି ଥିଲେ । ସେ ଥିଲେ ଭାରି ଗରିବ । ତାଙ୍କର ତିନି ପୁଅ ଥିଲେ । ବଡ ପୁଅଙ୍କ ନାଁ ଥିଲା 'ଶୁନଃପୁଚ୍ଛ', ମଝିଆଁ ପୁଅଙ୍କ ନାଁ ଥିଲା 'ଶୁନଃଶେପ'; ଏବଂ ସାନ ପୁଅଙ୍କ ନାଁ ଥିଲା 'ଶୁନୋଲାଙ୍ଗୁଲ' । ସେ ଏହି ତିନି ପୁଅମାନଙ୍କ ମଧ୍ୟରୁ ଜଣଙ୍କୁ ବରୁଣଙ୍କଠାରେ ସମର୍ପିତ ହେବା ଲାଗି ବିକି ଦେବାକୁ ପ୍ରସ୍ତୁତ ଥିଲେ । ବାପା ବଡ ପୁଅଙ୍କୁ ଭଲ ପାଉଥିଲେ ଏବଂ ମାଆ ସାନ ପୁଅଙ୍କୁ ଭଲ ପାଉଥିଲେ । ତେଣୁ ବରୁଣଙ୍କଠାରେ ସମର୍ପିତ ହେବାର ପାଳି ଶୁନଃଶେପଙ୍କ ଉପରେ ପଡ଼ିଲା । ଅଜୀଗର୍ତ୍ତ ଏକ ଶହ ଗାଈ ଦାମ ସ୍ୱରୂପ ପାଇ ଶୁନଃଶେପଙ୍କୁ ରୋହିତଙ୍କ ହାତରେ ବିକି ଦେଲେ । ରୋହିତ ଶୁନଃଶେପଙ୍କୁ ଧରି ବାପାଙ୍କ ରାଜଧାନୀକୁ ଫେରିଲେ ।

ସେଠାରେ ଶୁନଃଶେପଙ୍କୁ ବଳି ଦେଇ ବରୁଣଙ୍କ ମନସ୍ତୁଷ୍ଟି ଲାଗି ଏକ ଯଜ୍ଞର ଆୟୋଜନ କରାଗଲା । ଜମଦଗ୍ନି ଋଷି ଥିଲେ ଏହି ଯଜ୍ଞର ହୋତା । ଶୁନଃଶେପଙ୍କୁ ଫୁଲମାଳ ପିନ୍ଧାଇ ଯଜ୍ଞବେଦୀ ପାଖକୁ ନିଆଗଲା । କୋମଳମତି ମୁନିକୁମାରଙ୍କ ସୁନ୍ଦର ରୂପଶ୍ରୀ ଦେଖି ସମସ୍ତେ ହାହାକାର କରିବାକୁ ଲାଗିଲେ । ଶୁନଃଶେପଙ୍କୁ ଯୂପ କାଠରେ ବାନ୍ଧିବା ଲାଗି ଜମଦଗ୍ନିଙ୍କ ହାତ ଗଲା ନାହିଁ । ବଶିଷ୍ଠଙ୍କ ପରାମର୍ଶରେ ସେହି କାମଟି ତାଙ୍କ ନିଷ୍ଠୁର ପିତା ଅଜୀଗର୍ତ୍ତ ହିଁ କଲେ । ତାଙ୍କୁ ହତ୍ୟା କରିବାର ଦାୟିତ୍ୱ ହିଁ ସେହି ଅଜୀଗର୍ତ୍ତଙ୍କ ଉପରେ ଅର୍ପଣ କରାଗଲା । ତାଙ୍କ ହାତରେ ଶାଣିତ ତରବାରୀ ଦେଖି ଶୁନଃଶେପ ଭୟରେ ଥରି ଉଠିଲେ । ଠିକ୍ ସେତିକି ବେଳେ ବିଶ୍ୱାମିତ୍ର ଆସି ସେଠାରେ ପହଞ୍ଚିଲେ । ତାଙ୍କ ପ୍ରଭାବରେ ଶୁନଃଶେପଙ୍କ କଣ୍ଠରୁ ବରୁଣଙ୍କ ଉଦ୍ଦେଶ୍ୟରେ ସ୍ତୁତିବାଣୀମାନ ସ୍ଫୁରିତ ହୋଇ ଉଠିଲା । ଏଥିରେ ବରୁଣ ସନ୍ତୁଷ୍ଟ ହେଲେ ଏବଂ ଶୁନଃଶେପଙ୍କ ପାଶ ଗୁଡ଼ିଏ ଗୁଡ଼ିଏ ଖୋଲିଗଲା । ହରିଶ୍ଚନ୍ଦ୍ରଙ୍କ ରୋଗ ମଧ୍ୟ ଭଲ ହୋଇଗଲା ।

ସେତେବେଳେ ଶୁନଃଶେପ ଥିଲେ ନାଁ ବାଳକ । ନାଁ ବାଳକ ଅବସ୍ଥାରେ ତାଙ୍କର ବାପାଙ୍କ ପାଖରେ ରହିବାର କଥା । ବାପାଙ୍କର କର୍ତ୍ତବ୍ୟ ହେଉଛି ସନ୍ତାନକୁ ରକ୍ଷା କରିବା । କିନ୍ତୁ ଏଠାରେ ଅଜୀଗର୍ତ୍ତ ଶୁନଃଶେପଙ୍କୁ ରକ୍ଷା କରିବାରେ ଅସମର୍ଥ ହୋଇଛନ୍ତି ।

ଅତଏବ, ସେ ତାଙ୍କର ପିତୃତ୍ୱର ଗୌରବରୁ ବଞ୍ଚିତ ହେବେ । ତେବେ, ଶୁନଃଶେପ ବର୍ତ୍ତମାନ କାହାଙ୍କ ତତ୍ତ୍ୱାବଧାନରେ ରହିବେ ? ଏହି ବିଷୟଟି ଉପସ୍ଥିତ ଋଷିମାନଙ୍କ ମୁଣ୍ଡକୁ ଘାରିଲା । ସେମାନେ ଶୁନଃଶେପଙ୍କର ବାପା କିଏ ହେବେ, ତାହା ଠିକ୍ କରି ପାରିଲେ ନାହିଁ । ବିଶ୍ୱାମିତ୍ର ଆସି ପ୍ରଶ୍ନଟିର ସମାଧାନ କରି ଦେଲେ । ସେ ଶୁନଃଶେପଙ୍କୁ ପୋଷ୍ୟପୁତ୍ର କରି ନେଲେ । ତେଣୁ ତାଙ୍କ ଉପଦେଶେ ଶୁନଃଶେପ ବିଶ୍ୱାମିତ୍ରଙ୍କ ସାଥିରେ ତାଙ୍କ ଆଶ୍ରମକୁ ଗଲେ । ବିଦ୍ୱାନ୍‌ମାନଙ୍କର ମତ ହେଉଛି, ଭାରତରେ ପୋଷ୍ୟପୁତ୍ର ଗ୍ରହଣ କରିବା ପ୍ରଥାଟି ଏହିଠାରୁ ହିଁ ସର୍ବପ୍ରଥମେ ଆରମ୍ଭ ହୋଇଥିଲା ।

ଏହି କାହାଣୀଟିକୁ ଅନୁଧ୍ୟାନ କଲେ ଆମେ ନିମ୍ନଲିଖିତ ନିଷ୍କର୍ଷରେ ପହଞ୍ଚି ପାରିବା :

(କ) ଏଠାରେ ନରମେଧ ଯଜ୍ଞର ନିଷ୍ଫଳତା ବିଷୟରେ କୁହା ଯାଇଛି ଏବଂ ଦେବତାଙ୍କୁ ସନ୍ତୁଷ୍ଟ କରିବାକୁ ହେଲେ ରକ୍ତ ନୁହେଁ, ନିଷ୍ଠାପର ଭକ୍ତିର ଆବଶ୍ୟକତା ଅଛି ବୋଲି ମଧ୍ୟ କୁହା ଯାଇଛି । ଏଥିରୁ ଜଣା ପଡ଼ୁଛି ଯେ କେତେକ ଗୋଷ୍ଠୀର ଲୋକେ ନରମେଧ ଯଜ୍ଞ କରୁଥିଲେ ଏବଂ ଏହାର ବିରୋଧୀ ଗୋଷ୍ଠୀର ଲୋକମାନେ ଏହାକୁ ପ୍ରତିହତ କରିବାର ଚେଷ୍ଟା କରୁଥିଲେ । ନରମେଧ ଯଜ୍ଞ ନ କରିବା ଯେ ଥିଲା ବହୁମତପ୍ରତିଷ୍ଠିତ ମତ, ଏହା ବିଶ୍ୱାସ କରିବାର ଯଥେଷ୍ଟ କାରଣ ବିଦ୍ୟମାନ ।

(ଖ) ଏ କ୍ଷେତ୍ରରେ ବଶିଷ୍ଠ ଯାହା କରିବାକୁ ଚାହିଁଥିଲେ, ବିଶ୍ୱାମିତ୍ର ତାହାକୁ ବିରୋଧ କରିଥିଲେ । ବେଦର ଅନେକ ଜାଗାରେ ଏହି ବଶିଷ୍ଠ-ବିଶ୍ୱାମିତ୍ରଙ୍କ ପାରସ୍ପରିକ ବିରୋଧିତାର ଉଲ୍ଲେଖ ଅଛି । ଉଦାହରଣ ସ୍ୱରୂପ, 'ଦାଶରାଜ୍ଞ' ଯୁଦ୍ଧକୁ ବିଚାରକୁ ନିଆ ଯାଇପାରେ । ଏଥିରୁ ଅନୁମିତ ହୁଏ ବୋଧହୁଏ 'ବିଶ୍ୱାମିତ୍ର' ଗୋଟିଏ ଗୋଷ୍ଠୀ ଥିଲେ, ଯେଉଁମାନେ ଥିଲେ ସଂସ୍କାରବାଦୀ ଏବଂ 'ବଶିଷ୍ଠ ଗୋଷ୍ଠୀ' ଥିଲେ ପରମ୍ପରାବାଦୀ । ଯେଉଁମାନେ ପ୍ରାଚୀନ ପରମ୍ପରାକୁ ଦୃଢ ଭାବରେ ଜାବୁଡ଼ି ଧରିଥାନ୍ତି, ସେମାନେ ହେଲେ ବଶିଷ୍ଠ । ସେମାନେ ନିଜକୁ ସର୍ବୋତ୍ତମ ବୋଲି ଭାବୁଥିଲେ । ମ୍ୟାକ୍‌ଡୋନେଲ୍ (Macdonell) 'ବଶିଷ୍ଠ' ଶବ୍ଦର ଏହି ଅର୍ଥ କରିଛନ୍ତି । (୨୦-କ) ବାସ୍ତବିକ, ସବୁ କ୍ଷେତ୍ରରେ ପରମ୍ପରାବାଦୀମାନେ ନିଜକୁ ଖୁବ୍ ବଡ ବୋଲି ମାନିଥାନ୍ତି ଏବଂ ସଂସ୍କାରବାଦୀମାନଙ୍କୁ ଶ୍ଳେଷ ଆଖିରେ ଦେଖି ସମାଲୋଚନା କରିଥାନ୍ତି । ଠିକ୍ ଅନୁରୂପ ପରିସ୍ଥିତି ଥିଲା ବଶିଷ୍ଠ ଓ ବିଶ୍ୱାମିତ୍ର ଗୋଷ୍ଠୀଦ୍ୱୟ ମଧ୍ୟରେ । ଏହି କାହାଣୀଟି 'ପରମ୍ପରାବାଦୀ' ଓ 'ସଂସ୍କାରବାଦୀ' ଏହି ଦୁଇ ଗୋଷ୍ଠୀ ମଧ୍ୟରେ ଚାଲିଥିବା ସଂଘର୍ଷର ସୂଚନା ଦିଏ ।

(ଗ) ସନ୍ତାନ ସନ୍ତତିମାନଙ୍କୁ ରକ୍ଷଣାବେକ୍ଷଣ କରିବା ଥିଲା ପିତାଙ୍କର ଧର୍ମ । ବାସ୍ତବିକ ସେ ପାଳନ କରୁଥିବାରୁ ଥିଲେ 'ପିତା' ନାମରେ ପରିଚିତ । ଏହି ନିୟମଟିକୁ ସେତେବେଳେ କଡ଼ା କଡ଼ି ଭାବରେ ପାଳନ କରା ଯାଉଥିଲା । ଯେଉଁ ପିତା ଏହି କର୍ତ୍ତବ୍ୟ ପାଳୁ ନଥିଲେ, ତାଙ୍କୁ ପିତୃତ୍ୱର ଗୌରବରୁ ବଞ୍ଚିତ ହେବାକୁ ପଡ଼ୁଥିଲା ।

(ଘ) କେତେକ ମୁନିଋଷି ଥିଲେ ଅତି ଦରିଦ୍ର । ଏପରି କି ଜୀବନଧାରଣ ପାଇଁ ନିଜ ପୁଅକୁ ବିକି ଦେବା ଲାଗି ସେମାନେ କୁଣ୍ଠିତ ହେଉ ନଥିଲେ । ଏବେ ମଧ୍ୟ ପେଟ ଲାଗି ବାପାମାଆମାନେ ପିଲାମାନଙ୍କୁ କେଉଁଠି କେମିତି ବିକି ଦେଉଛନ୍ତି । ସେତେବେଳେ ମଧ୍ୟ ଏହିଭଳି କରୁଣ ପରିସ୍ଥିତିର ଉଦ୍ଭବ ହେଉଥିଲା ।

(ଙ) ସେତେବେଳେ ସଂସ୍କାରବାଦୀ ବିଶ୍ୱାମିତ୍ର ନୂଆ କରି ପୋଷ୍ୟପୁତ୍ରଗ୍ରହଣ ପ୍ରଥା ଚଳାଇଲେ । ପୋଷ୍ୟପିତାଙ୍କ ଉପରେ ପିତାଙ୍କର ସମସ୍ତ ଦାୟିତ୍ୱ ଓ କର୍ତ୍ତବ୍ୟ ନ୍ୟସ୍ତ ରହୁଥିଲା ।

**ଦଧ୍ୟଙ୍ଙ୍ ଆଥର୍ବଣ ଆଖ୍ୟାନ :**

ଋଗ୍‌ବେଦୀୟ ଜଣେ ଋଷିଙ୍କ ନାମ ହେଉଛି ଦଧ୍ୟଙ୍ଙ୍ ଆଥର୍ବଣ । ପୁରାଣ-ସାହିତ୍ୟରେ ସେ ଦଧୀଚି ନାମରେ ପରିଚିତ । ବୈଦିକ ଆଖ୍ୟାନ ଓ ପୌରାଣିକ ଆଖ୍ୟାନ ମଧ୍ୟରେ କିଛିଟା ଫରକ ଅଛି । ବୈଦିକ ଆଖ୍ୟାନରେ ଋଷିଙ୍କର 'ମଧୁବିଦ୍ୟା' ବା 'ବ୍ରହ୍ମବିଦ୍ୟା' ସମ୍ପର୍କୀୟ ଶିକ୍ଷାଦାନ ଉପରେ ଗୁରୁତ୍ୱ ଦିଆ ଯାଇଛି । କିନ୍ତୁ ପୌରାଣିକ ଆଖ୍ୟାନରେ ତାଙ୍କ ହାଡରୁ ତିଆରି ହୋଇଥିବା ଅସ୍ତ୍ର ସାହାଯ୍ୟରେ ଇନ୍ଦ୍ର କିପରି ବୃତ୍ରାସୁରକୁ ବଧ କଲେ, ତାହା ଉପରେ ଗୁରୁତ୍ୱ ଦିଆ ଯାଇଛି । ବୈଦିକ ଆଖ୍ୟାନରେ, ଋଷିଙ୍କୁ ଦେହତ୍ୟାଗ କରିବାକୁ ପଡ଼ି ନଥିଲା । ସେ ଅଶ୍ୱିନୀକୁମାରଙ୍କୁ 'ମଧୁବିଦ୍ୟା' ଶିଖାଇଲା ବେଳେ ସେ ଦୁହେଁ (ଅଶ୍ୱିନୀକୁମାରଦ୍ୱୟ) ତାଙ୍କ ମୁହଁରେ ଘୋଡାର ମୁହଁଟିଏ ଯୋଡ଼ି ଦେଇଥିଲେ । ଇନ୍ଦ୍ରଙ୍କ ଅଭିଶାପରେ ସେହି ମୁଣ୍ଡଟି ଛିଣ୍ଡି ଯାଇଥିଲା । ସେହି ମୁଣ୍ଡର ହାଡ଼ରୁ ହିଁ ଇନ୍ଦ୍ର ପରେ ବୃତ୍ରସଂହାର ଲାଗି ଶସ୍ତ୍ର ପ୍ରସ୍ତୁତ କରିଥିଲେ । କିନ୍ତୁ ପୌରାଣିକ ଆଖ୍ୟାନରେ ଋଷିଙ୍କୁ ପ୍ରାଣତ୍ୟାଗ କରିବାକୁ ପଡ଼ିଥିଲା । ପ୍ରାଣତ୍ୟାଗ ପରେ ତାଙ୍କ ଅସ୍ଥିରୁ ଇନ୍ଦ୍ର ଶସ୍ତ୍ର ପ୍ରସ୍ତୁତ କରି ବୃତ୍ରସଂହାର କରିଥିଲେ । (୨୧) ବୈଦିକ ଆଖ୍ୟାନଟିର ସଂକ୍ଷିପ୍ତ କଥାବସ୍ତୁ ନିମ୍ନରେ ପ୍ରଦତ୍ତ ହେଲା :

ଦଧ୍ୟଙ୍ଙ୍ ଆଥର୍ବଣ ଜଣେ ବ୍ରହ୍ମଜ୍ଞାନୀ ଋଷି ଥିଲେ । ଏହି ବିଦ୍ୟାକୁ ବୈଦିକ କାଳରେ କୁହା ଯାଉଥିଲା 'ମଧୁବିଦ୍ୟା' । ବ୍ରହ୍ମଜ୍ଞାନ କିଛି ଜାଣିବାର କଥା ନୁହେଁ ; ଏହା

ଅନୁଭବ କରିବାର କଥା । କନକୁ ବିଶ୍ୱାତ୍ମା ସହିତ ମିଶାଇ ଦେଇ ସେହି ଅନୁଭୂତିର ସ୍ୱାଦକି ଯେ ପାଇ ପାରନ୍ତି, ସେ ବ୍ରହ୍ମଜ୍ଞାନୀ ନାମରେ ଖ୍ୟାତ । ତାଙ୍କୁ ସବୁ ସୁନ୍ଦର ଦିଶେ ; ସବୁ ଆନନ୍ଦମୟ ଦିଶେ । ସବୁଠାରେ ସେ ମହାନନ୍ଦର ପ୍ଲାବନ ଅନୁଭବ କରି ପାରନ୍ତି । ଏହି ସର୍ବଜ ମଧୁମୟ ଥିବାର ଖ୍ୟବକି ଯେଉଁ ବିଦ୍ୟା ଆଣିଦିଏ, ତାହାକୁ କୁହାଯାଏ 'ମଧୁବିଦ୍ୟା' । ଦଧ୍ୟଙ୍ଗ୍ ଆଥର୍ବଣ କେବଳ ତ ନଜେ ଏହି ମଧୁବିଦ୍ୟାର ଅଧିକାରୀ ନଥିଲେ ; ଯେଉଁମାନେ ଏହା ପାଇବାକୁ ଯୋଗ୍ୟ, ସେମାନଙ୍କୁ ମଧ୍ୟ ସେ ଏହା ବିତରଣ କରୁଥିଲେ । ଅଯୋଗ୍ୟ ଲୋକମାନଙ୍କୁ ସେ ଏହା ଦାନ କରୁ ନଥିଲେ ।

ଇନ୍ଦ୍ରଙ୍କର ଖାରି ଇଚ୍ଛା ହେଲା, ସେ ବ୍ରହ୍ମଜ୍ଞାନୀ ହେବେ ; ଦଧିଚଙ୍ଗ୍ ଆଥର୍ବଙ୍କେ ପାଖରୁ ମଧୁବିଦ୍ୟା ଶିଖିବେ । ସେ ବିଳାସ ବ୍ୟସନ ଓ ନାନା ପ୍ରକାର ଭୋଗରେ ସର୍ବଦା ମଗ୍ନ ରହୁଥିବାରୁ ବ୍ରହ୍ମଜ୍ଞାନ ଶିଖିବାର ଅଧିକାର ଯେ ତାଙ୍କର ନାହିଁ, ଏ ବିଷୟରେ ସେ ଥିଲେ ସମ୍ପୂର୍ଣ୍ଣ ଅବହିତ । ତେଣୁ କାଳେ ଦଧିଚଙ୍ଗ୍ ଆଥର୍ବଣ ତାଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଦେବେ, ସେହି ଆଶଙ୍କାରେ ସେ ଦିନେ ଅତିଥି ରୂପରେ ଯାଇ ଋଷିଙ୍କ ଆଶ୍ରମରେ ପହଞ୍ଚିଲେ ଏବଂ ଅତିଥିଙ୍କର ସକଳ ପ୍ରାର୍ଥନା ଋଷି ପୂରଣ କରିବେ ବୋଲି ତାଙ୍କଠାରୁ ଆଗରୁ ପ୍ରତିଶ୍ରୁତି ହାସଲ କରିନେଲେ । ତା'ପରେ ସେ ତାଙ୍କ ଆଗମନର ପ୍ରକୃତ ଉଦ୍ଦେଶ୍ୟ ଋଷିଙ୍କୁ ଜଣାଇଲେ । ଋଷି ମଧୁବିଦ୍ୟାର ମାହାତ୍ମ୍ୟ ବୁଝାଇବାକୁ ଯାଇ କହିଲେ ଯେ କାମନା ବାସନା ଓ ଉପଭୋଗର ସକଳ ସାମଗ୍ରୀଠାରୁ ଦୂରରେ ରହିଲେ ଯାଇ ମଧୁବିଦ୍ୟା ଗ୍ରହଣ କରିବା ସମ୍ଭବ । ନନ୍ଦନକାନନରେ ଓ ଅପ୍‌ସରାମାନଙ୍କ ମେଳରେ ଇନ୍ଦ୍ର ରହିଥିବାରୁ ତାଙ୍କ ପକ୍ଷେ ଏହା ଗ୍ରହଣ କରିବା ଅସମ୍ଭବ । ଇନ୍ଦ୍ର ଏଥିରେ ଖୁବ୍ ରାଗିଗଲେ ଏବଂ ଅଭିଶାପ ଦେଇ କହିଲେ ଯେ ଏଣିକି ଋଷି ଯଦି ମଧୁବିଦ୍ୟା ସମ୍ପର୍କରେ କାହାକୁ ଉପଦେଶ ଦିଅନ୍ତି, ତେବେ ତାଙ୍କ ମୁଣ୍ଡ ସଙ୍ଗେ ସଙ୍ଗେ ଛିଡ଼ି ପଡ଼ିବ । ଋଷି ଅବିଚଳିତ ଚିତ୍ତରେ ଏହି ଅଭିଶାପ ଗ୍ରହଣ କରିନେଲେ । ତାଙ୍କ ମନରେ ଏଥିପାଇଁ ସାମାନ୍ୟତମ କମ୍ପନ ଉପୁଜିଲା ନାହିଁ । ଇନ୍ଦ୍ର ଏଥିରେ ଖୁବ୍ ଆଚମ୍ବିତ ହୋଇଗଲେ ।

ଆଉ ଦିନକର କଥା । ଋଷିଙ୍କ ଆଶ୍ରମକୁ ଆଉ ଦୁଇଜଣ ଅତିଥି ଆସିଲେ । ସେମାନେ ହେଲେ ଯାମଳ ସ୍ୱର୍ଗର ବୈଦ୍ୟ ଦେବତା ଅଶ୍ୱିନୀକୁମାର । ସେମାନେ ଥିଲେ ପରୋପକାରୀ । ସେମାନେ ସବୁବେଳେ ଅନ୍ୟର ଭଲ ଚାହୁଁଥିଲେ; ପୀଡ଼ିତ ଲୋକର ଚିକିତ୍ସା କରୁଥିଲେ । ସେମାନେ ମଧ୍ୟ ଚାହୁଁଥିଲେ ମଧୁବିଦ୍ୟା ଶିଖିବା ପାଇଁ । ଋଷି ପରୀକ୍ଷା କରି ବୁଝିନେଲେ ଯେ ଅଶ୍ୱିନୀକୁମାରଦ୍ୱୟଙ୍କର ମଧୁବିଦ୍ୟା ଶିଖିବାର ଯୋଗ୍ୟତା ଅଛି । ତେଣୁ ଗୁରୁ ହିସାବରେ ସେ ଦୁହିଙ୍କୁ ତାହା ଶିଖାଇବାକୁ ପଡ଼ିବ । କିନ୍ତୁ ପରକ୍ଷଣରେ ଇନ୍ଦ୍ରଙ୍କ ଅଭିଶାପ କଥା ତାଙ୍କର ମନେ ପଡ଼ିଲା । ଏହି ଉପଦେଶ ଦେବା ପରେ ତାଙ୍କ ମୁଣ୍ଡ

ଛିନ୍ନ ହିବ ବୋଲି ଇନ୍ଦ୍ର ଯେଉଁ ଅଭିଶାପ ଦେଇଥିଲେ, ସେ କଥା ସେ ଅଶ୍ୱିନୀକୁମାରଦ୍ୱୟଙ୍କୁ କହିଲେ । ଅଶ୍ୱିନୀକୁମାରଦ୍ୱୟଙ୍କ ସୂକ୍ଷ୍ମ ଶଲ୍ୟ ଚିକିତ୍ସା (plastic surgery) ମାଲୁମ ଥିଲା । ତେଣୁ ସେ ଦୁହେଁ ଗୋଟିଏ ଉପାୟ ବାହାର କଲେ । ପ୍ରଥମେ ଋଷିଙ୍କର ମୁଣ୍ଡ କାଟି ଅଲଗା କରି ଦିଆଯିବ ଏବଂ ସେହି ସ୍ଥାନରେ ଘୋଡ଼ା-ମୁଣ୍ଡଟିଏ ଲଗାଇ ଦିଆଯିବ । ଋଷି ସେହି ଘୋଡ଼ା ମୁହଁରେ 'ମଧୁବିଦ୍ୟା' ସମ୍ପର୍କରେ ଉପଦେଶ ଦେବେ । ଏହା ପରେ ସେହି ଘୋଡ଼ା-ମୁଣ୍ଡଟି ଇନ୍ଦ୍ରଙ୍କ ଅଭିଶାପ ବଳରେ ଛିନ୍ନ ହିବ । ସେତେବେଳେ ଅଶ୍ୱିନୀକୁମାରଦ୍ୱୟ ଋଷିଙ୍କ ମୁଣ୍ଡକୁ ଆଣି ଠିକଣା ଜାଗାରେ ଯୋଡ଼ିଦେବେ । ଏହି ଅନୁଯାୟୀ କାର୍ଯ୍ୟ କରାଗଲା । ଅଶ୍ୱିନୀକୁମାରଦ୍ୱୟ ଘୋଡ଼ା ମୁହଁ ଦେଇ ଋଷିଙ୍କଠାରୁ 'ମଧୁବିଦ୍ୟା' ସମ୍ପର୍କୀୟ ଉପଦେଶ ଶୁଣିଲେ ଏବଂ ଏହି ମୁଣ୍ଡଟି ଛିନ୍ନ ହିବା ପରେ ତାଙ୍କ ନିଜ ମୁଣ୍ଡଟିକୁ ଆଣି ସେହି କଟା ଯାଗାରେ ପୁଣି ଯୋଡ଼ି ଦେଲେ ।

ପରେ ଏଭଳି ସମୟ ଆସିଲା, ଯେତେବେଳେ କି ବୃତ୍ରାସୁରକୁ ଦମନ କରିବା ପାଇଁ ଏହି ଦଧୀଚ୍ ଆଥର୍ବଣଙ୍କର ଅସ୍ଥିର ଆବଶ୍ୟକତା ହେଲା । ଏହାଙ୍କ ଅସ୍ଥିରେ ନିର୍ମିତ ବଜ୍ରରେ ହିଁ ବୃତ୍ରକୁ ମାରି ହେବ ; ନ ହେଲେ ନାହିଁ । ଶେଷରେ ଇନ୍ଦ୍ର ଆସି ଦଧୀଚ୍ ଆଥର୍ବଣଙ୍କ ପାଖରେ ପହଞ୍ଚିଲେ ଏବଂ ତାଙ୍କୁ ପୂର୍ବକୃତ ଅପରାଧ ଲାଗି କ୍ଷମା ମାଗିଲେ ; ଆଉ ମଧ୍ୟ ବଜ୍ର ତିଆରି କରିବା ଲାଗି ତାଙ୍କୁ ଅସ୍ଥି ମାଗିଲେ । ଯେଉଁ ଘୋଡ଼ା ମୁଣ୍ଡ ଧରି ଋଷି ଅଶ୍ୱିନୀକୁମାରଦ୍ୱୟଙ୍କୁ ମଧୁବିଦ୍ୟା ଶିଖାଇଥିଲେ, ତାହା ଥିଲା ଖୁବ୍ ଟାଣ । ବିଶେଷ କରି ତାହା ମଧ୍ୟ ଦେଇ ମଧୁବିଦ୍ୟା ନିଃସୃତ ହେବା ଫଳରେ ତାହା ବଜ୍ରଠାରୁ ଆହୁରି ଟାଣ ହୋଇ ଯାଇଥିଲା । ସେହି ମୁଣ୍ଡଟିକୁ ପୋତା ହୋଇ ରଖା ଯାଇଥିଲା । ତାହାକୁ ଏବେ ଉଦ୍ଧାର କରାଗଲା ଏବଂ ଇନ୍ଦ୍ର ସେହି ଅସ୍ଥିରେ ବଜ୍ର ତିଆରି କରି ବୃତ୍ରାସୁର ଓ ଅନ୍ୟାନ୍ୟ ଦସ୍ୟୁମାନଙ୍କୁ ନିପାତ କଲେ । ସମାଜର ମଙ୍ଗଳ ଲାଗି ଦଧୀଚ୍ ଆଥର୍ବଣଙ୍କର ଏହି ଦାନ ଚିରଦିନ ଲାଗି ଅମରାକ୍ଷରରେ ଲିପିବଦ୍ଧ ହୋଇ ରହିଲା ।

ଏହି ଗଳ୍ପଟିକୁ ଅନୁଧ୍ୟାନ କଲେ ଆମକୁ ନିମ୍ନଲିଖିତ ନିଷ୍କର୍ଷ ମିଳି ପାରିବ :

(କ) ବୈଦିକ କାଳରେ ବିଦ୍ୟାଦାନ କଲାବେଳେ, ସମ୍ପୃକ୍ତ ବ୍ୟକ୍ତିର ତାହା ପାଇବା ପାଇଁ ଯୋଗ୍ୟତା ଅଛି କି ନାହିଁ, ତାହା ବିଚାର କରା ଯାଉଥିଲା । ଅପାତ୍ରରେ ବିଦ୍ୟା-ଦାନ କରା ଯାଉ ନଥିଲା ।

(ଖ) ଆସନରେ ବଡ଼ ସାନ ଭେଦକୁ ବିଦ୍ୟାଦାନ କରିବା କ୍ଷେତ୍ରରେ ବିଚାରକୁ ଆଦୌ ନିଆଯାଉ ନଥିଲା । ତେଣୁ ଦଧୀଚ୍ ଆଥର୍ବଣଙ୍କ ବିଚାରରେ ଦେବତାମାନଙ୍କର ରାଜା ଇନ୍ଦ୍ର 'ମଧୁବିଦ୍ୟା' ଲାଭ କରିବାକୁ ଅଯୋଗ୍ୟ

ବିବେଚିତ ହୋଇଥିଲା ବେଳେ ଅଶ୍ୱିନୀକୁମାର ଦ୍ୱୟ ସେଥିପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ ।

(ଗ) ବ୍ରହ୍ମଜ୍ଞାନୀମାନଙ୍କର ସମାଜରେ ଖୁବ୍ ପ୍ରତିଷ୍ଠା ଥିଲା । ଏପରି କି ଦେବତାମାନେ ମଧ୍ୟ ସେମାନଙ୍କଠାରୁ ବିଦ୍ୟାଶିକ୍ଷା କରିବା ପାଇଁ ଆସୁଥିଲେ ।

(ଘ) ବୈଦିକ କାଳରେ ସୂକ୍ଷ୍ମ ଶଲ୍ୟ ଚିକିତ୍ସା ପଦ୍ଧତି (plastic surgery) ପ୍ରଚଳିତ ଥିଲା ।

## ଦେବତାମାନଙ୍କ ଗର୍ବ ଖର୍ବ ହେବା ଆଖ୍ୟାନ :

ଏହି ଆଖ୍ୟାନଟି କେନୋପନିଷଦରେ ଅଛି । ପ୍ରକୃତ ଶକ୍ତିର ଉତ୍ସ ଯେ ହେଉଛନ୍ତି ପରଂବ୍ରହ୍ମ, ସେହି କଥା ଏହି ଗଳ୍ପଟିରେ ପ୍ରତିପାଦିତ । ବ୍ରହ୍ମ ଅତି ପାଖରେ ଅଛନ୍ତି ; ଅଥଚ ସେ ଅଛନ୍ତି ବହୁ ଦୂରରେ । ଜାଣିବା ଲୋକଙ୍କ ପାଇଁ ସେ ଅତି ପାଖରେ ; କିନ୍ତୁ ନ ଜାଣିବା ଲୋକଙ୍କ ପାଇଁ ସେ ଖୁବ୍ ଦୂରରେ । ଆଖି ଦ୍ୱାରା ତାଙ୍କୁ ଦେଖି ହୁଏ ନାହିଁ ; ଅଥଚ ତାଙ୍କରି ସାହାଯ୍ୟରେ ଆଖି ଦେଖିପାରେ । କାନ ଦ୍ୱାରା ତାଙ୍କୁ ଶୁଣି ହୁଏ ନାହିଁ ; ଅଥଚ ତାଙ୍କରି ସାହାଯ୍ୟରେ କାନ ଶୁଣି ପାରେ । ଆମେ ଯାହା କରୁଛୁ, ତାହା କେବଳ ନିମିତ୍ତ ମାତ୍ର ହୋଇ କରୁଛୁ । ସବୁ ଚାଲିଛି ଏକ ପରମ ଶକ୍ତିଙ୍କ ନିୟନ୍ତ୍ରଣରେ । ସେ ହେଉଛନ୍ତି ପରଂବ୍ରହ୍ମ । ତାଙ୍କରି ମହିମା ଏହି ଗଳ୍ପଟିରେ ଉଦ୍‌ଘୋଷିତ । ଗଳ୍ପଟିର କଥାବସ୍ତୁ ସଂକ୍ଷେପରେ ହେଲା :

ଥରେ ଦେବାସୁର ସଂଗ୍ରାମରେ ଦେବତାମାନେ ବିଜୟୀ ହୋଇ ଉଠିଲେ । ସେଥିରେ ସେମାନଙ୍କ ମନରେ ଖୁବ୍ ଗର୍ବ ଆସିଲା । ପ୍ରତ୍ୟେକ ଦେବତା ନିଜ ଶକ୍ତି ନେଇ ଅଭିମାନ କରି କହିବାକୁ ଲାଗିଲେ ଯେ ତାଙ୍କରି ଯୋଗରୁ ହିଁ ଏହି ବିଜୟ ସମ୍ଭବ ହୋଇ ପାରିଛି । ଦେବତାମାନେ ଯେ ଶକ୍ତିର ଉତ୍ସ ନୁହନ୍ତି ଏବଂ ତାଙ୍କ ଉପରେ ଯେ ଆଉ ଗୋଟିଏ ଶକ୍ତିର ଉତ୍ସ ଥିଲା ଭଳି ସତ୍ତା ଅଛନ୍ତି, ସେମାନେ ଆତ୍ମାଭିମାନରେ ଅନ୍ଧ ହୋଇ ତାହା ଭୁଲିଗଲେ । ପରମାତ୍ମା ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବାକୁ ଚାହିଁଲେ । ସେ ଏକ ବିରାଟ ଯକ୍ଷ ରୂପ ଧରି ଆକାଶରେ ବିଦ୍ୟମାନ ରହିଲେ । ଦେବତାମାନେ ଏହି ରୂପ ଦେଖି ଅତି ମାତ୍ରାରେ ଚମତ୍କୃତ ହୋଇଗଲେ ; କିନ୍ତୁ କେହି ତାଙ୍କର ଆଦି କି ଅନ୍ତ କିଛି ପାଇଲେ ନାହିଁ ; ତାଙ୍କ ପରିଚୟ କ'ଣ ସେମାନେ ଜାଣି ପାରିଲେ ନାହିଁ । ଅଗ୍ନି-ଦେବତା ହେଉଛନ୍ତି ସବୁ ଦେବତାଙ୍କ ମଧ୍ୟରେ ଅଗ୍ରଣୀ । ତାଙ୍କ ମାଧ୍ୟମରେ ସବୁ ଦେବତାଙ୍କୁ ହବି ଅର୍ପଣ କରି

ଯାଇଥାଏ । ତେଣୁ ଦେବତାମାନେ ତାଙ୍କୁ ଯକ୍ଷରୂପୀ ପରମାତ୍ମାଙ୍କ ନିକଟକୁ ପଠାଇଲେ ।

ଅଗ୍ନି ବାହ୍ୱାଦୁମ୍ବ ଦେଖାଇ ତାଙ୍କ ଶକ୍ତି ବିଷୟରେ ବହୁତ କଥା ଯକ୍ଷଙ୍କ ଆଗରେ କହିଗଲେ । ପାଖରେ ପଡ଼ିଥିବା ଗୋଟିଏ ଶୁଖିଲା ଘାସକୁ ଜାଳି ଦେବା ପାଇଁ ଯକ୍ଷ ଅଗ୍ନିଙ୍କୁ କହିଲେ । ଅଗ୍ନି ଶତ ଚେଷ୍ଟା କଲେ ମଧ୍ୟ ତାହା ଜାଳି ପାରିଲେ ନାହିଁ । ତାଙ୍କ ପରେ ଆସିଲେ ମାତରିଶ୍ୱା (ବାୟୁ) । ତାଙ୍କୁ ଘାସଟିକୁ ଉଡ଼ାଇ ନେବା ଲାଗି ଯକ୍ଷ କହିଲେ । ସେ ବହୁତ ଚେଷ୍ଟା କଲେ; କିନ୍ତୁ ପାରିଲେ ନାହିଁ । ତା'ପରେ ଦେବତାମାନଙ୍କ ରାଜା ଇନ୍ଦ୍ରଙ୍କୁ ଖବର ଦିଆ ଯିବାରେ ସେ ଆସି ପହଞ୍ଚିଲେ । ସେତେବେଳକୁ କିନ୍ତୁ ଯକ୍ଷରୂପୀ ପରମାତ୍ମା ଅଦୃଶ୍ୟ ହୋଇ ଯାଇଥିଲେ । ସେତେବେଳେ ଆକାଶରୁ ସହସ୍ର ବିଦ୍ୟୁତର ଚମକକୁ ନିନ୍ଦା କରି ଗୋଟିଏ ମୂର୍ତ୍ତିଙ୍କର ଆବିର୍ଭାବ ହେଲା । ସେ ହେଉଛନ୍ତି ଉମା ହୈମବତୀ—ସାକ୍ଷାତ୍ ବ୍ରହ୍ମବିଦ୍ୟା—ପରମାତ୍ମାଙ୍କର ଶକ୍ତି । ତାଙ୍କୁ ଦେଖି ଇନ୍ଦ୍ରାଦି ଦେବତାମାନେ ଭକ୍ତିପୂର୍ଣ୍ଣ ସ୍ତୁତି କଲେ । ସେ ଦେବତାମାନଙ୍କୁ ବୁଝାଇ ଦେଲେ ଯେ ସେମାନେ ଯେଉଁ ଯକ୍ଷ ମୂର୍ତ୍ତିଙ୍କୁ ଦେଖିଥିଲେ ସେ ହେଉଛନ୍ତି ବ୍ରହ୍ମ—ସକଳ ଶକ୍ତିର ମୂଳ ଉତ୍ସ । ତାଙ୍କ ଶକ୍ତି ବିନା ଦେବ, ବା ଦାନବ ବା ମନୁଷ୍ୟ କେହି କିଛି କରି ପାରିବେ ନାହିଁ । ଅତଏବ, ଦେବତାମାନଙ୍କର ଯେ କିଛି ସ୍ୱତନ୍ତ୍ର ଶକ୍ତି ଅଛି, ସେ କଥା ଭାବିବା ଭ୍ରମାତ୍ମକ । ସେମାନେ ବ୍ରହ୍ମଙ୍କର ଶକ୍ତିରେ ଶକ୍ତିମାନ । ଏହା ଶୁଣିବା ପରେ ଦେବତାମାନଙ୍କର ଭ୍ରମ ଦୂର ହୋଇଗଲା । ଦେବାସୁର ଯୁଦ୍ଧରେ ସେହି ପରମାତ୍ମାଙ୍କ ଇଚ୍ଛା, ନିର୍ଦ୍ଦେଶ ଓ ଶକ୍ତି ବଳରେ ଯେ ଦେବତାମାନେ ବିଜୟ ହାସଲ କରିଛନ୍ତି ଏଥିରେ ସେମାନଙ୍କର ଆଉ କୌଣସି ସନ୍ଦେହ ରହିଲା ନାହିଁ ।

ଏହି ଗଳ୍ପଟିକୁ ଅନୁଧ୍ୟାନ କଲେ ଆମେ ଜାଣି ପାରିବା ଯେ ଉପନିଷଦ୍-ଯୁଗ ଏକ ଗଭୀର ଅନୁସନ୍ଧିତ୍ସାର ବାତାବରଣ ସୃଷ୍ଟି କରିଥିଲା । ଆର୍ଯ୍ୟ ଋଷିମାନେ ଜୀବନ ସମ୍ପର୍କୀୟ ନାନା ପ୍ରକାର ପ୍ରଶ୍ନର ଉତ୍ତର ଜିଜ୍ଞାସା କରିବାକୁ ଲାଗୁଥିଲେ । ପ୍ରକୃତ ସତ୍ୟ କ'ଣ, ଜୀବନର ପ୍ରକୃତ ଲକ୍ଷ୍ୟ କ'ଣ, ଏହା କପରି ଆସେ ଏବଂ କପରି କେଉଁଠିକି ଯାଏ ଆଦି ନାନା ପ୍ରକାର ପ୍ରଶ୍ନ ସେମାନଙ୍କ ମୁଣ୍ଡକୁ ଘାରିବାକୁ ଲାଗିଲା । ଏହି ପ୍ରକାର ପ୍ରଶ୍ନଗୁଡ଼ିକର ସମାଧାନ ଖୋଜି ଖୋଜି ଯେଉଁ ବିରାଟ ଗ୍ରନ୍ଥଗୁଡ଼ିକର ସୃଷ୍ଟି ହେଲା, ସେଗୁଡ଼ିକୁ କୁହାଗଲା 'ଉପନିଷଦ୍' ଏବଂ ଯେଉଁ ମହନୀୟ ଦର୍ଶନର ସୃଷ୍ଟି ହେଲା, ତାହାକୁ କୁହାଗଲା 'ବେଦାନ୍ତ ଦର୍ଶନ' । ଏ ପ୍ରକାର ଅନୁସନ୍ଧିତ୍ସା ଏପରି ଭାବରେ ଉପନିଷଦୀୟ ମନୀଷୀମାନଙ୍କ ମନକୁ ଆନ୍ଦୋଳିତ କରୁଥିଲା ସେ ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ନେହେରୁ ଯଥାର୍ଥରେ କହୁଛନ୍ତି :

"The Upanishads are instinct with a spirit of enquiry, of mental adventure, of a passion for finding out the truth about things. The search for this truth is, of course, not by the objective methods of modern science ; yet there is the element of the scientific method in the approach.

× × × ×

The emphasis is essentially on self-realisation, on knowledge of the individual self and the absolute self, both of which are said to be the same in essence." (୨୨)

ବୈଦିକ ସଂହିତା କାଳରେ ଯେ ସକଳ ଶକ୍ତିର ଉତ୍ସ ଏକମାତ୍ର ପରମାତ୍ମାଙ୍କ ବିଷୟରେ ଧାରଣା ଋଷିମାନଙ୍କର ନଥିଲା, ତାହା ନୁହେଁ । ତାହା ନିଶ୍ଚିତ ଭାବରେ ଥିଲା । କାରଣ ଋଗ୍‌ବେଦର ଋଷି ତ ସ୍ପଷ୍ଟ ଭାବରେ କହିଛନ୍ତି, 'ଏକଂ ସଦ୍‌ବିପ୍ରାଃ ବହୁଧା ବଦନ୍ତି' । ଅର୍ଥାତ୍ ସେହି ଏକଙ୍କୁ ସତ୍ୟାନୁସନ୍ଧାନୀ ଜ୍ଞାନୀ ବ୍ୟକ୍ତିମାନେ ବହୁ ପ୍ରକାର କହିଥାନ୍ତି । ଏକ ଦେବତାଙ୍କ ବିଷୟରେ ଧାରଣା ନଥିଲେ ଏଭଳି କଥା କୁହା ଯାଇ ନଥାନ୍ତା । କିନ୍ତୁ ଏହି ଧାରଣାଟି ସେତେବେଳେ ସେ ଭଳି ସ୍ପଷ୍ଟ ନଥିଲା ; ଭଲ ଭାବରେ ବିକଶିତ ହୋଇ ପାରି ନଥିଲା । ଉପନିଷଦ-ଯୁଗରେ ଏହି ଚିନ୍ତାଧାରାର ବହୁଳ ବିକାଶ ଘଟିଥିଲା ଏବଂ ଏହି ଶକ୍ତିଙ୍କୁ 'ବ୍ରହ୍ମ' ନାମରେ ନାମିତ କରା ଯାଇଥିଲା ।

**ସତ୍ୟକାମ ଜାବାଳ ଆଖ୍ୟାନ :**

ଏହି ଆଖ୍ୟାନଟି ଛାନ୍ଦୋଗ୍ୟ ଉପନିଷଦରେ ବର୍ଣ୍ଣନା କରା ଯାଇଛି । ଏଥିରେ ସେ ସମୟର ଦାସତ୍ୱ ପ୍ରଥା ଭଳି କେତେକ ସାମାଜିକ ଚଳଣି, ଏହି ପ୍ରଥାରେ ଦାସୀର ସ୍ଥାନ, ପ୍ରକୃତ ବ୍ରାହ୍ମଣର ପରିଚୟ ଆଦି ବିଷୟରେ କେତେକ ସୂଚନା ଦିଆ ଯାଇଛି । ବର୍ଣ୍ଣର ନିର୍ଣ୍ଣୟ କ୍ଷେତ୍ରରେ କି ପ୍ରକାର ମତଭେଦ ଓ ସଂଘର୍ଷ ସେତେବେଳେ ସମାଜକୁ ଘାରି ବସିଥିଲା, ତାହାର ମଧ୍ୟ ସମ୍ୟକ୍ ସୂଚନା ଆମେ ଏହି ଗଳ୍ପଟିରୁ ପାଇଥାଉଁ । ସଂକ୍ଷେପରେ ଗଳ୍ପଟିର କଥାବସ୍ତୁ ନିମ୍ନରେ ଦର୍ଶା ଯାଉଛି :

ଜବାଲା ବୋଲି ଦାସୀଟିଏ ଥିଲା । ତା'ର ପୁଅର ନାଁ ଥିଲା ସତ୍ୟକାମ । ଜବାଲାର ପୁଅ ବୋଲି ଲୋକେ ତା'କୁ ସତ୍ୟକାମ ଜାବାଳ ବୋଲି ଡାକୁଥିଲେ । ସେତେବେଳେ

ଗୌତମ ଋଷି ଥିଲେ ଖୁବ୍ ବିଖ୍ୟାତ । ତାଙ୍କ ଆଶ୍ରମରେ ସେ ବାଛି ବାଛି ବ୍ରହ୍ମଜ୍ଞାନ ପାଇଁ ଯୋଗ୍ୟ ବ୍ରାହ୍ମଣ ଶିଷ୍ୟମାନଙ୍କୁ ଗ୍ରହଣ କରୁଥିଲେ । ସତ୍ୟକାମର ଖୁବ ଇଚ୍ଛା ହେଲା ଗୌତମଙ୍କ ପାଖରେ ଯାଇ ପଢ଼ିବାକୁ । ପାଠ ପଢ଼ିବା ପାଇଁ ବାପା ନେଇ ଗୁରୁ-ଆଶ୍ରମରେ ଛାଡ଼ି ଦେଇ ଆସନ୍ତି । ସତ୍ୟକାମର ଜାଣିବାରେ କେହି ବାପା ନଥିଲେ । ତେଣୁ ତା'କୁ ଏକା ଏକା ଋଷିଙ୍କ ଆଶ୍ରମକୁ ଯିବାକୁ ପଡ଼ିଥିଲା । ଋଷି ସତ୍ୟକାମ ଉପରେ ଖୁସି ହୋଇ ତା'କୁ ଶିଷ୍ୟ ରୂପରେ ଗ୍ରହଣ କରିବା ପାଇଁ ସ୍ୱୀକୃତ ଦେଲେ ; କିନ୍ତୁ ତତ୍ପୂର୍ବରୁ ତା'ର ଗୋତ୍ର ଓ ବାପାଙ୍କ ନାଁ ଜଣାଇବା ପାଇଁ କହିଲେ । କାରଣ ସେଥିରୁ ଜାଣି ହେବ ସେ ବ୍ରାହ୍ମଣ ବଂଶଜ କି ନୁହେଁ । ସତ୍ୟକାମକୁ ବାପାଙ୍କ ନାଁ କିମ୍ବା ଗୋତ୍ର କିଛି ଜଣା ନଥିଲା । ସେ ମାଆଙ୍କୁ ପଚାରି ପରେ ଜଣାଇବ ବୋଲି କହି ପୁଣି ଘରକୁ ଫେରି ଆସିଲା । ମାଆଙ୍କୁ ପଚାରିବାରେ ସେ କହିଲେ :

"ବହ୍ୱହଂ ଚରନ୍ତୀ ପରିଚାରିଣୀ ଯୌବନେ ତ୍ୱାମଲଭେ ।
ନ ଜାନେ ଙ୍କ ଗୋତ୍ରୋଽସି ॥"

ଅର୍ଥାତ୍ ମୁଁ ବହୁ ଘରେ ଦାସୀ ହୋଇ ବୁଲୁଥିଲି । ମୋ'ର ଯୌବନ ଥିଲା । ସେହି ସମୟରେ ତତେ ମୁଁ ପାଇଛି । ତେଣୁ ତୋ'ର ଗୋତ୍ର କ'ଣ, ତାହା ମୁଁ କହି ପାରିବି ନାହିଁ ।

ସତ୍ୟକାମ ଗୌତମଙ୍କ ଆଶ୍ରମକୁ ଫେରିଯାଇ ମାଆଙ୍କ କହିବା ଅନୁସାରେ ନିଜର ଗୋତ୍ର-ପରିଚୟ ଦେଲା । ଅନ୍ୟ ଶିଷ୍ୟମାନେ ଅଟ୍ଟହାସ ହସି ହସିଲେ । କିନ୍ତୁ ଗୌତମ ଅତି ଖୁସି ହୋଇଯାଇ ସତ୍ୟକାମକୁ କୁଣ୍ଢାଇ ଧରିଲେ ଏବଂ ସେ ପ୍ରକୃତ ବ୍ରାହ୍ମଣ ପିଲା ବୋଲି କହି ତାକୁ ଶିଷ୍ୟ କରିନେଲେ । ତାଙ୍କର ଯୁକ୍ତି ହେଲା, ଯେଉଁ ମାଆ ଏଭଳି ସତ୍ୟ ଘଟଣାକୁ ପୁଅ ଆଗରେ ଲାଜ ସରମ ଛାଡ଼ି ନିର୍ବିକାର ଭାବରେ କହି ପାରନ୍ତି ଏବଂ ଯେଉଁ ପୁଅ ସର୍ବସାଧାରଣଙ୍କ ଆଗରେ ନିଷ୍କମ୍ପ ଚିତ୍ତରେ ଏଭଳି ଆତ୍ମପରିଚୟ ଦିଏ, ସେମାନେ ବ୍ରାହ୍ମଣ ନୁହନ୍ତି ତ ଆଉ କ'ଣ ? ତାଙ୍କ କହିବାର ତାତ୍ପର୍ଯ୍ୟ ହେଲା, ଲୋକ ଜନ୍ମରେ ବ୍ରାହ୍ମଣ କିମ୍ବା ଅବ୍ରାହ୍ମଣ ହୁଏ ନାହିଁ । ତାହା ହେବା ନହେବା ତା'ର କର୍ମ ଉପରେ ନିର୍ଭରଶୀଳ । ସେଥିପାଇଁ ପରି ଶାସ୍ତ୍ରରେ କୁହା ଯାଇଛି :

"ଜନ୍ମନା ଜାୟତେ ଶୂଦ୍ରଃ
ସଂସ୍କାରାଦ୍ ଦ୍ୱିଜ ଉଚ୍ୟତେ ।
ବେଦାଭ୍ୟାସାଦ୍ ଭବେଦ୍ ବିପ୍ରଃ
ବ୍ରହ୍ମ ଜାନାତି ବ୍ରାହ୍ମଣଃ ।"

ଅର୍ଥାତ୍ ମଣିଷ ପ୍ରଥମେ ଶୂଦ୍ର ଭାବରେ ଜନ୍ମ ହୋଇଥାଏ । ସଂସ୍କାର କର୍ମ ଦ୍ୱାରା ସେ ଦ୍ୱିଜ ହୁଏ । ବେଦ ପାଠ କଲେ ସେ ବିପ୍ର ହୁଏ । ତା'ର ବ୍ରହ୍ମ-ଜ୍ଞାନ ଆସିଲେ ସେ ହୁଏ ବ୍ରାହ୍ମଣ । ବ୍ରହ୍ମ ହେଉଛନ୍ତି ଚିରନ୍ତନ ସତ୍ୟ । ଏହି ଚିରନ୍ତନ ସତ୍ୟର ଉପଲବ୍ଧି ଯେ କରିଛନ୍ତି ସେହି ହିଁ ହେଉଛନ୍ତି ବ୍ରାହ୍ମଣ । ଅତଏବ, ବ୍ରାହ୍ମଣଙ୍କୁ ସର୍ବଦା ସତ୍ୟନିଷ୍ଠ ରହିବାକୁ ହେବ । ସତ୍ୟକାମର ଏଭଳି ସତ୍ୟନିଷ୍ଠତା ଦେଖି ଗୌତମ ତାକୁ ବ୍ରାହ୍ମଣ ବୋଲି ସ୍ୱୀକାର କରିଥିଲେ ।

ପରେ ପରେ ଗୌତମ ସତ୍ୟକାମକୁ ଆଉ ଗୋଟିଏ କ୍ଷେତ୍ରରେ ମଧ୍ୟ ପରୀକ୍ଷା କରିଥିଲେ । ତାଙ୍କର ଚାରି ଶହ ଗୋରୁଥିବା ପଲଟିକୁ ସେ ସତ୍ୟକାମର ଜିମା ଦେଇଦେଲେ ଏବଂ ତା'କୁ ଗୋରୁପଲ ସହିତ ଏକାକୀ ଜଙ୍ଗଲକୁ ଚରାଇବା ଲାଗି ଯିବା ପାଇଁ କହିଲେ । ଆଉ ମଧ୍ୟ ସେ କହିଲେ ଯେ ଗୋରୁଙ୍କ ସଂଖ୍ୟା ଏକ ହଜାର ହେଲେ ଯାଇ ତା'କୁ ଆଶ୍ରମକୁ ଫେରିବାକୁ ହେବ । ସତ୍ୟକାମ ନିର୍ବିକାର ଚିତ୍ତରେ ଗୁରୁଙ୍କର ଏହି ଆଦେଶଟି ପାଳିଲା ଏବଂ ଗୋରୁ ପଲ ଧରି ଜଙ୍ଗଲ ଭିତରକୁ ଚାଲିଗଲା । ତା'ର ନିଷ୍ଠାପୂର୍ଣ୍ଣ ପରିଚର୍ଯ୍ୟା ଫଳରେ ଗୋରୁଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା ଏବଂ ତାହା ଯଥାଶୀଘ୍ର ଏକ ହଜାରରେ ପହଞ୍ଚିଲା । ସେତେବେଳେ ସେ ଆଶ୍ରମକୁ ଫେରି ଆସି ଗୁରୁଙ୍କୁ ପ୍ରଣାମ କଲା । ଗୁରୁ ତା'ର ନିଷ୍ଠାପର ସେବାରେ ଖୁବ୍ ପ୍ରୀତ ହେଲେ । ସେ ଗୁରୁ-ଆଶ୍ରମରେ ରହି ଗୌତମଙ୍କଠାରୁ ବହୁ ବିଦ୍ୟା ଶିକ୍ଷା କଲା ଏବଂ ଶେଷରେ ଜଣେ ଜ୍ଞାନୀ ଲୋକ ହୋଇ ପାରିଲା ।

ଏହି ଆଖ୍ୟାନଟିକୁ ଅନୁଧ୍ୟାନ କଲେ ଆମେ ନିମ୍ନଲିଖିତ ନିଷ୍କର୍ଷରେ ପହଞ୍ଚି ପାରିବା :

(କ) ଉପନିଷଦ-ଯୁଗରେ ଦାସତ୍ୱ ପ୍ରଥା ପ୍ରଚଳିତ ଥିଲା ଏବଂ ଦାସ-ଦାସୀମାନଙ୍କର ସାମାଜିକ ସ୍ଥିତି ବଡ଼ ଦୟନୀୟ ଥିଲା ।

(ଖ) ଦାସୀମାନେ ମାଲିକମାନଙ୍କ ଯୌନ-ଅତ୍ୟାଚାରର ଶିକାର ହେଉଥିଲେ । ଏଭଳି ଯୌନଚର୍ଯ୍ୟା ଫଳରେ ଉତ୍ପନ୍ନ ସନ୍ତାନସନ୍ତତିମାନେ ପିତୃତ୍ୱ-ପରିଚୟରୁ ବଞ୍ଚିତ ହେଉଥିଲେ । ଏହାର ତାତ୍ପର୍ଯ୍ୟ ହେଲା ସେମାନେ ପିତାଙ୍କ ସମ୍ପତ୍ତିର ଉତ୍ତରାଧିକାରୀ ହୋଇ ପାରୁ ନଥିଲେ । ସେମାନେ କେବଳ ମାତାଙ୍କ ସନ୍ତାନ ଭାବରେ ନିଜର ପରିଚୟ ଦେଇ ପାରୁଥିଲେ ।

(ଗ) ଦାସୀମାନଙ୍କ ଗର୍ଭରୁ ଜାତ ସନ୍ତାନମାନେ ପିତୃକୁଳର ଗୋତ୍ର ମଧ୍ୟ ଗ୍ରହଣ କରି ପାରୁ ନଥିଲେ ।

(ଘ) କର୍ମ ଅନୁସାରେ କମ୍ବା ଜନ୍ମ ଅନୁସାରେ ବର୍ଣ୍ଣନିର୍ଣ୍ଣୟ କରାଯିବ, ସେ ବିଷୟରେ ସେତେବେଳେ ବିବାଦୀୟ ମତ ଥିଲା । ଗୋଟିଏ ଗୋଷ୍ଠୀ ଜନ୍ମ ଅନୁସାରେ ବର୍ଣ୍ଣକୁ ଦାବି କରୁଥିଲା ବେଳେ ଅପର ଗୋଷ୍ଠୀ ଗୁଣ ଓ କର୍ମ ଅନୁସାରେ ତାହା ସ୍ଥିର କରିବା ପାଇଁ ମତ ଦେଉଥିଲେ । ଶେଷୋକ୍ତ ଗୋଷ୍ଠୀର ମତଟି ଅଧିକତର ଯୁକ୍ତିନିଷ୍ଠ ଥିବାରୁ ତାହା ସମାଜ ଗ୍ରହଣ କରିଥିଲା । ସେଥିପାଇଁ ଉପନିଷଦ-କାହାଣୀମାନଙ୍କରେ ସେହି ମତକୁ ମାନ୍ୟତା ଦିଆ ହୋଇ ଆସିଛି ।

ଉପରେ ଆଲୋଚିତ ହୋଇଥିବା ଆଖ୍ୟାନମାନଙ୍କୁ ଛାଡ଼ି ଦେଲେ ଆହୁରି ଅନେକ ଆଖ୍ୟାନ ଅଛି, ଯାହା କି ବୈଦିକ ସାହିତ୍ୟରେ ବର୍ଣ୍ଣିତ । ସବୁ ଆଖ୍ୟାନଗୁଡ଼ିକ ସମସାମୟିକ ଧର୍ମ-ଧାରଣା, ଆଧ୍ୟାତ୍ମିକ ଅନୁସନ୍ଧିତ୍ସା, ସାମାଜିକ-ସାଂସ୍କୃତିକ ସମସ୍ୟାବଳୀକୁ ଆଧାର କରି ଗଢ଼ି ଉଠିଛି । ସାଧାରଣ ଭାବରେ ବିଚାର କଲେ ଆମେ ସମସ୍ତ ବୈଦିକ ଆଖ୍ୟାନ ଅନୁଧ୍ୟାନ ଫଳରେ ନିମ୍ନଲିଖିତ ନିର୍ଣ୍ଣୟମାନ କରି ପାରିବା :

(କ) ଏଗୁଡ଼ିକ ପୃଥିବୀର ସର୍ବପ୍ରାଚୀନ ଆଖ୍ୟାନ ; ତେଣୁ ଅନ୍ୟାନ୍ୟ ଦେଶର କେତେକ ଆଖ୍ୟାନ ଉପରେ ଏଗୁଡ଼ିକର ପ୍ରଭାବ ପଡ଼ିଛି । ପାଶ୍ଚାତ୍ୟ ଦେଶ-ଗୁଡ଼ିକ ମଧ୍ୟ ଏଥିରୁ ବାଦ ଯାଇ ନାହାନ୍ତି ।

(ଖ) କେତେକ ଆଖ୍ୟାନ ଐତିହାସିକ ଘଟଣାବଳୀ ଉପରେ ଆଧାରିତ । କାଳକ୍ରମେ ଇତିହାସ ପାରମ୍ପରିକ ଆଖ୍ୟାନ ଭାବରେ ରୂପାନ୍ତରିତ ହୋଇ ଯାଇଛି ।

(ଗ) ବୈଦିକ ଆଖ୍ୟାନଗୁଡ଼ିକ ସ୍ଥିର ହୋଇ ରହି ନାହାନ୍ତି । ଅନ୍ୟ ପକ୍ଷରେ ଏଗୁଡ଼ିକ ଅଛନ୍ତି ସଦା ଚଳମାନ । ଏହି ଆଖ୍ୟାନଗୁଡ଼ିକ ପୌରାଣିକ ରୂପାନ୍ତରୀକରଣ ବେଳକୁ ପରିବର୍ତ୍ତିତ ରୂପ ନେଇଛନ୍ତି ।

(ଘ) ଏଗୁଡ଼ିକରେ ସାମାଜିକ, ସାଂସ୍କୃତିକ, ଅର୍ଥନୈତିକ ଓ ରାଜନୈତିକ ସମସ୍ୟାମାନ ପ୍ରତିଫଳିତ ହୋଇଛି ।

(ଙ) କେତେକ ଆଖ୍ୟାନରେ ଆଧ୍ୟାତ୍ମିକ ଅଭୀପ୍ସାର ଗୁଞ୍ଜରଣ ମଧ୍ୟ ଆମେ ଶୁଣି ପାରୁ । ପ୍ରତୀକଗୁଡ଼ିକ ମାଧ୍ୟମରେ ଏହି ଆଧ୍ୟାତ୍ମିକ ଅଭୀପ୍ସା ପ୍ରକଟିତ ହୋଇଛି । (୨୩)

(ଚ) ଭାରତୀୟ ସଂସ୍କୃତିର ବିକାଶ ସହିତ ସମତାଳ ରକ୍ଷା କରି ଏହି ଆଖ୍ୟାନ-ଗୁଡ଼ିକ ଆବଶ୍ୟକ ସ୍ଥଳରେ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇଛି ।

ସ୍ଥୂଳତଃ ଏହା ହେଲା ବୈଦିକ ଆଖ୍ୟାନଗୁଡ଼ିକର ଏକ ସଂକ୍ଷିପ୍ତ ପରିଚୟ ।

## ଟିପ୍ପଣୀ

୧ । R. N. Dandekar : Vedic Mythological Tracts : Ajanta Publications, Delhi (1979) : p. 364.

୨ । R. N. Dandekar : op. cit : Maxmuller quoted : p. 352.

୩ । R. N. Dandekar : op. cit : Childe quoted : p. 353.

୩-କ । R. N. Dandekar : op. cit : p. 258.

୪ । ବଳଦେବ ଉପାଧ୍ୟାୟ : ବୈଦିକ କହାନିୟାଁ : ଭୂମିକା : ପୃ. ୭ ।

୪-କ । ତତ୍ରୈବ, ପୃ. ୧୭ ।

୫ । ଋଗ୍‌ବେଦ, ୮।୯୧ ।

୬ । 'ମୁଜବନ୍ତ' ପର୍ବତ ହେଉଛି ହିମାଳୟ ପର୍ବତଶ୍ରେଣୀର ଅଂଶବିଶେଷ । ଏହିଠାରୁ ସୁପର୍ଣ୍ଣ ବା ଗରୁଡ଼ ଆର୍ଯ୍ୟମାନଙ୍କ ଲାଗି ସର୍ବପ୍ରଥମେ ସୋମ-ରସ ଆଣି ଦେଇଥିଲେ ବୋଲି ଋଗ୍‌ବେଦରେ ବର୍ଣ୍ଣନା ଅଛି । ଏହାର ତାତ୍ପର୍ଯ୍ୟ ହେଲା, ଆର୍ଯ୍ୟମାନେ ଏହିଠାରେ ସୋମ-ଲତାକୁ ଆବିଷ୍କାର କରିଥିଲେ । ସୋମ-ଲତାର ବହୁଳ ବ୍ୟବହାର ଫଳରେ ଏହା କାଳକ୍ରମେ ଲୋପ ପାଇଗଲା । ଆଲୋଚ୍ୟ ସମୟରେ ସୋମ-ଲତା ବହୁଳ ଭାବରେ ମିଳୁ ନଥିଲା ।

୭ । R. N. Dandekar : op. cit : p. 341.

୮ । ଋଗ୍‌ବେଦ, ୫।୨ ; ତାଣ୍ଡ୍ୟ ବ୍ରାହ୍ମଣ, ୧୩।୩।୧୨ ; ବୃହଦ୍ଦେବତା, ୫।୧୪-୨୩ ।

୯ । ରାଜା ଋକ୍ ମନ୍ତ୍ରର ଦ୍ରଷ୍ଟା ଥିବାର ଘଟଣାରୁ ପ୍ରମାଣ ମିଳୁଛି ଯେ କେବଳ ବ୍ରାହ୍ମଣମାନେ ବୈଦିକ ମନ୍ତ୍ରଗୁଡ଼ିକର ଦ୍ରଷ୍ଟା ନଥିଲେ । ଅବ୍ରାହ୍ମଣ ବ୍ୟକ୍ତି ମଧ୍ୟ ବୈଦିକ ମନ୍ତ୍ରର ଦ୍ରଷ୍ଟା ହୋଇ ପାରୁଥିଲେ । ଏପରି କି ଶୂଦ୍ରମାନଙ୍କୁ ମଧ୍ୟ ଋଷିତ୍ୱ ମିଳି ପାରୁଥିଲା । କକ୍ଷିବାନ୍ ଋଷି ଥିଲେ ଜଣେ ଶୂଦ୍ର । ତାଙ୍କ କନ୍ୟା ଘୋଷା ମଧ୍ୟ ଥିଲେ ଜଣେ ଋଷିକା । ମହୀଦାସ ନାମରେ ଖ୍ୟାତ ଦାସୀ ଇତରାଙ୍କ ପୁତ୍ର ମଧ୍ୟ ଥିଲେ ଜଣେ ଋଷି । ମାଆଙ୍କ ନାଁରୁ

ଅନୁସରଣ କରି ତାଙ୍କୁ କୁହା ଯାଉଥିଲା ଐତରେୟ ଏବଂ ସେ ଥିଲେ 'ଐତରେୟ ବ୍ରାହ୍ମଣ', 'ଐତରେୟ ଆରଣ୍ୟକ' ଓ 'ଐତରେୟ ଉପନିଷଦ'ର ସ୍ରଷ୍ଟା । ଏଥିରୁ ଜଣା ପଡ଼ୁଛି ବୈଦିକ କାଳରେ ପ୍ରାଥମିକ ଅବସ୍ଥାରେ ବର୍ଣ୍ଣ-ଭେଦର ଦୃଢ଼ତା ରକ୍ଷା କରା ଯାଉ ନଥିଲା ।

୯-କ । ସ୍ଥଳ ବିଶେଷରେ ପାଠ ଭେଦରେ 'ଜାଗୃବାଂସଃ' ବୋଲି ମଧ୍ୟ ଲେଖାଅଛି । 'ଜାଗୃବାଂସଃ'ର ଅର୍ଥ ହେଲା 'ଜାଗ୍ରତ ଥିବା ଲୋକମାନେ' । ଆମେ ପୁରୋହିତମାନେ ଜାଗ୍ରତ ଅଛୁ, ଏହି ଅର୍ଥଟି ମଧ୍ୟ ଏତଦ୍ଦ୍ୱାରା ପ୍ରକଟିତ ହୋଇ ପାରୁଛି ।

୧୦ । ଐତରେୟ ବ୍ରାହ୍ମଣ, ୪୦ ତମ ଅଧ୍ୟାୟ ।

୧୧ । Balsastri Hardas Glimpses of the Vedic Nation ; p. 464.

୧୨ । ଋଗ୍‌ବେଦ, ୨।୧୧୨, ୧୧୭, ୧୧୮ ; ଋଗ୍‌ବେଦ, ୧୦।୭୯।୪ ; ଶ୍ରୀମଦ୍ ଭାଗବତ, ୯।୩ ।

୧୩ । ଅଗ୍ନି ଏଣିକି 'ଶବ' ଖାଇବେ ବୋଲି ଅଭିଶାପ ଦେବାର ତାତ୍ପର୍ଯ୍ୟ ହେଲା, ଏଣିକି ଅଗ୍ନିରେ ଶବଦାହ ହେବ । ଅର୍ଥାତ୍ ଏହା ପୂର୍ବରୁ ଆର୍ଯ୍ୟମାନେ ଶବକୁ ପୋଡ଼ୁଥିଲେ ; ଏଣିକି ତାହାକୁ ଦାହ କରିବେ । ଏହିଠାରୁ ଶବଦାହ ପ୍ରଥା ଆରମ୍ଭ ହୋଇଥିବ ବୋଲି ମନେ ହୁଏ । ମୃତ ବ୍ୟକ୍ତିଙ୍କୁ କବର ଦିଆ ଯାଉଥିବା କଥା ଆମେ ଋଗ୍‌ବେଦରେ ବର୍ଣ୍ଣିତ ହୋଇଥିବାର ଦେଖିବାକୁ ପାଇଥାଉଁ । ଦଶମ ମଣ୍ଡଳରେ (୧୮।୧୦ ୧୧) ଠାଏ କୁହା ଯାଇଛି :

"ଉପ ସର୍ପ ମାତରଂ ଭୂମିଂ ଏତାଂ ଉରୁ ବ୍ୟଚସଂ ପୃଥିବୀ ସୁଶେବାମ୍" ଅର୍ଥାତ୍ ତୁମେ (ମୃତ ବ୍ୟକ୍ତି) ଏବେ ଶୁଭଙ୍କରୀ ପୃଥିବୀ ମାତାଙ୍କ ବକ୍ଷକୁ ଚାଲି ଯାଅ ।" ସେଠାରେ ପୃଥିବୀ ମାତାଙ୍କୁ ପୁଣି ଆବାହନ କରି କୁହା ଯାଇଛି :

"ମାତା ପୁତ୍ରଂ ଯଥା ସିଚା ଅଭି ଏନଂ ଭୂମେ ଉର୍ଣ୍ଣୁହି"

ଅର୍ଥାତ୍ "ହେ ପୃଥିବୀ ମାତା ! ମାଆ ପୁଅକୁ କୋଳରେ ଚାପି ରଖିଲା ଭଳି ତୁମେ ଏହାଙ୍କୁ (ମୃତ ବ୍ୟକ୍ତିଙ୍କୁ) କୋଳରେ ଧରି ରଖ ।

୧୪ । ଅଶ୍ୱିନୀକୁମାର ଦ୍ୱୟଙ୍କ ପୂର୍ବର କାର୍ଯ୍ୟାବଳୀ ହେଉଛି :

(କ) ସେ ଦୁହେଁ ବିଶ୍‌ପଲା ନାମ୍ନୀ ଜଣେ ସ୍ତ୍ରୀର କଟା ଗୋଡ ଜାଗାରେ ଲୁହାର ଗୋଡଟିଏ ଲଗାଇ ଦେଇ ତାଙ୍କୁ ଆରୋଗ୍ୟ କରି ଦେଇଥିଲେ, ଯାହା ଫଳରେ କି ସେ ପୂର୍ବଭଳି ଭଲ ଭାବରେ ଯୁଦ୍ଧ କରି ପାରିଥିଲେ । ଏହି ବିଶ୍‌ପଲା ହେଉଛନ୍ତି ରାଜା ଖେଲଙ୍କ ସ୍ତ୍ରୀ । ତାଙ୍କ ସ୍ୱାମୀ ଶତ୍ରୁ ସହିତ ଲଢ଼ି ଯୁଦ୍ଧରେ ମରିଥିଲେ । ବିଶ୍‌ପଲା ତା'ପରେ ନିଜେ ଲଢେଇରେ ଯୋଗ ଦେଇ ଶେଷରେ ବିଜୟିନୀ ହୋଇ ପାରିଥିଲେ ।

(ଖ) ପୋତ ଭାଙ୍ଗିଯିବା ଫଳରେ ସମୁଦ୍ରରେ ରାଜର୍ଷି ତୁଗ୍ରଙ୍କ ପୁତ୍ର ଭୁଜ୍ୟୁ ବୁଡ଼ି ମରୁଥିଲେ । ସେ ଦୁହେଁ ତାଙ୍କୁ ଏ ବିପତ୍ତିରୁ ଉଦ୍ଧାର କରିଥିଲେ ।

(ଗ) ମହର୍ଷି ଅତ୍ରିଙ୍କୁ ସପରିବାର କାରାଗୃହରେ ରଖି ଅସୁରମାନେ ମାରି ଦେବାକୁ ବସିଥିଲାବେଳେ, ସେ ଦୁହେଁ ତାଙ୍କୁ ଓ ତାଙ୍କ ପରିବାରବର୍ଗଙ୍କୁ ଏହି ବିପଦରୁ ଉଦ୍ଧାର କରିଥିଲେ ;

(ଘ) ରାଜା ଋଜ୍ରାଶ୍ୱଙ୍କର ବାପା ବୃଷାଗିର ତାଙ୍କ ଆଖି ଦିଓଟି ଉପାଡ଼ି ତାଙ୍କୁ ଅନ୍ଧ କରି ଦେଇଥିଲେ । ସେ ଦୁହେଁ ତାଙ୍କର ଚିକିତ୍ସା କରି ତାଙ୍କୁ ନେତ୍ର-ଦାନ କରିଥିଲେ ।

୧୫ । ଋଗ୍‌ବେଦ, ୧୦।୯୪ ; ଶତପଥ ବ୍ରାହ୍ମଣ, ୧୧।୫।୧ ; ବୃହଦ୍ଦେବତା, ୭। ୧୪୭-୧୫୩ ।

୧୬ । ଏହି ଗୋମତୀ ହେଉଛି ଆଧୁନିକ 'ଗୋମାଲ୍' ଯାହା କି ସିନ୍ଧୁର ଏକ ଉପନଦୀ ରୂପରେ ପ୍ରବାହିତ ।

୧୭ । ଋଗ୍‌ବେଦ, ୮।'୯, ୮।୮୧ ; ବୃହଦ୍ଦେବତା, ୭।୫୧ ; ଶ୍ରୀମଦ୍‌ଭାଗବତ, ୧୦।୧୭ ।

୧୮ । ଋଗ୍‌ବେଦ, ୧।୨୪।୩୦ ; ଐତରେୟ ବ୍ରାହ୍ମଣ, ୭।୩ ।

୧୯ । R. N. Dandekar : op. cit : p. 328.

୨୦ । ଐତରେୟ ବ୍ରାହ୍ମଣ, ୭।୧୫।୧ ।

୨୦-କ । ଏ. ଏ. ମ୍ୟାକ୍‌ଡୋନେଲ : ବୈଦିକ ଇଣ୍ଡେକ୍ସ (ହିନ୍ଦୀ ଅନୁବାଦ) : ପୃ. ୩୦୯ ।

୨୧ । ଋଗ୍‌ବେଦ, ୧।୧୧୩।୧୨ ; ୧।୧୧୭।୨୨ ; ୧୦।୪୮।୨ ; ଶତପଥ ବ୍ରାହ୍ମଣ, ୧୪।୪।୫।୧୩ ; ଶ୍ରୀମଦ୍‌ଭାଗବତ, ୬।୧୦ ।

୨୨ । Jawaharlal Nehru : The Discovery of India (Sixth Impression, 1988) : p. 89.

୨୩ । ଶ୍ରୀଅରବିନ୍ଦ କେତେକ ବୈଦିକ ଆଖ୍ୟାନର ପ୍ରତୀକାତ୍ମକ ଦିଗ ପ୍ରତି ଗୁରୁତ୍ୱ ଆରୋପ କରି କହିଛନ୍ତି :

"Some of these myths, if not all, may have had, in all probability, a naturalistic and astronomical origin ; but if so, their original sense had been supplemented by a psychological symbolism. Once the sense of the Vedic symbol is known, the spiritual intention of these legends becomes apparent and inevitable."

ଦେଖନ୍ତୁ SriAurovindo ; The Secret of the Veda : 5th Impression (1987) : p. 44.



## ତୃତୀୟ ପରିଚ୍ଛେଦ

# ବୈଦିକ ମନ୍ତ୍ରରେ ପ୍ରତୀକତା

ଆମେ ସାଧାରଣ ଭାବରେ କହୁଥାଉଁ ଯେ ବୈଦିକ ମନ୍ତ୍ରଗୁଡ଼ିକର ସ୍ରଷ୍ଟା ହେଉଛନ୍ତି ଭିନ୍ନ ଭିନ୍ନ ଋଷି ; କାରଣ ପ୍ରତିଟି ମନ୍ତ୍ର ଶେଷରେ ସଂପୃକ୍ତ ଋଷିଙ୍କ ନାମ ଉଲ୍ଲିଖିତ । ଏହା ସାଧାରଣତଃ ପାଶ୍ଚାତ୍ୟ ବୈଦିକ ପଣ୍ଡିତମାନଙ୍କର ଧାରଣାର ଅନୁବର୍ତ୍ତୀ ଓ ଆମ୍ଭେମାନେ ଅନ୍ଧ ଭାବରେ ତାହାକୁ ଗ୍ରହଣ କରି ଯାଇଥାଉଁ । କିନ୍ତୁ 'ଋଷି' ଶବ୍ଦର ଏ ପ୍ରକାର ଅର୍ଥ ଭ୍ରମାତ୍ମକ । ଏହା ଭାରତୀୟ ପରମ୍ପରାରେ କରି ଯାଇଥିବା ମୌଳ ବୈଦିକ ଭାଷ୍ୟର ଚିନ୍ତାଧାରାର ପରିପନ୍ଥୀ । ଏହି ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥକୁ ବୁଝାଇବାକୁ ଯାଇ ପାଣିନି (ଖ୍ରୀ, ପୂ. ୪ର୍ଥ ଶତାବ୍ଦୀ) କହନ୍ତି :

"ଋଷିର୍ମନ୍ତ୍ର ଦ୍ରଷ୍ଟା" । (୧)

ଅର୍ଥାତ୍ ଋଷି ହେଉଛନ୍ତି ମନ୍ତ୍ରର ଦ୍ରଷ୍ଟା । ଅନ୍ୟ ପକ୍ଷରେ ସେ ମନ୍ତ୍ରର ସ୍ରଷ୍ଟା ନୁହନ୍ତି । ତାଙ୍କର ଅନ୍ତର୍ଦୃଷ୍ଟି ବଳରେ ବେଦ ମନ୍ତ୍ର ତାଙ୍କୁ ପ୍ରାପ୍ତ ହୋଇଥିଲା ଏବଂ ସେହି ଦିବ୍ୟାନୁଭୂତିର ପ୍ରଭାବରେ ତାଙ୍କ ମୁଖରୁ ତାହା ଅନର୍ଗଳ ଧାରାରେ ନିଃସୃତ ହୋଇଥିଲା । ପାଣିନି 'ଋଷି' ଶବ୍ଦର ଏହି ଯେଉଁ ଅର୍ଥ କଲେ, ତାହା ପୂର୍ବରୁ ଗଢ଼ି ଆସୁଥିବା ପାରମ୍ପରିକ ଚିନ୍ତାଧାରା ଓ ବିଶ୍ୱାସ ଉପରେ ଆଧାରିତ । ଯାସ୍କ (ଖ୍ରୀ. ପୂ. ୬ଷ୍ଠ-୭ମ ଶତାବ୍ଦୀ) ଠିକ୍ ଅନୁରୂପ ଭାବରେ ତାଙ୍କ ନିରୁକ୍ତରେ ଲେଖିଛନ୍ତି । ତାଙ୍କ ମତରେ "ଋଷୟଃ ମନ୍ତ୍ରାନ୍ ଦଦର୍ଶ" । ଅର୍ଥାତ୍ ଋଷିମାନେ ଥିଲେ ମନ୍ତ୍ରଗୁଡ଼ିକର ଦ୍ରଷ୍ଟା । ସେ ଏ କଥା କହିଲାବେଳେ ତାଙ୍କ ପୂର୍ବଜ ଔପମନ୍ୟବ ନାମକ ଜଣେ ନିରୁକ୍ତକାରଙ୍କ (ବେଦ ଭାଷ୍ୟକାର) ନାମ ଉଲ୍ଲେଖ କରିଛନ୍ତି ଏବଂ ତାଙ୍କର ମଧ୍ୟ ଏହା ହିଁ ମତ ବୋଲି ଦର୍ଶାଇଛନ୍ତି । ଔପମନ୍ୟବଙ୍କ କାଳ ଜଣା ନାହିଁ । ତେବେ ସେ ଯେ ଯାସ୍କଙ୍କର ପୂର୍ବବର୍ତ୍ତୀ, ଏଥିରେ ସନ୍ଦେହ ନାହିଁ । ଠିକ୍ ଅନୁରୂପ ଭାବରେ କୌଷୀତକୀ ବ୍ରାହ୍ମଣରେ (୧୦।୩) ଓ ଐତରେୟ ବ୍ରାହ୍ମଣରେ (୩।୧) ଋଷିଙ୍କ ମନ୍ତ୍ରର ଦ୍ରଷ୍ଟା ବୋଲି କୁହା ଯାଇଛି । ଋଗ୍‌ବେଦର ଅନେକ ସ୍ଥଳରେ ଋଷିଙ୍କୁ 'ମନ୍ତ୍ରକୃତ୍' ବୋଲି କୁହା ଯାଇଥିଲେ ହେଁ 'ମନ୍ତ୍ରକୃତ୍' ଶବ୍ଦର ଅର୍ଥ 'ମନ୍ତ୍ରର ସ୍ରଷ୍ଟା' ନ ହୋଇ 'ମନ୍ତ୍ରର ଦ୍ରଷ୍ଟା' ହେବ ବୋଲି ସାୟଣାଚାର୍ଯ୍ୟ ତାଙ୍କ ବେଦ-ଭାଷ୍ୟରେ ମତ ଖ୍ୟାପନ କରିଛନ୍ତି । ଅତଏବ, ଏଥିରୁ ଏହି ସତ୍ୟ ନିଷ୍କାସିତ ହେବ ଯେ ବୈଦିକ ଋଷିଙ୍କଠାରେ ବେଦମନ୍ତ୍ରର କର୍ତ୍ତୃତ୍ୱ ଆରୋପ

ନ କରି ଦ୍ରଷ୍ଟୃତ୍ୱ ଆରୋପ କରିବା ଥିଲା ଏକ ଅତି ପ୍ରାଚୀନ ଭାରତୀୟ ପରମ୍ପରା ଏବଂ ତାହା ବୈଦିକ କାଳରୁ ହିଁ ଗଢ଼ି ଆସୁଥିଲା । ଶ୍ରୀଅରବିନ୍ଦ ଏହି ବିଷୟଟିକୁ ବୁଝାଇବାକୁ ଯାଇ ଯାହା କହିଛନ୍ତି ତାହା ଯଥାର୍ଥରେ ପ୍ରଣିଧାନଯୋଗ୍ୟ :

> "In ancient times the Veda was revered as a sacred book of wisdom, a great mass of inspired poetry, the work of Rishis, seers and sages, who received in their illumined minds rather than mentally constructed a great universal, eternal and impersonal truth which they embodied in mantras, revealed verses of power, not of an ordinary, but of a divine inspiration and source." (୧-କ)

ସେଥିପାଇଁ ତ ବେଦରେ ଋଷିମାନଙ୍କୁ 'କବି' ଅର୍ଥରେ କୁହା ଯାଇଛି, "କବୟଃ ସତ୍ୟଶ୍ରୁତଃ' । ଅର୍ଥାତ୍ କବିମାନେ ସତ୍ୟର ଶ୍ରୋତା । ଋଷିମାନେ ଚିରନ୍ତନ ସତ୍ୟର ବାଣୀକୁ ସେମାନଙ୍କ ଅନ୍ତଃସ୍ଥଳରେ ଶୁଣିଥିଲେ ।

ବାମଦେବ ଋଷି ଅଗ୍ନିଙ୍କୁ ପ୍ରାର୍ଥନା କଲାବେଳେ କହିଛନ୍ତି :

"ଏତା ବିଶ୍ବା ବିଦୁଷେ ତୁଭ୍ୟଂ ବେଧୋ ନୀଥାନି ଅଗ୍ନେ ନିଣ୍ୟା ବଚାଂସି ।" (୨)

ଅର୍ଥାତ୍ ହେ ଧାତା ଅଗ୍ନି ! ତୁମେ ଏଇ ଫଳପ୍ରଦ ଗୋପନ ବାଣୀଗୁଡ଼ିକର ଅର୍ଥ ଜାଣିଛ । ଚିନ୍ତା ଓ ପ୍ରାର୍ଥନା ଦ୍ୱାରା ନିଜକୁ ଆଲୋକିତ କରି ଦେଇ ମୁଁ ତୁମ ଆଗରେ ତାହା ବୋଲି ଯାଉଛି । ସାୟଣାଚାର୍ଯ୍ୟ (ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀ) 'ନିଣ୍ୟମ୍' ଶବ୍ଦର ଅର୍ଥ କରିବାକୁ ଯାଇ କୁହନ୍ତି, ଏହା ହେଉଛି ଜ୍ଞାନର ଅତୀତ ଏବଂ ଅବବୋଧର ଅପର ସୀମାରେ । ତା'ହେଲେ ଏହା କ'ଣ ? ଏହା କ'ଣ ମୀମାଂସକମାନେ ବେଦ-ମନ୍ତ୍ରଗୁଡ଼ିକର କର୍ମ-କାଣ୍ଡଭିତ୍ତିକ ଯେଉଁ ଅର୍ଥ କରନ୍ତି, ତାହା ନା ଆଉ କିଛି ? ସାୟଣାଚାର୍ଯ୍ୟ ବେଦ-ମନ୍ତ୍ରଗୁଡ଼ିକର ଯେଉଁ ପ୍ରକାର ବ୍ୟାଖ୍ୟା କରିଛନ୍ତି, ତଦ୍ଦ୍ୱାରା ବେଦର ଏହି ଗୂଢ଼ ଅର୍ଥ ପ୍ରତିପାଦିତ ହେଉଛି କି ନାହିଁ ? ପାଶ୍ଚାତ୍ୟ ପଣ୍ଡିତମାନେ ସାୟଣଙ୍କୁ ଅନୁସରଣ କରି ବେଦ-ମନ୍ତ୍ରଗୁଡ଼ିକର ଯେପରି ଭାବରେ ବ୍ୟାଖ୍ୟା କରନ୍ତି ଏବଂ ଏଗୁଡ଼ିକ ଯଜ୍ଞ ଓ କର୍ମକାଣ୍ଡ ଉପରେ ବିଶ୍ୱାସ ରଖୁଥିବା ଏକ ଅପରିପକ୍ୱମସ୍ତିଷ୍କ ଗୋଷ୍ଠୀର ସୃଷ୍ଟି ବୋଲି କୁହନ୍ତି, ସେମାନେ କେତେ ଦୂର ସତ୍ୟର ଦ୍ୱାରକୁ

ଉଦ୍‌ଘାଟନ କରିଛନ୍ତି ? ଏହା ନିଶ୍ଚିତ ଭାବରେ ଏକ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନ । ଶ୍ରୀଅରବିନ୍ଦ ଏହି ପ୍ରଶ୍ନଟିର ବିଭିନ୍ନ ଦିଗରୁ ବିସ୍ତୃତ ଆଲୋଚନା କରି ଏହି 'ନିଣ୍ୟା ବଚାଂସି' ବା 'ଗୂଢ଼ ବାଣୀସମୂହ'ର ଅର୍ଥ ବାହାର କରିଛନ୍ତି । (୩) ତାଙ୍କ ମତରେ ବେଦ-ମନ୍ତ୍ରଗୁଡ଼ିକର ଏକ ପ୍ରତୀକାତ୍ମକ ଗୂଢ଼ ଅର୍ଥ ଅଛି, ଯହିଁରେ ଆଧ୍ୟାତ୍ମିକ ଚେତନା ସ୍ଫୁରିତ । ଆର୍ଯ୍ୟ ଋଷିଙ୍କର ପ୍ରାଣ ଯେଉଁ ଦିବ୍ୟ ଆନନ୍ଦରେ ଦ୍ରବୀଭୂତ ହୋଇ ଉଠିଥିଲା, ତାଙ୍କ ଜୀବନ ଯେଉଁ ଦିବ୍ୟ ଆଲୋକରେ ଝଲମଲ ହୋଇ ଉଠିଥିଲା, ତାହାର ଗାନ କରିବାରେ ସେ ଶତମୁଖ ହୋଇ ଉଠିଛନ୍ତି । ବେଦମନ୍ତ୍ରଗୁଡ଼ିକ ହେଉଛି ସେହି ଦିବ୍ୟାନୁଭୂତିର ସ୍ଫୁରଣ । ଶ୍ରୀଅରବିନ୍ଦଙ୍କ ଅର୍ଥକୁ ଗ୍ରହଣ କରି ଅରବିନ୍ଦ-ଆଶ୍ରମର ସାଧକ କପାଳି ଶାସ୍ତ୍ରୀ ଋଗ୍‌ବେଦର ଗୋଟିଏ ଭାଷ୍ୟ ଲେଖିଛନ୍ତି, ଯାହା 'ସିଦ୍ଧାଞ୍ଜନଭାଷ୍ୟ' ନାମରେ ଖ୍ୟାତ । ଏହି ଗ୍ରନ୍ଥର ଭୂମିକାରେ ସେ ଏକ ଗବେଷଣାତ୍ମକ ଓ ପାଣ୍ଡିତ୍ୟପୂର୍ଣ୍ଣ ବିସ୍ତୃତ-ଆଲୋଚନା କରିଛନ୍ତି, ଯହିଁରୁ ସେ ନିମ୍ନଲିଖିତ ନିଷ୍କର୍ଷରେ ଉପନୀତ ହୋଇଛନ୍ତି :

(କ) ଋଗ୍‌ବେଦ ହେଉଛି ସକଳ ବେଦର ପ୍ରସୂତି ସ୍ୱରୂପ ଏବଂ ଏହାଠାରୁ ଅନ୍ୟ ସବୁ ବେଦ ଉଦ୍ଭୂତ ; ଏହାର ଛାୟା ଅନ୍ୟ ସବୁ ବେଦ ଉପରେ ପଡ଼ିଛି ।

(ଖ) ଋକ୍‌ ମନ୍ତ୍ରଗୁଡ଼ିକରେ ବାହାରକୁ ଜଣାଗଲା ଭଳି ଗୋଟିଏ ଅର୍ଥ ଅଛି ; କିନ୍ତୁ ଏହାକୁ ତଳେଇ କରି ଦେଖିଲେ ଆଉ ଗୋଟିଏ ଅର୍ଥ ଅଛି, ଯାହା କି ହେଉଛି ପ୍ରକୃତ ଅର୍ଥ ।

(ଗ) ଋଗ୍‌ବେଦୀୟ ଋଷି ହେଉଛନ୍ତି ମନ୍ତ୍ରଦ୍ରଷ୍ଟା, ମନ୍ତ୍ରସ୍ରଷ୍ଟା ନୁହନ୍ତି । ସହଜାତ ଜ୍ଞାନ (intuition) ବଳରେ ତାଙ୍କୁ ମନ୍ତ୍ର-ଦର୍ଶନର ସୌଭାଗ୍ୟ ମିଳିଛି ଏବଂ ତାଙ୍କ ମୁଖରୁ ମନ୍ତ୍ରମାନ ନିଃସୃତ ହୋଇଛି ।

(ଘ) ଏହି ମନ୍ତ୍ରଗୁଡ଼ିକର ଏକ ପ୍ରତୀକାତ୍ମକ ଅର୍ଥ ଅଛି ଯଦ୍ୱାରା ଏକ ଆଧ୍ୟାତ୍ମିକ ଅଭୀପ୍‌ସା, ଏକ ଦିବ୍ୟ ଅନୁଭୂତି ପ୍ରକଟିତ । ଏହା ଦ୍ୱାରା ବେଦମନ୍ତ୍ରର ଆଧ୍ୟାତ୍ମିକ ଓ ଆଧିଦୈବିକ ଉଭୟ ଅର୍ଥ ପ୍ରକଟିତ ।

(ଙ) ଆଧ୍ୟାତ୍ମିକ ଆନନ୍ଦ-ସାଗରରେ ମଜ୍ଜି ରହିବା ପାଇଁ, ଏବଂ ଆଧ୍ୟାତ୍ମିକ ଦିବ୍ୟ-ଆଲୋକରେ ସ୍ୱୀୟ ଜୀବନକୁ ଆଲୋକିତ କରି ଦେବା ପାଇଁ ଋଗ୍‌ବେଦୀୟ ଋଷି ଉତ୍କଣ୍ଠିତ ହୋଇ ଉଠିଛନ୍ତି ଏବଂ ତଦନୁରୂପ କାର୍ଯ୍ୟ କରିବା ପାଇଁ ସାରା ବିଶ୍ୱକୁ ସନ୍ଦେଶ ଦେଇଛନ୍ତି । (୪)

ସକଳ ଧର୍ମଧାରଣା ଭଳି ବୈଦିକ ଧର୍ମଧାରଣାରେ ମଧ୍ୟ ପ୍ରତୀକତା ଥିଲା । ବାସ୍ତବରେ ଦେଖିବାକୁ ଗଲେ କୌଣସି ଧର୍ମ ପ୍ରତୀକତାକୁ ଛାଡ଼ି ପାରିବ ନାହିଁ । ପ୍ରତିମା, କର୍ମକାଣ୍ଡ, କୃଶ ଇତ୍ୟାଦି ସକଳ ଜନସାଧାରଣଙ୍କର ଆବଶ୍ୟକତା ଧର୍ମ ଲାଗି ଅଛି । କିନ୍ତୁ ଏଗୁଡ଼ିକ କେବଳ ପ୍ରାଥମିକତା ହାସଲ କରି ଚାଲିଲେ ଏବଂ ପ୍ରକୃତ ଧର୍ମ ତଳକୁ ଖସି ଗଲେ, ସେଠାରେ ଆସିଗଲା ପ୍ରତିମା ପୂଜା, ଯାହା କି ପରିତ୍ୟାଜ୍ୟ । ଧର୍ମ ପ୍ରତିମାସର୍ବସ୍ୱ ହୋଇଗଲେ ଏହାର ଯେଉଁ ମୁଖ୍ୟ ଉଦ୍ଦେଶ୍ୟ ଥାଏ ସାରା ବିଶ୍ୱକୁ ଆଧ୍ୟାତ୍ମିକ ଶିକ୍ଷା ଦେବା ଲାଗି, ତାହା ବ୍ୟାହତ ହୋଇଥାଏ । ଅତଏବ, ଆମେ ଯଦି ପ୍ରତୀକତାର ପ୍ରକୃତ ଅର୍ଥ ଜାଣିବା, ତେବେ କେଉଁ ଲୋକ କେଉଁ ମାର୍ଗରେ ଆଧ୍ୟାତ୍ମିକ ସତ୍ୟ ଉପଲବ୍ଧି କରି ପାରିଛି, ସେ ବିଷୟରେ ଆଉ ଚିନ୍ତିତ ହେବାର ଅବକାଶ ରହିବ ନାହିଁ । କେବଳ କର୍ମକାଣ୍ଡକୁ ଆମେ ଜାବୁଡ଼ି ଧରିଲେ ମଣିଷ ମଣିଷ ଭିତରେ ବୈଭିନ୍ନ୍ୟର ସୃଷ୍ଟି ହେବ ଏବଂ ସାମାଜିକ ଏକତା ବିପର୍ଯ୍ୟସ୍ତ ହେବ । ଏଥିପ୍ରତି ଲକ୍ଷ୍ୟ କରି ରାଧାକୃଷ୍ଣନ୍ କହିଛନ୍ତି :

> "The different religious groups bound within themselves by means of rites and ceremonies militate against the formation of human society. Intuitive religion rebels against these communal and national gods, confident in the strength of the one Spirit whose presence works and illuminates the whole mankind (୪-କ)

ମନ୍ତ୍ରଦ୍ରଷ୍ଟା ଋଷିମାନେ ଏହି ଏକ ପରମାତ୍ମା ବିଷୟରେ ସମ୍ପୂର୍ଣ୍ଣ ଭାବରେ ଅବହିତ ଥିଲେ ଏବଂ ଏହି ଦିବ୍ୟ ଆଲୋକର ବନ୍ୟାରେ ଅବଗାହନ କରିଥିଲେ । ସେମାନେ ଏହି ଆଲୋକର ସନ୍ଧାନ ସାରା ଜଗତ୍‌କୁ ଦେବା ଲାଗି ପ୍ରତୀକତା ମାଧ୍ୟମରେ ବିଭିନ୍ନ ମନ୍ତ୍ରର ସୃଷ୍ଟି କରିଥିଲେ । ଅତଏବ, ବେଦ-ମନ୍ତ୍ରଗୁଡ଼ିକର ଅନୁଧ୍ୟାନ ଏହି ପୃଷ୍ଠଭୂମିରେ କରିବା ଆବଶ୍ୟକ ।

ବୈଦିକ ଋଷିମାନଙ୍କର ଯେ ଅଲୌକିକ ପ୍ରତିଭା ଥିଲା ଏବଂ ତାହାରି ବଳରେ ଯେ ସେମାନେ ଅନ୍ତର୍ଦୃଷ୍ଟି ଦ୍ୱାରା ବେଦମନ୍ତ୍ରକୁ ପାଇ ପାରିଥିଲେ, ଏହାର ସଂକେତ ବୈଦିକ ସାହିତ୍ୟରେ ଅନେକତ୍ର ଆମେ ଦେଖିବାକୁ ପାଇଥାଉଁ । ଏହି ଦିବ୍ୟ ଚକ୍ଷୁ ବଳରେ ସେମାନେ ଯେ ମନ୍ତ୍ରଗୁଡ଼ିକର ସନ୍ଧାନ ପାଇ ପାରିଛନ୍ତି, ସେ କଥା ସ୍ପଷ୍ଟ ଭାବରେ ଋଗ୍‌ବେଦରେ ଉଲ୍ଲେଖ ଅଛି । (୬) ଆଉ ମଧ୍ୟ ତହିଁରେ ବଶିଷ୍ଠ ଋଷି ସ୍ୱୀୟ ଅଲୌକିକ ପ୍ରତିଭା ଫଳରେ

କିପରି ବିଭିନ୍ନ ବେଦ-ମନ୍ତ୍ରଗୁଡ଼ିକର ଦ୍ରଷ୍ଟା ହୋଇ ପାରିଥିଲେ, ସେ କଥାର ମଧ୍ୟ ଉଲ୍ଲେଖ ଅଛି । (୬) 'ବାକ୍'କୁ ଋଗ୍‌ବେଦରେ ଅନେକଥର ଖୁବ୍ ସୁନ୍ଦର ଭାବରେ ସ୍ତୁତି କରା ଯାଇଛି । ଋକ୍ ଦ୍ୱାରା ଋଷିଙ୍କର ବାକ୍‌ଶୁଦ୍ଧି ଘଟୁ ବୋଲି ସେ ବାରମ୍ବାର କାମନା କରିଛନ୍ତି । ତାଙ୍କ କାମନାର ମନ୍ତ୍ର ହେଲା :

'ଋଗ୍‌ଭ୍ୟଂ ବାଚଃ ପ୍ରପଦ୍ୟେ' ।

ଅର୍ଥାତ୍ ଋକ୍ ଦ୍ୱାରା ମୁଁ ବାଣୀ ପାଏଁ ବା ମୋ'ର ବାଣୀ ଶୁଦ୍ଧ ହେଉ । ଏହାର ତାତ୍ପର୍ଯ୍ୟ ହେଲା ମୁଁ ଭଲ କଥା କୁହେଁ ଯାହା ଫଳରେ କି ମୁଁ ଭଲ ହେବି ଏବଂ ଅନ୍ୟ ସମସ୍ତଙ୍କୁ ଭଲ କରାଇ ଦେବି । ଏହି ବାଣୀ ମୋ' ମନରେ ଆନନ୍ଦର ଜୁଆର ଉଠାଇ ଦେବ ଏବଂ ଅନ୍ୟ ସମସ୍ତଙ୍କ ମନରେ ମଧ୍ୟ ଠିକ୍ ଅନୁରୂପ ଜୁଆର ସୃଷ୍ଟି କରାଇବ । ଏହି ମନ୍ତ୍ରଗୁଡ଼ିକ ମାଧ୍ୟମରେ ଯେଉଁ ପ୍ରାର୍ଥନା କରାଯାଏ, ତାହାର ଫଳ ଅଲୌକିକ ବୋଲି ବେଦରେ ମଧ୍ୟ କୁହା ଯାଇଛି । (୭) ଋଷିଙ୍କର ଥିଲା ଅଲୌକିକ ଚେତନା, ଅଲୌକିକ ଅନୁଭୂତି । ସେହି ପ୍ରକାର ମାନସିକ ସ୍ଥିତିରେ ତାଙ୍କ କଣ୍ଠରୁ ଯେଉଁ ଅଲୌକିକ ବାଣୀ ନିର୍ଗତ ହୋଇଥିଲା, ତାହାର ଫଳଶ୍ରୁତି ଯେ ଅଲୌକିକ ହେବ, ଏଥିରେ ସନ୍ଦେହ ନାହିଁ । ଏହି ଅଲୌକିକ ଫଳଶ୍ରୁତି କଥା ଏଠାରେ କୁହା ଯାଇଛି । ଏହି ଫଳଶ୍ରୁତି ଥିଲା ନିତ୍ୟ, ଯାହା କି ଋଗ୍‌ବେଦର 'ବାଚା ବିରୂପନିତ୍ୟୟା', ଏହି ପଙ୍‌କ୍ତିଟିରୁ ସୂଚିତ ହୁଏ । (୮) ଅତଏବ, ଅଲୌକିକ ଚେତନା, ଦୃଷ୍ଟି ଓ ଅନୁଭୂତିକୁ ଆଶ୍ରୟ କରି ବେଦମନ୍ତ୍ର-ଗୁଡ଼ିକ ସୃଷ୍ଟ ହୋଇଥିଲା । ସାଧାରଣ ଅର୍ଥରେ ଋଷିମାନେ ଏଗୁଡ଼ିକର ସ୍ରଷ୍ଟା ଥିଲେ ମଧ୍ୟ, ସେମାନେ ପ୍ରକୃତରେ ଥିଲେ ଏଗୁଡ଼ିକର ଦ୍ରଷ୍ଟା ଏବଂ ସେହି ଅନ୍ତର୍ଦୃଷ୍ଟି ମାଧ୍ୟମରେ ହିଁ ସେମାନେ ବେଦର 'ନିଣ୍ୟା ବଚାଂସି' ବା ଗୂଢ଼ ବାଣୀସମୂହର ସନ୍ଧାନ ପାଇ ପାରିଥିଲେ ।

ବେଦ ମନ୍ତ୍ରରେ ଯେ କେବଳ ଅଲୌକିକ କଥାର ଅବତାରଣା କରା ଯାଇଛି ଏବଂ ଲୌକିକ କଥାର ଅବତାରଣା କରା ଯାଇ ନାହିଁ, ସେ କଥା ନୁହେଁ । ଅନ୍ୟ ପକ୍ଷରେ ବରଂ ଅନେକ ସ୍ଥଳରେ ଲୌକିକ କଥାର ମଧ୍ୟ ଅବତାରଣା କରା ଯାଇଛି । ବେଦର ମନ୍ତ୍ରଗୁଡ଼ିକ ଏକ ସମୟରେ ସୃଷ୍ଟ ହୋଇ ନାହିଁ । ଏଗୁଡ଼ିକର ଜନକ ମଧ୍ୟ ବହୁ ଋଷି ଏବଂ ସୃଷ୍ଟି-କାଳ ମଧ୍ୟରେ ବହୁ ବର୍ଷର ବ୍ୟବଧାନ ରହିଛି । ପରେ ଏଗୁଡ଼ିକର ସଙ୍କଳନ କରା ଯାଇଛି । ମହର୍ଷି ବ୍ୟାସଦେବ ଏଗୁଡ଼ିକୁ ସଙ୍କଳନ କରି ଭାଗ ଭାଗ କରିଥିଲେ ବୋଲି ଏକ ପାରମ୍ପରିକ ଭାରତୀୟ ବିଶ୍ୱାସ ରହିଆସିଛି । ତେଣୁ ଏଥିରେ ଅଲୌକିକ ଓ ଲୌକିକ ଉଭୟ ଚିନ୍ତାଧାରାବଳିତ ମନ୍ତ୍ରମାନ ସ୍ଥାନ ପାଇଛନ୍ତି ବୋଲି କହିବା ଠିକ୍ ହେବ ।

ସବୁ ଋଷିଙ୍କର ମାନ୍ତ୍ରିକ ସିଦ୍ଧି ସମାନ ସ୍ତରର ନୁହେଁ ; ସବୁ ଋଷିଙ୍କର ମାନସିକ ବିକାଶ ସମାନ ନୁହେଁ ; ସମସ୍ତେ ସମାନ ଆଧ୍ୟାତ୍ମିକ ଉଚ୍ଚତାରେ ପହଞ୍ଚି ପାରି ନାହାନ୍ତି । ତେଣୁ ସବୁ ବୈଦିକ ମନ୍ତ୍ରରେ ଆଧ୍ୟାତ୍ମିକତାର ସ୍ୱର ସମାନ ଭାବରେ ଅନୁରଣିତ ହେବ ବୋଲି ଆମେ ଭାବିବା ଠିକ୍ ହେବ ନାହିଁ ।

ଯଜ୍ଞ ଉପରେ ପ୍ରାଧାନ୍ୟ ଦିଆ ଯାଇ ଅନେକ ବୈଦିକ ମନ୍ତ୍ର ରଚିତ ହୋଇଥିବାରୁ ବ୍ଲୁମ୍‌ଫିଲ୍‌ଡ୍‌ଙ୍କ ଭଳି ପାଶ୍ଚାତ୍ୟ ପଣ୍ଡିତଙ୍କ ମତ ହେଲା, ବେଦ-ମନ୍ତ୍ରଗୁଡ଼ିକ ଗୋଟିଏ ଆଦିମ କାଳର ଯଜ୍ଞ-ସମ୍ବନ୍ଧୀୟ ମନ୍ତ୍ର ଏବଂ ସେହି କାଳର ଲୋକେ କର୍ମକାଣ୍ଡ ଉପରେ ଗୁରୁତ୍ୱ ଦେଉଥିଲେ । ଅବଶ୍ୟ ରାମମୋହନ ରାୟଙ୍କ ମତ ହେଲା ସ୍ୱତନ୍ତ୍ର । ତାଙ୍କ ମତରେ ସେହି ଏକ ପରମାତ୍ମାଙ୍କର ବିଭିନ୍ନ ବିଭୂତି ସମ୍ପର୍କରେ ଆର୍ଯ୍ୟ ଋଷିମାନେ ବିଭିନ୍ନ ପ୍ରତୀକ ମାଧ୍ୟମରେ ବେଦମନ୍ତ୍ରଗୁଡ଼ିକୁ ରଚନା କରିଛନ୍ତି । ବୈଦିକ ଋଷିମାନେ ମନ୍ତ୍ରଦ୍ରଷ୍ଟା କହିବାର ଅର୍ଥ ନୁହେଁ ଯେ ସେ ସମୟର ସବୁ ଲୋକେ ମନ୍ତ୍ର-ଦର୍ଶନରେ ସମାନ ଭାବରେ ଉଦ୍‌ବୁଦ୍ଧ ହୋଇଥିଲେ । ଏହାର ମଧ୍ୟ ଅର୍ଥ ନୁହେଁ ଯେ ସବୁ ଋଷି ଆଧ୍ୟାତ୍ମିକତାର ଉଚ୍ଚତମ ଶୃଙ୍ଗକୁ ଆରୋହଣ କରିଥିଲେ । ଏ ଦେଶରେ ତ ରାମ, କୃଷ୍ଣ, ବୁଦ୍ଧ ଆଦି ମହାପୁରୁଷମାନେ ଅତୀତରେ ଜନ୍ମ ନେଇଥିଲେ । ସମସ୍ତେ କ'ଣ ସେମାନଙ୍କ ପରି ହୋଇଥିଲେ ? ନିକଟ ଅତୀତରେ ରାମକୃଷ୍ଣ ପରମହଂସ, ବିବେକାନନ୍ଦ, ଶ୍ରୀଅରବିନ୍ଦ ମଧ୍ୟ ଜନ୍ମ ନେଇଥିଲେ । ଦେଶର ସମସ୍ତେ କ'ଣ ତାଙ୍କ ଭଳି ହୋଇଥିଲେ ? ସମସ୍ତେ ସେମାନଙ୍କ ଭଳି ହୋଇ ନଥିଲେ ମଧ୍ୟ ଯେମାନେ ଯେଉଁ ଆଧ୍ୟାତ୍ମିକତାର ବାଣୀ ଝଂକୃତ କରି ଦେଇ ଯାଇଛନ୍ତି, ତାହା କ'ଣ ମିଥ୍ୟା ? ତେଣୁ ବୈଦିକ ମନ୍ତ୍ରରେ ଥିବା ଗୂଢ଼ ଆଧ୍ୟାତ୍ମିକତାର ସ୍ୱର ମିଥ୍ୟା ହେବ ବା କାହିଁକି ? କପାଳି ଶାସ୍ତ୍ରୀ ଏ ବିଷୟରେ ଗୋଟିଏ ଭଲ ଉଦାହରଣ ଦେଇ କହିଛନ୍ତି :

> We can take up an illustration from our times. Ours is an age of high intellectual advancement, an age of science that daily and hourly continues unravelling the mysteries of physical nature and her revelations are pinnacles of wonder. But how many are intellectual in this age of intellectual supremacy ? Very few, indeed." (୯)

ଠିକ୍ ଏହି ଯୁକ୍ତିଟିକୁ ଆମେ ଅନୁରୂପ ଦୃଢ଼ତାର ସହିତ ବୈଦିକ ଯୁଗ ପ୍ରତି ପ୍ରୟୋଗ କରି

ପାରିବ । ଅତଏବ ଶ୍ରୀଅରବିନ୍ଦ ଋଗ୍‌ବେଦର କେତେକ ମନ୍ତ୍ର ଆଲୋଚନା କରି ତନ୍ମଧ୍ୟରେ ଲୁକ୍‌କାୟିତ ଥିବା ଯେଉଁ ପ୍ରତୀକଧର୍ମୀ ଅର୍ଥକୁ ପ୍ରକାଶ କରିଛନ୍ତି, ତାହାକୁ ଗ୍ରହଣ ନ କରିବାର କୌଣସି କାରଣ ନାହିଁ । ବରଂ ତଦ୍ୱାରା ବେଦ-ମନ୍ତ୍ରଗୁଡ଼ିକର ଏକ 'ଗୋପନ ଅର୍ଥ'ର ସୂଚନା ଦିଆ ଯାଉଥିବାରୁ ତାଙ୍କ ଅର୍ଥକୁ ଗ୍ରହଣ କରିବାର ଯଥେଷ୍ଟ ଯଥାର୍ଥତା ରହିଅଛି । ବିଶେଷ କରି, ଶ୍ରୀଅରବିନ୍ଦ ସାୟଣାଚାର୍ଯ୍ୟ କିମ୍ବା ଅନ୍ୟମାନଙ୍କ ଭଳି କେବଳ ଜଣେ ବେଦ ଭାଷ୍ୟକାର ନଥିଲେ । ସେ ଥିଲେ ଜଣେ ଯୋଗୀ ଏବଂ ଋଷି-ପ୍ରତିମ ବ୍ୟକ୍ତି । ତାଙ୍କର ସହଜାତ ଜ୍ଞାନ (intuition) ଫଳରେ ସେ ବୈଦିକ ମନ୍ତ୍ରଗୁଡ଼ିକରେ ଥିବା ବିଭିନ୍ନ ପ୍ରତୀକଗୁଡ଼ିକୁ ଆବିଷ୍କାର କରି ପାରିଛନ୍ତି ଏବଂ ସେଗୁଡ଼ିକର ଆଧ୍ୟାତ୍ମିକ ଉଚ୍ଚତାକୁ ମାପି ପାରିଛନ୍ତି । ଏଣୁ ତାଙ୍କ ଦ୍ୱାରା ବ୍ୟାଖ୍ୟାତ ପ୍ରତୀକାତ୍ମକ ଅର୍ଥର ଯଥେଷ୍ଟ ଗୁରୁତ୍ୱ ରହିଅଛି ।

ସାୟଣଙ୍କ (ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀ) ପୂର୍ବରୁ ଅବଶ୍ୟ ସ୍କନ୍ଦସ୍ୱାମୀଙ୍କ ଭଳି ପଣ୍ଡିତ-ମାନେ ବେଦର ଭାଷ୍ୟ କରିଥିଲେ । ଯାସ୍କ (ଖ୍ରୀ. ପୂ. ୬ଷ୍ଠ-୭ମ ଶତାବ୍ଦୀ) ତାଙ୍କର ନିରୁକ୍ତ ଲେଖି ସାରିଥିଲେ । କିନ୍ତୁ ଏହା ହେଉଛି ଏକ ବୈଦିକ ଶବ୍ଦକୋଷ ; ବେଦଭାଷ୍ୟ ନୁହେଁ । ସାୟଣଙ୍କ ବେଳକୁ , ଏପରି କି ତାଙ୍କ ପୂର୍ବରୁ ସ୍କନ୍ଦସ୍ୱାମୀଙ୍କ ବେଳକୁ (ଖ୍ରୀଷ୍ଟୀୟ ୭ମ ଶତାବ୍ଦୀ) ମୀମାଂସକମାନଙ୍କର କର୍ମକାଣ୍ଡନିଷ୍ଠ ଦର୍ଶନ ଦେଶରେ ପ୍ରତିଷ୍ଠା ଲାଭ କରିଥିଲା ଏବଂ ସେହି ଅନୁଯାୟୀ ବେଦମନ୍ତ୍ରଗୁଡ଼ିକର ଅର୍ଥ ହେବାର ପରମ୍ପରା ଦେଶରେ ଚାଲି ଆସୁଥିଲା । ଏହି କାରଣରୁ ସାୟଣାଚାର୍ଯ୍ୟ ବୈଦିକ ମନ୍ତ୍ରଗୁଡ଼ିକୁ ଯଜ୍ଞୀୟ କର୍ମକାଣ୍ଡ ସହିତ ସମ୍ବନ୍ଧିତ ବୋଲି ଭାବି ତଦନୁଯାୟୀ ସେଗୁଡ଼ିକର ଅର୍ଥ କରିବାକୁ ଆଗେଇ ଆସିଥିଲେ । ତାଙ୍କ ଉପରେ ମୀମାଂସକମାନଙ୍କର କର୍ମକାଣ୍ଡନିଷ୍ଠ ଚିନ୍ତାଧାରା ଗଭୀର ଭାବରେ ପ୍ରଭାବ ପକାଇଥିଲା । ବେଦ ମନ୍ତ୍ରରେ କୌଣସି ସ୍ଥାନରେ କିଛି ପ୍ରତୀକର ପ୍ରୟୋଗ ଦେଖିଲେ, ସେ ତାହାକୁ ଯଜ୍ଞାନୁଷ୍ଠାନ ସହିତ ସମ୍ପର୍କିତ କରାଇ ତଦନୁଯାୟୀ ଅର୍ଥ କରୁଥିଲେ । ଏତଦ୍‌ବ୍ୟତୀତ ଆଉ ଅନ୍ୟ କୌଣସି ପ୍ରକାର ଅର୍ଥ ତାଙ୍କ ଚିନ୍ତାଧାରାକୁ ସ୍ପର୍ଶ କରି ପାରୁ ନଥିଲା । ବେଳେ ବେଳେ ସେ ବେଦ ମନ୍ତ୍ରର ଅର୍ଥାନ୍ତର ଅବଶ୍ୟ କରୁଥିଲେ । କିନ୍ତୁ ଏଭଳି ଅର୍ଥାନ୍ତର କଲାବେଳେ ତାହା କିପରି ଭାବରେ ବିଭିନ୍ନ ଯଜ୍ଞାନୁଷ୍ଠାନର ବିଧି-ସମ୍ବନ୍ଧ ସହିତ ସାମଞ୍ଜସ୍ୟ ରକ୍ଷା କରିବ, ସେଥି ପ୍ରତି ସେ ଖୁବ୍ ସଜାଗ ଥିଲେ । ଏହା ନିଶ୍ଚିତ ଭାବରେ ଗୋଟିଏ ଏକଦେଶଦର୍ଶୀ ବିଚାର । ଏଥି ପ୍ରତି ଲକ୍ଷ୍ୟ କରି କପାଳି ଶାସ୍ତ୍ରୀ ଯଥାର୍ଥରେ କହିଛନ୍ତି :

"He was quite aware that the ritualists were just one of the three main interpreters of the Vedas

> and this is clear when he occasionally quotes Yaska making reference to the threefold interpretations of the Rig-Veda. When he gives us alternative meanings of words or verses, which he quite often does, it is obvious that he does so as a scholar with a certain indifference to the acceptance of the alternativc meaning, if it does not fit in with a sacrificial context. (୧୦)

କପାଳି ଶାସ୍ତ୍ରୀଙ୍କର ଏହି ପଙ୍‌କ୍ତିଗୁଡ଼ିକରେ ଶ୍ରୀଅରବିନ୍ଦଙ୍କର ନିମ୍ନୋକ୍ତ ବାଣୀର ଝଙ୍କାର ସମର୍ଥକ ଅନୁରଣିତ :

> "But still he (Sayana) does not reject the spiritual authority of the Veda or deny that there is a higher truth contained in the Riks." (୧୧)

ଯାସ୍କଙ୍କ ମତରେ ଋଗ୍‌ବେଦୀୟ ମନ୍ତ୍ରଗୁଡ଼ିକର ତିନି ପ୍ରକାର ଅର୍ଥ ଅଛି । ଗୋଟିଏ ହେଲା ଆଧିଭୌତିକ ; ଅପରଟି ଆଧିଦୈବିକ ଓ ତୃତୀୟଟି ଆଧ୍ୟାତ୍ମିକ । ସାୟଣ ମଧ୍ୟ ଯାସ୍କଙ୍କର ଏହି ମତ ବିଷୟରେ ସମ୍ୟକ୍ ଭାବରେ ଅବହିତ ବୋଲି ଜଣାପଡେ । ତା'ହେଲେ ସେ କେବଳ ଗୋଟିଏ ମାର୍ଗରେ (ଆଧିଭୌତିକ ମାର୍ଗରେ) ବେଦ-ମନ୍ତ୍ରଗୁଡ଼ିକର ବ୍ୟାଖ୍ୟା କଲେ କାହିଁକି ? ତାଙ୍କ ନିଜକୃତ ଭାଷ୍ୟରେ ବେଦ ମନ୍ତ୍ରର ଅର୍ଥାନ୍ତର ବାହାର କରି ମଧ୍ୟ ସେଥିପ୍ରତି ସେ ଏଭଳି ଉଦାସୀନ ହେଲେ ବା କାହିଁକି ? କର୍ମକାଣ୍ଡ ଉପରେ ତାଙ୍କର ଅଟଳ ବିଶ୍ୱାସ ଯେ ଏହାର କାରଣ, ଏଥିରେ ସନ୍ଦେହ ନାହିଁ । ସେ ନିଜେ ଥିଲେ ଜଣେ ଶୁକ୍ଳ ଯଜୁର୍ବେଦୀୟ କର୍ମକାଣ୍ଡୀ ବ୍ରାହ୍ମଣ । ଏଣୁ ତାଙ୍କର କର୍ମକାଣ୍ଡ ପ୍ରତି ଏଭଳି ନିଷ୍ଠା ଓ ଆକର୍ଷଣ ରହିବା ସ୍ୱାଭାବିକ । କିନ୍ତୁ ନିଷ୍ଠାରେ ଭକ୍ତି ମିଶ୍ରିତ ହୋଇଗଲେ, ଭକ୍ତିକ ମିଥ୍ୟାର ଆବିର୍ଭାବ ହୋଇଥାଏ ; ପ୍ରକୃତ ସତ୍ୟ ଘୁଞ୍ଚି ଘୁଞ୍ଚି ଯାଇଥାଏ । ଅତଏବ, ସାୟଣାଚାର୍ଯ୍ୟଙ୍କ ଦ୍ୱାରା କରା ଯାଇଥିବା ଋଗ୍‌ବେଦ-ଭାଷ୍ୟ ଏହି ଅର୍ଥରେ ଦୁଷ୍ଟ । ତାଙ୍କ ପ୍ରଦତ୍ତ ଅର୍ଥ ବେଦମନ୍ତ୍ରର ସାର୍ବିକ ଦିଗକୁ ସ୍ପର୍ଶ କରିଛି ବୋଲି କୁହାଯାଇ ନ ପାରେ । ବରଂ ତାଙ୍କ ବ୍ୟାଖ୍ୟାରେ ବେଦ-ମନ୍ତ୍ରଗୁଡ଼ିକର କେବଳ ଆଧିଭୌତିକ ଦିଗଟି ପ୍ରକଟିତ । ଅନ୍ୟ ଦୁଇଟି ଦିଗ, ଯଥା, ଆଧିଦୈବିକ ଓ ଆଧ୍ୟାତ୍ମିକ ଦିଗ ସଂପୂର୍ଣ୍ଣ ରୂପେ ଅବହେଳିତ ଓ ଅପ୍ରକଟିତ । ଅନ୍ୟ ପକ୍ଷରେ ଶ୍ରୀଅରବିନ୍ଦଙ୍କ ପ୍ରତୀକାତ୍ମକ ବ୍ୟାଖ୍ୟାରେ ଶେଷୋକ୍ତ ଦୁଇ ଦିଗ ପ୍ରକଟିତ ।

ଅତଏବ, ତାଙ୍କ ଦ୍ୱାରା ବ୍ୟାଖ୍ୟାତ ଏହି ପ୍ରତୀକାତ୍ମକ ଅର୍ଥକୁ ଗ୍ରହଣ କରିବା ପାଇଁ ନିମ୍ନଲିଖିତ ଯୁକ୍ତିମାନ ବିଦ୍ୟମାନ ବୋଲି ସଂକ୍ଷେପରେ କୁହାଯାଇ ପାରେ :

(କ) ସାୟଣ ଋଗ୍‌ବେଦର ଭାଷ୍ୟ ଲେଖିଲା ବେଳେ ତାଙ୍କ ପାଇଁ ପୂର୍ବସୂରୀଙ୍କ ଦ୍ୱାରା ଲିଖିତ କୌଣସି ଭାଷ୍ୟ ନଥିଲା । ଏଣୁ ଯାସ୍କଙ୍କ ନିରୁକ୍ତ ବ୍ୟତୀତ ବେଦ-ବ୍ୟାଖ୍ୟା ପାଇଁ କିଛି ପରମ୍ପରା ତାଙ୍କ ପାଇଁ ନଥିଲା ।

(ଖ) ଯଜ୍ଞୀୟ କର୍ମକାଣ୍ଡର ପ୍ରାଧାନ୍ୟ ଦୃଷ୍ଟିରୁ ସେ କର୍ମକାଣ୍ଡ ଅର୍ଥରେ ବେଦ-ମନ୍ତ୍ରଗୁଡ଼ିକର ଅର୍ଥ କରିଛନ୍ତି ଏବଂ ନିଜେ ବେଦ-ଭାଷ୍ୟର ଏକ ନୂତନ କର୍ମକାଣ୍ଡୀୟ ପରମ୍ପରା ସୃଷ୍ଟି କରି ଯାଇଛନ୍ତି ।

(ଗ) ସେ ନିଜେ ସ୍ୱୀକାର କରିଛନ୍ତି ଯେ ଯାସ୍କଙ୍କ କହିବା ଅନୁସାରେ ବେଦ ମନ୍ତ୍ରଗୁଡ଼ିକର ତିନି ପ୍ରକାର ଅର୍ଥ ଅଛି; ଯଥା, ଆଧିଭୌତିକ, ଆଧି-ଦୈବିକ ଓ ଆଧ୍ୟାତ୍ମିକ । ଏହା ସତ୍ତ୍ୱେ ସେ କେବଳ ଆଧିଭୌତିକ ଅର୍ଥଟିକୁ ହିଁ ଗ୍ରହଣ କରିଛନ୍ତି ଏବଂ ଅନ୍ୟ ଅର୍ଥ ପ୍ରତି ବୀତସ୍ପୃହ ହୋଇଛନ୍ତି । ଏତଦ୍ୱାରା ତାଙ୍କର ଏକଦେଶଦର୍ଶିତା ପ୍ରକଟିତ ।

(ଘ) ଶ୍ରୀଅରବିନ୍ଦଙ୍କ ଦ୍ୱାରା ବ୍ୟାଖ୍ୟାତ ପ୍ରତୀକାତ୍ମକ ଅର୍ଥକୁ ଅନୁସରଣ କଲେ ଆମେ ବେଦ-ମନ୍ତ୍ରଗୁଡ଼ିକର ଆଧିଦୈବିକ ଓ ଆଧ୍ୟାତ୍ମିକ ଉଭୟ ଦିଗର ବିଭବ ସହିତ ପରିଚିତ ହୋଇ ପାରିବା । ଏ ପ୍ରକାର ବ୍ୟାଖ୍ୟା ଯାସ୍କଙ୍କ ମତ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଏହାକୁ ଗ୍ରହଣ କରିବାର ଯଥେଷ୍ଟ ଯଥାର୍ଥତା ରହିଅଛି ।

ଇଉରୋପୀୟ ପଣ୍ଡିତମାନେ କିନ୍ତୁ ସାୟଣକୃତ କର୍ମକାଣ୍ଡନିଷ୍ଠ ଅର୍ଥକୁ ସମ୍ପୂର୍ଣ୍ଣ ଭାବରେ ଗ୍ରହଣ କରି ଯାଇଛନ୍ତି । ଏହା ବ୍ୟତୀତ ଅନ୍ୟ ପ୍ରକାର ଅର୍ଥ ହୋଇପାରେ ବୋଲି ସାୟଣ ଯେଉଁ ସୂଚନା ଦେଇଛନ୍ତି କିମ୍ବା ଯାସ୍କ ଯେଉଁ ତିନି ପ୍ରକାର ଅର୍ଥ କଥା କହିଛନ୍ତି, ତାହାକୁ ସେମାନେ ଆଦୌ ଗ୍ରହଣ କରି ନାହାନ୍ତି । ସେମାନେ ବୁଦ୍ଧିଭେଦ-ପ୍ରକ୍ରିୟାରେ ବୈଦିକ ମନ୍ତ୍ରଗୁଡ଼ିକର ଧ୍ୱନିତାତ୍ତ୍ୱିକ ବିଶ୍ଳେଷଣ କରି ଏଥିର ଭାଷାର କପରି ୟୁରୋପୀୟ ଅନ୍ୟାନ୍ୟ ଭାଷା ସହିତ ଓ ଆବେସ୍ତାର ଭାଷା ସହିତ ସମ୍ପର୍କ ଅଛି, ତାହା ପ୍ରତିପାଦିତ କରିବାର ଚେଷ୍ଟା କରିଛନ୍ତି । ସେମାନେ ବେଦରୁ ପ୍ରାଚୀନ ଭାରତର ଇତିହାସ, ସମାଜ ଓ ପ୍ରଥାଦି ଆବିଷ୍କାର କରିବାରେ ତତ୍ପର ହୋଇ ଉଠିଛନ୍ତି । ଆର୍ଯ୍ୟମାନଙ୍କର ବହିର୍ଦେଶରୁ ଭାରତକୁ ଆଗମନ, ଏଠାରେ ଆର୍ଯ୍ୟେତର ଏକ ସଭ୍ୟ ଦ୍ରାବିଡ଼ ଜାତି ସହିତ

ସମ୍ପୃକ୍ତୀନ ହେବା, ଆର୍ଯ୍ୟ-ଦ୍ରାବିଡ଼ ସଂଗ୍ରାମ, ଦ୍ରାବିଡ଼ ସଭ୍ୟତାର ଧ୍ୱଂସ ସାଧନ ଆଦି ବିଭିନ୍ନ ବିଷୟର ଅବତାରଣା ସେମାନେ କରିଛନ୍ତି । ଏହି ଆର୍ଯ୍ୟ-ଦ୍ରାବିଡ଼ ସଂଗ୍ରାମ ଉପରେ ଭାବରେ ସମ୍ପୂର୍ଣ୍ଣ କାଳ୍ପନିକ, ତାହା ଏହି ପୁସ୍ତକର ପ୍ରଥମ ଭାଗରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଛି । ଶ୍ରୀଅରବିନ୍ଦ ଏ ସମ୍ପର୍କରେ କହିଛନ୍ତି :

> "They invented the theory based on the difference of languages of an Aryan invasion from the north, an invansion of a Dravidian India of which the Indians themselves had no memory or tradition and of which there is no record in their classical literature. (୧୬)

ସେମାନେ ଆହୁ ମଧ କହନ୍ତି ଯେ ବୈଦିକ ଆର୍ଯ୍ୟମାନେ ଆଦିମ ଅବସ୍ଥାରେ ଥିଲେ ଏବଂ ସେତେବେଳେ ସେମାନଙ୍କର ମାନସିକ ବିକାଶ ସମ୍ଭବ ହୋଇ ନଥିଲା । ସେମାନେ ପ୍ରକୃତିର ବିଭିନ୍ନ ଅଭିପ୍ରକାଶକୁ ଦେଖି ସ୍ତମ୍ଭୀଭୂତ ହୋଇ ଯାଉଥିଲେ ଏବଂ ସେଗୁଡ଼ିକୁ ଦେବ-ମାନ୍ୟତା ଦେଉଥିଲେ । ଶ୍ରୀଅରବିନ୍ଦ ଦୁଃଖ କରି କହିଛନ୍ତି :

> "ୟୁରୋପୀୟ ପଣ୍ଡିତଗଣ ସେମାନଙ୍କର ଯୁକ୍ତିପ୍ରବଣତା, କୌତୂହଳ ଓ ଆଗ୍ରହକୁ ଚରିତାର୍ଥ କରିବାକୁ ଯାଇ ବେଦ ଭିତରୁ ଖୋଜିଲେ ଇତିହାସ, ପୁରାତନ କିମ୍ବଦନ୍ତୀ ଓ ଆଖ୍ୟାୟିକା ଏବଂ ଖୋଜିଲେ ଏକ ପୁରାତନ ଜାତିର ପ୍ରଚଳିତ ଧର୍ମ-ଧାରଣା । ଏହା ଫଳରେ ସେମାନେ ବେଦର ଆତ୍ମାର ଅନିଷ୍ଟ ସାଧନ କଲେ ଏବଂ ବେଦର ଖାଲି ବାହ୍ୟ ଭାଷାଗତ ଅନୁବାଦ ଉପରେ ଗୁରୁତ୍ୱ ଦେଇ ଏହାର ଆଧ୍ୟାତ୍ମିକ ଲକ୍ଷ୍ୟ ଏବଂ କାବ୍ୟିକ ମହତ୍ତ୍ୱ ଓ ସୌନ୍ଦର୍ଯ୍ୟକୁ ବାଦ ଦେଇଦେଲେ ।" (୧୬-କ)

ଶ୍ରୀଅରବିନ୍ଦଙ୍କର ଏହି ମନ୍ତବ୍ୟକୁ ସତ୍ୟର ସହିତ ଅନୁଧ୍ୟାନ କରିବାର କଥା ।

ଅତି ପ୍ରାଚୀନ କାଳରେ ଭାରତରେ ଯେ ପ୍ରକୃତିର ଉପାସନା ଥିଲା, ଏହା ନିଃସନ୍ଦେହ ରୂପରେ କୁହାଯାଇ ପାରେ । ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ, ଆକାଶ, ବାୟୁ ଆଦିଙ୍କୁ ଦେବତା ରୂପରେ ପୂଜା କରାଯାଉଥିଲା । ଏହିଭଳି ସ୍ଥିତି ତ ଖାଲି ଭାରତରେ ନଥିଲା ; ଏହା ଥିଲା ପୃଥିବୀର ସବୁ ଜାଗାରେ । ଗ୍ରୀସ୍ ଓ ରୋମ୍‌ରେ ତାହା ହିଁ ଘଟିଥିଲା । ଭାରତ ସମେତ ଏହିସବୁ ଦେଶମାନଙ୍କରେ କାଳକ୍ରମେ ଲୋକମାନଙ୍କର ମାନସିକ ସ୍ତରରେ ବିକାଶ

ସଂଘଟିତ ହେବାକୁ ଲାଗିଲା ଏବଂ ତାହାର ଫଳଶ୍ରୁତି ସ୍ୱରୂପ ଏହି ଦେବତାମାନେ ଏକ ଉଚ୍ଚତର ମନସ୍ତାତ୍ତ୍ୱିକ ଆସନ ପାଇଲେ । ଶ୍ରୀଅରବିନ୍ଦ ଏ ପ୍ରକାର ପରିବର୍ତ୍ତିତ ସ୍ଥିତିକୁ ବୁଝାଇବାକୁ ଯାଇ କହିଛନ୍ତି :

> "Pallas Athene who may have been originally a Dawn-Goddess springing in flames from the head of Zeus, the Sky-God, Dyaus of the Veda, has in classical Greece a higher function and was identified by the Romans with their Minerva, the Goddess of learning and wisdom; similarly Saraswati, a River Goddess becomes in India the Goddess of wisdom, learning and the arts and crafts: all the Greek deities have undergone a change in this direction. Appolo the Sun-God has become a God of poetry and prophecy, Hephaestus the Fire-God a divine smith, God of labour. (୧୩)

ଭାରତରେ କିନ୍ତୁ ଏ ଦେବ-ମଣ୍ଡଳର ବିକାଶ ଏକ ଅଭିନବ ରୂପ ଧାରଣ କରିଥିଲା । ଏଠାରେ ଦେବତାମାନେ ସେମାନଙ୍କର ମନସ୍ତାତ୍ତ୍ୱିକ କାର୍ଯ୍ୟାବଧି ସମ୍ପନ୍ନ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ଆଧିଭୌତିକ ସ୍ଥିତି ଓ ସ୍ୱଭାବକୁ ଅକ୍ଷୁଣ୍ଣ ରଖିଥିଲେ । ବୈଦିକ ଦେବତାମାନେ କାଳକ୍ରମେ ଦୂରକୁ ଦୂରକୁ ହଟି ଯାଇ ପୁରାଣର ନୂଆ ନୂଆ ଦେବତାମାନଙ୍କ ପାଇଁ ବାଟ ଛାଡ଼ି ଦେଲେ । ବୈଦିକ ଦେବତାମାନେ କାଳକ୍ରମେ ଦେବ-ମଣ୍ଡଳରେ ଅପେକ୍ଷାକୃତ ନିମ୍ନ ସ୍ଥାନ ଅଧିକାର କଲେ ଏବଂ ଉଚ୍ଚତର ସ୍ଥାନ ପୌରାଣିକ ଦେବତାମାନଙ୍କୁ ମିଳିଲା । ବୈଦିକ ଦେବତାମାନଙ୍କର ସମ୍ପୂର୍ଣ୍ଣ ବିଲୋପ ନହେବାର କାରଣ ହେଲା, ବେଦ ଭାରତରେ ରହିଗଲା ଏବଂ ପୂର୍ବ ଭଳି ମାନ୍ୟତା ପାଇବାକୁ ଲାଗିଲା । ଅନ୍ୟ ପକ୍ଷରେ ଗ୍ରୀସ୍ ଓ ରୋମ୍‌ରେ ସେଭଳି କିଛି ପ୍ରାଚୀନ ଗ୍ରନ୍ଥର ପରମ୍ପରା ନଥିବାରୁ ପୁରାତନ ଦେବତାମାନେ ସଂପୂର୍ଣ୍ଣ ରୂପେ ଅବଲୁପ୍ତ ହୋଇଯାଇ ନୂତନ ଦେବତା ଭାବରେ ରୂପାନ୍ତରିତ ହୋଇଗଲେ । ସେଥିପାଇଁ କେତେକ ବୈଦିକ ଦେବତାଙ୍କର ସହସ୍ର ସହସ୍ର ବର୍ଷ ପରେ ମଧ୍ୟ ଏବେ ଭାରତୀୟ ଦେବ-ମଣ୍ଡଳରେ ପ୍ରସିଦ୍ଧି ରହିଅଛି ।

ଏଭଳି ପରିବର୍ତ୍ତନ କିପରି ସଂଘଟିତ ହେଲା ? କିଭଳି ଭାବରେ ଦେବତାମାନେ ଆଧିଭୌତିକ ସ୍ତରରୁ ଚୈତନ୍ୟ-ସ୍ତରକୁ ଆସିଗଲେ ? ଏହା ଘଟିବାକୁ ବହୁ ବର୍ଷ ଲାଗିଥିଲା । ମାନବୀୟ ସଂସ୍କୃତିର ବିକାଶ ଘଟି ମାନବ କାଳକ୍ରମେ ତା'ର ଭୌତିକ ଜଗତ୍‌ରୁ ମାନସିକ ଜଗତକୁ ଉନ୍ନୀତ ହେଲା । ଚିନ୍ତାର ବଳୟ ମଧ୍ୟ ତା'ର କ୍ରମେ କ୍ରମେ ବଢ଼ିବାକୁ ଲାଗିଲା । ସେ କିଏ ବୋଲି ପ୍ରଶ୍ନଟି ତା'କୁ ବାରମ୍ବାର ଆନ୍ଦୋଳିତ କରିବାକୁ ଲାଗିଲା । ସାରା ବିଶ୍ୱର ସୃଷ୍ଟି ମୂଳରେ କେଉଁ ଶକ୍ତି ଅଛି, କେଉଁ କାରଣ କାର୍ଯ୍ୟ କରୁଛି, ଏ ବିଷୟରେ ସେ ଅଧିକରୁ ଅଧିକ ମନନଶୀଳ ହୋଇ ଉଠିଲା । ଏହି ଅବସ୍ଥାରେ ସେ ହୋଇ ଉଠିଲା ରହସ୍ୟବାଦୀ ; ଆତ୍ମଜ୍ଞାନ ଲାଗି ସତତ ବ୍ୟାକୁଳ । ଏହି ରହସ୍ୟବାଦୀମାନଙ୍କର ତତ୍କାଳୀନ ସଭ୍ୟତା ଉପରେ ଖୁବ୍ ଦୃଢ଼ ପ୍ରଭାବ ଥିଲା । ଆତ୍ମ-ଜ୍ଞାନ ପାଇବାର ଉଦ୍ୟମରୁ ହିଁ ବିଭିନ୍ନ ଆନୁଷ୍ଠାନିକ କର୍ମବିଧି, ଗୂଢ଼ ମନ୍ତ୍ରାଦିର ସୃଷ୍ଟି ହେଲା । ଠିକ୍ ଅନୁରୂପ ପରିସ୍ଥିତିରେ ଭାରତରେ ବେଦର 'ନିନ୍ୟା ବଚାଂସି' ବା 'ଗୂଢ଼ ବାଣୀ'ର ଉଦ୍ଭବ ହୋଇଥିଲା ।

ବୈଦିକ ଋଷିମାନେ ଯେ ବହିର୍ଜଗତକୁ ପୂରାପୂରି ଭୁଲି ଯାଇଥିଲେ, ତାହା ନୁହେଁ ; ସେମାନେ ଏହି ବହିର୍ଜଗତ୍‌ରେ ଏକ ଅନ୍ତର୍ନିହିତ ଏକତାର ସୂତ୍ର ଆବିଷ୍କାର କରିଥିଲେ । ବାସ୍ତବିକ ପ୍ରତ୍ୟେକ ଉନ୍ନତ ସଭ୍ୟତା ଓ ଉନ୍ନତ ଜାତିର ଇତିହାସରେ ଆମେ ଏହି ଦୁଇ ସମାନ୍ତରାଳ ଚିନ୍ତାଧାରାର ସମନ୍ୱୟ ଦେଖିଥାଉଁ । ଆର୍ଯ୍ୟ ଋଷିମାନେ ମଧ୍ୟ ସେହି ସମନ୍ୱୟ ପ୍ରତିଷ୍ଠା କରି ପାରିଥିଲେ । ଏହାକୁ ଲକ୍ଷ୍ୟ କରି ନେହେରୁ କହିଛନ୍ତି :

> "We see from the period of the Rig-Vedic hymns onwards the development of both these streams of life and thought" (୧୩-କ)

ସେ ଯାହାହେଉ, ବୈଦିକ ଋଷିମାନେ ବିଶ୍ୱର ବହିଃପ୍ରକାଶ ମଧ୍ୟରେ ଏକ ଅନ୍ତର୍ନିହିତ ଚିରନ୍ତନ ସତ୍ୟର ଆବିଷ୍କାର କଲେ : ଏକ ଶାଶ୍ୱତ ନିୟମର ସନ୍ଧାନ ପାଇଲେ । ଏହି ଶାଶ୍ୱତ ନିୟମକୁ ସେମାନେ କହିଲେ 'ଋତ' । ଏହି 'ଋତ'ର ଅଧୀନ ହୋଇ ସୂର୍ଯ୍ୟଦେବ ପୂର୍ବ ଦିଗରେ ଉଦୟ ହୋଇ ପଶ୍ଚିମ ଦିଗରେ ଅସ୍ତ ହୁଅନ୍ତି । 'ଋତୁ' ଶବ୍ଦର ଉତ୍ପତ୍ତି ହୋଇଛି ଏହି 'ଋତ'ରୁ । ଏହି ଋତର ଅଧୀନ ହୋଇ ପୃଥିବୀର ଅତି ଶ୍ରେଷ୍ଠ ପ୍ରାଣୀ ବେଙ୍ଗ ମଧ୍ୟ ରାବ କରେ । ବେଙ୍ଗମାନେ କିପରି ଋତର ନିୟମକୁ ମାନି ରାବ କରନ୍ତି, ସେ ବିଷୟରେ ଋଗ୍‌ବେଦରେ ଯେଉଁ ବର୍ଣ୍ଣନା ଦିଆ ଯାଇଛି, ତାହାକୁ ଲକ୍ଷ୍ୟ କରି ଅବିନାଶ ଚନ୍ଦ୍ର ଦାସ କୁହନ୍ତି :

"With regard to the hymns on frogs it may be remarked by critics that it is too common plac a question to write verses upon. But an element of wonder is observable in the mind of the bard that frogs should remain in hiding and silence for a large part of the year and only come out and revel in noisy croakings on the advent of the rains, which fact makes him conclude that :

From souls divine they never swerve ;
But all the reasons laws observe." (୧୪)

ଅତଏବ, ଏଇ ଋତର ସନ୍ଧାନ ପାଇବାରେ ଆର୍ଯ୍ୟ ଋଷିମାନେ ସତତ ବ୍ରତୀ ଥିଲେ; ଏହି ସତ୍ୟର ବନ୍ଦନା ଗାଇବାରେ ଶତମୁଖ ହୋଇ ଉଠୁଥିଲେ । ସେହି ଏକ 'ସତ୍'କୁ ସେମାନେ ବହୁ ପ୍ରକାର କଳ୍ପନା କରୁଥିଲେ । ଋଗ୍‌ବେଦର ଋଷି ତେଣୁ କହୁଥିଲେ :

"ଏକଂ ସନ୍ତଂ ବହୁଧା କଳ୍ପୟନ୍ତି ।"

ଅର୍ଥାତ୍ ସେହି ଏକକୁ ସେମାନେ (ଜ୍ଞାନୀ ଲୋକମାନେ) ବହୁ ପ୍ରକାର କଳ୍ପନା କରିଥାନ୍ତି । ନିଜର ଆତ୍ମା ସହିତ ବିଶ୍ୱାତ୍ମାକୁ ମିଶାଇ ଦେଲାବେଳେ, ନିଜକୁ ବିଶ୍ୱାତ୍ମା ସହିତ ଚିହ୍ନିତ କରି ଦେଲା ବେଳେ ସେମାନେ ମହାନନ୍ଦରେ ଅଧୀର ହୋଇ ଉଠୁଥିଲେ । ଦିବ୍ୟ ଆଲୋକରେ ନିଜକୁ ଆଲୋକିତ କରି ଦେଇ, ଦିବ୍ୟ ପୁଲକର ପରାଗରେ ଅନ୍ତର୍ଭୂତ ହୋଇ ଯାଇ ସେମାନେ ଯେଉଁ ବାଣୀ ଗାଇ ଉଠୁଥିଲେ, ତାହା ହେଉଛି ବେଦର 'ନିଣ୍ୟା ବଚାଂସି' ବା 'ଗୂଢ଼ ବାଣୀ' ଯେଉଁ କଥା ବାମଦେବ ଋଷି କହୁଛନ୍ତି । ଏହି ଦିବ୍ୟାନୁଭୂତିରେ ଯେଉଁ ବାଣୀ ସେମାନଙ୍କ କଣ୍ଠରୁ ସ୍ଫୁରିତ ହୋଇଥିଲା, ତାହାର ଅର୍ଥ ହେଲା ପ୍ରତୀକାତ୍ମକ । ତାହାର ବହିରଙ୍ଗ ଗୋଟିଏ ; କିନ୍ତୁ ଅନ୍ତରଙ୍ଗ ଆଉ ଗୋଟିଏ । ତାହା ଥିଲା ରହସ୍ୟରେ ଭରପୂର । କପାଳି ଶାସ୍ତ୍ରୀଙ୍କ ଭାଷାରେ :

"There is a mystery about the mantras, mystery about the Rishis who commune with the Gods and mystery about the Gods who are hymned." (୧୫)

ବାସ୍ତବିକ ବେଦମନ୍ତ୍ରଗୁଡ଼ିକରେ ସୃଷ୍ଟିର ବସ୍ତୁସ୍ତରର ବିଭବଟି କାବ୍ୟିକ ଭାଷାରେ ପରିସ୍ଫୁଟ । ଯାହା ବିଶ୍ୱରେ ଯେଉଁ ଦିବ୍ୟତ୍ୱ ଭରି ରହିଛି, ତାହାର ବନ୍ଦନା ଏହି ମନ୍ତ୍ରଗୁଡ଼ିକରେ ଅନୁରଣିତ । ରବୀନ୍ଦ୍ରନାଥଙ୍କ ଭାଷାରେ :

> "It was a simple faith of theirs that attributed divinity to every element and force of nature, but it was a brave and joyous one in which the sense of mystery only gave enchantment to life." (୧୬)

ଏହି ରହସ୍ୟର ଉଦ୍‌ଘାଟନରେ ହିଁ ବେଦ-ମନ୍ତ୍ରଗୁଡ଼ିକର ପ୍ରକୃତ ଅର୍ଥ ନିର୍ଣ୍ଣୟ କରି ଯାଇ ପାରିବ ।

ବାସ୍ତବିକ ଶ୍ରୀଅରବିନ୍ଦ ହେଉଛନ୍ତି ପ୍ରଥମ ମନୀଷୀ ଯେ କି ବେଦ-ମନ୍ତ୍ରଗୁଡ଼ିକ ଏହି ପ୍ରତୀକାତ୍ମକ ଦିଗଟିକୁ ଆବିଷ୍କାର କରିଥିଲେ । ସେ ଋଗ୍‌ବେଦର କେତେକ ମନ୍ତ୍ର ଉପରେ ଆଲୋଚନା କରି ସେଗୁଡ଼ିକର ଯେପରି ଭାବରେ ପ୍ରତୀକାତ୍ମକ ବ୍ୟାଖ୍ୟା କରିଛନ୍ତି, ସେ ସବୁର ଅବତାରଣା ଏହି ସୀମିତ ପରିଚ୍ଛେଦ ମଧ୍ୟରେ କରିବା ସମ୍ଭବ ନୁହେଁ । ତେବେ କେତେକ ପ୍ରଧାନ ପ୍ରଧାନ ବୈଦିକ ଶବ୍ଦର ଏବଂ ବୈଦିକ ଉପାଖ୍ୟାନର ପ୍ରତୀକାତ୍ମକ ବ୍ୟାଖ୍ୟା ନିମ୍ନରେ କରି ଯାଉଛି । ଏହି ଆଲୋଚନାକୁ ଯିବା ପୂର୍ବରୁ ବେଦ ସମ୍ପର୍କରେ ଶ୍ରୀଅରବିନ୍ଦ ସାଧାରଣ ଭାବରେ ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା ଦର୍ଶନୀୟ । ସେ କହିଛନ୍ତି :

> "The Veda gave us the first types and figures of these things as seen and formed by an imaged spiritual intuition and psychological and spiritual experience." (୧୭)

ଯଜ୍ଞ :

ପ୍ରଥମେ ଯଜ୍ଞ କଥା ବିଚାର୍ଯ୍ୟ ; କାରଣ ଏହାକୁ ଆଶ୍ରୟ କରି ସାୟଣାଚାର୍ଯ୍ୟ ତାଙ୍କର ବେଦ-ଭାଷ୍ୟ ରଚନା କରିଛନ୍ତି ଏବଂ ସକଳ ବୈଦିକ ମନ୍ତ୍ର ଯଜ୍ଞାଭିମୁଖୀ ବୋଲି ମତ ଦେଇଛନ୍ତି । ତାଙ୍କର ଏହି ମତଟିକୁ ପାଶ୍ଚାତ୍ୟ ପଣ୍ଡିତମାନେ ସ୍ଥୂଳତଃ ଗ୍ରହଣ କରିଛନ୍ତି । ଶ୍ରୀଅରବିନ୍ଦ ତେବେ କିଭଳି ଭାବରେ ଯଜ୍ଞ ଓ ତତ୍ ସଂପୃକ୍ତ ବ୍ୟକ୍ତିମାନଙ୍କୁ ଏବଂ କାର୍ଯ୍ୟବିଧି-ଗୁଡ଼ିକୁ ବ୍ୟାଖ୍ୟା କରିଛନ୍ତି ? ମଣିଷର ଜୀବନ-ଯାତ୍ରା ଅବିରାମ । ପ୍ରତିଟି ମୁହୂର୍ତ୍ତରେ ସେ

କାଟୁଛୁ ନା କିଛି କର୍ମ କରି କରି ଚାଲିଛୁ । ଅତଏବ ଏହି କର୍ମର ଧାରା ମଧ୍ୟ ଅବିରାମ । ଏହି କର୍ମମୟ ଜୀବନଯାତ୍ରା ହିଁ ହେଉଛି ଯଜ୍ଞ । ଏହି ଜୀବନଯାତ୍ରାକୁ ସୁନିୟନ୍ତ୍ରିତ କରି ଆଧ୍ୟାତ୍ମିକ ମାର୍ଗରେ ଚାଲିବା ଏବଂ ପରିଶେଷରେ ଆତ୍ମୋପଲବ୍ଧି କରି ମୁକ୍ତି ବା ମୋକ୍ଷର ଅଧିକାରୀ ହେବା ହେଉଛି ସକଳ ଆତ୍ମାର ପରମ ଲକ୍ଷ୍ୟ । ଏହି ପରମ ଲକ୍ଷ୍ୟ ସ୍ଥାନରେ କିପରି ପହଞ୍ଚିବାକୁ ହେବ, ପରମ ସତ୍ୟଟିକୁ କିପରି ଉପଲବ୍ଧି କରିବାକୁ ହେବ, ପରମ ଆନନ୍ଦର ମହିମାରେ କିପରି ନିଜକୁ ମହିମାନ୍ୱିତ କରିବାକୁ ହେବ, ତାହା ହେଉଛି ସକଳ ଆତ୍ମାଙ୍କର ଅଭୀପ୍ସା । ଏଥିପାଇଁ ମଣିଷକୁ ଅହରହ ଯେଉଁ ଉଦ୍ୟମ କରିବାକୁ ପଡ଼ିବ, ତାହା ହେଉଛି ଯଜ୍ଞ । ଏଥିପାଇଁ ଶ୍ରୀଅରବିନ୍ଦ ଯଥାର୍ଥରେ କହନ୍ତି :

> "The smallest circumstances of the sacrifice around which the hymns were written were intended to carry a symbolic meaning and psychological power of significance as was well known to the writers of the Brahmanas. The sacred verses, each by itself, held to be full of divine meaning, were taken by the thinkers of the Upanishads as profound and pregnant seeds of the truth they sought." (୧୮)

ଏହି ଦିବ୍ୟାନୁଭୂତି ଯେଉଁ ଋଷିମାନଙ୍କର ହୋଇଥିଲା, ସେମାନଙ୍କୁ କୁହା ଯାଉଥିଲା କବି । ଅନ୍ତରତମ ପ୍ରଦେଶର ଦିବ୍ୟ କର୍ଣ୍ଣରେ ଏହି ସତ୍ୟର ବାଣୀ ଯେଉଁମାନେ ଶୁଣି ପାରୁଥିଲେ ସେମାନଙ୍କୁ କୁହା ଯାଉଥିଲା 'ସତ୍ୟ ଶ୍ରୋତାରଃ', ବା 'ସତ୍ୟ ବାଣୀ ଶୁଣିବା ବାଲା' । ବେଦର 'କବୟଃ ସତ୍ୟଶ୍ରୋତାରଃ' ବା 'କବିମାନେ ସତ୍ୟ ଶୁଣିଥାନ୍ତି' ପଙ୍କ୍ତିଟିର ଯାଥାର୍ଥ୍ୟ ଅଛି ଏଇଠି ।

ମାନବଜୀବନରେ ଏହି ଶାଶ୍ୱତ ସତ୍ୟର ଅନୁସନ୍ଧାନ କରିବା ଏବଂ ତାହାକୁ ଉପଲବ୍ଧି କରିବା ହେଉଛି ଯଜ୍ଞର ଉଦ୍ଦେଶ୍ୟ । ଯଜ୍ଞର ପ୍ରତୀକ ମାଧ୍ୟମରେ ବେଦରେ ଏହା ବୁଝାଇ ଦିଆଯାଇଛି । ଏହାର କିନ୍ତୁ ଅର୍ଥ ନୁହେଁ ଯେ ଯଜ୍ଞର ଏହି ଗୋଟିଏ ମାତ୍ର ପ୍ରତୀକାତ୍ମକ ଅର୍ଥ ଅଛି ଏବଂ ଏହାର ଅନ୍ୟ କୌଣସି ଅର୍ଥ ନାହିଁ । ବରଂ ଏହାର ଆଉ ଗୋଟିଏ ଅର୍ଥ ଅଛି ଯାହାକି ସାଧାରଣ ଲୋକଙ୍କ ପାଇଁ ପ୍ରଯୁଜ୍ୟ ; କିନ୍ତୁ ଜ୍ଞାନୀ ଓ ସତ୍ୟାନୁସନ୍ଧିତ୍ସୁଙ୍କ ପାଇଁ ଉପରୋକ୍ତ ପ୍ରତୀକାତ୍ମକ ଅର୍ଥଟି ପ୍ରଯୁଜ୍ୟ, ଯାହାର ବିଚାର ମନସ୍ତାତ୍ତ୍ୱିକ ସ୍ତରରେ କରା ଯାଇଛି । ଶ୍ରୀଅରବିନ୍ଦ ଏହି କଥାଟିକୁ ନିମ୍ନୋକ୍ତ ମତରେ କହିଛନ୍ତି :

"The Vedic hymns represent a religion with a double face—one for the ordinary man wedded to the outer ceremanial and ritual and the other for the initiate. All the details of the ritual carry a double sense." (୧୯)

ଗୀତା ରଚନା ବେଳକୁ ମଧ୍ୟ ଯଜ୍ଞ ସମ୍ପର୍କୀୟ ଏହି ଦ୍ୱିବିଧ ଧାରଣା ଲୋକମାନଙ୍କ ମଧ୍ୟରେ ଥିଲା ବୋଲି ମନେହୁଏ । ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଅହିଂସ ଯଜ୍ଞ ବିଷୟରେ ଗୀତାରେ (୪ର୍ଥ ଅଧ୍ୟାୟ) ବୁଝାଇଛନ୍ତି । ସେଥିରେ ସ୍ପଷ୍ଟ ଭାବରେ କୁହାଯାଇଛି ଯେ ବେଦରେ ବହୁ ପ୍ରକାର ଯଜ୍ଞର ବର୍ଣ୍ଣନା ଅଛି । ଉଦାହରଣ ସ୍ୱରୂପ ଗୋଟିଏ ସ୍ଥାନରେ କୁହାଯାଇଛି ;

"ଏବଂ ବହୁବିଧା ଯଜ୍ଞା ବିତତା ବ୍ରହ୍ମଣୋ ମୁଖେ ।" (୨୦)

ଅର୍ଥାତ୍ ବ୍ରହ୍ମଙ୍କ ମୁଖରୁ ବା ବେଦ-ମୁଖରୁ ବହୁ ପ୍ରକାର ଯଜ୍ଞ ପ୍ରକଟିତ ହୋଇଥାଏ । ଛାନ୍ଦୋଗ୍ୟ ଉପନିଷଦର ମୁନି ଘୋର ଅଙ୍ଗିରସ ମଧ୍ୟ ଏହିପରି ଗୋଟିଏ ଯଜ୍ଞ ବିଷୟରେ ତାଙ୍କ ଶିଷ୍ୟ ଶ୍ରୀକୃଷ୍ଣଙ୍କୁ ଶିକ୍ଷା ଦେଇଥିଲେ । ପରବର୍ତ୍ତୀ କାଳରେ ବୁଦ୍ଧ ଏହି ଅହିଂସ-ଯଜ୍ଞ ଉପରେ ଗୁରୁତ୍ୱ ଦେଇଥିଲେ । ଯଜ୍ଞର ପ୍ରଧାନ ପ୍ରଧାନ ବିଭାବଗୁଡ଼ିକ ହେଲେ ଯଜମାନ, ଯଜ୍ଞରେ ତାଙ୍କୁ ସାହାଯ୍ୟ କରୁଥିବା ବ୍ୟକ୍ତିଗଣ, ଋତ୍ୱିକଗଣ ବା ପୁରୋହିତ ଗଣ, ହବି ବା ଅର୍ପଣ କରି ଯାଉଥିବା ପଦାର୍ଥମାନ ଏବଂ ଏହି ହବିର୍ଦାନର ସୁଫଳ । ବର୍ତ୍ତମାନ ଆମେ ଦେଖିବା, ମନସ୍ତାତ୍ତ୍ୱିକ ଅର୍ଥରେ ଯେଉଁ ଯଜ୍ଞ ବିଷୟ ପ୍ରଖ୍ୟାପନ କରି ଯାଇଛି, ତହିଁରେ ଉପରୋକ୍ତ ବିଭାବଗୁଡ଼ିକ କିପରି ଭାବରେ ଅଭିବ୍ୟଞ୍ଜିତ । ମଣିଷର ଆତ୍ମା ବା ବ୍ୟକ୍ତିତ୍ୱ ହେଉଛି ଯଜମାନ ; ସେ ଯଜ୍ଞ କରୁଥାଏ । ଯଜ୍ଞରେ ଯେଉଁ ଚାରି ପୁରୋହିତ ସାହାଯ୍ୟ କରନ୍ତି, ସେମାନଙ୍କୁ 'ଋତ୍ୱିକ' କୁହାଯାଏ । ସେମାନେ ଯଥାକ୍ରମେ ହେଲେ ହୋତା, ଅଧ୍ୱର୍ଯ୍ୟୁ ଉଦ୍‌ଗାତା ଓ ବ୍ରହ୍ମା । ପ୍ରଥମ ପୁରୋହିତ ହେଲେ ହୋତା, ଯାହାଙ୍କ କାମ ହେଲା ଅନ୍ୟ ପୁରୋହିତମାନଙ୍କୁ ଡାକିବା ଏବଂ ଦେବତାମାନଙ୍କୁ ଯଜ୍ଞପୀଠରେ ଉପସ୍ଥିତ ହେବା ପାଇଁ ଆବାହନ କରିବା । ସେ ଦିବ୍ୟାନୁଭୂତିରେ ଲବ୍ଧ ଋକ୍ ମନ୍ତ୍ର ବୋଲି ଥାନ୍ତି । ଅନ୍ତର୍ନିହିତ ଦୃଷ୍ଟିରେ ସେ ହେଉଛନ୍ତି ମଣିଷର ମନୋମୟ ଜଗତ୍‌ରେ ସୃଷ୍ଟ ପ୍ରଥମ ଦେବତା । ତାଙ୍କୁ ତେଣୁ କୁହା ଯାଇଥାଏ 'ପ୍ରଥମଜ' । ସେ ଦିବ୍ୟ ଆଲୋକରେ ଭାସ୍ୱର । ସେହି ହିଁ ଅନ୍ୟ ଦେବତାମାନଙ୍କୁ ହବିର୍ଦାନ ଗ୍ରହଣ କରିବା ପାଇଁ ଡାକି ଆଣନ୍ତି । ଅଗ୍ନିଙ୍କ ମାଧ୍ୟମରେ ଅନ୍ୟ ଦେବତାମାନଙ୍କୁ ହବି ଅର୍ପଣ କରିବାର ତାତ୍ପର୍ଯ୍ୟ ଅଛି ଏଇଠି । କପାଳି ଶାସ୍ତ୍ରୀଙ୍କ ଭାଷାରେ :

"He is the messenger of the gods, the immortal in the mortal." (୮୯)

ମରଣଶୀଳ ମଣିଷ ହୃଦୟରେ ଅମୃତତ୍ୱର ସଞ୍ଚାର ସେ କରାନ୍ତି । ମଣିଷ ସେତେବେଳେ ବୁଝିପାରେ ଯେ ସେ ବୃଦ୍ଧି ରହୁଛି ଅମୃତର ପାରିବାରରେ । ଏ ପ୍ରକାର ଉପଲବ୍ଧି ବୋଧି-ଦୀପ୍ତ, କିନ୍ତୁ ବୁଦ୍ଧିଦୀପ୍ତ ନୁହେଁ । ପରବର୍ତ୍ତୀ ଯୁଗରେ ମଣିଷର ମନ ସେତେବେଳେ ବୁଦ୍ଧିର ନିୟନ୍ତ୍ରଣକୁ ଆସିଗଲା, ତା' ପାଖରେ ବେଦ-ମନ୍ତ୍ରଗୁଡ଼ିକର ଏ ପ୍ରକାର ପ୍ରତୀକାତ୍ମକ ଅର୍ଥ ସ୍ୱାତ ସ୍ୱପ୍ନ ହୋଇ ଉଠିଲା । ସେ ତହିଁରୁ ଲୌକିକ ଅର୍ଥ ଓ ଅର୍ଥାନ୍ତର ଖୋଜିବାକୁ ଲାଗିଲା । ଏ ପ୍ରକାର ସ୍ଥିତିକୁ ଲକ୍ଷ୍ୟ କରି ଶ୍ରୀଅରବିନ୍ଦ ଗୋଟିଏ ସ୍ଥାନରେ କହିଛନ୍ତି :

> "ବୋଧିଦୀପ୍ତ ଓ ପ୍ରତୀକାତ୍ମକ ପ୍ରାଚୀନ ମନନଶୀଳତାର ସୃଷ୍ଟି ହେଉଛି ବେଦ । କିନ୍ତୁ ତାହା ପରବର୍ତ୍ତୀ ଯୁଗର ବୁଦ୍ଧିନିୟନ୍ତ୍ରିତ ମନ ପାଖରେ ସମ୍ପୂର୍ଣ୍ଣ ଅପରିଚିତ ହୋଇ ପଡ଼ିଥିଲା ; କାରଣ ଏହି ମନ ଗୋଟିଏ ପାଖରେ ଯୁକ୍ତି ବିଚାର ଦ୍ୱାରା ସମୃଦ୍ଧ ଭାବଧାରା ଏବଂ ଅମୂର୍ତ୍ତ ଧାରଣା ଦ୍ୱାରା, ଅନ୍ୟ ଦିଗରେ ଯାହା ଦିବ୍ୟ ରହସ୍ୟମୟ କୌଣସି ମର୍ମର ସନ୍ଧାନ ଦିଏ ନାହିଁ; କିନ୍ତୁ ଇନ୍ଦ୍ରିୟ ଓ ପ୍ରତ୍ୟକ୍ଷ ବୁଦ୍ଧି ପାଖରେ ଯେଉଁ ଭାବେ ଆସି ପହଞ୍ଚେ, ସେହି ଭାବରେ ଗୃହୀତ ଜଡ଼ ଓ ଜୀବନର ତଥ୍ୟ ଦ୍ୱାରା ଶାସିତ ହୁଏ ।" (୮୭)

ହୋତା ଶବ୍ଦର ପ୍ରତୀକାତ୍ମକ ଅର୍ଥଟିକୁ ଏହି ଦୃଷ୍ଟିକୋଣରୁ ବିଚାର କରିବାକୁ ହେବ ; ଏହିପରି ଭାବରେ ଗ୍ରହଣ କରିବାକୁ ହେବ ।

ତା'ପରେ 'ଅଧ୍ୱର୍ଯ୍ୟୁ'ଙ୍କ କଥା ବିଚାର୍ଯ୍ୟ । ସେ ସାଧାରଣ ଯଜ୍ଞରେ ଯଜୁର୍ବେଦର ମନ୍ତ୍ରମାନ ଉଚ୍ଚାରଣ କରି ଅନ୍ୟ ପୁରୋହିତମାନଙ୍କୁ ତଦନୁଯାୟୀ କରିବାକୁ ପରାମର୍ଶ ଦେଇଥାନ୍ତି । ସେ 'ଅଧ୍ୱର' ବା ଯଜ୍ଞର ଜଣେ ଶୀର୍ଷସ୍ଥାନୀୟ କାର୍ଯ୍ୟନିର୍ବାହୀଙ୍କ ଭଳି କାମ କରନ୍ତି । 'ଅଧ୍ୱ' ଅର୍ଥ ହେଲା ବାଟ । 'ଋ' ଧାତୁ ଉଭୟ ଦାନାର୍ଥବୋଧକ ଓ ଗମନାର୍ଥବୋଧକ । ଅତଏବ 'ଅଧ୍ୱର' ଶବ୍ଦର ଅର୍ଥ ହେଲା 'ବାଟ ଗ୍ରଚିବା' । ଜୀବନ-ଯଜ୍ଞ ଏକ ତୀର୍ଥଯାତ୍ରା ଭଳି । ତୀର୍ଥସ୍ଥାନ ହେଉଛି ଏହାର ଚରମ ଲକ୍ଷ୍ୟ । ଏହିଠାରେ ପହଞ୍ଚିଲେ ଯାଇ ଏ ଯାତ୍ରାର ପରିସମାପ୍ତି ହୋଇଥାଏ । ଏହି ସ୍ଥାନରେ ପହଞ୍ଚିବା ଲାଗି ଯେଉଁ ଦେବତା ମଣିଷକୁ ସହାୟକ ହୋଇଥାନ୍ତି, ସେ ହେଲେ 'ଅଧ୍ୱର୍ଯ୍ୟୁ' । ହୋତାଙ୍କ ଆବାହନୀ ବାଣୀ

ଶୁଣିବା ମାତ୍ରେ ମଣିଷର ଚକ୍ଷୁ-ତଳେ ହୋଇଥାଏ 'ଅଧ୍ୱର୍ଯ୍ୟୁ'ଙ୍କର ଆବିର୍ଭାବ । ଏହା ହେଲା ଅଧ୍ୱର୍ଯ୍ୟୁ ଶବ୍ଦର ପ୍ରତୀକାତ୍ମକ ଅର୍ଥ ।

ଅଧ୍ୱର୍ଯ୍ୟୁଙ୍କ ପରେ ଆସନ୍ତି ଉଦ୍‌ଗାତା । ସାଧାରଣ ଯଜ୍ଞରେ ଉଦ୍‌ଗାତାଙ୍କର କାର୍ଯ୍ୟ ହେଲା ସାମ-ମନ୍ତ୍ର ଗାନ କରି ଦେବତାମାନଙ୍କ ମନକୁ ଖୁସି କରାଇବା । ସାମମନ୍ତ୍ରଗୁଡ଼ିକ ସ୍ୱର, ଲୟ ରକ୍ଷି ବୋଲା ଯାଇଥାଏ । ଏ ଗୁଡ଼ିକରେ ଅଛି ସାଙ୍ଗୀତିକତା ; ଏଗୁଡ଼ିକ ପ୍ରାଣମୟ ଭାବର ଉଚ୍ଛ୍ୱାସରେ ଥର ଥର, ଢଳ ଢଳ । ଏ ହେଉଛନ୍ତି ସେହି ଦେବତା ଯାହାଙ୍କ ଆଗମନରେ ଯଜମାନର (ମଣିଷ) ସକଳ ଅସଂପୂର୍ଣ୍ଣତା ଅପସରି ଯାଏ । ତା'ର ଯାତ୍ରାପଥ ସୃଷ୍ଟିତ ଓ ଆଲୋକିତ ହୋଇ ଉଠେ । ସ୍ୱାଙ୍କର ପ୍ରାଣମୟ ଉଦ୍‌ଗୀଥ ଶୁଣି ସେ ମାନସିକ ସ୍ତରରେ ସତ୍ୟ, ଆଲୋକ ଓ ଅମୃତତ୍ୱର ଉଚ୍ଚତମ ଶୃଙ୍ଗକୁ ଆରୋହଣ କରେ । ତା'ର ବ୍ୟକ୍ତିତ୍ୱ ଏକ ନବୀନ ଜୀବନର ଉନ୍ମାଦନାରେ ଭରପୂର ହୋଇଉଠେ ! ତା'ର ଯାତ୍ରାପଥ ସରଳତର ହୋଇ ଉଠେ । ଏହି ପ୍ରତୀକାତ୍ମକ ଅର୍ଥଟିକୁ ବୁଝାଇବାକୁ ଯାଇ କପାଳି ଶାସ୍ତ୍ରୀ ଯଥାର୍ଥରେ କୁହନ୍ତି :

> "In the esoteric meaning, he is the God of rhythms that heal the imperfections and avert the failures and dangers on the path of sacrifice." (୨୩)

ପ୍ରତୀକାତ୍ମକ ଅର୍ଥରେ ଜୀବନ-ଯଜ୍ଞରେ ଏହା ହିଁ ହେଉଛି ଉଦ୍‌ଗାତାଙ୍କର ଭୂମିକା ।

ତା'ପରେ ହୁଏ ବ୍ରହ୍ମାଙ୍କର ଆଗମନ । ସାଧାରଣ ଯଜ୍ଞାନୁଷ୍ଠାନରେ ବ୍ରହ୍ମାଙ୍କ ଆସନ ଖୁବ୍ ଉଚ୍ଚରେ । ସେ ପ୍ରତ୍ୟକ୍ଷ ଭାବରେ କୌଣସି ମନ୍ତ୍ର ଉଚ୍ଚାରଣ କରନ୍ତି ନାହିଁ କିମ୍ବା କୌଣସି ବିଧିବିଧାନ ସମାହିତ କରିବାରେ ଅଂଶ ଗ୍ରହଣ କରନ୍ତି ନାହିଁ । ସେ ସ୍ଥିର ହୋଇ ଗୋଟିଏ ସ୍ଥାନରେ ବସିଥାନ୍ତି ଏବଂ ସାରା ଯଜ୍ଞର କର୍ମ-ବିଧିକୁ ଲକ୍ଷ୍ୟ କରୁଥାନ୍ତି । କୌଣସି ଜାଗାରେ ଭୁଲ ହୋଇଗଲେ ତାହାକୁ ସୁଧାରି ଦେବା ପାଇଁ ସେ ଉପଦେଶ ଦେଇଥାନ୍ତି ; ଯଥାର୍ଥ ଭାବରେ କର୍ମବିଧି ସମାହିତ ହେଉଥିଲେ ତାହାର ଅନୁମୋଦନ କରନ୍ତି । ସେ ପ୍ରତିଟି କର୍ମବିଧି ପରେ ପରେ 'ଓଁ' ବୋଲି ଉଚ୍ଚାରଣ କରି ତାଙ୍କର ଅନୁମୋଦନ ଜଣାଇ ଦିଅନ୍ତି । ଏ ବ୍ରହ୍ମା ତା'ହେଲେ କିଏ ? ଏହାଙ୍କ ସମ୍ପର୍କରେ ଶ୍ରୀଅରବିନ୍ଦ ଯେଉଁ ପ୍ରତୀକାତ୍ମକ ବ୍ୟାଖ୍ୟାର ଅବତାରଣା କରିଛନ୍ତି, ତାହା ବୁଝାଇବାକୁ ଯାଇ କପାଳି ଶାସ୍ତ୍ରୀ କହିଛନ୍ତି :

"The inner sense is too obvious ; the symbol is transparent, and that is the God presiding over the word, the causal material of all mantras." (୨୪)

ଏ ହେଉଛନ୍ତି ଶବ୍ଦବ୍ରହ୍ମ, ଯେ କି ପ୍ରତ୍ୟେକ ମନ୍ତ୍ରର କାରଣ ସ୍ୱରୂପ ବିଦ୍ୟମାନ । ବୋଧିଦୀପ୍ତ ମନ ନେଇ ମଣିଷ ଏହାଙ୍କ ବିଦ୍ୟମାନତାକୁ ଉପଲବ୍‌ଧି କରି ପାରିବ ; କିନ୍ତୁ କେବଳ ବୁଦ୍ଧିଦୀପ୍ତ ମନ ପାଖରେ ଏ ସହଜରେ ଧରା ଦେବେ ନାହିଁ । ମଣିଷର ଚୈତ୍ୟ-ତଳେ ଏହି ଯେଉଁ ଉଚ୍ଚତର ଶକ୍ତିମାନଙ୍କର ଆବିର୍ଭାବ ପର୍ଯ୍ୟାୟକ୍ରମେ ହୋଇଥାଏ ଏବଂ ଯେଉଁ-ମାନଙ୍କ ଆଶ୍ରୟରେ ସେ ତା'ର ଜୀବନ-ଯାତ୍ରାର ପଥଟିକୁ ସରଳୀକୃତ, ବିପଦଶୂନ୍ୟ, ପୁଷ୍ଟିତ ଓ ଆଲୋକିତ କରାଇ ପରମ ଲକ୍ଷ୍ୟ ଆଡ଼କୁ ଅଗ୍ରସର ହୋଇଥାଏ, ସେହିମାନେ ହେଲେ ପ୍ରତୀକାତ୍ମକ ଅର୍ଥରେ ଯଜ୍ଞର ଚାରି ଋତ୍ୱିକ, ହୋତା, ଅଧ୍ୱର୍ଯ୍ୟୁ, ଉଦ୍‌ଗାତା ଓ ବ୍ରହ୍ମା ।

କେବଳ ତ ଋତ୍ୱିକମାନଙ୍କ କ୍ଷେତ୍ରରେ ନୁହେଁ, ଯଜ୍ଞାର୍ପିତ ହବିର୍ଦାନ କ୍ଷେତ୍ରରେ ମଧ୍ୟ ଏଭଳି ପ୍ରତୀକତାର ଝଙ୍କାର ଅନୁରଣିତ । ସାଧାରଣ ଯଜ୍ଞରେ ହବି ସ୍ୱରୂପ ଘୃତ ଅର୍ପଣ କରା ଯାଇଥାଏ । ପ୍ରତୀକାତ୍ମକ ଅର୍ଥରେ ଜୀବନ-ଯଜ୍ଞରେ ଯେଉଁ ଘୃତ ଅର୍ପଣ କରା ଯାଇଥାଏ, ତାହା ହେଲା, 'ଆଲୋକିତ ଚିନ୍ତା' । ବେଦରେ ଅନେକତ୍ର 'ଧିର୍ମସ୍ୟ ଘୃତାଚୀ' କଥା କୁହା ଯାଇଛି । ଏହାର ସାଧାରଣ ଅର୍ଥ ହେଲା 'ଘୃତପୂର୍ଣ୍ଣ ପ୍ରଜ୍ଞା' । ଘୃତପୂର୍ଣ୍ଣ ପ୍ରଜ୍ଞା କହିଲେ କିଛି ଅର୍ଥ ହୁଏନା । ଅତଏବ, ଏହାର ଆଉ କିଛି ଗୋଟାଏ ଅର୍ଥ ଅଛି । ତାହା ହେଉଛି 'ଆଲୋକିତ ଚିନ୍ତା' ଏହି ଅର୍ଥରେ ନେଲେ 'ଘୃତାଚୀ ଧିୟଂ'ର ତାତ୍ପର୍ଯ୍ୟ ହେବ 'ଆଲୋକିତ ପ୍ରଜ୍ଞା' । ଯଜ୍ଞରେ ଘୃତ ଢାଳିବାର ତାତ୍ପର୍ଯ୍ୟ ହେଲା ନିର୍ମଳ ଚିନ୍ତାଯୁକ୍ତ ପ୍ରଜ୍ଞା ନେଇ ଜୀବନ-ଯଜ୍ଞରେ କର୍ମାନୁଷ୍ଠାନରେ ବ୍ରତୀ ହେବା, ଯେପରି କି ଆଧ୍ୟାତ୍ମିକ ସିଦ୍ଧିର ପଥ ସୁଗମ ହୋଇ ଉଠିବ । ଏହି ଶୁଦ୍ଧ ନିର୍ମଳ ଭାବନାରେ ମଣିଷ ଯେତେବେଳେ ବୋଧିଦୀପ୍ତ ହୋଇ ଉଠିବ, ସେତେବେଳେ ସେ ମହାନନ୍ଦର ସ୍ୱାଦୁ ଚାଖି ପାରିବ । ମଧୁଭରା ଆନନ୍ଦର ତରଙ୍ଗ ଲହରୀମାଳା ତାକୁ ଅଭିଭୂତ କରିଦେବ । ଏହିଭଳି ଆନନ୍ଦର କଥା ଋଗ୍‌ବେଦୀୟ ଋଷି ବାମଦେବ ଚିନ୍ତା କରିଥିଲେ । ସେ ଯେଉଁ ମହାନନ୍ଦର ମଧୁଭରା ଊର୍ମି କଥା ବର୍ଣ୍ଣନା କରିଛନ୍ତି, ସେଥି ପ୍ରତି ଲକ୍ଷ୍ୟ କରି ପୁରାଣୀଙ୍କର ବକ୍ତବ୍ୟ ଯଥାର୍ଥରେ ପ୍ରଣିଧାନ-ଯୋଗ୍ୟ :

"Vamadeva does not mean that a wave or flood of wine came mounting up out of the

salt water of the Indian ocean or the Bay of Bengal or even from the fresh water of the river Indus or the Ganges and that this wave is the secret name of the clarified butter." (୧୪)

ସୁଧୀଶ୍ରେଣୀ ଶ୍ରୀଅରବିନ୍ଦଙ୍କ ଦ୍ୱାରା କରା ଯାଇଥିବା 'ଘୃତ' ଶବ୍ଦର ବ୍ୟାଖ୍ୟାଟିକୁ ଗ୍ରହଣ କରି ଏଭଳି କହିଛନ୍ତି । ଏ ସମ୍ପର୍କରେ ଶ୍ରୀଅରବିନ୍ଦଙ୍କର ବକ୍ତବ୍ୟ ଅତି ସ୍ପଷ୍ଟ । ସେ କହିଛନ୍ତି :

"The word 'ghrita' means ghee or clarified butter and this was one of the chief elements of the sacrificial rite ; but 'ghrita' could also mean light, from the root 'ghri' to shine and it is used in this sense in many passages." (୧୫)

ଏହାର ତାତ୍ପର୍ଯ୍ୟ ହେଲା, ଦିବ୍ୟାନୁଭୂତିରେ ମନରୁ ଏକ ମହାଲୋକର ଧାରା ବିଚ୍ଛୁରିତ ହୋଇଥାଏ । ତାହା ମଣିଷର ବୋଧିକୁ ପଖାଳି ଦେଇଥାଏ । ତାହା ହିଁ ହେଉଛି 'ଘୃତ' । ଏହି ଅର୍ଥରେ ହିଁ କୁହା ଯାଇଛି ଇନ୍ଦ୍ରଙ୍କର ଘୋଡ଼ାମାନେ ହେଉଛନ୍ତି 'ଘୃତସ୍ନୁ' ବା 'ଘୃତରେ ଗାଧୋଇଛନ୍ତି' । ଏହି ଘୃତ ତେଣୁ ଦିବ୍ୟାଲୋକ ଛଡ଼ା ଆଉ କିଛି ନୁହେଁ ।

'ଘୃତ' ଶବ୍ଦର ଏହିଭଳି ଇଙ୍ଗିତାର୍ଥ ବିଷୟ ଆମେ ଆଉ ଗୋଟିଏ ବୈଦିକ ସଂସ୍କାର ମଧ୍ୟରୁ ଆବିଷ୍କାର କରିଥାଉଁ । ତାହା ହେଉଛି ବୈଦିକ ଷୋଡ଼ଶ ସଂସ୍କାର ଅନ୍ତର୍ଗତ 'ପୁଂସବନ' ସଂସ୍କାର । ସ୍ତ୍ରୀ ଗର୍ଭବତୀ ଥିବା ସମୟରେ ଗୋଟିଏ ନୂଆ କଂସା ଗିନାରେ ଘିଅ ପୂର୍ଣ୍ଣ କରି ତାଙ୍କ ପାଖକୁ ଅଣାଯାଏ ଏବଂ ତାଙ୍କୁ ସେହି ଘିଅଗିନାଟିକୁ ଚାହିଁବା ପାଇଁ କୁହାଯାଏ । ସ୍ୱାମୀ ତାଙ୍କୁ ପଚାରନ୍ତି, "କିଂ ପଶ୍ୟସି ?" ଅର୍ଥାତ୍ ତୁମେ କ'ଣ ଦେଖୁଛ ? ସେ ଉତ୍ତର ଦିଅନ୍ତି, "ପ୍ରଜାଂ ପଶ୍ୟାମି" । ଅର୍ଥାତ୍ ମୁଁ ମୋ' ସନ୍ତାନକୁ ଦେଖୁଛି । ଏହାର ତାତ୍ପର୍ଯ୍ୟ କ'ଣ ? ଘିଅ ଭିତରେ ମାଆ କିପରି ସନ୍ତାନକୁ ଦେଖି ପାରନ୍ତି ? ସାଧାରଣ ଭାବରେ ଏହା ଅବୋଧ୍ୟ ; କିନ୍ତୁ ପ୍ରତୀକାତ୍ମକ ଅର୍ଥରେ ଏହା ସୁବୋଧ । ଏହାର ତାତ୍ପର୍ଯ୍ୟ ହେଲା, ସ୍ତ୍ରୀ ନିଜ ମନକୁ ଦିବ୍ୟାଲୋକରେ ଝଲସାଇ ଦେଇ ସନ୍ତାନ ବିଷୟ ଚିନ୍ତା କରୁଛନ୍ତି । ସେ ଗର୍ଭାବସ୍ଥାରେ ଯେଉଁଭଳି ଭାବରେ ଚିନ୍ତା କରିବେ, ସନ୍ତାନର

ସ୍ୱଭାବ ଚରିତ୍ର ଠିକ୍ ସେହିଭଳି ଭାବରେ ହେବ । ଏହି ଭାବଟି ଏଠାରେ ପ୍ରତୀକ ମାଧ୍ୟମରେ ବ୍ୟଞ୍ଜିତ ।

ଏଭଳି ଯଜ୍ଞାନୁଷ୍ଠାନ କଲେ ତା'ର ଫଳଶ୍ରୁତି ପୂର୍ତ୍ତି କ'ଣ ? ସେ କଥା ମଧ୍ୟ ପ୍ରତୀକ ମାଧ୍ୟମରେ ବେଦରେ ସୁସ୍ପଷ୍ଟ କରି ଦିଆଯାଇଛି । ଯଜ୍ଞ ମାଧ୍ୟମରେ ଆର୍ଯ୍ୟ ଋଷି 'ଗୋ' ଓ 'ଅଶ୍ୱ' ବଢ଼ିବାର ମାଗିଛନ୍ତି । ଏହି 'ଗୋ' ଓ 'ଅଶ୍ୱ'ର ଅର୍ଥ କ'ଣ ? ସାଧାରଣ ଅର୍ଥରେ ତ ଏହା ଯଥାକ୍ରମେ ଗାଈ ଓ ଘୋଡ଼ା ଅର୍ଥରେ ପ୍ରଯୁକ୍ତ । ଏହାର ଆଉ କିଛି ପ୍ରତୀକାତ୍ମକ ଅର୍ଥ ଅଛି କି ନାହିଁ ? ଶ୍ରୀଅରବିନ୍ଦ ଏହି ଦୁଇ ଶବ୍ଦର ମଧ୍ୟ ପ୍ରତୀକାତ୍ମକ ଅର୍ଥ ଦେଇଛନ୍ତି । 'ଗୋ' ହେଉଛି ଆଲୋକର ପ୍ରତୀକ । ଏହା ହେଉଛି ସେହି ଆଲୋକ, ଯାହା ମନ-ମନ୍ଦିରକୁ ଉଜ୍ଜ୍ୱଳ ଆଲୋକରେ ଉଦ୍ଭାସିତ କରି ରଖିଥାଏ । ମଣିଷ ଏଠାରେ ସେହି ଦିବ୍ୟାଲୋକ ପାଇବା ପାଇଁ ପ୍ରାର୍ଥନା କରୁଛି । ସେହିପରି ଅଶ୍ୱର ଅର୍ଥ ହେଲା ପ୍ରାଣ-ଶକ୍ତି । ଏହା ହେଉଛି ସେହି ପ୍ରାଣ-ଶକ୍ତି ଯାହା କି ମଣିଷକୁ କର୍ମଚଞ୍ଚଳ କରାଇ ଥାଏ; ତା' ମନରେ କର୍ମ ଲାଗି ଅଶେଷ ଉଦ୍ଦୀପନା ଭରି ଦେଇଥାଏ । ଏହା ତେଣୁ ହେଉଛି ତା'ର କାମ୍ୟ । ଯଜ୍ଞର ଏହି ପ୍ରାଣଦାୟିନୀ ଶକ୍ତି ଓ ପ୍ରାଣମୟତା ଉପରେ ଗୁରୁତ୍ୱ ଆରୋପ କରି ତେଣୁ କୁହାଯାଇଛି :

> "It should be clearly understood that the essential element of Yajna is pranic energy ; there can be no Yajna without prana, wherein prana stands for the life-principle. Yajna comprehends the working of life in all creatures." (୨୭)

ଗୋପଥ ବ୍ରାହ୍ମଣରେ ମଧ୍ୟ ଯଜ୍ଞ ଉପରେ ଦେବତ୍ୱ ଆରୋପ କରାଯାଇଛି । ସେଠାରେ କୁହା ଯାଇଛି :

> "ଏଷ ହ ବୈ ମହାନ୍ ଦେବୋ ଯଦ୍ ଯଜ୍ଞଃ" (୨୮)

ଅର୍ଥାତ୍ ଏହି ଯେଉଁ ଯଜ୍ଞ, ସେ ଜଣେ ମହାନ୍ ଦେବତା ଅଟନ୍ତି । ଶତପଥ ବ୍ରାହ୍ମଣ ମଧ୍ୟ ଠିକ୍ ଅନୁରୂପ ସ୍ୱର ଉଚ୍ଚାରଣ କରିଥାଏ :

> "ଏଷ ବୈ ପ୍ରତ୍ୟକ୍ଷଂ ଯଜ୍ଞୋ ପ୍ରଜାପତିଃ" (୨୮-କ)

ଅର୍ଥାତ୍ ଏହି ଯଜ୍ଞ ହେଲା ସାକ୍ଷାତ୍ ପ୍ରଜାପତି ବା ସୃଷ୍ଟିକର୍ତ୍ତାଙ୍କ ସଦୃଶ । ଏହାର ତାତ୍ପର୍ଯ୍ୟ ହେଲା, ମଣିଷ ଜୀବନରେ ଦେବତ୍ୱର ଅବତରଣ କରାଇବା ହେଉଛି ଯଜ୍ଞର ଲକ୍ଷ୍ୟ । ଏହାର

ସଂସ୍କୃତି ହେଲା ତାହାର ଜୀବନକୁ 'ଗୋ' ବା ଦିବ୍ୟ ଆଲୋକରେ ଭରି ଦେବା ଏବଂ ତାହାକୁ 'ଅଶ୍ୱାନ୍ୱିତ' କରିବା, ଅର୍ଥାତ୍ ତା'ର ଜୀବନରେ ପ୍ରାଣ-ଶକ୍ତି ବା କ୍ରିୟା-ଶକ୍ତିର ଉଜ୍ଜ୍ୱଳ ସ୍ପର୍ଶ ଆଣି ଦେବା । ଅଗ୍ରଓ୍ୱାଲ ଟେଣ୍ଡୁ ଯଥାର୍ଥରେ କହିଛନ୍ତି :

> "Yajna is the foundation of the Vedic thought and forms a complete theoretical statement of the metaphysical view point of the Rishis and its practical application to human life. If Yajna is properly understood, everything else in the Veda may be comprehended as a matter of course. The Rig-Veda as the earliest document of Vedic thought gives us a fully developed picture of the Yajna formulation as applied to cosmic creation and human life." (୨୯)

ଏହି ଅର୍ଥରେ ଯଜ୍ଞକୁ ସାରା ବିଶ୍ୱର କେନ୍ଦ୍ର-ବିନ୍ଦୁ ବୋଲି ଋଗ୍‌ବେଦରେ କୁହାଯାଇଛି । ଭାରତୀୟ ଚେତନା ଜଗତରେ ଯେଉଁ ସୃଷ୍ଟି, ସ୍ଥିତି ଓ ପ୍ରଳୟର ବିସ୍ତାର କରା ଯାଇଛି, ସେ ସମସ୍ତର କେନ୍ଦ୍ରବିନ୍ଦୁ ହେଉଛି ଏହି ଯଜ୍ଞ । ଏ ସମ୍ପର୍କରେ ନିମ୍ନୋକ୍ତ ଋଗ୍‌ବେଦୀୟ ପଙ୍‌କ୍ତିଟି ଦର୍ଶନୀୟ :

> "ଅୟଂ ଯଜ୍ଞୋ ଭୁବନସ୍ୟ ନାଭିଃ ।" (୩୦)

ଅର୍ଥାତ୍ ଏହି ଯଜ୍ଞ ହେଉଛି ସାରା ବିଶ୍ୱର ନାଭିମଣ୍ଡଳ ସଦୃଶ ବା କେନ୍ଦ୍ରବିନ୍ଦୁ । ସଂକ୍ଷେପରେ କହିବାକୁ ଗଲେ ଏହି ଯଜ୍ଞ ହେଉଛି ଏକ ପ୍ରକାର ଆରାଧନା କର୍ମ, ଏକ ପ୍ରକାର ଦାନ କର୍ମ । ଏହା ଅନ୍ତରତମ ପ୍ରଦେଶରେ ଆରାଧନା ଏବଂ ଅନ୍ତରତମ ପ୍ରଦେଶରେ ଆତ୍ମଦାନ । ବେଦବର୍ଣ୍ଣିତ ଏହା ଏକ ଜୀବନ-ଯାତ୍ରା ଓ ଜୀବନ-ସଂଗ୍ରାମ । ଏହି ଯାତ୍ରାର ଅଗ୍ରଣୀ ହେଉଛନ୍ତି ଅଗ୍ନି, ଯାହାଙ୍କ ନେତୃତ୍ୱରେ ମଣିଷ ସତ୍ୟର ଧାମରେ ପହଞ୍ଚି ପାରିବ । ଏହି ଧାମକୁ କୁହାଯାଇଛି ସୂର୍ଯ୍ୟମଣ୍ଡଳ ବା ଶ୍ରୀଅରବିନ୍ଦଙ୍କ ପରିଭାଷାରେ ଅତିମାନସ-ଚେତନା ସ୍ତର । ବାମଦେବ, ଦୀର୍ଘତମା ଆଦି କେତେକ ବରିଷ୍ଠ ଋଷି ଏହି ଅତିମାନସ ଚେତନା-ସ୍ତରରେ ବିଚରଣ କରି ପାରୁଥିଲେ ଏବଂ ସେଥିପାଇଁ ସେମାନେ ଏହି ଦିବ୍ୟଜ୍ଞାନର ଅଧିକାରୀ ହୋଇ ପାରୁଥିଲେ । ସେହି ଅବସ୍ଥାରେ ସେମାନଙ୍କୁ ବେଦ-ମନ୍ତ୍ରଗୁଡ଼ିକ ପ୍ରାପ୍ତ ହୋଇଥିଲା । ସେହି ଦୃଷ୍ଟିରୁ ବେଦକୁ କୁହାଯାଇଥାଏ ଅପୌରୁଷେୟ । ଏହା ମନୁଷ୍ୟର

ଏକ ଅଲୌକିକ ମାନସିକ ଅବସ୍ଥାରେ ସୃଷ୍ଟ, ଉପଲବ୍ଧ ଏବଂ ସେହି ଅବସ୍ଥାରେ ହିଁ ମାନବ-ସମାଜ ଦ୍ୱାରା ପ୍ରାପ୍ତବ୍ୟ । ବୈଦିକ ଋଷି ତେଣୁ ସେହି ଅବସ୍ଥାକୁ ଗୃହି ଆସିବା ପାଇଁ ମାନବ-ସମାଜକୁ ଆହ୍ୱାନ ଦେଇଛନ୍ତି । ଶ୍ରୀଅରବିନ୍ଦ ସେଥିପାଇଁ ଯଥାର୍ଥରେ କହିଛନ୍ତି :

> "ବେଦର ଭାଷା ଅଟେ ସ୍ୱୟଂ ଶ୍ରୁତି ; ଏହା ଗୋଟିଏ ଛନ୍ଦ, ଯାହା କି ବୁଦ୍ଧି ଦ୍ୱାରା ନିର୍ମିତ ନୁହେଁ । ଏହା କେମିତି ସୃଷ୍ଟ ହୋଇ ନାହିଁ ଅସୀମରୁ ବାହାର ଅପୌରୁଷେୟ ଜ୍ଞାନକୁ ଧରି ରଖିବାର କ୍ଷମତା ଥିବା ମନୁଷ୍ୟର ଅନ୍ତଃକରଣରେ ହିଁ ପ୍ରଥମେ ପ୍ରବେଶ କରିଥିଲା ।" (୩୦-କ)

ବୈଦିକ ଋଷି ଏହି ଜ୍ଞାନମୟ ଚକ୍ଷୁରେ ଯଜ୍ଞକୁ ଦେଖିଥିଲେ । ବୈଦିକ ପରମ୍ପରାକୁ ଅନୁସରଣ କରିଥିବା ଗୀତାରେ ମଧ୍ୟ ଆମେ ବହୁ ପ୍ରକାର ଯଜ୍ଞର ଉଲ୍ଲେଖ ଦେଖିବାକୁ ପାଇ ଥାଉଁ । (୩୦-ଖ)

ଏହା ହେଉଛି ଯଜ୍ଞର ପ୍ରତୀକାତ୍ମକ ବ୍ୟାଖ୍ୟା ଏବଂ ଏହାର ଅବବୋଧ ଆସିଲେ ଯାଇ ବୈଦିକ ଜ୍ଞାନର ଦ୍ୱାରକୁ ଉଦ୍‌ଘାଟିତ କରି ହେବ ।

## ବିଶ୍ୱଭୁବନ ଓ ଦେବମଣ୍ଡଳ :

ବିଶ୍ୱଭୁବନ ଓ ଦେବମଣ୍ଡଳ ସମ୍ପର୍କୀୟ ବୈଦିକ ଧାରଣା ମଧ୍ୟ ସମଧିକ ପ୍ରତୀକାତ୍ମକ । ପାଶ୍ଚାତ୍ୟ ପଣ୍ଡିତମାନେ ଅବଶ୍ୟ ଦେବତାମାନଙ୍କର ଏ ପ୍ରକାର ପ୍ରତୀକାତ୍ମକ ଅର୍ଥକୁ ଗ୍ରହଣ କରି ନାହାନ୍ତି । ସେମାନଙ୍କ ମତରେ ଆର୍ଯ୍ୟ ଋଷିମାନେ ଥିଲେ ପ୍ରକୃତିର ଉପାସକ । ଅତି ଆଦିମ ଅବସ୍ଥାରେ ଥାଇ ସେମାନେ ପ୍ରକୃତିର ବିଭିନ୍ନ ରୂପବୈଚିତ୍ର୍ୟରେ ଯେପରି ବିମୋହିତ ହୋଇ ଯାଉଥିଲେ, ସେମିତି ଭାବରେ ଏହାର ତାଣ୍ଡବଲୀଳାରେ ମଧ୍ୟ ଭୟବିହ୍ୱଳ ହୋଇ ଯାଉଥିଲେ । ତେଣୁ 'ଭୟରୁ ଭକ୍ତି' ନ୍ୟାୟରେ ସେମାନେ ପ୍ରକୃତିର ବିଭିନ୍ନ ରୂପକୁ ପୂଜା କରୁଥିଲେ । ସୂର୍ଯ୍ୟ, ଅଗ୍ନି, ବାୟୁ, ନଦୀ, ସମୁଦ୍ର ଆଦିର ଆରାଧନାର ମୂଳ ଭିତ୍ତି ଅଛି ଏଇଠି । ବାସ୍ତବିକ ବିଭିନ୍ନ ପ୍ରାକୃତିକ ଗୁଣାବଳୀକୁ ନେଇ ବିଭିନ୍ନ ବୈଦିକ ଆଖ୍ୟାନଗୁଡ଼ିକର ଉଦ୍ଭବ ହୋଇଛି । ଏଥିପ୍ରତି ଲକ୍ଷ୍ୟ କରି ମ୍ୟାକ୍‌ଡୋନେଲ୍ ଯାହା କହିଛନ୍ତି, ଏଠାରେ ତାହା ଉଦ୍ଧାର କରିବାର ଆବଶ୍ୟକତା ଅଛି । ସେ କହିଛନ୍ତି :

> "Such myths have their source in the attempt of the human mind, in a primitive and

unscientific age, to explain the various forces and phenomena of nature which man is confronted." (୩୧)

ଏହି ଦେବତାମାନଙ୍କୁ ତିନ ଶ୍ରେଣୀରେ ବିଭକ୍ତ କରାଯାଇଛି । କେତେକ ଦେବତା ହେଲେ ପୃଥିବୀର, ଆଉ କେତେକ ହେଲେ ସ୍ୱର୍ଗର ଓ ପୃଥିବୀ ମଧ୍ୟସ୍ଥ ଭୂମି ଅନ୍ତରୀକ୍ଷର ଏବଂ ଆଉ କେତେକ ଦେବତା ହେଲେ ସ୍ୱର୍ଗର । ଏହା ବ୍ୟତୀତ ତ୍ୱଷ୍ଟା, ବିଶ୍ୱକର୍ମା, ଶ୍ରଦ୍ଧା ଆଦି କେତେକ କାଳ୍ପନିକ ଦେବତା ମଧ୍ୟ ଅଛନ୍ତି । (୩୨) ମ୍ୟାକ୍‌ଡୋନେଲ୍ ବୈଦିକ ଆଖ୍ୟାନଗୁଡ଼ିକ ଉପରେ ଏକ ବିଶ୍ଲେଷଣାତ୍ମକ ଆଲୋଚନା କରି Vedic Mythology ନାମକ ପୁସ୍ତକ ଲେଖିଛନ୍ତି । ବିଭିନ୍ନ ବୈଦିକ ମନ୍ତ୍ର ବିଶ୍ଲେଷଣ ଓ ଅନୁଧ୍ୟାନ କରିବା ପରେ ସେ ଉପଲବ୍‌ଧି କରି ପାରିଥିଲେ ଯେ ସାରା ବିଶ୍ୱରେ ଯେ ଏକ ଦିବ୍ୟ ସତ୍ତା ବିଦ୍ୟମାନ ତାହା ଥିଲା ଆର୍ଯ୍ୟ ଋଷିମାନଙ୍କର ଏକ ବଳିଷ୍ଠ ଧାରଣା । ଏ ଧାରଣା ଥିଲା ବହୁ ପ୍ରାଚୀନ । ଏଭଳି ଧାରଣା କୌଣସି ଗୋଟିଏ ଆଦିମ, ଅସଂସ୍କୃତ ଓ ଅନୁନ୍ନତ ଜାତି ପକ୍ଷରେ କଦାପି ସମ୍ଭବ ନୁହେଁ । ସର୍ବତ୍ର ଦିବ୍ୟତାର ସତ୍ତା ଉପଲବ୍‌ଧି କରିବା, ସର୍ବତ୍ର ମହାଲୋକର ସୁଖ-ଦୀପ୍ତ ଝଲକକୁ ଅନୁଭବ କରିବା କେବଳ ଦିବ୍ୟଜୀବନରେ ହିଁ ସମ୍ଭବ । ଆର୍ଯ୍ୟ ଋଷି ସେହି ଦିବ୍ୟଜୀବନର ଅଧିକାରୀ ଥିଲେ ଏବଂ ମଣିଷକୁ ସେହି ଦିବ୍ୟଜୀବନ ପଥରେ ଆଗେଇ ନେବା ପାଇଁ ଥିଲେ ସତତ ଚେଷ୍ଟିତ । ସେହି ଉଦ୍ୟମର ଫଳଶ୍ରୁତି ସ୍ୱରୂପ ସେମାନଙ୍କ କଣ୍ଠରୁ ନିଃସୃତ ହୋଇଥିଲା ବିଶ୍ୱଭୁବନ ଓ ଏହାକୁ ଆବରି ରହିଥିବା ଦେବମଣ୍ଡଳ ସମ୍ପର୍କିତ ଅନର୍ଗଳ ସୂକ୍ତାବଳୀ । ଆର୍ଯ୍ୟ ଋଷିମାନଙ୍କର ସର୍ବତ୍ର ଦିବ୍ୟାନୁଭୂତିର ସ୍ପନ୍ଦନ ଅନୁଭବ କରିବା ସମ୍ପର୍କରେ ମ୍ୟାକ୍‌ଡୋନେଲ୍ ଯାହା କହିଛି, ତାହା ବାସ୍ତବିକ ଏଠାରେ ପ୍ରଣିଧାନଯୋଗ୍ୟ :

"The foundation on which the Vedic mythology rests, is still the belief surviving from a remote antiquity that, all the objects and phenomena of nature, with which man is surrounded, are animate and divine." (୩୩)

ଉପରୋକ୍ତ ଯେଉଁ ଦେବତାମାନଙ୍କ କଥା କୁହାଗଲା, ସେମାନଙ୍କର ବର୍ଗୀକରଣ ପୃଥକ୍ ପୃଥକ୍ ତିନି ଭୁବନକୁ ନେଇ କରାଯାଇଛି । ବୈଦିକ ଭାଷାରେ ଏଗୁଡ଼ିକୁ ତିନି 'ବ୍ୟାହୃତି' ବୋଲି କୁହା ଯାଇଥାଏ । ଏଗୁଡ଼ିକ ହେଲେ 'ଭୂଃ', 'ଭୁବଃ' ଓ 'ସ୍ୱଃ' । ଏହି

'ଭୂର୍ଭୁବଃସ୍ୱଃ' କଥା ପ୍ରସିଦ୍ଧ ବୈଦିକ ଗାୟତ୍ରୀ ମନ୍ତ୍ରରେ ଉଲ୍ଲିଖିତ । (୩୪) ଏହାର ଅର୍ଥ ହେଲା ଯଥାକ୍ରମେ 'ପୃଥିବୀ', 'ଅନ୍ତରୀକ୍ଷ' ଏବଂ 'ଦ୍ୟୌଃ' ବା ସ୍ୱର୍ଗଲୋକ । ଏହାର ଉପରେ ଯେଉଁ ଚତୁର୍ଥ ଲୋକ ଅଛି, ତାହା ଅଛି ଆଲୋକମୟ । ତାହାର ନାମ ହେଉଛି 'ମହଃ' । ଏହାର ଉପରେ ଯେଉଁ ଲୋକଗୁଡ଼ିକ ଗୋଟିକ ପରେ ଗୋଟିଏ ଅଛନ୍ତି, ସେଗୁଡ଼ିକ ଯଥାକ୍ରମେ ହେଲେ ଜନ, ତପଃ ଏବଂ ସତ୍ୟ । ବେଦରେ ସର୍ବତ୍ର ବିଶ୍ୱବ୍ରହ୍ମାଣ୍ଡର ଏହି ସାତ ପ୍ରକାର ସ୍ଥିତିତତ୍ତ୍ୱ ବ୍ୟାଖ୍ୟାତ । ଏଥିପାଇଁ ସପ୍ତ ନଦୀ, ସପ୍ତ ଋଷି, ସପ୍ତ ସ୍ୱସା (ଭଉଣୀ) ଆଦି ନାନା ପ୍ରକାର ପ୍ରତୀକ ବ୍ୟବହୃତ । ମାନବ ଜୀବନ ସାଧାରଣତଃ ନିମ୍ନସ୍ଥ ତିନି ଭୁବନ, ଯଥା, ପୃଥିବୀ, ଅନ୍ତରୀକ୍ଷ ଏବଂ ସ୍ୱର୍ଗ ସହିତ ସଂପୃକ୍ତ । ସେଥିପାଇଁ ବେଦରେ ଏହି ତିନି ଭୁବନ ଓ ତିନି ଭୁବନର ଦେବତାମାନଙ୍କ ବିଷୟରେ ବେଶି ବର୍ଣ୍ଣନା ରହିଅଛି । ତେଣୁ ପାଇଁ ପୃଥିବୀର ଦେବତା ଅଗ୍ନିଙ୍କ ବିଷୟରେ ସବୁଠାରେ ବେଶି ବର୍ଣ୍ଣନା ଅଛି ।

ପ୍ରତୀକାତ୍ମକ ଅର୍ଥରେ ଏହି ତିନି ଭୁବନ ବିଷୟ ମାନସିକ ସ୍ତରରେ ମଧ୍ୟ କଳ୍ପିତ ହୋଇଛି । ଭୌତିକ ଅବବୋଧର ପ୍ରତୀକ ହେଲା ପୃଥିବୀ । 'ଦ୍ୟୌଃ' ବା 'ସ୍ୱର୍ଗ' ହେଲା ଶୁଦ୍ଧ ପବିତ୍ର ମନର ପ୍ରତୀକ । ଏ ପ୍ରକାର ଶୁଦ୍ଧ ମାନସିକ ଅବବୋଧ ଓ ଭୌତିକ ଅବବୋଧ ମଧ୍ୟରେ ଯେଉଁ ସଂଯୋଗକାରୀ ପ୍ରାଣିକ ଅବବୋଧଟି ରହିଛି ତାହା ହେଉଛି ଅନ୍ତରୀକ୍ଷର ପ୍ରତୀକ । ଏହା ବ୍ରହ୍ମାଣ୍ଡଗତରେ ସ୍ୱର୍ଗ ଓ ମର୍ତ୍ତ୍ୟ ମଧ୍ୟରେ ଏକ ସେତୁ ଭଳି ବିଦ୍ୟମାନ । ତିନି ଭୁବନର ଏହି ସ୍ଥିତି ବିଷୟ ପ୍ରତି ଲକ୍ଷ୍ୟ କରି କପାଲୀ ଶାସ୍ତ୍ରୀ ଯାହା କହିଛନ୍ତି, ତାହା ଯଥାର୍ଥରେ ପ୍ରଣିଧାନଯୋଗ୍ୟ :

> "Earth represents and symbolises the physical consciousness, the Heaven, Dyauh symbolises the consciousness in pure mind ; in between, the middle region symbolises the forces of life and consciousness as constituted in the cosmic principle of being that links Heaven and Earth, the mental and physical." (୩୫)

ପୁରାଣୀଙ୍କ ବାଣୀରେ ମଧ୍ୟ ଠିକ୍ ଅନୁରୂପ ସ୍ୱର ଝଙ୍କାର ଅନୁରଣିତ । ସେ କହିଛନ୍ତି :

> "Earth, mid-regions-air and Heaven, the apparent elements represent symbolically the physical, the vital and the mental consciousness

and beyond it is the Sun-world, the plane of truth, the home of the Gods." (୩୫-କ)

ଅତଏବ, ଏଥିରୁ ଏହି ନିଷ୍କର୍ଷ ବାହାରିବ ଯେ ବୈଦିକ ଋଷିମାନେ ମଣିଷ ମନକୁ ଭୌତିକ ଚେତନା-ସ୍ତରରୁ କ୍ରମେ କ୍ରମେ ମାନସିକ ଚେତନା-ସ୍ତରକୁ ଏବଂ ତାଙ୍କୁ ଟପି ଅତିମାନସିକ ଚେତନା ସ୍ତରକୁ ନେବା ପାଇଁ ଚାହୁଁଥିଲେ । ସେମାନେ ଏହି ଅତି-ମାନସିକ ଚେତନା ସ୍ତରରେ ଅବସ୍ଥିତ ଥିଲାବେଳେ ଯେଉଁ ଦିବ୍ୟ ଆନନ୍ଦର ଅନୁଭୂତି ପାଉଥିଲେ, ତାହା ସୂକ୍ତାକାରରେ ସେମାନଙ୍କ ମୁଖରୁ ଝରି ପଡ଼ୁଥିଲା । ଏହି ଅନୁଭୂତିସିକ୍ତ ସୂକ୍ତାବଳୀ ଦ୍ୱାରା ଯେ ସାରା ବିଶ୍ୱ ଉପକୃତ ହେବ, ତାହା ଥିଲା ସେମାନଙ୍କର ଅଭିଳାଷ ଓ ଅଭୀପ୍ସା ।

ବୈଦିକ ଋଷିମାନେ ଅନ୍ତଃସ୍ତଳରେ ଯେଉଁ ଦିବ୍ୟ ଆଲୋକର ସ୍ପର୍ଶ ପାଇ ପାରୁଥିଲେ, ତାହାକୁ ସେମାନେ କହୁଥିଲେ 'ସ୍ୱର୍' । କାଳକ୍ରମେ ଜନସାଧାରଣଙ୍କ ପାଖରେ ଏହା ସ୍ୱର୍ଗ ନାମରେ ପରିଚିତ ହୋଇଥିଲା । ବାସ୍ତବିକ ବୈଦିକ ଋଷିମାନଙ୍କ ନିକଟରେ ସ୍ୱର୍ଗ ଗୋଟାଏ କିଛି ବାହାରର ଜିନିଷ ନଥିଲା ; ତାହା ଏହି ଜୀବନରେ, ଏହି ସଂସାରରେ ମିଳିବା ସମ୍ଭବ ଥିଲା । ଏହି ସ୍ଥିତିକୁ ଲକ୍ଷ୍ୟ କରି ଶ୍ରୀମତ୍ ଅନିର୍ବାଣ କହୁଛନ୍ତି :

"This state of illumination is what the ancient Rishis called 'Svar' or the realm of light, which popular mind translated into the image of heaven, The heaven of popular imagination is an extension or sublimation of sense-experiences, and as such, has been combated in later ages, by the concept of liberation (moksa). But in the mind of the Vedic seers, 'svor' was an actual inner illumination to be realised here on earth, and was not fundamentally different from 'moksa'." (୩୫-ଖ)

ଏ ପ୍ରକାର ସ୍ଥିତି ଅତିମାନସିକ ଚେତନା ସ୍ତରରେ ଉପଲଭ୍ୟ ; ସାଧାରଣ ମାନସିକ ସ୍ତରରେ ଏହି ଅନୁଭୂତିକୁ ଆଣି ହେବ ନାହିଁ ।

କିନ୍ତୁ ଏ ପ୍ରକାର ଅତିମାନସିକ ଚେତନାରେ ପହଞ୍ଚିବା କିଛି ସହଜ କଥା ନୁହେଁ । ମାଟିର ମଣିଷ ଧୂଳିମାଟିର ବନ୍ଧନରୁ ସହଜରେ ମୁକୁଳି ପାରେ ନାହିଁ । କ'ଣ ତା' ପକ୍ଷରେ ଭଲ, ତାହା ଜାଣି ମଧ୍ୟ ସେ ତାହା ପାଖକୁ ସହଜରେ ଯାଇ ପାରେ ନାହିଁ । ସେ ଭଲ କଥା ଦେଖି ପାରେ ନାହିଁ ; ଭଲ କଥା ଶୁଣି ପାରେ ନାହିଁ; ଭଲ କାମ କରି ପାରେ ନାହିଁ । ଅଜ୍ଞାନ ଓ ଅବିଦ୍ୟାରେ ସେ ଅନ୍ଧ ହୋଇ ଯାଇଥାଏ । ମାୟାର ବନ୍ଧନ ତା'କୁ ଖୁବ୍ ଜୋର୍‌ରେ ଜାବୁଡ଼ି ଧରିଥାଏ । ଏଗୁଡ଼ିକୁ ବେଦରେ ଶତ୍ରୁର ପ୍ରତୀକ ଦିଆ ଯାଇଛି । ଶ୍ରୀଅରବିନ୍ଦଙ୍କ ଭାଷାରେ :

> "ଆଲୋକର ସନ୍ତାନ ଓ ଅନ୍ଧକାରର ଅପତ୍ୟଗଣଙ୍କ ଭିତରେ ଏଇଠି ଏଇ ଜୀବନର ରଣାଙ୍ଗନରେ ଚାଲିଛି ଅବିରତ ସଂଗ୍ରାମ ; ତହିଁରେ ଲାଭ ହେଉଛି କେତେ ଧନରତ୍ନ, ଲୁଣ୍ଠିତ ଦ୍ରବ୍ୟ ସବୁ ଦେବଗଣ ସମର୍ପି ଦେଉଛନ୍ତି ଦେବଗଣ ସଂଗ୍ରାମୀ ମଣିଷ ହାତରେ ।" (୩୬)

ବାସ୍ତବିକ ମନୁଷ୍ୟ ଜାତିର ଇତିହାସ କହିଲେ ଆମେ ବୁଝିବା ପ୍ରକୃତି ସହିତ ତା'ର ଅନବରତ ଯୁଦ୍ଧ । ଆଉ ଏହି ଯୁଦ୍ଧରେ ମନୁଷ୍ୟ ସବୁବେଳେ ବିଜୟୀ ହୋଇଥାଏ । ଅନ୍ତର୍ଜଗତରେ ମଧ୍ୟ ଠିକ୍ ଅନୁରୂପ ଯୁଦ୍ଧ ଚାଲିଛି । ଏହି ଯୁଦ୍ଧ ପାଶବିକ ମନୁଷ୍ୟ ଓ ଆଧ୍ୟାତ୍ମିକ ମନୁଷ୍ୟ ମଧ୍ୟରେ ଯୁଦ୍ଧ, ଆଲୋକ ଓ ଅନ୍ଧକାର ମଧ୍ୟରେ ଯୁଦ୍ଧ । ଏଠାରେ ମଧ୍ୟ ମନୁଷ୍ୟ ବିଜୟୀ ହେବ । ଏହି ପ୍ରକାର ବିଜୟ ବୈଦିକ ଋଷି କାମନା କରୁଥିଲେ ।

ଏହି ଶତ୍ରୁମାନଙ୍କୁ କିପରି ଭାବରେ ପରାସ୍ତ କରି ଦିବ୍ୟଜୀବନ ଯାପନ କରିବାକୁ ହେବ, ସେଥିପାଇଁ ଆର୍ଯ୍ୟ ଋଷିମାନେ ଇନ୍ଦ୍ର, ବରୁଣ, ଅଗ୍ନି ଆଦି ବିଭିନ୍ନ ଦେବତାଙ୍କ ନିକଟରେ ପ୍ରାର୍ଥନା କରିଛନ୍ତି । ଏମାନଙ୍କୁ 'ଅସୁର', 'ଦାସ', 'ଦସ୍ୟୁ', 'ପଣି' ଆଦି ନାମରେ ନାମିତ କରା ଯାଇଛି । ଏଥିପାଇଁ ଅନେକ ବୈଦିକ ଆଖ୍ୟାନର ସୃଷ୍ଟି ହୋଇଛି । ଇନ୍ଦ୍ର-ବୃତ୍ର ଆଖ୍ୟାନ, ପୁରୁରବା-ଉର୍ବଶୀ ଆଖ୍ୟାନ ଆଦି ତହିଁର ଅନ୍ତର୍ଗତ । ପୂର୍ବରୁ ଏଥିରୁ କେତେକ ପ୍ରଧାନ ପ୍ରଧାନ ଆଖ୍ୟାନ ବିଷୟରେ ଆଲୋଚନା କରାଯାଇଛି । ଏଠାରେ ପ୍ରଶ୍ନ ହୋଇ ପାରେ, ଯେତେ ଯେତେ ଯୁଦ୍ଧର କଥା ବେଦରେ ଅବତାରଣା କରାଯାଇଛି, ସବୁ ଗୁଡ଼ିକ କ'ଣ ହେଉଛି ପ୍ରତୀକାତ୍ମକ ଯୁଦ୍ଧ ? ସେଗୁଡ଼ିକରେ କ'ଣ କିଛି ହେଲେ ଐତିହାସିକତା ନାହିଁ ? ବୈଦିକ ମନ୍ତ୍ର ଗୁଡ଼ିକରେ କ'ଣ ତତ୍କାଳୀନ ସମାଜର ପ୍ରତିଛବି କିଛି ଅଙ୍କିତ ହୋଇ ନାହିଁ ? ଯେଉଁ 'ଦାଶରାଜ୍ଞ' ଯୁଦ୍ଧ ଏବଂ ଅନ୍ୟାନ୍ୟ କେତେକ ବିଶିଷ୍ଟ ଯୁଦ୍ଧ କଥା ବେଦରେ ବର୍ଣ୍ଣିତ, ସେ ଗୁଡ଼ିକ କ'ଣ ସବୁ ପ୍ରତୀକାତ୍ମକ ? ଆମେ ଦୃଢ଼ ଭାବରେ ଏହାର ଉତ୍ତର 'ନା' ବୋଲି କହୁଛୁ । ବେଦର କେତେକ ମନ୍ତ୍ରରେ ପ୍ରତୀକାତ୍ମକ ଅର୍ଥ ରହିଛି ; ସବୁ ମନ୍ତ୍ରରେ କିନ୍ତୁ ନୁହେଁ ।

ଯେଉଁଠି ଉଚ୍ଚତମ ଚନ୍ଦ୍ରାଧାରର ଆଲୋକ ବିଚ୍ଛୁରିତ, ଯେଉଁଠି ଆଧ୍ୟାତ୍ମିକ ଅଭୀପ୍‌ସା ବ୍ୟଞ୍ଜିତ, ସେହି ସେହି ସ୍ଥାନମାନଙ୍କରେ ହିଁ ବିଭିନ୍ନ ପ୍ରତୀକର ପ୍ରୟୋଗ କରାଯାଇଛି । ଏହି ପ୍ରତୀକଗୁଡ଼ିକ ମଧ୍ୟରୁ କେତେ ଗୁଡ଼ିଏ ହୁଏତ ସେହି ସମୟରେ କିମ୍ବା ତତ୍‌ପୂର୍ବରୁ ଘଟିଥିବା ଘଟଣା ସହିତ ସମ୍ପୃକ୍ତ ଥାଇ ପାରନ୍ତି ଏବଂ ଆଉ କେତେକ ଋଷିମାନଙ୍କର ମାନସ-ସଂଭୂତ ହୋଇ ଥାଇ ପାରନ୍ତି । ଉଦାହରଣ ସ୍ୱରୂପ ବର୍ତ୍ତମାନର ସାହିତ୍ୟରେ ପ୍ରତୀକ ପ୍ରୟୋଗ କଥା ବିଚାରକୁ ନିଆଯାଉ । ଏହି ପ୍ରତୀକଗୁଡ଼ିକରୁ କେତେକ ସାମ୍ପ୍ରତିକ ଘଟଣା ସହିତ ସଂବନ୍ଧିତ ଏବଂ ଆଉ କେତେକ ପ୍ରାଚୀନ ଯୁଗରେ ଘଟିଥିବା ଘଟଣା ସହିତ ସଂବନ୍ଧିତ । ଆଉ କେତେକ ପ୍ରତୀକ ହେଉଛନ୍ତି କାଳ୍ପନିକ । ଠିକ୍ ଅନୁରୂପ ସ୍ଥିତି ବୈଦିକ ଯୁଗରେ ମଧ୍ୟ-ସମ୍ଭବ ହୋଇଥିବ ।

ଉପରଲିଖିତ ଆଲୋଚନା ଦୃଷ୍ଟିରୁ ବେଦରେ ଯେଉଁ ପ୍ରତୀକବାଦର ଅବତାରଣା କରାଯାଇଛି ଏବଂ ଯେଉଁ ରହସ୍ୟବାଦର ଝଙ୍କାର ଅନୁରଣିତ ହୋଇଛି, ସେ ସମ୍ପର୍କରେ ଆମେ ନିମ୍ନଲିଖିତ ନିଷ୍କର୍ଷ ଆଣି ପାରିବା ।

(କ) ବାହ୍ୟ ସ୍ଥିତିଠାରୁ ଆଉ ଗୋଟିଏ ଉଚ୍ଚତର ସ୍ଥିତି ଅଛି । ତାହା ହେଉଛି ସତ୍ୟ, ଆଲୋକ ଏବଂ ଅମୃତତ୍ୱର ସମାହାର । ଆମେ ନିଜକୁ ଭଗବାନଙ୍କ ସହିତ ମିଶାଇ ଦେଇ ପାରିଲେ ଯାଇ ସେହି ସ୍ଥିତିକୁ ପାଇ ପାରିବା ଏବଂ ମୃତ୍ୟୁରୁ ଅମୃତତ୍ୱକୁ ଯାଇ ପାରିବା । ବିଶ୍ୱାତ୍ମା ସହିତ ନିଜ ଆତ୍ମାକୁ ମିଶାଇ ଦେଇ ପାରିଲେ ଯାଇ ଏଭଳି ମାନସିକ ସ୍ଥିତି ସମ୍ଭବ ହୋଇ ପାରିବ ; ଅନ୍ୟଥା ନୁହେଁ ।

(ଖ) ଏ ଜଗତରେ ଯେଉଁ ସତ୍ୟ ଅଛି ବୋଲି ସାଧାରଣରେ କୁହା ଯାଉଛି, ତାହା ମିଥ୍ୟାମିଶ୍ରିତ; ତାହା ପ୍ରକୃତ ସତ୍ୟ ନୁହେଁ । ଅବିଦ୍ୟା ଓ ଅଜ୍ଞାନ ସେହି ସତ୍ୟକୁ ଢାଙ୍କି କରି ରଖିଛି । ସେହି ଆବରଣକୁ ଠେଲି ଦେଲେ ଯାଇ ଆମେ ପ୍ରକୃତ ସତ୍ୟ-ଲୋକକୁ ଯାଇ ପାରିବା । ଏହି ମହାନ୍ ସ୍ୱର୍ଗକୁ ଯିବା ପାଇଁ ଆମକୁ ବାଟ ବାହାର କରିବାକୁ ହେବ ।

(ଗ) ଦେବତାମାନଙ୍କର ସାହାଯ୍ୟ ନେଲେ ଆମେ ଅବିଦ୍ୟା ଓ ଅଜ୍ଞାନର ଶତ୍ରୁ-ମାନଙ୍କୁ ପଦଦଳିତ କରି ପାରିବା ଏବଂ ଆମର ଅଭୀପ୍‌ସିତ ଭୂମିରେ ପହଞ୍ଚି ପାରିବା ।

(ଘ) ଭଗବାନ୍ ହେଉଛନ୍ତି 'ଏକଂ ସତ୍' ବା ଏକମାତ୍ର ସତ୍ୟ । ସେ ହେଉଛନ୍ତି ସତ୍ୟର ସତ୍ୟ । ସେହି ଏକ ସତ୍ୟକୁ ପଣ୍ଡିତମାନେ ବହୁ ପ୍ରକାର କହିଥାନ୍ତି (ଏକଂ ସଦ୍‌ବିପ୍ରାଃ ବହୁଧା ବଦନ୍ତି) ।

## ପୁରୁରବା-ଉର୍ବଶୀ ଆଖ୍ୟାନ :

ଋଗ୍‌ବେଦର ପୁରୁରବା-ଉର୍ବଶୀ ଆଖ୍ୟାନ୍ ଏକ ଅତି ରୋଚକ ପ୍ରଣୟ କାହାଣୀ । ଏହାକୁ ଭିତ୍ତି କରି କାଳିଦାସ ତାଙ୍କର 'ବିକ୍ରମୋର୍ବଶୀୟମ୍' ନାଟକଟି ଲେଖିଛନ୍ତି । ଏହି କାହାଣୀର ଏକ ପ୍ରତୀକାତ୍ମକ ଅର୍ଥ । ସେହି ପ୍ରତୀକାତ୍ମକ ଓ ଗୂଢ଼ ଅର୍ଥଟି ଉପରେ ଚର୍ଚ୍ଚା ଆଲୋଚନା କରିବା ପୂର୍ବରୁ ବେଦୋକ୍ତ କାହାଣୀଟି ବିଷୟରେ ଏକ ସଂକ୍ଷିପ୍ତ ଦୃଷ୍ଟିପାତ କରିବା ଆବଶ୍ୟକ । କାହାଣୀଟି ହେଲା, ରାଜା ପୁରୁରବା ସ୍ୱର୍ଗର ଅପ୍‌ସରା ଉର୍ବଶୀଙ୍କ ପ୍ରେମରେ ପଡ଼ି ତାଙ୍କୁ ସ୍ତ୍ରୀ ରୂପରେ ପାଇବାକୁ କାମନା କଲେ । ଉର୍ବଶୀ ସେଥିରେ ରାଜି ହେଲେ । କିନ୍ତୁ ସେ ତିନୋଟି ସର୍ତ୍ତ ରଖିଲେ । ପ୍ରଥମ ସର୍ତ୍ତ ହେଲା, ସେ (ଉର୍ବଶୀ) ପ୍ରତିଦିନ ଘୃତାହାର କରିବେ । ଦ୍ୱିତୀୟ ସର୍ତ୍ତ ହେଲା, ସେ ତାଙ୍କ ଶୋଇବା ଘର ଖଟ ଖୁରାରେ ତାଙ୍କର ଅତି ପ୍ରିୟ ମେଣ୍ଢା ଛୁଆ ଦୁଇଟିଙ୍କୁ ବାନ୍ଧିବେ । ତୃତୀୟ ସର୍ତ୍ତ ହେଲା, ପୁରୁରବାଙ୍କ ନଗ୍ନ ଦେହ ସେ କଦାପି ଦେଖିବେ ନାହିଁ ; ଏହା ଦେଖିବା ମୁହୂର୍ତ୍ତରେ ହିଁ ସେ ତାଙ୍କୁ ଛାଡ଼ି ଚାଲିଯିବେ । ଉର୍ବଶୀ ବହୁ ଦିନ ଧରି ସ୍ୱର୍ଗରୁ ଦୂରେଇ ଯାଇଥିବା ହେତୁ ଗନ୍ଧର୍ବମାନଙ୍କ ମନରେ ସୁଖ ରହିଲା ନାହିଁ । ସେମାନେ କୌଣସି ମତେ ପୁରୁରବାଙ୍କ ପାଖରୁ ଉର୍ବଶୀଙ୍କୁ ହଟାଇ ଆଣିବାକୁ ଚାହିଁଲେ । ସେମାନେ କପଟ କରି ଉର୍ବଶୀଙ୍କର ଗୋଟିଏ ମେଣ୍ଢା ଚୋରାଇ ଆଣିଲେ । ପୁରୁରବା ଉର୍ବଶୀଙ୍କ ଭବନରେ ପ୍ରବେଶ କରିବା ମାତ୍ରେ ସେ ତାଙ୍କ ଆଗରେ ଏ କଥା ଜଣାଇଲେ । ପୁରୁରବା ମେଣ୍ଢାକୁ ଉଦ୍ଧାର କରିବା ପାଇଁ ସଙ୍ଗେ ସଙ୍ଗେ ଗନ୍ଧର୍ବମାନଙ୍କ ପଛେ ପଛେ ଧାଇଁଲେ । ସେତେବେଳେ ସେ ଥିଲେ ନଗ୍ନ । ଏହି ସମୟରେ ଗନ୍ଧର୍ବମାନେ ମାୟା କରି ବିଜୁଳି ଝଟକାଇ ଦେଲେ । ବିଜୁଳିର ଚମକରେ ଉର୍ବଶୀ ପୁରୁରବାଙ୍କ ନଗ୍ନ ଦେହ ଦେଖି ପାରିଲେ । ପୂର୍ବର ସର୍ତ୍ତ ଅନୁସାରେ ଉର୍ବଶୀ ତାଙ୍କୁ ଛାଡ଼ି ସ୍ୱର୍ଗପୁରୀକୁ ଫେରି ଆସିଲେ । ଉର୍ବଶୀଙ୍କ ବିରହରେ ପୁରୁରବା ଖୁବ୍ ବିକଳ ହୋଇ କାନ୍ଦିଲେ । ତାଙ୍କର ଏଭଳି ବିକଳ ବିଳାପ ଶୁଣି ଗନ୍ଧର୍ବମାନଙ୍କ ମନରେ ଦୟା ହେଲା । ସେମାନେ ପୁରୁରବାଙ୍କୁ ଅଗ୍ନି-ବିଦ୍ୟା ଶିଖାଇ ଦେଲେ ଏବଂ ଏହି ଅଗ୍ନି-ବିଦ୍ୟାର ଅଧିକାରୀ ହେବା ଫଳରେ ପୁରୁରବା ଚିର ଦିନ ପାଇଁ ଉର୍ବଶୀଙ୍କ ସାନ୍ନିଧ୍ୟ ଲାଭ କରି ପାରିଲେ ।

ଏ ତ ଗଳ୍ପ ସାଧାରଣ ଭାବରେ ବୁଝିଲା ଭଳି କାହାଣୀ । ଏହାର ଆଉ ଗୋଟିଏ ପ୍ରତୀକାତ୍ମକ ଅର୍ଥ ଅଛି । ଅରବିନ୍ଦଙ୍କ ମତରେ :

'ପୁରୁ ରୌତି ଇତି ପୁରୁରବାଃ' ।

ଅର୍ଥାତ୍ ଯେ ବେଶି ଚତ୍କାର କରେ, ସେ ହେଲା ପୁରୁରବା । ମଣିଷ କାମନା, ବାସନାର ଅଧୀନ ହୋଇ ସବୁବେଳେ ଖୁବ୍ ଚତ୍କାର କରୁଥାଏ । ତେଣୁ ସେ ହେଲା ପୁରୁରବା । ଏଭଳି ଚତ୍କାରରେ ସୁଖ, ଶାନ୍ତି, ଆନନ୍ଦ କିଛି ହିଁ ମିଳେ ନାହିଁ । ତାହା ପାଇବା ଲାଗି ସେ ଦିବ୍ୟ ଆଲୋକର ସନ୍ଧାନରେ ଥାଏ । 'ଉର୍ବଶୀ' ଅର୍ଥ ହେଲା 'ପ୍ରଚୁର ଆଲୋକ' । ବାସ୍ତବିକ୍ ଋଗ୍‌ବେଦର ଋଷି 'ଉର୍ବଶୀଙ୍କ ଠାରେ ଅଭୟ ଜ୍ୟୋତି' (ଉର୍ବଶ୍ୟାମଭୟଂ ଜ୍ୟୋତିଃ) କାମନା କରି ଇନ୍ଦ୍ରଙ୍କୁ ସ୍ତୁତି କରିଛନ୍ତି । (୩୭) ସେହି ଋଗ୍‌ବେଦର ଆଉ ଠାଏ ମଧ୍ୟ (୭।୩୩।୧୦) ଉର୍ବଶୀଙ୍କୁ 'ବିଜୁଳିର ଝଟକ' ସହିତ ତୁଳନା କରି ଯାଇଛି । ତେଣୁ ଏ ଉର୍ବଶୀ ସାଧାରଣ ଜଣେ ସ୍ତ୍ରୀ ନୁହନ୍ତି, ଯାହାଙ୍କର କାମ ହେଲା ପୁରୁଷର ମନକୁ ହରଣ କରିବା । ବାସ୍ତବିକ୍ ଯାସ୍କ ତାଙ୍କ ନିରୁକ୍ତରେ ଉର୍ବଶୀ ଶବ୍ଦର ବ୍ୟାଖ୍ୟା କରିବାକୁ ଯାଇ କହିଛନ୍ତି :

"ଉରୁଭ୍ୟାଂ ମୈଥୁନେ ଧର୍ମେ ପୁରୁଷମଶ୍ନୁତେ ବ୍ୟାପ୍ନୋତି ଇତି ଉର୍ବଶୀ" ।

ଅର୍ଥାତ୍ ଉରୁ ଯୁଗଳଜନିତ ମୈଥୁନ ଧର୍ମରେ ଯେ ପୁରୁଷକୁ ଆଚ୍ଛନ୍ନ କରି ରଖେ, ସେ ହେଲା ଉର୍ବଶୀ । କିନ୍ତୁ ପ୍ରତୀକାତ୍ମକ ଅର୍ଥଟି ଏହାଠାରୁ ମହତ୍ତର । ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବୈଦିକ ମନ୍ତ୍ରଗୁଡ଼ିକର ଅର୍ଥ କରିବାକୁ ଗଲେ ଆମକୁ ଉର୍ବଶୀ ଶବ୍ଦର ଅର୍ଥ 'ଦିବ୍ୟ ଆଲୋକ' ବୋଲି ଗ୍ରହଣ କରିବାକୁ ହେବ । ଦିବ୍ୟ ଆଲୋକ ମାନସିକ ସ୍ତରରେ ଉପଲଭ୍ୟ । ସେହି ସ୍ତରଟି ହେଉଛି ସ୍ୱର୍ଗ, ଯେଉଁଠି ଉର୍ବଶୀ ଥାଆନ୍ତି, ଅର୍ଥାତ୍ ପ୍ରଚୁର ଆଲୋକ ଥାଏ । 'ପୁରୁରବା' ଅର୍ଥାତ୍ ସବୁବେଳେ ଚତ୍କାର କରୁଥିବା ମଣିଷ ସୁଖ ଓ ଆନନ୍ଦ ପାଇବାକୁ ହେଲେ ଏହି ଉର୍ବଶୀଙ୍କ ସହିତ ତାଙ୍କୁ ମିଳିତ ହେବାକୁ ପଡ଼ିଥାଏ । ପୁରୁରବା ଉର୍ବଶୀଙ୍କୁ ପ୍ରେମ କରିବା ଏବଂ ତାହା ଫଳରେ ଖୁବ୍ ସୁଖରେ ଥିବା ଭାବଟି ଏହିପରି ଭାବରେ ପ୍ରତୀକ ମାଧ୍ୟମରେ ପ୍ରକଟିତ ହୋଇଛି । ପୂର୍ବରୁ କୁହାଯାଇଛି 'ଘୃତ' ଅର୍ଥ ହେଲା ଶୁଦ୍ଧପୂତ ଚିନ୍ତା । ଏହି ଶୁଦ୍ଧପୂତ ଚିନ୍ତା ମାଧ୍ୟମରେ ହିଁ ମନ ମଧ୍ୟରେ 'ଉର୍ବଶୀ' ଅବସ୍ଥା ଆଣି ହେବ ବା ମନରେ ଦିବ୍ୟାଲୋକକୁ ଅବତରଣ କରାଇହେବ । ଉର୍ବଶୀ ସବୁବେଳେ ଘୃତାହାର କରିବେ ବୋଲି ଯେଉଁ ସର୍ତ୍ତ ରଖିଥିଲେ, ତାହାର ଏହା ହେଲା ପ୍ରତୀକାତ୍ମକ ବ୍ୟାଖ୍ୟା । ମଣିଷ ଦିବ୍ୟାଲୋକ ପାଖରୁ ଦୂରେଇ ଗଲେ ଖୁବ୍ ଦୁଃଖ ପାଏ । ସେହି ଆଲୋକର ସ୍ପର୍ଶକୁ ଝୁରି ଝୁରି ସେ କାନ୍ଦୁଥାଏ । ଉର୍ବଶୀଙ୍କ ବିରହରେ ପୁରୁରବା ଯେଉଁ ବିକଳ କ୍ରନ୍ଦନ କରିଥିଲେ ବୋଲି କୁହା ଯାଇଛି, ତାହା ଏହି ଭାବର ସଙ୍କେତ ଦେଉଛି । ପରିଶେଷରେ ପୁରୁରବା ଅଗ୍ନି-ବିଦ୍ୟା ବା 'ଯଜ୍ଞ-ବିଦ୍ୟା'ର ଅଧିକାରୀ ହେବା ଫଳରେ ଉର୍ବଶୀଙ୍କର ଚିର ସାନ୍ନିଧ୍ୟ ଲାଭ କଲେ ବୋଲି କୁହାଯାଇଛି । ପୂର୍ବରୁ କୁହା ଯାଇଛି,

ଯଜ୍ଞର ଉଦ୍ଦେଶ୍ୟ ହେଲା ମାନସିକ ସ୍ତରରେ ଦିବ୍ୟାନୁଭୂତି ଆଣାଇବା, ଦିବ୍ୟାଲୋକର ସଂଚରଣ କରାଇବା । ଏହି ଯଜ୍ଞର ଗୂଢ଼ ରହସ୍ୟଟି ଜାଣିଲେ ମଣିଷ ଚିରନ୍ତନ ଦିବ୍ୟାଲୋକର ସନ୍ଧାନ ପାଇପାରିବ ବୋଲି ଏଠାରେ ପ୍ରତୀକ ମାଧ୍ୟମରେ କୁହାଯାଇଛି । ଅଗ୍ନି-ବିଦ୍ୟା ବଳରେ ପୁରୂରବାଙ୍କର ଚିରନ୍ତନ ଲାଗି ଉର୍ବଶୀଙ୍କ ସହିତ ମିଳନ ହେଲା ବୋଲି ଯେଉଁ ସଂକେତ ଦିଆ ଯାଇଛି, ତାହାର ତାତ୍ପର୍ଯ୍ୟ ଅଛି ଏକଟି । ଏହା ହେଲା ସଂକ୍ଷେପରେ ପୁରୂରବା-ଉର୍ବଶୀ ଉପାଖ୍ୟାନର ପ୍ରତୀକାତ୍ମକ ବ୍ୟାଖ୍ୟା ।

**ଇନ୍ଦ୍ର-ବୃତ୍ର ଆଖ୍ୟାନ :**

ଇନ୍ଦ୍ର-ବୃତ୍ର ଆଖ୍ୟାନ ହେଉଛି ଆଉଗୋଟିଏ କ୍ଷେତ୍ର ଯେଉଁଠି ମଧ୍ୟ ପ୍ରତୀକର ପ୍ରୟୋଗ କରାଯାଇଛି । ଏହି ପ୍ରତୀକ ଦୁଇ ପ୍ରକାର । ଗୋଟିଏ ଭୌତିକ ଅର୍ଥରେ ପ୍ରଯୁଜ୍ୟ ଏବଂ ଅପରଟି ବୈଦିକ ଅର୍ଥରେ ପ୍ରଯୁଜ୍ୟ । ବୃତ୍ରାସୁର ଆର୍ଯ୍ୟମାନଙ୍କର ବିରୋଧୀ ଥିଲା । ତା'ର ପ୍ରାଦୁର୍ଭାବରେ ସେମାନେ ଖୁବ୍ କଷ୍ଟ ପାଉଥିଲେ । ସେ ଜଳ-ପ୍ରବାହକୁ ଅଟକାଇ ଦେଇଥିଲା । ଫଳରେ ଫସଲ ଉତ୍ପାଦନ ସମ୍ଭବ ହେଲା ନାହିଁ ; ଜୀବଜନ୍ତୁମାନେ ପାଣି ପିଇବାକୁ ପାଇଲେ ନାହିଁ । ଇନ୍ଦ୍ର ଆର୍ଯ୍ୟମାନଙ୍କୁ ସହାୟତା କଲେ । ସେ ବଜ୍ର ପ୍ରହାର କରି ବୃତ୍ରର ବକ୍ଷକୁ ବିଦୀର୍ଣ୍ଣ କଲେ ; ବୃତ୍ରର ବିନାଶ ହେଲା । ଅବରୁଦ୍ଧ ଜଳ-ଧାର ଉର୍ଜସ୍ୱଳ ଗତିରେ ଧରଣୀ ବକ୍ଷକୁ ଛୁଟି ଆସିଲା । ଖରାଦିନେ ଆକାଶ ମେଘରେ ଢାଙ୍କି ହୋଇଥିଲା ; କିନ୍ତୁ ବର୍ଷା ହେଉ ନଥିଲା । ବର୍ଷା ଦିନ ଆସିବାରୁ ଖୁବ୍ ଜୋର୍‌ରେ ଘଡ଼ଘଡ଼ି ମାରି ବର୍ଷା ହେଲା । ଏହି ପ୍ରାକୃତିକ ଦୃଶ୍ୟଟିକୁ ପ୍ରତୀକ ମାଧ୍ୟମରେ ଏଭଳି ଭାବରେ କୁହାଯାଇଛି ବୋଲି କେତେକ ପଣ୍ଡିତ ମତ ଦେଇଥାନ୍ତି । ଦାଣ୍ଡେକରଙ୍କର ଏହା ହିଁ ମତ । ସେ କହନ୍ତି :

> "But they (descriptions in the Rig-Veda) do certainly indicate that, among the naturalistic elements superimposed on Indra's original character, those normally connected with a rain-god are more prominent." (୩୮)

କିନ୍ତୁ ଏହାର ବ୍ୟାଖ୍ୟା ଆଧ୍ୟାତ୍ମିକ ମାର୍ଗରେ ଆଉ ଗୋଟିଏ ପ୍ରକାର କରାଯାଇପାରିବ । ବୈଦିକ ସ୍ତରର ପ୍ରତୀକଟିକୁ ଗ୍ରହଣ କରି ସେହି ବ୍ୟାଖ୍ୟାଟିକୁ କରାଯାଇଥାଏ । ବୃତ୍ର ହେଲା ସକଳ ଅବିଦ୍ୟା ଓ ଅଜ୍ଞାନ ଯାହା କି ମଣିଷ-ହୃଦୟରେ ଦିବ୍ୟାନନ୍ଦର ଜଳ-ଧାରାଟିକୁ ଶୁଖାଇ ଦେଇଥାଏ । ସେ ଅତି ନିବିଡ଼ ଭାବରେ ଆବୃତ କରି ରଖିଥାଏ ବୋଲି ତାହାର ନାମ

ହେଉଛି ବୃତ୍ର । 'ଇନ୍ଦ୍ର' ହେଉଛନ୍ତି ପରମାତ୍ମା ଭଗବାନ୍ । ସେ ହେଉଛନ୍ତି 'ଶତ୍ରୁର ଦାରଣକାରୀ' (ଇତାଂ ଶତ୍ରୂଣାଂ ଦାରୟିତା ଇତି ଇନ୍ଦ୍ରଃ) । ଅଜ୍ଞାନ ଓ ଅବିଦ୍ୟାର ଶତ୍ରୁକୁ ସେ ଦାରଣ କରନ୍ତି ବୋଲି ତାଙ୍କୁ କୁହାଯାଇଛି ଇନ୍ଦ୍ର । ସେ ଦୟା କରନ୍ତି ; ବୃତ୍ରକୁ ବିନାଶ କରନ୍ତି । ଫଳରେ ଆର୍ଯ୍ୟମାନଙ୍କ ଚିତ୍ତ-ତଳେ ଆନନ୍ଦର କଅଁାର ଫୁଲ ଉଠେ ଏବଂ ଅଜ୍ଞାନର ଆବରଣ ତୁଟିଯାଏ । ଇନ୍ଦ୍ର ଏହିପରି ଭାବରେ ଜଳ-ଧାରକୁ ବୃତ୍ରର କବଳରୁ ମୁକ୍ତ କରିଥାନ୍ତି । ଶ୍ରୀଅରବିନ୍ଦ ଏହିପରି ଭାବରେ ଉପାଖ୍ୟାନଟିର ପ୍ରତୀକାତ୍ମକ ବ୍ୟାଖ୍ୟା କରିଛନ୍ତି । କପାଳୀ ଶାସ୍ତ୍ରୀ ଏହାକୁ ବୁଝାଇବାକୁ ଯାଇ ଯାହା କହିଛନ୍ତି ତାହା ଏଠାରେ ଉଦ୍ଧାର୍ଯ୍ୟ :

> "Our life is a battle between the powers of Light and Truth, the Gods who are the immortals and the powers of darkness. These are spoken of under various names as Vritra or Vritras, Vala and the Panis, the Dasyus and their Kings." (୩୧)

କେବଳ ତ ଇନ୍ଦ୍ର-ବୃତ୍ର ଯୁଦ୍ଧ ନୁହେଁ, ବେଦବର୍ଣ୍ଣିତ ସକଳ ଦେବାସୁର ଯୁଦ୍ଧରେ ହିଁ ଏହି ପ୍ରତୀକଟି ପ୍ରତିବିମ୍ବିତ । ଏପ୍ରକାର ଯୁଦ୍ଧକୁ ଶତପଥ ବ୍ରାହ୍ମଣରେ କୁହାଯାଇଛି 'ଦୈବାସୁରମ୍' । ଏହା ସେହି ଅନ୍ଧକାର ଓ ଆଲୋକ ମଧ୍ୟରେ ଥିବା ନିରନ୍ତର ସଂଘର୍ଷ । ବେଳେ ବେଳେ ଅନ୍ଧକାର ଆଲୋକକୁ ଗ୍ରାସ କରିଯାଇଥାଏ । ତାହା କିନ୍ତୁ ସ୍ୱଳ୍ପ କାଳ ପାଇଁ । ପରେ କିନ୍ତୁ ଆଲୋକର ଜୟପତାକା ଉଡ଼େ ; ଅନ୍ଧକାର-ରାକ୍ଷସର ବିନାଶ ଘଟେ । ଅନ୍ଧକାରରୁ ଆଲୋକକୁ ଯିବା ପାଇଁ ଚିର ବ୍ୟାକୁଳିତ ମାନବଚିତ୍ତରେ ଯେଉଁ ଅଭୀପ୍ସା ଭରି ରହିଛି, ଯେଉଁ ଆବେଦନ ଲହରି ଖେଳୁଛି, ତାହାରି ସ୍ୱତଃସ୍ଫୂର୍ତ୍ତି ପରିପ୍ରକାଶ ହେଉଛି ଦେବାସୁର ସଂଘର୍ଷ ଧର୍ମୀ ମନ୍ତ୍ରାବଳି । ଅଗ୍ରୱାଲ୍ ମଧ୍ୟ ଠିକ୍ ଅନୁରୂପ ମତ ଦେଇଥାନ୍ତି । ତାଙ୍କ ମନ୍ତବ୍ୟ ହେଲା :

> "The account relating to the fight between Deva and Asura is legendary or mythical. The symbolism of the conflict between the powers of light and darkness, of truth and untruth, of immortality and death, of good and evil, has been the

supreme motif throughout the religion and philosophy of India. The Vedas, Brahmanas and Kavyas admit this motif as the basis of their thought and have elaborated it in the form of many legends" (୪୦)

ସଂକ୍ଷେପରେ ଏହା ହିଁ ହେଲା ବୈଦିକ ଇନ୍ଦ୍ର-ବୃତ୍ର ସଂଗ୍ରାମ ତଥା ସକଳ ଦେବାସୁର ସଂଗ୍ରାମର ସାଙ୍କେତିକ ତର୍ଜମା ।

**ବୈଦିକ 'ଗୌ' :**

ବେଦର ପ୍ରତୀକାତ୍ମକ ବ୍ୟାଖ୍ୟା ଉପରେ ମନ୍ତବ୍ୟ ଦେବାକୁ ଯାଇ ଶ୍ରୀଅରବିନ୍ଦ ଆହୁ ଠାଏ କହିଛନ୍ତି :

"There are certain psychological terms which have to be taken consistently in their true sense if we are to find the inner or esoteric meaning." (୪୧)

ଏହି ଗୂଢ଼ ଅର୍ଥଟି ଆବିଷ୍କାର କଲେ ଯାଇ ଋଷିଙ୍କ ଆଧ୍ୟାତ୍ମିକ ଅଭୀପ୍ସା ବଳସ୍ଥକୁ ସ୍ପର୍ଶ କରିହେବ । ତାହା ନହେଲେ, ଆମେ ଦେଖୁଥିଲେ ଦେଖିପାରିବା ନାହିଁ, ଶୁଣୁଥିଲେ ଶୁଣିପାରିବା ନାହିଁ, ଅନୁଭବ କରୁଥିଲେ ଅନୁଭବ କରିପାରିବା ନାହିଁ । ଏହି ଦିବ୍ୟ ଦର୍ଶନ ପାଇବାକୁ ହେଲେ ସାଧାରଣ ଆଲୋକ କାମ ଦେବନାହିଁ; କାରଣ ସାଧାରଣ ଆଲୋକରେ କେବଳ ଲୌକିକ ବସ୍ତୁଗୁଡ଼ିକୁ ଦେଖି ହେବ । ଅନ୍ୟ ପକ୍ଷରେ ଅଲୌକିକ ଜଗତକୁ ଦେଖିବାକୁ ଗଲେ ଆମକୁ ଅଲୌକିକ ଆଲୋକର ସାହାଯ୍ୟ ନେବାକୁ ହେବ । ଏହି ଅଲୌକିକ ଦିବ୍ୟ ଆଲୋକଟି ହେଉଛି 'ଗୌ', ଯାହାକି 'ଗାଈ'ର ପ୍ରତୀକ ଦ୍ୱାରା ବୁଝାଇ ଦିଆଯାଉଛି । ସେଥିପାଇଁ ପୁରାଣୀ ଯଥାର୍ଥରେ କହିଛନ୍ତି :

"It is beyond doubt that 'Gau' is used in the Veda in the double sense of 'Cow' and 'Light'; the Cow is the outer symbol and the inner meaning is light." (୪୨)

ବେଦରେ 'ଧେନୁ' ଶବ୍ଦ ଏହି ଆଲୋକ ଅର୍ଥରେ ପ୍ରଯୁକ୍ତ । ଋଗ୍‌ବେଦର ଗୋଟିଏ ମନ୍ତ୍ରରେ (୧୦।୭୧।୫) କୁହାଯାଇଛି :

"ଅଧେନ୍ୱା ଚରତି ମାୟୟୈଷ ବାଚଂ ଶୁଶ୍ରୁବାନ୍ ଅଫଳାମପୁଷ୍ପାମ୍"

ଅର୍ଥାତ୍ ଯେଉଁ ଲୋକଙ୍କ ପାଖରେ ଆଲୋକ ନାହିଁ, ସେ ବେଦବାଣୀକୁ କେବଳ ଉଚ୍ଚାରଣ ହିଁ କରନ୍ତି; ତହିଁରୁ ସେ କିଛି ଫଳ କି ଫୁଲ ଲାଭ କରିପାରନ୍ତି ନାହିଁ । ଏହାର ଅର୍ଥ ହେଲା ସେ ବେଦ-ମନ୍ତ୍ରରୁ କିଛି ହିଁ ସୁଫଳ ପାଇପାରନ୍ତି ନାହିଁ । 'ଅଧେନୁ' ଲୋକଙ୍କର ଏଭଳି ଦଶା ଘଟେ ବୋଲି ଏଠାରେ କୁହା ଯାଇଛି । 'ଅଧେନୁ' ଲୋକର ଅର୍ଥ ଯଦି ଆମେ 'ଗାଈ ନଥିବା ଲୋକ' ବୋଲି କହିବା, ତା'ହେଲେ କିଛି ବୁଝାପଡ଼ିବ ନାହିଁ । ଗାଈ ସାହାଯ୍ୟରେ କ'ଣ ଦେଖିହୁଏ ନା ଜାଣିହୁଏ ? ଅତଏବ, ଏହାର ଅନ୍ତର୍ନିହିତ ଅର୍ଥ ଆଉ କିଛି ଅଛି । ଏହାର ପ୍ରକୃତ ଅର୍ଥ ହେଲା ଆଲୋକ । ଏହା ସାଧାରଣ ଆଲୋକ ନୁହେଁ; ଏହା ହେଉଛି ଦିବ୍ୟାଲୋକ, ଯାହା ସାହାଯ୍ୟରେ ବେଦର ଗୂଢ଼ାର୍ଥ ବିଷୟରେ ଅବବୋଧ ଆସି ପାରିବ । ମଣିଷ ଜୀବନରେ ଏହାର ଅବତରଣ ହେଲେ ତା'ର ଆଧ୍ୟାତ୍ମିକ ଅଭୀପ୍‌ସାର ଚରମ ପରିପୂର୍ତ୍ତି ଘଟିବ । ଏଭଳି ଚୈତ୍ୟାଲୋକର ସ୍ଥିତି ପ୍ରତି ଲକ୍ଷ୍ୟ କରି ଶ୍ରୀଅରବିନ୍ଦ ଯାହା କହିଛନ୍ତି, ତାହା ଏଠାରେ ପ୍ରଣିଧାନଯୋଗ୍ୟ :

> "ସମସ୍ତ ପ୍ରକାର ଆବରଣକୁ ଛିନ୍ନ କରି କୌଣସି ପ୍ରକାର ସାଲିସକୁ ଅପେକ୍ଷା ନକରି ଯେତେବେଳେ ଅଧ୍ୟାତ୍ମ ଜ୍ଞାନର ପୂର୍ଣ୍ଣ ଆଲୁଅ ଚହଟି ଉଠେ, ସକଳ ପ୍ରତୀକ ଓ ମଧ୍ୟବର୍ତ୍ତୀ ମନଦଣ୍ଡକୁ ଅତିକ୍ରମ କରି ଗୁଳିଯାଏ, ସେତେବେଳେ ନିର୍ବିକଳ୍ପ ଓ ସର୍ବାଲିଙ୍ଗନ ଦିବ୍ୟ ପ୍ରେମର ଉଦ୍ରେକ ହୁଏ, ହୁଏ ସୁନ୍ଦରର ସୌନ୍ଦର୍ଯ୍ୟ ଉଲ୍କୃଷ୍ଟ ଉଠେ; ସର୍ବଭୂତରେ ପ୍ରତିଷ୍ଠିତ ହୁଏ ଏକତାର ମହାନ ଧର୍ମ; ବିଶ୍ୱକରୁଣା ଓ ମହାନ ଭବତା ଜାଗିଉଠେ ପୂର୍ଣ୍ଣ ଅନାବିଲ ଆତ୍ମାର ମଧୁମୟ ପ୍ରଶାନ୍ତ ରୂପ ଓ କାନ୍ତି ନେଇ; ଅଧ୍ୟାତ୍ମ ଆନନ୍ଦ ଭିତରକୁ ଚୈତ୍ୟପୁରୁଷ ଜାଗ୍ରତ ଓ ଉନ୍ମଥିତ ହୁଏ । ଏହିସବୁ ଦିବ୍ୟ ସମ୍ପଦ ହେଉଛି ଭଗବତ ସିଦ୍ଧିପାଇଁ ପ୍ରସ୍ତୁତ ମାନବ ସତ୍ତ୍ୱାର ପ୍ରାପ୍ୟ ଉତ୍ତରାଧିକାର ଏବଂ ତାହାର ପ୍ରାପ୍ତି ପାଇଁ ଆବାହନ ଓ ପଥନିର୍ଦ୍ଦେଶ ହେଉଛି ଭାରତୀୟ ଧର୍ମ ଓ ଯୋଗର ଶ୍ରେଷ୍ଠ କର୍ମ ।" (୪୩)

ଋଗ୍‌ବେଦରେ ଆଉ ଠାଏ (୪।୩।୩୯) କୁହାଯାଇଛି ଯେ, 'ଆଲୋକର ଗାଈମାନେ ସତ୍ୟ ସାହାଯ୍ୟରେ ସତ୍ୟରେ ପ୍ରବେଶ କରିଥାନ୍ତି ।' ଏଠାରେ 'ଗାଈ' ଶବ୍ଦର ଅର୍ଥ ଯଦି ଲୌକିକ ଗାଈ ବୋଲି ଗ୍ରହଣ କରାଯାଏ, ତା'ହେଲେ କିଛି ହିଁ ଅର୍ଥ ବାହାରିବ ନାହିଁ ।

ଅନ୍ୟ ପକ୍ଷରେ 'ଗାଈ' ଶବ୍ଦକୁ ଆଲୋକ ଅର୍ଥରେ ଗ୍ରହଣ କଲେ, ପ୍ରକୃତ ମନସ୍ତାତ୍ତ୍ୱିକ ସ୍ତରର ଅର୍ଥଟି ସ୍ପଷ୍ଟ ହୋଇ ପଡ଼ିବ । ଦିବ୍ୟ ଆଲୋକ ସତ୍ୟର ବାଟଟିକୁ ପରିଷ୍କାର କରିଦିଏ; ଏବଂ ତାହା ଫଳରେ ମଣିଷର ଚୈତ୍ୟପୁରୁଷ ଜାଗ୍ରତ ହୋଇ ପରମ ସତ୍ୟ ନିକଟରେ ପହଞ୍ଚି ପାରିଥାଏ ।

ଋଗ୍‌ବେଦର ଅନେକ ସ୍ଥାନରେ 'ଗବାଂ ରଶ୍ମୀନାଂ' ବା 'ଆଲୋକ-ଗାଈମାନଙ୍କର' ପଙ୍‌କ୍ତିଟିର ପ୍ରୟୋଗ ଅଛି ।(୪୪) ଏ ଗାଈ ତେଣୁ କୌଣସିମତେ ସାଧାରଣ ଗାଈ ହୋଇ ନପାରେ । ଏହିପରି ଭାବରେ ଆଲୋକ ଅର୍ଥରେ 'ଗୌ' ଶବ୍ଦର ପ୍ରୟୋଗ ବେଦରେ ବହୁ ସ୍ଥଳରେ ଦେଖିବାକୁ ମିଳିଥାଏ । ବୈଦିକ ସାହିତ୍ୟରେ ଗାଈକୁ 'ଅଘ୍ନ୍ୟା' ବା ହନନଯୋଗ୍ୟା ନୁହେଁ ବୋଲି ଅନେକଥର କୁହାଯାଇଛି । (୪୫) ସାୟଣାଚାର୍ଯ୍ୟଙ୍କ ମତରେ ଗାଈକୁ ମାରିବା ଉଚିତ ନୁହେଁ ବୋଲି ଏଠାରେ ମାନବ-ସମାଜକୁ ଉପଦେଶ ଦିଆଯାଇଛି । ଏହା ହେଲା ଲୌକିକ ଅର୍ଥ । କିନ୍ତୁ ପ୍ରକୃତ ଗୂଢ଼ ଅର୍ଥ ହେଉଛି ଆଉ ଗୋଟିଏ । ଦିବ୍ୟ ଆଲୋକକୁ ହତ୍ୟା କରିବା ଉଚିତ ନୁହେଁ ବା ସେହି ଆଲୋକର ପଥକୁ ଅବରୁଦ୍ଧ କରିବା ଉଚିତ ନୁହେଁ ବୋଲି ମାନବ ସମାଜକୁ ଉପଦେଶ ଦିଆଯାଇଛି ।

'ଗୋ' ଶବ୍ଦ ସହିତ ସଂଯୁକ୍ତ ହୋଇ ଋଗ୍‌ବେଦରେ ଅନେକଗୁଡ଼ିଏ ଶବ୍ଦ କିମ୍ବା ପଙ୍‌କ୍ତି ରହିଅଛି । ସାୟଣାଚାର୍ଯ୍ୟ ଏଗୁଡ଼ିକର କର୍ମକାଣ୍ଡ ମାର୍ଗରେ ଅର୍ଥ କଲାବେଳେ ଶ୍ରୀଅରବିନ୍ଦ ପ୍ରତୀକାତ୍ମକ ବ୍ୟାଖ୍ୟାର ସୂକ୍ଷ୍ମ ମାଧ୍ୟମରେ ଭିନ୍ନ ପ୍ରକାର ଅର୍ଥ କରିଛନ୍ତି । ସେଥିରୁ କେତେଗୁଡ଼ିଏ ପଙ୍‌କ୍ତି ନିମ୍ନରେ ଉଦ୍ଧୃତ କରାଗଲା । ତହିଁରୁ ନିଷ୍ପନ୍ନ ଉଭୟ ପ୍ରକାର ଅର୍ଥକୁ ପରସ୍ପର ସହିତ ତୁଳନା କରିହେବ ।

| ପଙ୍‌କ୍ତି | ଋଗ୍‌ବେଦମନ୍ତ୍ର ସଂଖ୍ୟା | ସାଙ୍କେତିକ ଅର୍ଥ | ଶ୍ରୀଅରବିନ୍ଦକୃତ ଅର୍ଥ |
|---|---|---|---|
| ଗୋଅଗ୍ରାଃ | ୧।୯୦।୫; ୧।୧୬୨।୮ | ଯେଉଁମାନଙ୍କ ଆଗରେ ଗର୍ଜନଶୀଳ ଜଳ ବିଦ୍ୟମାନ | ଯେଉଁମାନଙ୍କ ଆଗରେ ଆଲୋକ ବିଦ୍ୟମାନ |
| ଗୋରୋହେଣ | ୧।୮୦।୫ | ସ୍ତୁତି ରୂପକ ବଚନ ବହନ କରିବା ଦ୍ୱାରା | ଆଲୋକ ବହନ କରିବା ଦ୍ୱାରା |
| ଗନ୍ଧାରୀଣାମ୍ | ୧।୧୨୬।୭ | ଗନ୍ଧାରଦେଶ ସମ୍ବନ୍ଧୀୟ ମାନଙ୍କର | ଆଲୋକଧାରୀମାନଙ୍କର |
| ଗବାଂ ଉର୍ବ୍ୟମ୍ | ୫।୩୦।୪ | ବଡ଼ ଗାଈଗୋଠ ସମୂହ | ଆଲୋକ ରୂପକ ଗାଈମାନଙ୍କର ପ୍ରଶସ୍ତତା |

ଗୋବସେ ୮।୨୪।୨୦ ସ୍ତୋତ୍ରସମ୍ଭୂତ ଇଚ୍ଛା ଆଲୋକରୂପକ ଗାଇ କରୁଥିବା ଲୋକଙ୍କ ପାଇଁ ଗ୍ରହୁଁଥିବା ଲୋକଙ୍କ ପାଇଁ

ଋଗ୍‌ବେଦରେ ଆଉ ଠାଏ (୧।୮୪।୧୬) 'ଋତସ୍ୟ ଗାବଃ' ବୋଲି ଉଲ୍ଲେଖ ଅଛି । ସାଧାରଣ ଭାବରେ ଏହାର ଅର୍ଥ ହେବ 'ଚରନ୍ତନ ସତ୍ୟର ଗାଇମାନେ' । କିନ୍ତୁ ଏଭଳି ଅର୍ଥର ତାତ୍‌ପର୍ଯ୍ୟ କିଛି ବୁଝା ପଡ଼ିବ ନାହିଁ । ଅତଏବ 'ଗାଇ' ଶବ୍ଦର ଆଉ କିଛି ଅର୍ଥ ନିଶ୍ଚୟ ଅଛି । ତାହା ହେଲା ଆଲୋକ । 'ଚରନ୍ତନ ସତ୍ୟର ଆଲୋକ ରଶ୍ମିସମ୍ଭୂତ' ବୋଲି ଏହି ପଙ୍‌କ୍ତିଟିର ଅର୍ଥ କଲେ ବେଦମନ୍ତ୍ରର ଅନ୍ତର୍ନିହିତ ଅର୍ଥଟି ସୁସ୍ପଷ୍ଟ ହୋଇଉଠିବ । ଏହିଭଳି ଆଉ ଅନେକ ଦୃଷ୍ଟାନ୍ତ ରହିଅଛି । ଏଥିରୁ ଆମେ ସ୍ପଷ୍ଟ ଜାଣିପାରିବା ଯେ ଶ୍ରୀଅରବିନ୍ଦ 'ଗୋ' ଶବ୍ଦର ଯେଉଁ ଆଲୋକାତ୍ମକ ଅର୍ଥଟି ଗ୍ରହଣ କରିଛନ୍ତି, ତଦ୍ଦ୍ୱାରା ବେଦମନ୍ତ୍ରର ଗୂଢ଼ାର୍ଥ ଅଧିକତର ପରିସ୍ଫୁଟ ହୋଇପାରୁଛି । ଅତଏବ ବେଦର 'ନିନ୍ୟା ବଚାଂସି' ବା 'ଗୂଢ଼ ବାଣୀସମ୍ଭୂତ'ର ମର୍ମାର୍ଥ ପାଖରେ ପହଞ୍ଚିବାକୁ ହେଲେ, ଆମକୁ ତାଙ୍କ ଦ୍ୱାରା କରାଯାଇଥିବା ପ୍ରତୀକାତ୍ମକ ଅର୍ଥକୁ ଗ୍ରହଣ କରିବାକୁ ହେବ ।

## ବେଦରେ ଅଶ୍ୱ :

'ଗୋ' ଶବ୍ଦକୁ ବେଦରେ ଆଲୋକ ଅର୍ଥରେ ନିଆଗଲା ଭଳି 'ଅଶ୍ୱ' ଶବ୍ଦକୁ ପ୍ରାଣ-ଶକ୍ତି ଅର୍ଥରେ ନିଆଯାଇଛି । ଏହା ହେଉଛି ମନୁଷ୍ୟର ଅନ୍ତର୍ନିହିତ ପ୍ରାଣ-ଶକ୍ତି । ଏହା ଅନନ୍ତ ପ୍ରାଣ-ଶକ୍ତିର ଅଂଶବିଶେଷ । ତେଣୁ ଏହାର ଶକ୍ତି ଅସୀମ । ମନୁଷ୍ୟ କିନ୍ତୁ ଏହା ଜାଣି ନଥାଏ । ତେଣୁ ଏହା ତା' ମଧ୍ୟରେ ସୁପ୍ତ ହୋଇ ରହିଥାଏ । ଏହି ପ୍ରାଣଶକ୍ତି ଜାଗ୍ରତ ହେଲେ ସେ ଦିବ୍ୟ-ଜ୍ଞାନର ଆଲୋକ ସାହାଯ୍ୟରେ ନିଜକୁ ବିଶ୍ୱପ୍ରାଣ ସହିତ ଚାଳିତ କରିବାକୁ ସମର୍ଥ ହୋଇଥାଏ । ସେଥିପାଇଁ ବୈଦିକ ଋଷି ଏହି ପ୍ରାଣ-ଶକ୍ତିକୁ ଜାଗ୍ରତ କରିବା ପାଇଁ ଭଗବାନଙ୍କ ନିକଟରେ ବହୁଳ ପ୍ରାର୍ଥନା କରିଛନ୍ତି । ଶ୍ରୀଅରବିନ୍ଦଙ୍କ ଦ୍ୱାରା 'ଅଶ୍ୱ' ଶବ୍ଦର ପ୍ରତୀକାତ୍ମକ ବ୍ୟାଖ୍ୟା ବିଷୟ ବୁଝାଇବାକୁ ଯାଇ ପୁରାଣୀ ଏ ସମ୍ପର୍କରେ ଯାହା କହିଛନ୍ତି, ତାହା ଯଥାର୍ଥରେ ଦର୍ଶନୀୟ :

> "The Horse represents the vital life energy in the human being." (୪୭)

ଋଗ୍‌ବେଦର ପ୍ରଥମ ମଣ୍ଡଳସ୍ଥ ୧୬୩ ତମ ସୂକ୍ତର ୭ମ ଋକ୍‌ରେ 'ଅଶ୍ୱ' ସମ୍ପର୍କରେ ଯେଉଁ ବର୍ଣ୍ଣନା ଦିଆଯାଇଛି, ତାହା ଯେ ସାଧାରଣ ଘୋଡ଼ା ଅର୍ଥରେ ପ୍ରଯୁକ୍ତ ନୁହେଁ, ସେ କଥା ସୁସ୍ପଷ୍ଟ । ତହିଁରେ ଅଶ୍ୱର ନିମ୍ନଲିଖିତ ସ୍ୱଭାବ ବର୍ଣ୍ଣିତ ।

(କ) 'ପଦେ ଗୋଃ' ଶବ୍ଦ ଦ୍ୱୟର ପ୍ରୟୋଗ ଦ୍ୱାରା ସୂଚାଇ ଦିଆ ଯାଇଛି ଯେ ଘୋଡ଼ା ଅଛି ଗାଈର ପାଦରେ । ସାଧାରଣ ଘୋଡ଼ା କ'ଣ ସାଧାରଣ ଗାଈର ପାଦରେ ରହିଥାଏ ? ଏହାର ଅର୍ଥ ହେବ 'ଅଶ୍ୱ' ବା ପ୍ରାଣ-ଶକ୍ତି ଅଛି ଦିବ୍ୟାଲୋକର ସ୍ତରରେ । ପ୍ରକୃତ ପକ୍ଷେ ଦିବ୍ୟାଲୋକର ସ୍ତରରେ ହିଁ ଏହି ଅମିତ ପ୍ରାଣ-ଶକ୍ତିକୁ ଉପଲବ୍ଧି କରିବାକୁ ହୋଇଥାଏ; ଅନ୍ୟଥା ନୁହେଁ । ମଣିଷକୁ ଏହି ଅଫୁରନ୍ତ ପ୍ରାଣଶକ୍ତିର ସନ୍ଧାନ ପାଇବାକୁ ହେଲେ ଦିବ୍ୟ ଆଲୋକର ଜୁଆରରେ ଆପଣାକୁ ବୁଡ଼ାଇ ରଖିବାକୁ ହେବ ।

(ଖ) ଅଶ୍ୱ ସମୁଦ୍ରରୁ ଉଦ୍ଭୂତ ହୋଇଥାଏ । ମନୁଷ୍ୟ-ହୃଦୟକୁ ଏଠାରେ ସମୁଦ୍ର ସହିତ ତୁଳନା କରାଯାଇଛି । ବାସ୍ତବିକ ବେଦରେ ଅନେକଥର 'ହୃଦ୍ୟ ସମୁଦ୍ରେ' ବା 'ହୃଦୟ-ସମୁଦ୍ରରେ', ଏହି ପଙ୍‌କ୍ତିର ପ୍ରୟୋଗ କରାଯାଇଛି । ମନୁଷ୍ୟର ହୃଦୟ-ସମୁଦ୍ରରୁ ଏହି ଅମିତ ପ୍ରାଣଶକ୍ତି ଯେ ଉଦ୍ଭବ ହୋଇପାରେ, ସେହି ଭାବଟି ଏଠାରେ ସୂଚିତ । ଦେବାସୁର ସଂଗ୍ରାମର ଶେଷ ଭାଗରେ ସାଗର-ମନ୍ଥନ ଫଳରେ ସମୁଦ୍ରରୁ 'ଉଚ୍ଚୈଃଶ୍ରବା' ନାମକ ଅଶ୍ୱ ବାହାରିଥିଲା ବୋଲି ପୁରାଣମାନଙ୍କରେ ଯେଉଁ ବର୍ଣ୍ଣନା ଦିଆ ଯାଇଛି, ତାହା ବେଦର ଏହି ପ୍ରତୀକକୁ ହିଁ ଆଶ୍ରୟ କରିଛି । ଯାହାର 'ଶ୍ରବସ୍', ବା କୀର୍ତ୍ତିରାଶି ଖୁବ୍ ଉଚ୍ଚ, ତାହାକୁ କୁହାଯାଏ 'ଉଚ୍ଚୈଃଶ୍ରବା' । ଠିକ୍ ଏହି ଅର୍ଥରେ ଭଗବାନ୍ ଅଗ୍ନିଙ୍କୁ ଋଗ୍‌ବେଦର ପ୍ରଥମ ମଣ୍ଡଳସ୍ଥ ପ୍ରଥମ ଶ୍ଳୋକରେ କୁହାଯାଇଛି 'ଚିତ୍ରଶ୍ରବା' ବା 'ବିଚିତ୍ରକୀର୍ତ୍ତିଶାଳୀ' । ଦିବ୍ୟାଲୋକର ପ୍ରଭାବରେ ମନୁଷ୍ୟର ହୃଦୟରେ ଉତ୍ତୁଙ୍ଗ କୀର୍ତ୍ତିଶାଳୀ ପ୍ରାଣ-ଶକ୍ତିର ଆବିର୍ଭାବ ହୁଏ ବୋଲି ଏଠାରେ ସୂଚାଇ ଦିଆଯାଇଛି ।

(ଗ) ଏହି ଘୋଡ଼ାର ଶିଙ୍ଗ ସୁନାରେ ତିଆରି ; ଏହାର ଖୁରା ଲୁହାରେ ତିଆରି ; ଏହାର ଗତି ମନର ଗତି ସହିତ ସମାନ ; ଏ ଜାଣେ ଶ୍ରେଷ୍ଠ କାଠର ଜଣେ ଇନ୍ଦ୍ରଙ୍କ ଭଳି । ଏ ସମ୍ପର୍କରେ ଋଗ୍‌ବେଦର (୧।୧୬୩।୯) ନିମ୍ନଲିଖିତ ପଙ୍‌କ୍ତିଟି ଦ୍ରଷ୍ଟବ୍ୟ :

"ହିରଣ୍ୟ ଶୃଙ୍ଗୋଽୟମ୍ ଅସ୍ୟ ପାଦା ମନୋଜବା ଅବର ଇନ୍ଦ୍ର ଆସୀତ୍ ।"

ଅର୍ଥାତ୍ ଏହାର ଶିଙ୍ଗ ସୁନାର, ଗୋଡ଼ଗୁଡ଼ିକ ଲୁହାର ଏବଂ ଏ ମନ ଭଳି ଗତିଶୀଳ । ଏ ଶ୍ରେଷ୍ଠକାଠର ଜଣେ ଇନ୍ଦ୍ର ଭଳି ଅଟେ ।"

ଯେଉଁ ଦେବତାମାନେ ଏହି ଘୋଡ଼ା ଉପରେ ବସି ଆସିଥାନ୍ତି, ସେମାନେ

ଯଜ୍ଞର ହବି ଆଗ ପାଇଥାନ୍ତି । ଏଭଳି ଘୋଡ଼ା କଦାପି ସାଧାରଣ ଘୋଡ଼ା ହୋଇ ପାରିବ ନାହିଁ । ଏ ଘୋଡା ନଶ୍ଚିତ ଭାବରେ ଚୈତ୍ୟ-ସ୍ତରରେ କଳ୍ପିତ । (୪୭)

ଅଶ୍ୱମେଧ ଯଜ୍ଞର ଅର୍ଥ ନୁହେଁ ସାଧାରଣ ଭାବରେ ବୁଝିଲା ଭଳି ଯଜ୍ଞରେ ଘୋଡ଼ାକୁ ବଳି ଦେବା । ତାହା ତ ହେଲା ଲୌକିକ ଅର୍ଥ । କିନ୍ତୁ ପ୍ରକୃତ ଗୂଢ ଅର୍ଥ ହେଉଛି ଯଜ୍ଞରେ ବା ମନୁଷ୍ୟ-ଜୀବନର ଆଧ୍ୟାତ୍ମିକ ଜୀବନ ଯାହାରେ ପ୍ରାଣ-ଶକ୍ତିକୁ ସମ୍ପୂର୍ଣ୍ଣ ରୂପେ ସମର୍ପଣ କରିଦେବା । ମନୁଷ୍ୟକୁ ତା'ର ସମସ୍ତ ପ୍ରାଣଶକ୍ତି ଦେଇ ଦିବ୍ୟ-ଆଲୋକର ସାହାଯ୍ୟରେ ମନୋମୟ ଜଗତର ଅତୀତ ସେହି ଆଧ୍ୟାତ୍ମିକ ସ୍ଥିତିଟିକୁ ହାସଲ କରିବାକୁ ହେବ । ଏହା ହେଲା ଅଶ୍ୱମେଧ ଯଜ୍ଞର ତାତ୍ପର୍ଯ୍ୟ । ଏହିପରି ଭାବରେ ବେଦରେ 'ଅଶ୍ୱ' ମନୁଷ୍ୟର ଅନ୍ତର୍ନିହିତ ପ୍ରାଣ-ଶକ୍ତି ଭାବରେ କଳ୍ପିତ ।

'ଅଶ୍ୱ'କୁ ମଧ୍ୟ ଭଗବାନ୍ 'ଅଗ୍ନି'ଙ୍କ ସହିତ ବେଦରେ ଚିହ୍ନିତ କରାଯାଇଛି । (୪୮) ଋଗ୍ ବେଦ ବର୍ଣ୍ଣିତ 'ଅଶ୍ୱତ୍ଥ-ସମ୍ଭାର' ଗଳ୍ପରେ ଏହି ଭାବଟି ପରିସ୍ଫୁଟ । ଗଳ୍ପଟିର କଥା-ବସ୍ତୁ ସଂକ୍ଷେପରେ ହେଲା, ଥରେ ଅଗ୍ନି ଆର୍ଯ୍ୟ ଋଷିମାନଙ୍କ ପାଖରୁ ଦୂରେଇ ଯାଇଥିଲେ । ସେମାନେ ତାଙ୍କୁ ବହୁତ ଖୋଜା ଖୋଜି କଲେ ଏବଂ ଶେଷରେ ତାଙ୍କୁ 'ଅଶ୍ୱ' ରୂପରେ ଗୋଟିଏ ଗଛରେ ଦେଖିବାକୁ ପାଇଲେ । ବହୁ ସ୍ତୁତି କରିବା ପରେ ଅଗ୍ନି ସେମାନଙ୍କ ଉପରେ ସନ୍ତୁଷ୍ଟ ହୋଇ ସେମାନଙ୍କ ପାଖକୁ ଆସିଲେ । ଏହି ବୃକ୍ଷଟିରେ ଅଶ୍ୱରୂପୀ ଅଗ୍ନି ରହିଥିଲେ ବୋଲି ଏହାକୁ କୁହାଗଲା 'ଅଶ୍ୱତ୍ଥ' । ସିନ୍ଧୁ-ସଭ୍ୟତାର ଅବଶେଷମାନଙ୍କରୁ ଯେଉଁ ମୃଣ୍ମୟ ମୋହରମାନ ବାହାରିଛି ତନ୍ମଧ୍ୟରୁ ଗୋଟିଏ ମୋହରରେ ଓସ୍ତ ଗଛ ଉପରେ ଅଶ୍ୱର ଚିହ୍ନ ଅଙ୍କିତ ହୋଇଥିବାର ଦେଖାଯାଏ । ଏଥିରେ ବୈଦିକ ମନ୍ତ୍ରର ପ୍ରଭାବ ପଡ଼ିଥିବାର ବିଶ୍ୱାସ କରାଯାଏ । ଓସ୍ତ ଗଛ ଓ ଅଶ୍ୱ ଉଭୟ ଏଠାରେ ପ୍ରତୀକାତ୍ମକ ଅର୍ଥରେ ବ୍ୟବହୃତ । ଓସ୍ତ ଗଛ ହେଉଛି ମନୁଷ୍ୟର ଶରୀର, ଯାହା କି 'ଶ୍ୱ' ବା ଆସନ୍ତା କାଲିକୁ ନଥିବ । ଗୀତାର ରଚନା ହେଲା ବେଳକୁ ମଧ୍ୟ ଶରୀରକୁ ଓସ୍ତ ଗଛ ସହିତ ତୁଳନା କରିବାର ପରମ୍ପରା ଚାଲି ଆସୁଥିଲା । ଏହାର ପ୍ରମାଣ ଆମେ ପାଇ ପାରିବା ଗୀତାର ୧୫ଶ ଅଧ୍ୟାୟସ୍ଥ ପ୍ରଥମ ଶ୍ଳୋକରୁ, ଯେଉଁଠି ଦେହଧାରୀ ମନୁଷ୍ୟର ଜୀବନକୁ ଚେର ଉପରକୁ ଏବଂ ଡାଳ ତଳକୁ ଥିବା ଗୋଟିଏ ଓସ୍ତ ଗଛ ସହିତ ତୁଳନା କରାଯାଇଛି । ସେ ଯାହା ହେଉ, ବେଦ-ମନ୍ତ୍ରରେ ଏହି 'ଅଶ୍ୱ' ବା ପ୍ରାଣ-ଶକ୍ତିକୁ ଆବାହନ କରି ତହିଁରେ ଅଗ୍ନିତ୍ୱର ଆରୋପ କରାଯିବାର ତାତ୍ପର୍ଯ୍ୟ ହେଲା, ଆର୍ଯ୍ୟ ଋଷି ଅନନ୍ତ ପ୍ରାଣମୟ ପରମାତ୍ମା ଅଗ୍ନିଙ୍କର ଦିବ୍ୟ ସ୍ପର୍ଶ ଅନ୍ତସ୍ତଳରେ ଅନୁଭବ କରି, ସେହି ପ୍ରାଣପ୍ରାଚୁର୍ଯ୍ୟରେ ଭରପୂର ହୋଇ ଉଠିବା ପାଇଁ କାମନା କରୁଛନ୍ତି । ତାଙ୍କ ଠାରେ 'ଗୋ' ଓ 'ଅଶ୍ୱ'ର ଅବତରଣ ହେଲେ,

ବା ଧିବ୍ୟାଲୋକ ଓ ଅନନ୍ତ ପ୍ରାଣ-ଶକ୍ତିର ଆବିର୍ଭାବ ହେଲେ ଯାଇ ତାଙ୍କର ଚରମ ଆଧ୍ୟାତ୍ମିକ ଅଭୀପ୍ସା ଚରିତାର୍ଥ ହୋଇ ପାରିବ ।

'ଋତ', 'ସତ୍ୟ', 'ବୃଷଭ', 'ସରସ୍ୱତୀ', 'ସପ୍ତସିନ୍ଧୁ' ଆଦି ଅନେକଗୁଡ଼ିଏ ଶବ୍ଦର ମଧ୍ୟ ପ୍ରତୀକାତ୍ମକ ଅର୍ଥ ବିଦ୍ୟମାନ । ଏହିଭଳି ଆହୁରି ଶତ ଶତ ଶବ୍ଦ ରହିଛି, ଯାହାର ବିଶ୍ଳେଷଣ ଏହି ସୀମିତ ପରିସର ମଧ୍ୟରେ କରିବା ଅସମ୍ଭବ । ଶ୍ରୀଅରବିନ୍ଦଙ୍କ କୃତ ଅର୍ଥକୁ ଭିତ୍ତିଭୂମି ସ୍ୱରୂପ ଗ୍ରହଣ କରି ଏ. ବି. ପୁରାଣୀ (A. B. Purani) ଏହିଭଳି ବହୁ ବୈଦିକ ଶବ୍ଦର ବିଶ୍ଳେଷଣ କରି 'Studies in Vedic Interpretation' ନାମକ ଏକ ପୁସ୍ତକ ଲେଖିଛନ୍ତି । ଏ ସମ୍ପର୍କରେ ଅଧିକ ତଥ୍ୟ ଜାଣିବାକୁ ହେଲେ ତାହା ପଠନୀୟ । (୪୯)

ବେଦମନ୍ତ୍ରଗୁଡ଼ିକର ଯେ ଗୂଢ଼ ଅର୍ଥ ଅଛି, ସେ କଥା ପ୍ରଥମ ଥର ପାଇଁ ଶ୍ରୀଅରବିନ୍ଦ କହି ନାହାନ୍ତି । ତାହା ମନ୍ତ୍ର ଦ୍ରଷ୍ଟା ଋଷିମାନେ ହିଁ କହିଛନ୍ତି ବୋଲି ସେ (ଶ୍ରୀଅରବିନ୍ଦ) ସ୍ପଷ୍ଟ ଭାବରେ ସ୍ୱୀକାର କରିଛନ୍ତି । ତାଙ୍କର ନିମ୍ନଲିଖିତ ବକ୍ତବ୍ୟ ଏ ସମ୍ପର୍କରେ ପ୍ରଣିଧାନଯୋଗ୍ୟ :

> "There was an occult and spiritual knowledge in the sacred hymns and by this knowledge alone, it is said, one can know the truth and rise to a higher existence. This belief was not a later tradition, but held, probably, by all and evidently by some of the greatest Rishis, such as, Dirghatamas and Vamadeva." (୫୦)

ଏହି ପରମ୍ପରାଟି ବୈଦିକ ସମୟରୁ ଗଢ଼ିଆସୁଥିଲା ଏବଂ ସେଥିପାଇଁ ନିରୁକ୍ତକାର ଯାସ୍କ ବେଦ-ମନ୍ତ୍ରଗୁଡ଼ିକର ଆଧିଭୌତିକ, ଆଧିଦୈବିକ ଏବଂ ଆଧ୍ୟାତ୍ମିକ, ଏହିଭଳି ତିନି ପ୍ରକାର ଅର୍ଥ ଅଛି ବୋଲି କହିଛନ୍ତି । କିନ୍ତୁ କାଳକ୍ରମେ କେବଳ କର୍ମକାଣ୍ଡନିଷ୍ଠ ଅର୍ଥ ଉପରେ ଗୁରୁତ୍ୱ ଆରୋପ କରାଯିବାକୁ ଲାଗିଲା । ଯଜ୍ଞ ନାମରେ ପଶୁ ବଳି ଦିଆ ଯିବାକୁ ଲାଗିଲା । ସେଥିପାଇଁ ଉପନିଷଦ ଓ ଗୀତାରେ ପ୍ରକୃତ ଯଜ୍ଞର ଅର୍ଥ ବୁଝାଇ ଦିଆଯାଇ କୁହାଗଲା ଯେ ଏଥିରେ ଲେଶ ମାତ୍ର ହିଂସାର ଅବକାଶ ନାହିଁ ଏବଂ ସେଥିପାଇଁ ସଂସ୍କାରବାଦୀ ବୌଦ୍ଧ ଧର୍ମ ଓ ଜୈନ-ଧର୍ମରେ ଅହିଂସା ଉପରେ ଗୁରୁତ୍ୱ ଆରୋପ କରାଯିବାକୁ ଲାଗିଲା । କାଳକ୍ରମେ

ବୌଦ୍ଧ ଧର୍ମ ଓ ଜୈନ ଧର୍ମର ଅବକ୍ଷୟ ଭାରତ ଭୂମିରେ ଆସିଗଲା ଏବଂ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍‌ଥାନ ହେଲା । କିନ୍ତୁ ଏ ପ୍ରକାର ଅଭ୍ୟୁତ୍‌ଥାନର ପୃଷ୍ଠଭୂମିରେ ରହିଲା କର୍ମକାଣ୍ଡ ପ୍ରତି ନିଷ୍ଠା ଓ ତାହା ଉପରେ ବିଶ୍ୱାସ । ସାୟଣାଚାର୍ଯ୍ୟଙ୍କ (ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀ) ବେଳକୁ ସ୍ଥୂଳତଃ ଅବସ୍ଥା ତାହା ହିଁ ଥିଲା । ତେଣୁ ତାଙ୍କ ଭାଷ୍ୟରେ ଆମେ କର୍ମକାଣ୍ଡନିଷ୍ଠତା ଲକ୍ଷ୍ୟ କରିଥାଉଁ । ପାଶ୍ଚାତ୍ୟ ପଣ୍ଡିତମାନେ ଏବଂ ସେମାନଙ୍କୁ ଅନୁକରଣ କରି କେତେକ ଭାରତୀୟ ପଣ୍ଡିତ ସାୟଣ-ଭାଷ୍ୟ ଉପରେ ନିର୍ଭର କରି ସାଧାରଣତଃ ବେଦ-ମନ୍ତ୍ରଗୁଡ଼ିକର ବ୍ୟାଖ୍ୟା କରିଥାନ୍ତି । ତେଣୁ ସେମାନେ ବେଦର 'ନିଣ୍ୟା ବଚାଂସି' ବା 'ଗୂଢ଼ ବାଣୀ ସମୂହ'ର ତାତ୍ପର୍ଯ୍ୟ ବୁଝି ପାରି ନଥାନ୍ତି । ଶ୍ରୀଅରବିନ୍ଦଙ୍କ ଭାଷାରେ :

> "Those who do not know the inner sense are as men who seeing see not, hearing hear not, only to one here and there the word desiring him like a beautifully robed wife to a husband lays open her body." (*୧)

ଅତଏବ ବେଦ-ମନ୍ତ୍ରଗୁଡ଼ିକୁ କେବଳ ହେତୁବାଦୀଙ୍କ ଜ୍ଞାନ-ଜିଜ୍ଞାସା ନେଇ କିମ୍ବା ଐତିହାସିକ ପ୍ରତ୍ନତାତ୍ତ୍ୱିକଙ୍କ କୌତୂହଳ ନେଇ ବିଚାର କଲେ ଆଦୌ ଚଳିବ ନାହିଁ । ତଦ୍ଦ୍ୱାରା ବେଦର ପ୍ରକୃତ ଅର୍ଥ ଆଦୌ ବୁଝା ପଡ଼ିବ ନାହିଁ । ଏହା ତ କେବଳ ଏକ ଗ୍ରନ୍ଥ ନୁହେଁ ; ଏହା ହେଉଛି ସହସ୍ର ସହସ୍ର ବର୍ଷ ଧରି ଋଷିମାନଙ୍କ ଚୈତନ୍ୟ-ସ୍ତରରେ ଆସିଥିବା ଏକ ଦିବ୍ୟ ରହସ୍ୟବାଦୀ ଅନୁଭୂତିର ସ୍ଫୁରଣ । ଏହାରି ମାଧ୍ୟମରେ ଭାରତୀୟ ଆଧ୍ୟାତ୍ମିକତା ଯୁଗ ଯୁଗ ଧରି ଜନକୁ ବିଶ୍ୱାତ୍ମା ସହିତ ପରିଚିତ କରାଇ ପାରିଛି । ଏ ସମ୍ପର୍କରେ ଶ୍ରୀମତ୍ ଅନିର୍ବାଣଙ୍କର ନିମ୍ନଲିଖିତ ମନ୍ତବ୍ୟ ଯଥାର୍ଥରେ ପ୍ରଣିଧାନଯୋଗ୍ୟ :

> "One thing is certain : the Veda cannot be taken as a specimen of archaeological curiosity ; because it is still a living force in Indian spirituality manifesting a unity of purpose in her cultural homogeneity." (*୨)

ଏହି ଦୃଷ୍ଟିରୁ ବିଚାର କଲେ ଆମେ ନିଶ୍ଚିତ ଭାବରେ ଦେଖି ପାରିବା ଯେ ବେଦ-ମନ୍ତ୍ରଗୁଡ଼ିକର ଏକ ଗୂଢ଼ ଅର୍ଥ ଅଛି ଏବଂ ତାହା ପ୍ରତୀକାତ୍ମକ ବ୍ୟାଖ୍ୟା ଦ୍ୱାରା ହିଁ ଅବଧାରଣୀୟ ।

ଉପର୍ଯ୍ୟୁକ୍ତ ଆଲୋଚନା ଦୃଷ୍ଟେ ଆମେ ନିମ୍ନଲିଖିତ ନିଷ୍କର୍ଷରେ ପହଞ୍ଚି ପାରିବା :

(କ) ବେଦ-ମନ୍ତ୍ରରେ ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ବିଷୟବସ୍ତୁର ଅବତାରଣା କରାଯାଇଛି । ଏଣୁ ବେଦ-ମନ୍ତ୍ରଗୁଡ଼ିକର ଅର୍ଥ ମଧ୍ୟ ସେହି ଅନୁସାରେ ହୋଇଛି ତ୍ରିବିଧ ।

(ଖ) ବେଦ-ମନ୍ତ୍ରର ଯେ ବାହାରକୁ ଜଣା ପଡ଼ୁଥିବା ଅର୍ଥ ବ୍ୟତୀତ ଆଉ କିଛି ଗୂଢ଼ ଅର୍ଥ ଅଛି, ସେ ଧାରଣା ପ୍ରାଚୀନ ବୈଦିକ କାଳରେ ମଧ୍ୟ ଥିଲା । ବାମଦେବ, ଦୀର୍ଘତମା ଆଦି ସତ୍ୟଦ୍ରଷ୍ଟା ଋଷିମାନେ ଏ କଥା ସ୍ପଷ୍ଟ ଭାବରେ କହିଛନ୍ତି ।

(ଗ) କାଳକ୍ରମେ କର୍ମକାଣ୍ଡର ପ୍ରାଧାନ୍ୟ ଆସିଯିବାରୁ ବେଦ-ମନ୍ତ୍ରଗୁଡ଼ିକର ଅର୍ଥ କର୍ମକାଣ୍ଡାଭିମୁଖୀ ହେବାକୁ ଲାଗିଲା । ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀରେ ସାୟଣାଚାର୍ଯ୍ୟ ବେଦର ଯେଉଁ ଭାଷ୍ୟ କଲେ, ତାହା ଏହି କାରଣରୁ ଏକ-ଦେଶଦର୍ଶିତା ଦୋଷରେ ଦୁଷ୍ଟ ହୋଇଉଠିଲା ।

(ଘ) ମନୁଷ୍ୟ ଜୀବନରେ କିପରି ଆଧ୍ୟାତ୍ମିକ-ଅଗ୍ନିପ୍ରସାର ପରିପୂର୍ତ୍ତି ସମ୍ଭବ ହୋଇପାରିବ, କିପରି ସେ ଦିବ୍ୟାଲୋକର ସନ୍ଧାନ ପାଇବ ଏବଂ କିପରି ତା'ର ପ୍ରାଣ ଅନନ୍ତ ବିଶ୍ୱ-ପ୍ରାଣ ସହିତ ମିଳିତ ହୋଇପାରିବ, ଏହିସବୁ କଥା ବିଭିନ୍ନ ପ୍ରତୀକ ମାଧ୍ୟମରେ ବେଦ-ମନ୍ତ୍ରଗୁଡ଼ିକରେ ବୁଝାଇ ଦିଆ ଯାଇଛି ।

(ଙ) ଏହି ପ୍ରତୀକଗୁଡ଼ିକୁ ଚିହ୍ନଟ କରି ବେଦ-ମନ୍ତ୍ରଗୁଡ଼ିକର ସଠିକ୍ ଅର୍ଥ କରିବା ହେଉଛି ପ୍ରତୀକାତ୍ମକ ବ୍ୟାଖ୍ୟା, ଯାହାର କି ଅଗ୍ରଦୂତ ଶ୍ରୀଅରବିନ୍ଦ କରିଛନ୍ତି । ଏହି ବ୍ୟାଖ୍ୟା ମାଧ୍ୟମରେ ହିଁ ବେଦ-ମନ୍ତ୍ରଗୁଡ଼ିକର 'ନିନ୍ୟା ବଚାଂସି' ବା 'ଗୂଢ଼ ବାଣୀସମୂହ'ର ପ୍ରକୃତ ଅର୍ଥ କରି ହେବ; ଅନ୍ୟଥା ନୁହେଁ ।

(ଚ) ପ୍ରତୀକ ମାଧ୍ୟମରେ ମନୁଷ୍ୟର ଜୀବନ-ଯାତ୍ରାକୁ ଏକ ଯଜ୍ଞ ବୋଲି ବୁଝା ଯାଇ ତାହାକୁ ସାଧାରଣ ଯଜ୍ଞ ସହିତ ତୁଳନା କରାଯାଇଛି । ଏହି ଯାତ୍ରାରେ କିଭଳି ଭାବରେ ଆଧ୍ୟାତ୍ମିକ ସିଦ୍ଧି ମିଳିପାରିବ, ସେହି କଥା ବିଭିନ୍ନ ପ୍ରତୀକର ଅବତାରଣା କରି ବୁଝାଇ ଦିଆଯାଇଛି ।

(ଛ) ଶ୍ରୀଅରବିନ୍ଦ ବେଦ-ମନ୍ତ୍ରର କିଛି ଗୋଟାଏ ନୂତନ ଅର୍ଥ ଆବିଷ୍କାର କଲେ ବୋଲି କୁହାଯାଇ ପାରିବ ନାହିଁ । ଏହି ଅର୍ଥଟି ବେଦ ସୃଷ୍ଟି ବେଳରୁ ହିଁ ଥିଲା । ଋଷିମାନେ ସେ ବିଷୟରେ ସମ୍ପୂର୍ଣ୍ଣ ଅବହିତ ଥିଲେ । କିନ୍ତୁ ବିଭିନ୍ନ ଐତିହାସିକ କାରଣବଶତଃ ଆମ ପାଇଁ ତାହା ଉପଲବ୍ଧ ନଥିଲା । ଶ୍ରୀଅରବିନ୍ଦ ସେହି ହଜିଥିବା ଅର୍ଥଟିକୁ ଜାଣି ଆମ ପାଇଁ କି ଖୋଜି ଆଣି ଦେଲେ ।

(ଜ) ବେଦ-ମନ୍ତ୍ରଗୁଡ଼ିକରେ ଯେ କେବଳ ମାତ୍ର ଧର୍ମ ଓ ଆଧ୍ୟାତ୍ମିକତା ବିଷୟରେ କୁହା ଯାଇଛି, ତାହା ନୁହେଁ ; ସେଗୁଡ଼ିକରେ ମଧ୍ୟ ବହୁ ଧର୍ମନିରପେକ୍ଷ (secular) ବିଷୟବସ୍ତୁର ଅବତାରଣା କରାଯାଇଛି ଏବଂ ସେଗୁଡ଼ିକୁ ଅନୁଧ୍ୟାନ କଲେ ଆମେ ତତ୍କାଳୀନ ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଅର୍ଥନୈତିକ ସ୍ଥିତି ଆଦି ବିଷୟରେ ଅନେକ କଥା ଜାଣି ପାରୁ ।

ସଂକ୍ଷେପରେ ବେଦ-ମନ୍ତ୍ରଗୁଡ଼ିକ ପ୍ରତୀକାତ୍ମକ ବ୍ୟାଖ୍ୟାର ଏହିଗୁଡ଼ିକ ହେଉଛି କେତେକ ମହତ୍ତ୍ୱପୂର୍ଣ୍ଣ ଦିଗ ।

## ଟିପ୍ପଣୀ

୧। ପାଣିନି : ଅଷ୍ଟାଧ୍ୟାୟୀ ; ୪।୧।୨୧ ।

୧-କ। SriAurovindo : Hymns to the Mystic Fire : Foreword : p. i.

୨। ଋଗ୍‌ବେଦ, ୪।୩।୧୬ ।

୩। SriAurovindo : On the Veda ; Hymns to the Mystic Fire.

୪। କପାଳୀ ଶାସ୍ତ୍ରୀଙ୍କ ଦ୍ୱାରା ଲିଖିତ ଋଗ୍‌ବେଦର 'ସିଦ୍ଧାଞ୍ଜନ ଭାଷ୍ୟ' ଓ ତାହାର ଭୂମିକା ସଂସ୍କୃତ ଭାଷାରେ ଲିଖିତ ଏବଂ ଏହା ଏକ ବିରାଟ ଗ୍ରନ୍ଥ । ଏହି ଭୂମିକାର ତଥ୍ୟଗୁଡ଼ିକ ଉପରେ ଆଧାର କରି ସେ ଇଂରାଜୀରେ ଗୋଟିଏ କ୍ଷୁଦ୍ର ପୁସ୍ତିକା ଲେଖିଛନ୍ତି । ତାହା ଏ ସଂପର୍କରେ ଦ୍ରଷ୍ଟବ୍ୟ ।

ଦେଖନ୍ତୁ T. V. Kapali Sastri : Lights on the Veda : SriAurovindo Ashram, Pondichery : Second Impression (1961).

୪-କ । Cultural Heritage, vol I : Ramakrishna Mission : S. Radhakrishnan : Introduction : p. x x x i.

୫ । ଋଗ୍‌ବେଦ, ୭।୩୩।୨-୧୩ ।

୬ । ଋଗ୍‌ବେଦ, ୭।୮୮।୪ ।

୭ । ଋଗ୍‌ବେଦ, ୩।୫୩।୧୨ ।

୮ । ଋଗ୍‌ବେଦ, ୮।୭୫।୬ ।

୯ । T. V. Kapali Sastri : op. cit : p. 5.

୧୦ । Ibid. p. 16.

୧୧ । SriAurovindo : Hymns to the Mystic Fire : Foreword : p. ii.

୧୨ । SriAurovindo : Hymns to the Mystic Fire : Foreword : p. iii.

୧୨-କ । ଶ୍ରୀଅରବିନ୍ଦ : ଭାରତୀୟ ସଂସ୍କୃତିର ଆଧାର : ଓଡ଼ିଆ ଅନୁବାଦ : ଲଳିତ ମୋହନ ଘୋଷ ଓ ଅନ୍ୟାନ୍ୟ ପୃ ୩୫୨ ।

୧୩ । Ibid.

୧୩-କ । Jawaharlal Nehru : The Discovery of India (6th Impression, 1988) : p. 81.

୧୪ । A. C. Das : Rig-Vedic Culture : R. Cambray and Co., Calcutta, (1925) : pp. 522-523.

୧୫ । T. V. Kapali Sastri : op. cit : p. 77.

୧୬ । Jawaharlal Nehru : op. cit : Rabindranath Tagore quoted : p. 79.

୧୭ । SriAurovindo : On the Veda : quoted by A. B. Purani : Studies in Vedic Interpretation : p. 1.

୧୮ । A. B. Purani : Studies in the Vedic Interpretation (1963). p. 3.

୯ । Ibid, p, 15.

୧୦ । ଗୀତା, ४।୩୨ ।

୧୧ । T. V. Kapali Sastri : op. cit : p. 27.

୧୨ । ଶ୍ରୀଅରବିନ୍ଦ : ଭାରତୀୟ ସଂସ୍କୃତିର ଆଧାର : ଓଡ଼ିଆ ଅନୁବାଦ : ଲଳିତ ମୋହନ ଘୋଷ ଓ ଅନ୍ୟାନ୍ୟ : ପୃ. ୩୫୧ ।

୧୩ । T. V. Kapali Sastri : op. cit : p. 27.

୧୪ । Ibid. p. 28.

୧୫ । A. B. Purani : op. cit : p. 261.

ଆଉ ମଧ୍ୟ ଦେଖନ୍ତୁ ବାମଦେବ ଋଷିଙ୍କ ଦ୍ୱାରା ଦୃଷ୍ଟ ଋଗ୍‌ବେଦୀୟ ସୂକ୍ତ, ४।୩। ବିଶେଷ କରି ଏହି ସୂକ୍ତର ୧୬ଶ ମନ୍ତ୍ରଟି ଦ୍ରଷ୍ଟବ୍ୟ ।

୧୬ । SriAurovindo : Hymns to the Mystic Fire : Foreword : p. xv.

୧୭ । V. S. Agrawala : Vedic Lectures : Prithivi Prakasan (Second Edition, 1981) : p. 116.

୧୮ । ଗୋପଥ ବ୍ରାହ୍ମଣ, ୧।୨।୧୬ ।

୧୮-କ । ଶତପଥ ବ୍ରାହ୍ମଣ, ४।୩।४।୩ ।

୧୯ । V. S. Agrawala : op. cit : p. 105.

୩୦ । ଋଗ୍‌ବେଦ, ୧।୧୬४।୩୫ ।

୩୦-କ । ଶ୍ରୀଅରବିନ୍ଦ : ବେଦ ରହସ୍ୟ (ହିନ୍ଦୀ ଅନୁବାଦ) : ପୃ. ୧୧ ।

୩୦-ଖ । ଗୀତାରେ ନିମ୍ନଲିଖିତ ଯଜ୍ଞମାନଙ୍କ ବିଷୟରେ ବର୍ଣ୍ଣନା ଅଛି :

(କ) ଦ୍ରବ୍ୟଯଜ୍ଞ—ବସ୍ତୁ ଆକାରରେ ଯାହାକୁ ସମର୍ପିତ କରାଯାଏ ।

(ଖ) ତପୋଯଜ୍ଞ—ତପସ୍ୟା ଆକାରରେ ଯାହାକୁ ସମର୍ପିତ କରାଯାଏ ।

(ଗ) ଯୋଗଯଜ୍ଞ—ଯୌଗିକ ଅଭ୍ୟାସ ଦ୍ୱାରା ଯାହାକୁ ସମର୍ପିତ କରାଯାଏ ।

(ଘ) ସ୍ୱାଧ୍ୟାୟଯଜ୍ଞ—ଅଧ୍ୟୟନ ଦ୍ୱାରା ଯାହାକୁ ସମର୍ପିତ କରାଯାଏ (ଗୀତା, ४।୨୧) ।

(ଙ) ଜପଯଜ୍ଞ—ଭଗବାନଙ୍କ ନାଁରେ ଯାହାକୁ ସମର୍ପିତ କରାଯାଏ (ଗୀତା, ४।୨୮) ।

(ଚ) ଜ୍ଞାନ-ଯଜ୍ଞ – ଜ୍ଞାନକୁ ଯଜ୍ଞ-ହବି ଭଳି ଯେଉଁଠି ସମର୍ପିତ କରାଯାଏ (ଗୀତା, ୪।୩୩, ୯।୧୫, ୧୮।୭୦) ।

୩୧ । A. A. Macdonnel : Vedic Mythology (1897) : p. I.

୩୨ । ନିମ୍ନଲିଖିତ ମତେ ସ୍ୱର୍ଗ, ଅନ୍ତରୀକ୍ଷ ଓ ପୃଥିବୀର ଦେବତାମାନେ ବୈଦିକ ଦେବମଣ୍ଡଳରେ ସ୍ଥାନ ପାଇଛନ୍ତି ।

(କ) ସ୍ୱର୍ଗର ଦେବତାଗଣ :

(୧) ଦ୍ୟୌଃ, (୨) ବରୁଣ, (୩) ମିତ୍ର, (୪) ସୂର୍ଯ୍ୟ, (୫) ସବିତା, (୬) ବିଷ୍ଣୁ, (୭) ପୂଷନ୍, (୮) ବିବସ୍ୱନ୍ତ, (୯) ଆଦିତ୍ୟ, (୧୦) ଉଷସ୍; ଏବଂ (୧୧) ଅଶ୍ୱିନୀକୁମାର ।

(ଖ) ଅନ୍ତରୀକ୍ଷର ଦେବତାଗଣ :

(୧) ଇନ୍ଦ୍ର, (୨) ତ୍ରିତ ଆପ୍ତ୍ୟ, (୩) ଅପାମ୍ ନାପତ୍ (୪) ମାତରିଶ୍ୱା, (୫) ଅହି ବୁଧ୍ନ୍ୟ, (୬) ଅଜ ଏକପାଦ, (୭) ରୁଦ୍ର, (୮) ମରୁଦ୍‌ଗଣ, (୯) ବାୟୁ-ବାତ, (୧୦) ପର୍ଜନ୍ୟ; ଏବଂ (୧୧) ଆପ ।

(ଗ) ପୃଥିବୀର ଦେବତାଗଣ :

(୧) ନଦୀ, (୨) ସରସ୍ୱତୀ, (୩) ପୃଥ୍ୱୀ, (୪) ଅଗ୍ନି, (୫) ବୃହସ୍ପତି; ଏବଂ (୬) ସୋମ ।

(ଘ) କାଳ୍ପନିକ ଦେବତାଗଣ :

(୧) ତ୍ୱଷ୍ଟା, (୨) ବିଶ୍ୱକର୍ମା, (୩) ପ୍ରଜାପତି, (୪) ମନ୍ୟୁ, (୫) ଶ୍ରଦ୍ଧା ଇତ୍ୟାଦି ।

୩୩ । A. A. Macdonell : op. cit : p. 2.

୩୪ । ଏହି ଗାୟତ୍ରୀ ମନ୍ତ୍ରର ଦ୍ରଷ୍ଟା ହେଉଛନ୍ତି ଋଷି ବିଶ୍ୱାମିତ୍ର ଏବଂ ଦେବତା ହେଉଛନ୍ତି ସବିତା ବା ସୃଷ୍ଟିକର୍ତ୍ତା । 'ସୂ' ଧାତୁ ହେଉଛି ସର୍ଜନାର୍ଥ-ବୋଧକ । ତହିଁରୁ 'ଇତ' ପ୍ରତ୍ୟୟ ହୋଇ 'ସବିତା' ଶବ୍ଦଟି ସୃଷ୍ଟ । ଏହି ମନ୍ତ୍ରଟି ହେଲା :

"ଭୂର୍ଭୁବଃସ୍ୱଃ
ତତ୍ ସବିତୁର୍ବରେଣ୍ୟଂ
ଭର୍ଗୋ ଦେବସ୍ୟ ଧୀମହି
ଧିୟୋ ଯୋ ନଃ ପ୍ରଚୋଦୟାତ୍ ।"

ଅର୍ଥାତ୍ ଭୂଲୋକ, ଅନ୍ତରୀକ୍ଷଲୋକ ଓ ସ୍ୱର୍ଗଲୋକ ସର୍ଜନ ସେହି ସୃଷ୍ଟିକର୍ତ୍ତାଙ୍କ ବରଣୀୟ ତେଜଃ ବିଦ୍ୟମାନ । ତାହା ଆମ୍ଭମାନଙ୍କ ଚେତନାକୁ ଅନୁପ୍ରେରିତ କରୁଥାଉ ।

୩୫ । T. V. Kapali Sastri : op. cit : p. 30.

୩୫-କ । A. B. Purani ; op. cit : p. 15.

୩୫-ଖ । Cultural Heritage of India, Vol I Vedic Exegesis : Article by Srimat Anirvan : p. 314.

୩୬ । ଶ୍ରୀଅରବିନ୍ଦ : ଭାରତୀୟ ସଂସ୍କୃତିର ଆଧାର (ଓଡ଼ିଆ ଅନୁବାଦ) : ପୃ. ୩୫୮ ।

ଠିକ୍ ଅନୁରୂପ ମର୍ମରେ ଏ. ବି. ପୁରାଣୀ କହିଛନ୍ତି :

"The struggle between the forces of Light and those of darkness is spoken of in the Veda and it finds amplification and padding in the later Puranas in which plenty of elements of popular imagination are brought into play to make it understood by the ordinary man."

ଦେଖନ୍ତୁ A. B. Purani : op cit : p. 158.

୩୭ । ଋଗ୍‌ବେଦ, ୨।୨୭।୧୪ ।

୩୮ । R. N. Dandekar : Vedic Mythological Tracts Ajanta Publications (1979) : p. 158.

୩୯ । T, V. Kapali Sastri : op. cit : p; 35.

୪୦ । V. S. Agrawala : op. cit : p. 81.

୪୧ । Sri Aurovindo : Hymns to the Mystic Fire ; Foreword : p. x x.

୪୨ । A. B. Purani : op. cit p. 129.

୪୩ । ଶ୍ରୀଅରବିନ୍ଦ : ଭାରତୀୟ ସଂସ୍କୃତିର ଆଧାର : ଓଡ଼ିଆ ଅନୁବାଦ : ଲଳିତ ମୋହନ ଘୋଷ ଓ ଅନ୍ୟାନ୍ୟ ; ପୃ. ୨୨୭ ।

୪୪ । ଋଗ୍‌ବେଦ, ୫।୪୫।୨ ; ୫।୪୭।୪ ; ୭।୨।୧୧ ।

୪୫ । ଋଗ୍‌ବେଦ, ୮।୧୦।୧୫-୧୬; ଶୁକ୍ଳ ଯଜୁର୍ବେଦ, ୪।୧୯।୨୦; ଅଥର୍ବ ବେଦ, ୧୦।୧୦; Macdonell : Vedic Mythology : p. 151.

୪୬ । A. B. Purani ; op cit : p. 134.

୪୭ । ପୁରାଣୀ ମଧ୍ୟ ଅନୁରୂପ ମତ ଦିଅନ୍ତି । ତାଙ୍କ କହିବା ଅନୁସାରେ :

"If the symbolic character is not admitted then how can one reconcile its 'rising from the sea', its 'golden horn' and iron hoofs, a Horse that has a mind that wishes to reach the gods ?"

ଦେଖନ୍ତୁ A. B. Purani : op. cit : p. 134.

୪୮ । ଯାସ୍କ ତାଙ୍କ କୃତ ନିରୁକ୍ତ ଗ୍ରନ୍ଥରେ (୭।୧୪) ଅଗ୍ନି ଶବ୍ଦର ବ୍ୟାଖ୍ୟା କରିବାକୁ ଯାଇ କହିଛନ୍ତି :

"ଅଗ୍ନିଃ କସ୍ମାତ୍ ଅଗ୍ରଣୀର୍ଭବତୀତି ।"

ଅର୍ଥାତ୍ ଯେ ଅଗ୍ରଣୀ ବା ନେତା ଭାବରେ ବିଦ୍ୟମାନ, ସେ ହେଉଛନ୍ତି ଅଗ୍ନି । ଅଗ୍ନି ହେଉଛନ୍ତି ସକଳ ଦେବତାଙ୍କର ନେତା ; ସକଳ ଦେବତାଙ୍କୁ ଅର୍ଘ୍ୟ ତାଙ୍କର ମାଧ୍ୟମରେ ହିଁ ଦିଆ ଯାଇଥାଏ । ସେ ଭକ୍ତଜନଙ୍କ ହାତ ଧରି ଆଧ୍ୟାତ୍ମିକ ପଥରେ ଚଳାଇ ନିଅନ୍ତି । ତେଣୁ ସେ ହେଲେ ଆଧ୍ୟାତ୍ମିକ ପଥର ଯାତ୍ରୀମାନଙ୍କ ଲାଗି ନେତା ସଦୃଶ ।

୪୯ । A. B. Purani : op. cit : Chapters III to V, VIII, IX and XI.

୫୦ । SriAurovindo : Hymns to the Mystic Fire : Foreword : p. viii.

୫୧ । Ibid, p. viii. ଏଥିରେ ଋଗ୍‌ବେଦର ଗୋଟିଏ ମନ୍ତ୍ରର ମର୍ମାନୁବାଦର ଝଙ୍କାର ଅନୁରଣିତ ।

୫୨ । The Cultural Heritage of India, vol I ; Ramakrishna Mission : "Vedic Exegesis", Article by Srimat Anirvan : p. 332.

## ଚତୁର୍ଥ ପରିଚ୍ଛେଦ

# ବୈଦିକ ଶିକ୍ଷା

ବୈଦିକ ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଚରିତ୍ର ଗଠନ । ପିଲା କପରି ଭଲ ମଣିଷଟିଏ ହେବ, ସେଥି ପ୍ରତି ପିତା ମାତା, ଆଚାର୍ଯ୍ୟ, ସମାଜ ତଥା ରାଷ୍ଟ୍ର ସର୍ବଦା ସଚେତନ ଥିଲେ । ସେଥିପାଇଁ ଗୁରୁ ଶିଷ୍ୟଙ୍କୁ ଉପଦେଶ ଦେଇ କହୁଥିଲେ :

"ସତ୍ୟଂ ବଦ । ଧର୍ମଂ ଚର । ସ୍ୱାଧ୍ୟାୟାନ୍ମା ପ୍ରମଦଃ ।" (୧)

ଅର୍ଥାତ୍ ସତ କୁହ । ଧର୍ମ ବାଟରେ ଚାଲ । ପାଠ ପଢ଼ାରୁ ବିରତ ହୁଅ ନାହିଁ । ଗୁରୁଙ୍କ ସକଳ ଉପଦେଶ ମଧ୍ୟରେ ସତ କହିବା ଓ ଧର୍ମାଚରଣ କରିବା ଲାଗି ଉପଦେଶ ଦେବା ପ୍ରାଥମିକତା ହାସଲ କରିଥିଲା । ଚରିତ୍ରବତ୍ତା ପ୍ରତି କେତେ ଦୂର ଦୃଷ୍ଟି ଦିଆ ଯାଉଥିଲା, ଏହା ତାହାର ନିଦର୍ଶନ । ମନୁଙ୍କ ସମୟରେ ମଧ୍ୟ ଏହି ପରମ୍ପରା ଥିଲା । ସେ ଗୋଟିଏ ସ୍ଥାନରେ କହିଛନ୍ତି :

"ସାବିତ୍ରୀ ମାତ୍ରସାରୋଽପି ବରଂ ବିପ୍ରଃ ସୁଯନ୍ତ୍ରିତଃ ।
ନାଯନ୍ତ୍ରିତ ସ୍ତ୍ରିବେଦୋଽପି ସର୍ବାଶୀ ସର୍ବବିକ୍ରୟୀ ।। (୨)

ଅର୍ଥାତ୍ ତିନି ବେଦରେ ପଣ୍ଡିତ ଥିବା ଅସଂଯତ ବ୍ରାହ୍ମଣଙ୍କ ଅପେକ୍ଷା ବରଂ କେବଳ ମାତ୍ର ଗାୟତ୍ରୀ ମନ୍ତ୍ର ଜାଣିଥିବା ଜଣେ ସଂଯତ ବ୍ରାହ୍ମଣ ବହୁ ଗୁଣରେ ଶ୍ରେୟସ୍କର । ଆଚାର୍ଯ୍ୟ ଶିଷ୍ୟଙ୍କୁ ଉପଦେଶ ଦେଇ କହୁଥିଲେ, 'ମନୁର୍ଭବ' ; ଅର୍ଥାତ୍ ମଣିଷ ହୁଅ । ଭଲ ମଣିଷଟିଏ ହୋଇ ପିଲା କେମିତି ଉଠିବ, ତାହା ଥିଲା ବୈଦିକ ଶିକ୍ଷାର ମୂଳ ଉଦ୍ଦେଶ୍ୟ । ଏହି ବୈଦିକ ପରମ୍ପରାଟି ଯେ କେବଳ ବହୁ ପ୍ରାଚୀନ କାଳରୁ ପୋଥି-ବାଇଗଣ ଭାବରେ ଗଡ଼ି ଆସୁଥିଲା, ତାହା ନୁହେଁ ; ଏହାକୁ ଲୋକେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ଏହା ଫଳରେ ଭାରତୀୟମାନେ ସାଧାରଣତଃ ସାଧୁ, ସଚ୍ଚୋଟ ଓ ଭଲ ଲୋକ ହୋଇ ବାହାରୁଥିଲେ । ବେଦ, ଉପନିଷଦର ଛନ୍ଦେ ଛନ୍ଦେ ଏହିଭଳି ବହୁ ଭଲ ଲୋକଙ୍କ ନାମ-କୀର୍ତ୍ତନ କରା ଯାଇଛି । ଭାରତୀୟମାନଙ୍କର ସାଧାରଣ ସ୍ୱଭାବଚରିତ୍ର ବିଷୟରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ରାଜସଭାକୁ ଆସିଥିବା ଗ୍ରୀକ୍ ରାଜଦୂତ ମେଗାସ୍ଥିନିସ୍ ଯାହା କହିଛନ୍ତି ତାହା ଲକ୍ଷ୍ୟ କରିବାର କଥା । ତାଙ୍କର ବକ୍ତବ୍ୟ ହେଲା :

"Truth and virtue are the guiding principles of the Hindus. No Hindu has been punished for telling a lie. There is no touting in Hindusthan. When something is entrusted to somebody, there is no need in India to keep a witness or seal of the trust, because there is implicit faith between the transactors. Generally these Hindu people do not lock their houses." (୩)

ଏଭଳି ସ୍ଥିତି ଅତି ପ୍ରାଚୀନ କାଳରୁ ବହୁ ଶତ ବର୍ଷ ଧରି ଗଢ଼ି ଆସୁଥିବା ସୁସ୍ଥ ପବିତ୍ର ବୈଦିକ ପରମ୍ପରା ଯୋଗରୁ ହିଁ ସମ୍ଭବ ହୋଇ ପାରିଥିଲା ଏବଂ ଏହି ପରମ୍ପରା ଥିଲା ଯୁଗ ଯୁଗ ଧରି ଚଳି ଆସୁଥିବା ବୈଦିକ ଶିକ୍ଷାନୀତି ଦ୍ୱାରା ପରିପୁଷ୍ଟ, ପରିମାର୍ଜିତ ଓ ପରିବର୍ଦ୍ଧିତ । ଅତଏବ, ଏହି ଦୃଷ୍ଟିକୋଣରୁ ବୈଦିକ ଶିକ୍ଷା-ବ୍ୟବସ୍ଥା ସଂପର୍କରେ ଆଲୋଚନା କରିବା ଯଥେଷ୍ଟ କୌତୂହଳପ୍ରଦ ।

ମୁନିମାନେ ଆଶ୍ରମରେ ରହୁଥିଲେ ଭଳି ବୈଦିକ ଆର୍ଯ୍ୟମାନଙ୍କ ଜୀବନକୁ ଚାରିଗୋଟି 'ଆଶ୍ରମ' ବା ଅବସ୍ଥା ଦେଇ ଗତି କରିବାକୁ ହେବ ବୋଲି ବିଧି ଖଞ୍ଜା ଯାଇଥିଲା । ଏହି ଆଶ୍ରମଗୁଡ଼ିକ ହେଲା ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ । ପ୍ରଥମ ଅବସ୍ଥାଟି ବ୍ରହ୍ମଚର୍ଯ୍ୟ ଧାରଣ କରି ପାଠ ପଢ଼ିବା ଲାଗି ଉଦ୍ଦିଷ୍ଟ ଥିଲା । ସେଥିକୁ ତେଣୁ କୁହା ଯାଉଥିଲା ବ୍ରହ୍ମଚର୍ଯ୍ୟ । ପାଠ ପଢ଼ା ସରିଲେ ତା'କୁ ବାହାସାହା ହୋଇ ଘରସଂସାର କରିବାକୁ ପଡ଼ୁଥିଲା । ଏହି ଦ୍ୱିତୀୟ ଆଶ୍ରମଟି ହେଲା ଗାର୍ହସ୍ଥ୍ୟ । ସେ ବୁଢ଼ା ହୋଇଗଲେ ଅନାସକ୍ତ ଜୀବନ ଯାପନ କରୁଥିଲା । ପରିବାରର ସୁଖ ଦୁଃଖ, ଭଲ ମନ୍ଦ ବିଷୟରେ ସେ କିଛି ଚିନ୍ତା କରୁ ନଥିଲା । ସେ ଦାୟିତ୍ୱ ଥିଲା ତା'ର ପୁଅ ଉପରେ । ଏହି ତୃତୀୟ ଆଶ୍ରମକୁ କୁହା ଯାଉଥିଲା ବାନପ୍ରସ୍ଥ । ଏହା ପରେ ତା'କୁ ଘର ଛାଡ଼ି ବଣକୁ ସନ୍ନ୍ୟାସୀ ହୋଇ ଚାଲିଯିବାକୁ ପଡ଼ୁଥିଲା । ଏହାକୁ କୁହା ଯାଉଥିଲା ସନ୍ନ୍ୟାସ । ଏ ସଂପର୍କରେ ଏତିକି ମନେ ରଖିବାକୁ ହେବ ଯେ ଏଭଳି ଚାରି ପ୍ରକାର ଆଶ୍ରମବ୍ୟବସ୍ଥା ମଧ୍ୟ ଦେଇ ଯେ ସମସ୍ତଙ୍କୁ ଯିବାକୁ ପଡ଼ୁଥିଲା, ତାହା ନୁହେଁ । ଅନେକ ଲୋକ ଅଶିକ୍ଷିତ ଥିଲେ ; ତେଣୁ ସେମାନେ ବ୍ରହ୍ମଚର୍ଯ୍ୟାଶ୍ରମ ଦେଇ ଗତି କରି ନଥିଲେ । ସମସ୍ତ ଋଷି ବୃଦ୍ଧ ନଥିଲେ ; ସେମାନଙ୍କ ମଧ୍ୟରୁ କେତେକ ତରୁଣ ମଧ୍ୟ ଥିଲେ । ସେମାନଙ୍କୁ ଗୃହସ୍ଥାଶ୍ରମ ମଧ୍ୟ ଦେଇ ଗତି କରିବାକୁ ପଡ଼ି ନଥିଲା । ଅତଏବ, ଏହି ଚାରି ପ୍ରକାର ଆଶ୍ରମ-ବ୍ୟବସ୍ଥା ଥିଲା ଏକ ଆଦର୍ଶ ; ବାସ୍ତବତା କଦାପି ନୁହେଁ । ଏହି ଆଦର୍ଶ ପଛରେ ଧାଇଁବା ଲାଗି ସମାଜକୁ

ନୀତି-ନିର୍ଦ୍ଦେଶ ଦିଆ ଯାଉଥିଲା । ବାସମ୍‌ଙ୍କ ନିମ୍ନଲିଖିତ ମନ୍ତବ୍ୟଟି ଅନୁଧ୍ୟାନ କଲେ ଏ କଥା ସୁସ୍ପଷ୍ଟ ହୋଇ ଉଠିବ :

> "The series of the four stages is evidently an idealization of the facts, and an artificial attempt to find room for the conflicting claims of study, family life and asceticism in a single life time." (୪)

ଯେ ଯାହାହେଉ, ବୈଦିକ ଆର୍ଯ୍ୟମାନଙ୍କର ଯେଉଁ ଚତୁରାଶ୍ରମର ବ୍ୟବସ୍ଥା ଥିଲା, ତନ୍ମଧ୍ୟରୁ ପ୍ରଥମ ଆଶ୍ରମ ହିସାବରେ ବ୍ରହ୍ମଚର୍ଯ୍ୟାଶ୍ରମର ଯେ ଗୁରୁତ୍ୱ ରହିଛି, ଏଥିରେ ସନ୍ଦେହ ନାହିଁ ।

ବ୍ରହ୍ମଚର୍ଯ୍ୟାଶ୍ରମ ଆରମ୍ଭ ହେଉଥିଲା 'ଉପନୟନ'ରେ ଏବଂ ଏହାର ପରିସମାପ୍ତି ଘଟୁଥିଲା ଗୁରୁଗୃହରୁ ପିତୃଗୃହକୁ ପ୍ରତ୍ୟାବର୍ତ୍ତନରେ । ଶେଷୋକ୍ତ ବ୍ୟବସ୍ଥାଟିର ନାମ ଥିଲା 'ସମାବର୍ତ୍ତନ' । 'ଉପନୟନ' ଓ 'ସମାବର୍ତ୍ତନ' ଯଥାକ୍ରମେ ଆର୍ଯ୍ୟମାନଙ୍କର ଷୋଡ଼ଶ ସଂସ୍କାର ମଧ୍ୟରୁ ଦୁଇଗୋଟି ସଂସ୍କାର । (୪-କ) ଏଠାରେ ଗୁରୁଙ୍କ ନିକଟକୁ ନେବା କଥା ପ୍ରତି ଲକ୍ଷ୍ୟ କରି 'ଉପନୟନ' ଶବ୍ଦଟି ବ୍ୟବହୃତ । ସେତେବେଳେ ଅନାବାସିକ ବିଦ୍ୟାଳୟ ନଥିଲା ; ସକଳ ବିଦ୍ୟାଳୟ ଥିଲା ଆବାସିକ । ଏଗୁଡ଼ିକ ଥିଲା ଗୁରୁ-ଗୃହରେ ଅବସ୍ଥିତ । ତେଣୁ ଶିଷ୍ୟମାନଙ୍କୁ ଗୁରୁ-ଗୃହରେ ରହି ପାଠ ପଢ଼ିବାକୁ ପଡ଼ୁଥିଲା । ପିତାମାତା ବାଲ୍ୟାବସ୍ଥାରେ ପିଲାମାନଙ୍କୁ ଗୁରୁ-ଗୃହରେ ନେଇ ଛାଡ଼ିଦେଇ ଆସୁଥିଲେ । ଏହି ଦିନ ଠାରୁ ବିଦ୍ୟାର୍ଥୀକୁ କୁହାଯାଉଥିଲା ବ୍ରହ୍ମଚାରୀ ଏବଂ ସେ ଯଜ୍ଞୋପବୀତ ଧାରଣ କରି ସ୍ୱୀୟ ଗୋଷ୍ଠୀ ସହିତ ନିଜକୁ ସାମିଲ କରୁଥିଲା । ଏହା ଥିଲା ତା' ପାଇଁ ଦ୍ୱିତୀୟ ଜନ୍ମ ସଦୃଶ । ତେଣୁ ତା'କୁ କୁହା ଯାଉଥିଲା 'ଦ୍ୱିଜ' ବା 'ଦୁଇ ଥର ଜନ୍ମ ହେବା ଲୋକ' । ବାସ୍ତବିକ ସେ କାହିଁକି ଦ୍ୱିଜ ତାହାର ଯଥାର୍ଥତାକୁ ପ୍ରତିପାଦନ କରିବା ଲାଗି ଅଥର୍ବ ବେଦରେ ଠାଏ କୁହା ଯାଇଛି :

> "ଆଚାର୍ଯ୍ୟ ଉପନୟନମାନୋ ବ୍ରହ୍ମଚାରିଣଂ କୃଣୁତେ ଗର୍ଭମନ୍ତଃ ।
> ତଂ ରାତ୍ରିସ୍ତିସ୍ରଂ ଉଦରେ ବିଭର୍ତ୍ତି ।
> ତଂ ଜାତଂ ଦ୍ରଷ୍ଟୁମଭିସଂଯନ୍ତି ଦେବାଃ ।" (୪-ଖ)

ଅର୍ଥାତ୍ ଆଚାର୍ଯ୍ୟ ତାଙ୍କ ପାଖକୁ ଆସିଥିବା ଶିଷ୍ୟକୁ ତିନି ରାତି ଗର୍ଭରେ ଧରି ରଖନ୍ତି ଏବଂ ତା'ପରେ ତାକୁ ଜନ୍ମ କରାନ୍ତି । ତା'କୁ ଦେଖିବା ପାଇଁ ଦେବତାମାନେ ଆସିଥାନ୍ତି ।

ଗର୍ଭରେ ଧାରଣ କରିବା ଏଠାରେ ସଙ୍କେତାର୍ଥରେ ପ୍ରଯୁକ୍ତ । ପ୍ରକୃତରେ ତିନି ରାତି ଧରି ଆଚାର୍ଯ୍ୟ ତାଙ୍କୁ ଗୂଢ଼ ଜ୍ଞାନ ଶିକ୍ଷା ଦେଇଥାନ୍ତି, ଯାହା ଫଳରେ କି ସେ ଜ୍ୟୋତିରେ ଭାସ୍ୱର ହୋଇଉଠେ । ତାହାର ଏହି କମନୀୟ ରୂପ ଦେଖିବା ପାଇଁ ଦେବତାମାନେ ଛୁଟି ଆସିଥାନ୍ତି । ତାପର୍ଯ୍ୟ ହେଲା, ସେ ଦ୍ୱିଜତ୍ୱ ପାଇବାରୁ ଦେବତାମାନଙ୍କୁ ଆବାହନ କରିବାର ସୁଯୋଗ ପାଇଥାଏ ଏବଂ ଦେବତାମାନେ ସେହି ଆବାହନରେ ସନ୍ତୁଷ୍ଟ ହୋଇ ତା' ପାଖକୁ ଆସିଥାନ୍ତି । ଏହି ବିଧିଟି କପରି ସଂପାଦିତ ହୁଏ, ସେ ବିଷୟରେ ଶତପଥ ବ୍ରାହ୍ମଣରେ ଉଲ୍ଲେଖ ଅଛି । ଏଥିର ବର୍ଣ୍ଣନା ଅନୁଯାୟୀ ଆଚାର୍ଯ୍ୟ ଶିଷ୍ୟର ମୁଣ୍ଡରେ ନେଇ ତାଙ୍କ ଡାହାଣ ହାତଟିକୁ ଛୁଅାନ୍ତି । ଏହା ଫଳରେ ଶିଷ୍ୟ ଆଚାର୍ଯ୍ୟଙ୍କ ଗର୍ଭକୁ ଚାଲିଯାଏ । ତିନୋଟି ରାତି ଚାଲିଯିବା ପରେ ଆଚାର୍ଯ୍ୟ ତା'କୁ ମୁଖ ବାଟେ ଜନ୍ମ ଦିଅନ୍ତି । ସେ ସାବିତ୍ରୀ-ମନ୍ତ୍ର ସହିତ ଦ୍ୱିଜ ହୋଇ ବାହାରିପଡେ । ଏହି ହେଲା ତା'ର ଦ୍ୱିତୀୟ ଜନ୍ମ । (୪-ଗ) ପ୍ରଥମ ଜନ୍ମ ମାତୃଗର୍ଭରୁ ଏବଂ ଦ୍ୱିତୀୟ ଜନ୍ମ ଆଚାର୍ଯ୍ୟଙ୍କ ମୁଖରୁ । ବାସ୍ତବିକ ଆଚାର୍ଯ୍ୟ ହେଉଛନ୍ତି ଦ୍ୱିଜମାନଙ୍କର ଦ୍ୱିତୀୟ ଜନନୀ ସଦୃଶ । ଆଚାର୍ଯ୍ୟଙ୍କ ମହତ୍ତ୍ୱ ପ୍ରତିପାଦନ କରିବାକୁ ଯାଇ ମନୁସ୍ମୃତିରେ (୨।୧୪୭) କୁହାଯାଇଛି, ବାପା ମାଆ ପିଲାକୁ 'ସଂଭୂତି' ଦିଅନ୍ତି ; ଅର୍ଥାତ୍ ଶାରୀରିକ ଜନ୍ମ ଦିଅନ୍ତି । କିନ୍ତୁ ଆଚାର୍ଯ୍ୟ ପିଲାକୁ 'ଜାତି' ଦିଅନ୍ତି ; ଅର୍ଥାତ୍ ତା'ର ସାମାଜିକ-ସାଂସ୍କୃତିକ ପରିଚୟ ଦିଅନ୍ତି । ପ୍ରାଚୀନ ଗ୍ରୀସ୍‌ରେ ମଧ ସ୍ଥୂଳତଃ ଏହି ପରଂପରା ଥିଲା । ଆଲେକ୍‌ଜାଣ୍ଡରଙ୍କ ବିଷୟରେ ଗୋଟିଏ କୌତୂହଳପ୍ରଦ କାହାଣୀ ଶୁଣାଯାଏ । ଥରେ ତାଙ୍କୁ ପଚରାଗଲା, କିଏ ବଡ଼, ଗୁରୁ ଆରିଷ୍ଟୋଟଲ୍ ନା ବାପା ଫିଲପ୍ ? ଆଲେକଜାଣ୍ଡର ସଙ୍ଗେ ସଙ୍ଗେ ଉତ୍ତର ଦେଲେ "ମୋ' ବାପାଙ୍କଠାରୁ ଗୁରୁ ଆରିଷ୍ଟୋଟଲ୍ ବଡ଼ । ବାପାଙ୍କ ଯୋଗରୁ ମୁଁ କ୍ଷୟଶୀଳ ଶରୀର ପାଇଛି ; କିନ୍ତୁ ଗୁରୁଙ୍କ ଯୋଗରୁ ମୁଁ ଅନନ୍ତ ଜୀବନ ପାଇବି । ବାପା ମତେ ସ୍ୱର୍ଗରୁ ମର୍ତ୍ତ୍ୟକୁ ନେଇ ଆସିଛନ୍ତି ; କିନ୍ତୁ ଗୁରୁ ମତେ ମର୍ତ୍ତ୍ୟରୁ ସ୍ୱର୍ଗକୁ ନେଇଯିବେ ।" ଠିକ୍ ଅନୁରୂପ କାରଣରୁ ବୈଦିକ ଯୁଗରେ ଗୁରୁଙ୍କ ଆସନ ପିତାମାତାଙ୍କ ଆସନଠାରୁ ଅଧିକତର ମହତ୍ତ୍ୱପୂର୍ଣ୍ଣ ଥିଲା । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ, ଏମାନଙ୍କ ପ୍ରତି ଏହି ବ୍ୟବସ୍ଥାଟି ଲାଗୁ କରାଯାଉଥିଲା । ଶୂଦ୍ରମାନଙ୍କ ପ୍ରତି ଏ ବ୍ୟବସ୍ଥା ଥିଲା କିପରି । ତେଣୁ ଶୂଦ୍ରମାନେ ଯଜ୍ଞୋପବୀତ ଧାରଣ କରି ନିଜକୁ ଆଉ ଦ୍ୱିଜ ବୋଲି ପରିଚିତ କରାଇ ପାରୁନଥିଲେ । ଗୁରୁ ସବୁ ପ୍ରଥମେ ବ୍ରହ୍ମଚାରୀଙ୍କୁ ଗାୟତ୍ରୀ-ମନ୍ତ୍ର ଶିକ୍ଷା ଦେଉଥିଲେ । ଏହି ମନ୍ତ୍ରଟି ହେଲା :

ଓଁ ଭୂର୍ଭୁବଃ ସ୍ୱଃ ।
ତତ୍ ସବିତୁର୍ବରେଣ୍ୟମ୍ ଭର୍ଗୋ ଦେବସ୍ୟ ଧୀମହି ।
ଧିୟୋ ଯୋନଃ ପ୍ରଚୋଦୟାତ୍ । (୫)

ଅର୍ଥାତ୍ ସଚ୍ଚିଦାନନ୍ଦମୟ ସୃଷ୍ଟିକର୍ତ୍ତାଙ୍କର ବରଣୀୟ ଜ୍ୟୋତକୁ ଆମ୍ଭେମାନେ ଧ୍ୟାନ କରୁଁ । ସେ ଆମ୍ଭମାନଙ୍କ ବୁଦ୍ଧିକୁ ପ୍ରେରଣା ଦିଅନ୍ତୁ । ଏହି ବ୍ରହ୍ମଚର୍ଯ୍ୟାଶ୍ରମ ଅବସ୍ଥାରେ ଶିଷ୍ୟକୁ ତା'ର ଚରିତ୍ରଗଠନ କରିବାକୁ ପଡ଼ୁଥିଲା ; ଭବିଷ୍ୟତ୍‌ର ଜୀବନଟିକୁ ସେ କିପରି ସୁଖମୟ କରି ଗଢ଼ି ତୋଳିବ, ସେଥିପାଇଁ ତା'କୁ ଏହି ଅବସ୍ଥାରେ ହିଁ ଭିତ୍ତି-ପ୍ରସ୍ତର ସ୍ଥାପନ କରିବାକୁ ପଡ଼ୁଥିଲା । ଏଥି ପ୍ରତି ଲକ୍ଷ୍ୟ କରି ବାଲ ଶାସ୍ତ୍ରୀ ହରିଦାସ ଯଥାର୍ଥରେ କହିଛନ୍ତି :

> "Of all these four stages of life, which are in themselves all important, the first Brahmacharya is verily the most significant in that in it the individual has to lay down the foundation for the structure of his life. (୫-କ)

ବର୍ତ୍ତମାନ ପ୍ରଶ୍ନ ହୋଇପାରେ ଶୂଦ୍ରମାନଙ୍କ ଲାଗି ତ ଉପନୟନର ବିଧି ନଥିଲା । ତେବେ ସେମାନଙ୍କର ବେଦାଧ୍ୟୟନର ଅଧିକାର ଥିଲା କି ନାହିଁ ? ପୁଣି ସ୍ତ୍ରୀମାନଙ୍କର ବେଦାଧ୍ୟୟନର ଅଧିକାର ଥିଲା କି ନାହିଁ ? 'ସ୍ତ୍ରୀଶୂଦ୍ରୌ ନାଧୀୟତାମ୍', ଅର୍ଥାତ୍ ସ୍ତ୍ରୀ ଓ ଶୂଦ୍ର ପାଠ ପଢ଼ିବା ଉଚିତ ନୁହେଁ ବୋଲି ଶ୍ରୁତିବାକ୍ୟଟିର ଉଦାହରଣ ଦେଇ କେହି କେହି କହିଥାନ୍ତି ଯେ ବେଦପାଠ ସ୍ତ୍ରୀ ଓ ଶୂଦ୍ରମାନଙ୍କ ପାଇଁ ଥିଲା ନିଷିଦ୍ଧ । ଏହା କିନ୍ତୁ ଠିକ୍ ନୁହେଁ । ଶୂଦ୍ର ସମେତ ସମସ୍ତଙ୍କ ଲାଗି ବେଦର ସୃଷ୍ଟି ହୋଇଛି ବୋଲି ସ୍ପଷ୍ଟ ଭାବରେ ଯଜୁର୍ବେଦରେ କୁହାଯାଇଛି । ଶଂସିତ ମନ୍ତ୍ରଟି ହେଲା :

> "ଯଥେମାଂ ବାଚଂ କଲ୍ୟାଣୀମାବଦାନି ଜନେଭ୍ୟଃ ।
> ବ୍ରହ୍ମରାଜନ୍ୟାଭ୍ୟାଂ ଶୂଦ୍ରାୟ ଚାର୍ଯ୍ୟାୟ ଚ ସ୍ୱାୟ ଚାରଣାୟ ।।" (୭)

ଅର୍ଥାତ୍ ଋଷି କହୁଛନ୍ତି, ମୁଁ ସବୁ ମନୁଷ୍ୟମାନଙ୍କ ପାଇଁ ଏହି କଲ୍ୟାଣକାରିଣୀ ବେଦ-ବାଣୀର ଉପଦେଶ ଦେଉଛି; ତାହା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ନିଜ ଭୃତ୍ୟ-ମାନଙ୍କ (ଅଥବା ସ୍ତ୍ରୀମାନଙ୍କ) ପାଇଁ ପ୍ରକଟିତ । ଏଥିରୁ ଜଣା ପଡ଼ୁଛି, ଶୂଦ୍ର ଓ ସ୍ତ୍ରୀମାନଙ୍କର ଯେ ବେଦାଧ୍ୟୟନ ଲାଗି ଅଧିକାର ଅଛି, ତାହା ସ୍ୱୟଂ ବେଦ ସ୍ୱୀକାର କରିଥାଏ । ତାହା ନ ହୋଇଥିଲେ ଶୂଦ୍ରାଣୀ ଗର୍ଭରୁ ଜାତ ମହୀଦାସ ଐତରେୟ ଉପନିଷଦ ରଚନା କରି ନଥାନ୍ତେ ଏବଂ ତାହା ପ୍ରତି ଆବ୍ରାହ୍ମଣ ସମସ୍ତେ ମାନ୍ୟତା ପ୍ରଦର୍ଶନ କରି ନଥାନ୍ତେ । ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଶୂଦ୍ରଙ୍କ ଲାଗି ବେଦପାଠ ନିଷିଦ୍ଧ ଥିବା ବିଷୟଟିକୁ ନିମ୍ନୋକ୍ତ ମତେ ବ୍ୟାଖ୍ୟା କରିଛନ୍ତି :

"ଯଦିଚ ଶୂଦ୍ର ପ୍ରତି ବେଦ-ପାଠ ନିଷେଧ କରାଯାଇଥାଏ, ତେବେ ସେହି ନିଷେଧର ଅଭିପ୍ରାୟ ଏହି ଯେ ଯେଉଁମାନଙ୍କୁ ଯେତେ ଶିକ୍ଷା ଦେଲେ ମଧ୍ୟ କିଛି ଆସେ ନାହିଁ, ସେହି ନିର୍ବୁଦ୍ଧି ଓ ମୂର୍ଖ ଲୋକମାନେ ହିଁ ଶୂଦ୍ର। ସେହି ଶୂଦ୍ରକୁ ପଢ଼ାଇବା, ଶୁଣାଇବାରେ କିଛି ପ୍ରୟୋଜନ ନାହିଁ। ଏହା ହିଁ ନିଷେଧର ତାତ୍ପର୍ଯ୍ୟ।" (୭)

ଆଉ ସ୍ତ୍ରୀମାନଙ୍କ ବେଦ-ପାଠ କଥା। ତାହା ମଧ୍ୟ ବେଦଦ୍ୱାରା ସ୍ୱୀକୃତ। ଅଥର୍ବ ବେଦରେ (୧୧ଶ କାଣ୍ଡ) ସ୍ପଷ୍ଟ ଭାବରେ କୁହାଯାଇଛି :

"ବ୍ରହ୍ମଚର୍ଯ୍ୟେଣ କନ୍ୟା ଯୁବାନଂ ବିନ୍ଦତେ ପତିମ୍।"

ଅର୍ଥାତ୍ କନ୍ୟା ବ୍ରହ୍ମଚର୍ଯ୍ୟ-ବ୍ରତ ପାଳନ କରି ଯୁବକ ସ୍ୱାମୀଙ୍କୁ ବରଣ କରିଥାନ୍ତି। ସ୍ତ୍ରୀମାନେ ଯଦି ବେଦାଧ୍ୟୟନ କରୁନଥାନ୍ତେ, ତେବେ ଏଭଳି କଥା ଅଥର୍ବବେଦରେ କୁହା ଯାଇଥାନ୍ତା ବା କିପରି ? ଆଉ ମଧ୍ୟ ଶ୍ରୌତ ସୂତ୍ରରେ ସ୍ତ୍ରୀ କେଉଁ କେଉଁ ମନ୍ତ୍ର ପଢ଼ିବେ, ସେ କଥା ପରିଷ୍କାର ଭାବରେ କୁହାଯାଇଛି। 'ଇମଂ ମନ୍ତ୍ରଂ ପତ୍ନୀ ପଠେତ୍' ବା 'ଏହି ମନ୍ତ୍ରଟି ସ୍ତ୍ରୀ ପଢ଼ିବା ଉଚିତ' ବୋଲି ଯେଉଁ ପଙ୍କ୍ତିଟି ତହିଁରେ ଅଛି, ତାହା ହେଉଛି ଏଥିର ପ୍ରମାଣ। ସ୍ତ୍ରୀ ପାଠଶାଠ ପଢୁ ନଥିଲେ ଏଭଳି କଥା ଉଠନ୍ତା ବା କିପରି ? ଘୋଷା, ବିଶ୍ୱବାରା, ଅପାଳା ଆଦି ଅନେକ ବେଦ-ମନ୍ତ୍ରର ଋଷିକା ଅଛନ୍ତି। ତା' ଛଡ଼ା ଗାର୍ଗୀ, ମୈତ୍ରେୟୀଙ୍କ ଭଳି ଅନେକ ଉପନିଷଦ ଯୁଗର ଋଷିକା ମଧ୍ୟ ଅଛନ୍ତି। ଅବିନାଶଚନ୍ଦ୍ର ଦାସ ବୈଦିକ ଯୁଗରେ ନାରୀ-ଶିକ୍ଷା ସଂପର୍କରେ ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା ଏଠାରେ ଲକ୍ଷ୍ୟ କରିବାର କଥା। ତାଙ୍କ ମତରେ :

"The disciplinary education of girls also does not appear to have been neglected. Some of them appear to have received as sound a religious instruction as young Brahmacharis." (୮)

ଏଥିରୁ ସ୍ପଷ୍ଟ ଜଣା ପଡ଼ୁଛି ଯେ ବୈଦିକ-କାଳରେ ସ୍ତ୍ରୀଶିକ୍ଷା ପ୍ରତି ସମଧିକ ଦୃଷ୍ଟି ଦିଆ ଯାଉଥିଲା। ବିଦ୍ୟାର୍ଥିନୀମାନଙ୍କୁ ଦୁଇ ଭାଗରେ ବିଭକ୍ତ କରା ଯାଇଥିଲା। ଗୋଟିଏ ହେଉଛି 'ସଦ୍ୟୋବଧୂ' ଏବଂ ଅପରଟି 'ବ୍ରହ୍ମବାଦିନୀ'। 'ସଦ୍ୟୋବଧୂ' ସ୍ତ୍ରୀମାନେ ବ୍ରହ୍ମଚର୍ଯ୍ୟାଶ୍ରମ ପରେ ବିବାହ କରି ଘର-ସଂସାର କରୁଥିଲେ ଏବଂ ମାତୃତ୍ୱର ଗୌରବ

ଅଧିକାର କରୁଥିଲେ । 'ବ୍ରହ୍ମବାଦିନୀ' ସ୍ତ୍ରୀମାନେ ସାରା ଜୀବନ 'ବ୍ରହ୍ମ' ବିଷୟରେ ଚିନ୍ତା କରି କାଳ କଟାଇ ଦେଉଥିଲେ । ସେମାନେ ଥିଲେ ଆଜୀବନ ସନ୍ନ୍ୟାସିନୀ । ବ୍ରାହ୍ମଣ କନ୍ୟାମାନଙ୍କୁ ବୈଦିକ ଶିକ୍ଷା ଦିଆ ଯାଉଥିବା ସ୍ଥଳେ କ୍ଷତ୍ରିୟ କନ୍ୟାମାନଙ୍କୁ ଧନୁର୍ବିଦ୍ୟା ବିଷୟରେ ଶିକ୍ଷା ଦିଆ ଯାଉଥିବା କଥା ଋଗ୍‌ବେଦରେ ବର୍ଣ୍ଣିତ । (୮-କ)

ଗୁରୁ-ଆଶ୍ରମରେ ଥିବାବେଳେ ସେମାନଙ୍କୁ କୁହା ଯାଉଥିଲା 'ବ୍ରହ୍ମଚାରିଣୀ' । ପାଠ୍ୟ କାର୍ଯ୍ୟକ୍ରମ ମଧ୍ୟରେ ବେଦାଧ୍ୟୟନ ନିଶ୍ଚିତ ଭାବରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ବାସ୍ତବିକ ଭାର୍ଗବଙ୍କ ଭଳି ବିଦ୍ୱାନ୍ ଠିକ୍ ଏହି ମର୍ମରେ କହିବାକୁ ଯାଇ ମନ୍ତବ୍ୟ ଦେଇଛନ୍ତି :

> "Among the subjects of study, the Vedic hymns must have occupied the most important place." (୯)

ଅତଏବ, ସ୍ତ୍ରୀମାନଙ୍କର ବେଦାଧ୍ୟୟନ ଲାଗି ଅଧିକାର ଅଛି ବୋଲି ଯେ ବୈଦିକ ସ୍ୱୀକୃତି ମିଳିଥିଲା, ଏଥିରେ ସନ୍ଦେହ ନାହିଁ ।

ଆଚାର୍ଯ୍ୟ ଶିଷ୍ୟଙ୍କୁ ଦ୍ୱିତୀୟ ଥର ପାଇଁ ଜନ୍ମ ଦିଅନ୍ତି ଏବଂ ସେଥିପାଇଁ ଶିଷ୍ୟ 'ଦ୍ୱିଜ' ନାମରେ ଖ୍ୟାତ ହୁଏ ବୋଲି ପୂର୍ବରୁ କୁହା ଯାଇଛି । ପିଲାଟିର ଭବିଷ୍ୟତକୁ ଏକ ଦୃଢ଼ ଭିତ୍ତିଭୂମିରେ ରଖି ଗଢ଼ିବା ଲାଗି ବାପା-ମାଆଙ୍କ ଭଳି ଆଚାର୍ଯ୍ୟଙ୍କର ଯେ ଯଥେଷ୍ଟ ଭୂମିକା ରହିଛି, ଏ କଥା ବେଦ-ସ୍ୱୀକୃତ । ଶତପଥ ବ୍ରାହ୍ମଣରେ ଠାଏ ଲେଖାଅଛି :

"ମାତୃମାନ୍ ପିତୃମାନ୍ ଆଚାର୍ଯ୍ୟବାନ୍ ପୁରୁଷୋ ବେଦ ।"

ଅର୍ଥାତ୍ ମଣିଷକୁ ଜ୍ଞାନୀ ହେବା ପାଇଁ ଭଲ ବାପାମାଆ ଓ ଭଲ ଆଚାର୍ଯ୍ୟ ମିଳିବା ଉଚିତ । ଏହି ତିନି ଜଣଙ୍କ ସମ୍ମିଳିତ ଉଦ୍ୟମରେ ହିଁ ପିଲାଟି ଭଲ ମଣିଷ ହୋଇ ପାରିବ । ବାପା-ମାଆମାନେ ଘରେ ଶିକ୍ଷା ଦେବେ ଏବଂ ଆଚାର୍ଯ୍ୟ ଗୁରୁ-ଆଶ୍ରମରେ ଶିକ୍ଷା ଦେବେ । ପିଲାମାନେ ଅନୁକରଣପ୍ରିୟ । ବଡ଼ମାନେ କ'ଣ କ'ଣ କରୁଛନ୍ତି, ତାହା ସେମାନେ ଲକ୍ଷ୍ୟ କରୁଥାନ୍ତି ଏବଂ ତଦନୁଯାୟୀ କାମ କରନ୍ତି । ବେଳେ ବେଳେ ବାପାମାଆମାନେ କିମ୍ବା ଅନ୍ୟାନ୍ୟ ଗୁରୁଜନମାନେ ଖରାପ କାମ କରୁ ଥାଇପାରନ୍ତି । ବେଳେ ବେଳେ ଆଚାର୍ଯ୍ୟମାନେ ମଧ୍ୟ ସେହିଭଳି କିଛି ଖରାପ କାମ କରୁଥାଇପାରନ୍ତି । ତା'ହେଲେ ପିଲା କ'ଣ ସେମାନଙ୍କୁ ଅନୁକରଣ କରିବା ଉଚିତ ? ଏହାର ଉତ୍ତର 'ନା' ହେବ । ସେଥିପାଇଁ ପରିଷ୍କାର ଭାବରେ ଆଚାର୍ଯ୍ୟ ଶିଷ୍ୟଙ୍କୁ କହିଥାନ୍ତି :

"ଯାନ୍ୟସ୍ମାକମ୍ ସୁଚରିତାନି ତାନି ତ୍ୱୟୋପାସ୍ୟାନି ନୋ ଇତରାଣି ।" (୧୦)

ଅର୍ଥାତ୍ ଆମ୍ଭେମାନେ (ବାପା, ମାଆ ଓ ଆଚାର୍ଯ୍ୟ) ଯେଉଁ ଯେଉଁ ଭଲ କାମଟିମାନ କରୁଛୁ, ତୁମେ ସେଗୁଡ଼ିକୁ ହିଁ ଅନୁକରଣ କର ; ଅନ୍ୟ କୌଣସି କାମଗୁଡ଼ିକୁ ନୁହେଁ । ଜୀବନରେ ସଦାଚାରୀ ହେବା, ଭଲ କାମ କରିବା ଏବଂ ଭଲ କଥା ଚିନ୍ତା କରିବା ଥିଲା ବୈଦିକ ଶିକ୍ଷାର ମୂଳ ଉଦ୍ଦେଶ୍ୟ । ଗୁରୁଜନମାନଙ୍କର ଯାହା ଯାହା ଭଲ ଗୁଣ, କେବଳ ସେହି-ଗୁଡ଼ିକୁ ଅନୁକରଣ କରିବା ପାଇଁ ଶିଷ୍ୟ ଆଚାର୍ଯ୍ୟଙ୍କଠାରୁ ଉପଦେଶ ପାଇଥାଏ । ଏହିପରି ସଦାଚାରୀ ହେବା ଫଳରେ ତା' ମନରେ ପବିତ୍ରତା ଆସେ ଏବଂ ତା'ର ଜ୍ଞାନପିପାସା ଓ ଅଧ୍ୟବସାୟକୁ ଏହା ଅଧିକତର ଉଦ୍ଭାସିତ କରିଦିଏ । ଉତ୍ତମ ଶିଷ୍ୟର ଲକ୍ଷଣ ସମ୍ପର୍କରେ ସ୍ୱାମୀ ବିବେକାନନ୍ଦ ଯାହା କହିଥିଲେ, ତାହା ନିଶ୍ଚିତ ଭାବରେ ଏଠାରେ ପ୍ରଣିଧାନ-ଯୋଗ୍ୟ :

> "ଶିଷ୍ୟ କେତେଗୁଡ଼ିଏ ଗୁଣସମ୍ପନ୍ନ ହେବା ଆବଶ୍ୟକ । ଗୁରୁ ମଧ୍ୟ ତଦ୍ରୂପ । ଶିଷ୍ୟର ନିମ୍ନଲିଖିତ ଗୁଣଗୁଡ଼ିକ ଥିବା ଆବଶ୍ୟକ—ପବିତ୍ରତା, ଯଥାର୍ଥ ଜ୍ଞାନପିପାସା ଓ ଅଧ୍ୟବସାୟ । ଅପବିତ୍ର ବ୍ୟକ୍ତି କଦାପି ଧାର୍ମିକ ହୋଇପାରେ ନାହିଁ । ଏହା ଶିଷ୍ୟ ପକ୍ଷରେ ଗୋଟିଏ ପ୍ରଧାନ ପ୍ରୟୋଜନୀୟ ଗୁଣ ।" (୧୧)

ଅତଏବ, ଶିଷ୍ୟର ସଦାଚରଣ ପ୍ରତି ବୈଦିକ ଶିକ୍ଷା କିଭଳି ଭାବରେ ଗୁରୁତ୍ୱ ଦେଉଥିଲା, ତାହା ଏଥିରୁ ସହଜରେ ଅନୁମେୟ ।

ବର୍ତ୍ତମାନ ଆମେ ଉପନୟନ ବିଷୟକୁ ପୁଣି ଫେରି ଆସି ବର୍ଣ୍ଣଭେଦରେ କିପରି ଉପନୟନର ବୟସ-ସୀମା ଭିନ୍ନ ଭିନ୍ନ ଧାର୍ଯ୍ୟ କରାଯାଇଥିଲା, ତାହା ବିଚାର କରିବା । ବାଲଶାସ୍ତ୍ରୀ ହରଦାସ ଏଥି ପ୍ରତି ଲକ୍ଷ୍ୟ କରି କହିଛନ୍ତି :

> "The Upanayan ceremony was prescribed to be performed in the fifth, seventh or the ninth yeer according to the order of castes." (୧୨)

ବ୍ରାହ୍ମଣ ଶିଶୁର ପଞ୍ଚମ ବର୍ଷରେ ଉପନୟନ କରା ଯାଉଥିଲା । ସେହିପରି କ୍ଷତ୍ରିୟ ଓ ବୈଶ୍ୟ ଶିଶୁର ଯଥାକ୍ରମେ ସପ୍ତମ ଓ ନବମ ବର୍ଷରେ ଏହା କରାଯାଉଥିଲା । ବିଭିନ୍ନ ବର୍ଣ୍ଣ

ଲାଗି ଏହିଭଳି ଭିନ୍ନ ଭିନ୍ନ ବୟସ-ସୀମା ଧାର୍ଯ୍ୟ କରିବାରେ ନିର୍ଦ୍ଦିଷ୍ଟ କାରଣ ଥିଲା । ପୂର୍ବରୁ କୁହାଯାଇଛି, ଉପନୟନର ଆରମ୍ଭରେ ହିଁ ଆଚାର୍ଯ୍ୟ ଶିଷ୍ୟକୁ ପ୍ରଥମ ମନ୍ତ୍ର ଭାବରେ ଗାୟତ୍ରୀ ମନ୍ତ୍ରଟିକୁ ଶିଖାଇଥାନ୍ତି । ଏବେ ମଧ୍ୟ ବ୍ରତଘର ଉତ୍ସବରେ ପୁରୋହିତ ସେହି ମନ୍ତ୍ରଟିକୁ ବ୍ରହ୍ମଚାରୀର କାନରେ କହିଥାନ୍ତି । ଏହି ମନ୍ତ୍ରଟି ତିନି ବର୍ଣ୍ଣ ପାଇଁ ତିନୋଟି ବିଭିନ୍ନ ଛନ୍ଦରେ ଲିଖିତ । ବ୍ରାହ୍ମଣମାନଙ୍କ ପାଇଁ ଏହା 'ଗାୟତ୍ରୀ' ଛନ୍ଦରେ ଲିଖିତ, ଯାହାର କି ମାତ୍ରା ସଂଖ୍ୟା ହେଉଛି ଆଠ । କ୍ଷତ୍ରିୟମାନଙ୍କର ଗାୟତ୍ରୀ-ମନ୍ତ୍ର 'ତ୍ରିଷ୍ଟୁପ୍' ଛନ୍ଦରେ ଲିଖିତ, ଯାହାର କି ମାତ୍ରା ସଂଖ୍ୟା ହେଲା ଏଗାର ଏବଂ ବୈଶ୍ୟମାନଙ୍କର ଗାୟତ୍ରୀ ମନ୍ତ୍ର 'ଜଗତୀ' ଛନ୍ଦରେ ଲିଖିତ, ଯାହାର କି ମାତ୍ରା ସଂଖ୍ୟା ହେଲା ଏଗାର । ବ୍ରାହ୍ମଣମାନଙ୍କର ଗାୟତ୍ରୀ ମନ୍ତ୍ର କଥା ପୂର୍ବରୁ କୁହାଯାଇଛି । ଏହା ହେଉଛି 'ଭୂର୍ଭୁବଃ ସ୍ୱଃ' ଇତ୍ୟାଦି । କ୍ଷତ୍ରିୟମାନଙ୍କର ଗାୟତ୍ରୀ-ମନ୍ତ୍ର ହେଲା :

> "ଆକୃଷ୍ଣେନ ରଜସା ବର୍ତ୍ତମାନୋ ନିବେଶୟନ୍ ଅମୃତଂ ମର୍ତ୍ତ୍ୟଂ ଚ ।
> ହିରଣ୍ୟେନ ସବିତା ରଥେନା ଦେବୋ ଯାତି ଭୁବନାନି ପଶ୍ୟନ୍ ।।"

ଠିକ୍ ସେହିପରି ବୈଶ୍ୟମାନଙ୍କର ଗାୟତ୍ରୀ ମନ୍ତ୍ର ହେଲା :

> "ହିରଣ୍ୟପାଣିଃ ସବିତା ବିଚର୍ଷଣିଃ ଉଭେଦ୍ୟାବାପୃଥିବୀ ଅନ୍ତରୀୟତେ ।
> ଅପାମୀୟାଂ ବାଧତେ ବେତିସୂର୍ଯ୍ୟଂ ଅଭି କୃଷ୍ଣେନ ରଜସା ଦ୍ୟାଂ ଋଣୋତି ।।"

ଗାୟତ୍ରୀ ମନ୍ତ୍ରରେ ସବିତାଦେବ ବା ସୂର୍ଯ୍ୟଙ୍କୁ ଆରାଧନା କରି ଯାଇଥାଏ । ସୂର୍ଯ୍ୟଙ୍କୁ ସାରା ବିଶ୍ୱର ମୂଳ ଓ ପ୍ରେରକ ବୋଲି କଳ୍ପନା କରି ଯାଇଥାଏ । ରାଧାକୃଷ୍ଣନଙ୍କ ଭାଷାରେ :

> "All truth is symbolic. The Sun, which is the immediate source of light and life, expresses the nature of divine much better than any conceptual sign. It is the foremost manifestation of the divine power. The mantra means : We meditate on the effulgent glory of the divine light ; may he inspire our understanding." (୧୬-କ)

ଗାୟତ୍ରୀ ମନ୍ତ୍ର ଭାରତୀୟ ସାଂସ୍କୃତିକ ଅଭିଯାତ୍ରା ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ମାନବ ଜୀବନର ପରମ ଲକ୍ଷ୍ୟ ହେଲା କ୍ରମେ କ୍ରମେ ଉନ୍ନତତର ଜୀବନ ଲାଭ କରିବା । ଏଥିରେ ଜାତି, ଧର୍ମ, ଲିଙ୍ଗ ଆଦିର କିଛି ବାଛବିଚାର ନଥିଲା । ଗାୟତ୍ରୀ ମନ୍ତ୍ର ଏହି ଉନ୍ନତତର ଜୀବନ ବିଷୟରେ ଆମକୁ ସଚେତନ କରାଇଥାଏ ଏବଂ ଏହି ଜୀବନର ପ୍ରାପ୍ତି ଲାଗି ଆମ ମନରେ ଆଧ୍ୟାତ୍ମିକ ଚେତନାକୁ ଜାଗ୍ରତ କରାଇଥାଏ । ସେଥିପାଇଁ ଯଥାର୍ଥରେ ବୈଦିକ ଶିକ୍ଷାରେ ଗାୟତ୍ରୀ ମନ୍ତ୍ରର ଅଧ୍ୟୟନ ଓ ଅନୁଶୀଳନ ଉପରେ ଏଭଳି ଗୁରୁତ୍ୱ ଦିଆ ଯାଇଥିଲା ।

ଏହି ମନ୍ତ୍ରଗୁଡ଼ିକୁ ମନେ ରଖିବାର ସୁବିଧା ପାଇଁ ବିଭିନ୍ନ ବର୍ଣ୍ଣ ଲାଗି ଉପନୟନର ଭିନ୍ନ ଭିନ୍ନ ବୟସ-ସୀମା ଧାର୍ଯ୍ୟ କରା ଯାଇଥିବାର ବିଶ୍ୱାସ କରାଯାଏ । ଦ୍ୱିତୀୟତଃ ବ୍ରାହ୍ମଣମାନଙ୍କର ଦୈନନ୍ଦିନ ଜୀବନ ସହିତ ଯାଗ-ଯଜ୍ଞାଦି ନାନା ପ୍ରକାର କର୍ମ-କାଣ୍ଡମାନ ଘନିଷ୍ଠ ଭାବରେ ସମ୍ବନ୍ଧିତ । ସେଥିପାଇଁ ସେମାନଙ୍କୁ ପ୍ରସ୍ତୁତ କରିବାକୁ ହେଲେ ଅନ୍ୟ ବର୍ଣ୍ଣମାନଙ୍କ ଅପେକ୍ଷା ସେମାନଙ୍କୁ ବେଶି ଦିନ ସ୍ୱାଧ୍ୟାୟରେ ମଗ୍ନ ରହି ବ୍ରହ୍ମଚର୍ଯ୍ୟ-ବ୍ରତ ପାଳିବାର ଆବଶ୍ୟକତା ପଡ଼ୁଥିଲା । ତେଣୁ ସେମାନଙ୍କୁ ଅନ୍ୟମାନଙ୍କ ଅପେକ୍ଷା ଟିକିଏ ଆଗରୁ ଗୁରୁ-ଆଶ୍ରମକୁ ଆସିବାକୁ ପଡ଼ୁଥିଲା । ପରିଶେଷରେ ବ୍ରାହ୍ମଣ-ସନ୍ତାନମାନେ ଯେଉଁ ପ୍ରକାର ପାରିବାରିକ ପରିବେଶ ମଧ୍ୟରେ ଥିଲେ, ସେମାନଙ୍କୁ ଅନ୍ୟମାନଙ୍କ ଅପେକ୍ଷା ଶୀଘ୍ର ସଂସ୍କୃତ ଭାଷା ଶିକ୍ଷା କରିବାର ସୁବିଧା-ସୁଯୋଗ ମିଳି ପାରୁଥିଲା ଏବଂ ଖୁବ୍ କମ୍ ବୟସରେ ସେମାନେ ଶବ୍ଦଗୁଡ଼ିକର ଉଚ୍ଚାରଣ-ସିଦ୍ଧି ହାସଲ କରି ପାରୁଥିଲେ । ତେଣୁ ସେମାନଙ୍କୁ କମ୍ ବୟସରେ ଗୁରୁ-ଆଶ୍ରମକୁ ଆସିବାକୁ ପଡ଼ୁଥିଲା ।

ଉପରୋକ୍ତ ମତେ ଉପନୟନର ବୟସ-ସୀମା ଅବଶ୍ୟ ପ୍ରାଥମିକ ବୈଦିକ କାଳରେ ନିଷ୍ଠାର ସହିତ ପାଳନ କରା ଯାଉଥିଲା । କିନ୍ତୁ କାଳକ୍ରମେ ମାନବ-ଜୀବନ କ୍ରମେ କ୍ରମେ ଜଟିଳତର ହୋଇ ଉଠିଲା । ବିଭିନ୍ନ ବର୍ଣ୍ଣମାନଙ୍କର ସ୍ଥିତି, ସେମାନଙ୍କର କର୍ମ-ବିଭାଗ ଆଦି ଏପରି ଜଟିଳ ହୋଇ ଉଠିଲା ଯେ ସବୁବେଳେ ନିଷ୍ଠାର ସହିତ ଏହି ବୟସ-ସୀମାକୁ ଧରି ରଖିବା ସମ୍ଭବପର ହେଲାନାହିଁ । ତେଣୁ ଟିକିଏ ବିଳମ୍ବରେ ପିଲାମାନଙ୍କୁ ଗୁରୁ-ଆଶ୍ରମକୁ ଯିବାକୁ ପଡ଼ିଲା । କିନ୍ତୁ ଉପନୟନର ସମୟ-ସୀମା ଯେପରି କି ଷୋଡଶ ବୟସ ପୂର୍ବରୁ କରାଯାଏ, ସେଥିପାଇଁ ଦୃଢ଼ ନିୟମ ଖଞ୍ଜା ହେଲା । କାରଣ ବିଳମ୍ବରେ ପାଠ ପଢ଼ିବାକୁ ଆସିଲେ ପିଲାମାନଙ୍କ ମନରେ ଯୌନ-ଚେତନା ଜାଗ୍ରତ ହୋଇଥିବାରୁ ବ୍ରହ୍ମଚର୍ଯ୍ୟ-ବ୍ରତ ପାଳନ କରିବାରେ ନାନା ପ୍ରକାର ବାଧାବିଘ୍ନର ସମ୍ଭାବନା ରହିଥିଲା । ବିଶେଷ କରି ପୁଅ, ଝିଅମାନେ ଏକାଠି ରହି ଗୁରୁ-ଆଶ୍ରମରେ ପାଠ ପଢ଼ିବାର ବିଧି ଥିବାରୁ, ସେମାନଙ୍କୁ ଯୌନ-ଚେତନାର ସନ୍ଧିକ୍ଷଣରେ ଏକତ୍ର ରହିବାର ସୁଯୋଗ ଦିଆ ଯିବାରେ ସମାଜର

ନୀୟାମକମାନେ ବିରୋଧୀ ଥିଲେ । 'ଜୈମିନୀୟ ସୂତ୍ର'ରେ ଏହି ବୟସ-ସୀମାକୁ ଷୋଡଶ ବର୍ଷରେ ପହଞ୍ଚିବା ପୂର୍ବରୁ ବୋଲି ଯେଉଁ ନିର୍ଦ୍ଧାରଣ କରାଯାଇଛି, ସେ ବିଷୟରେ ମନ୍ତବ୍ୟ ଦେବାକୁ ଯାଇ ବାଲଶାସ୍ତ୍ରୀ ହରଦାସ ଯଥାର୍ଥରେ କହିଛନ୍ତି :

"The Jaimini Sutras enjoin that the Upanayan has to be performed before the sixteenth year, for it is useless to do so after that age as the boy at that age is more likely to be conscious of his sex and hence less capable of being naturally initiated into the prescriptions of self-control and more prone to be tempted by passions." (୧୩)

କ୍ରମେ କ୍ରମେ ଏହି ବୟସର ସୀମା ବିଶେଷ କରି କ୍ଷତ୍ରିୟ ଓ ବୈଶ୍ୟମାନଙ୍କ ପାଇଁ ବଢ଼ିବାକୁ ଲାଗିଲା । ପରିଶେଷରେ ଉପନୟନକୁ କେବଳ ବିଧି ଭାଗରେ ମାତ୍ର ଯଜ୍ଞୋପବୀତ ଗ୍ରହଣ କରିବା ହିଁ ସାର ହେଲା ଏବଂ ସେହି ଦିନଠାରୁ ସେମାନେ ସ୍ୱୀୟ 'ଦ୍ୱିଜ' ନାମକୁ ସାର୍ଥକ କରିବାକୁ ଲାଗିଲେ । ଏହା ସେମାନଙ୍କର ବିବାହ ବେଳେ ହିଁ କରାଯିବାକୁ ଲାଗିଲା । କ୍ଷତ୍ରିୟମାନଙ୍କ ଲାଗି ବୟସର ସମସ୍ତ ସୀମା ରଖାଗଲା କୋଡ଼ିଏ ବର୍ଷରୁ ତେଇଶ ବର୍ଷ ମଧ୍ୟରେ । ସେହିପରି ବୈଶ୍ୟମାନଙ୍କ ପାଇଁ ଏହି ବୟସର ସମସ୍ତ ସୀମା ରଖାଗଲା ଚବିଶ ବର୍ଷରୁ ଛବିଶ ବର୍ଷ ମଧ୍ୟରେ । (୧୪)

ଉପନୟନର ଏହି ଯେଉଁ ବ୍ୟବସ୍ଥାଟି ଖଞ୍ଜା ଯାଇଥିଲା, ସେଥିରେ ବାହାରକୁ ଜଣାଗଲା ଭଳି ଯୌନଚର୍ଯ୍ୟାର କିଛି ହିଁ ପ୍ରତୀକ ପ୍ରକଟିତ ହେଉ ନଥିଲା । ଆଦିମତର ଗୋଷ୍ଠୀ-ମାନଙ୍କ ଭିତରେ ଯୌନ ଜୀବନ ଯାପନର ସୌକର୍ଯ୍ୟ ଲାଗି ଯୌନାଙ୍ଗର ବହିରାବରଣ ଛେଦନ (Circumscion) କିମ୍ବା ସେହିଭଳି ଯେଉଁ ଅନ୍ୟାନ୍ୟ କର୍ମବିଧିମାନ ପ୍ରଚଳିତ ଥିଲା, ଏହା ସେଭଳି କିଛି ଏକ କର୍ମବିଧି ନଥିଲା । ସେତେବେଳେ ପିଲା ଥିଲା ଖୁବ୍ ଶ୍ରେଷ୍ଠ ଓ ଅପ୍ରାପ୍ତ ବୟସ୍କ । ଗୃହାବସ୍ଥାରେ ସେ କିପରି ଦୃଢ଼ ବ୍ରହ୍ମଚର୍ଯ୍ୟ-ବ୍ରତ ପାଳନ କରିବ, ତାହା ବରଂ ଥିଲା ଏହାର ଲକ୍ଷ୍ୟ । ସେଥିପାଇଁ ବାସମ୍ ଯଥାର୍ଥରେ କହିଛନ୍ତି :

"In this initiation ceremony there was little or no trace of overt sexual symbolism, and it was never thought of, like circumscion and other

initiation ceremonies among more primitive peoples, as a rite fitting the initiate for sexual life. The initiated boy was still a minor, but he had taken the status of an Aryan." (୧୪-କ)

ଋଗ୍‌ବେଦରେ ଗୁରୁ-ଆଶ୍ରମ କଥା ନିର୍ଦ୍ଦିଷ୍ଟ ଭାବରେ ଉଲ୍ଲେଖ କରାଯାଇନାହିଁ । ତେଣୁ ଏ ଆଶ୍ରମର ରୂପରେଖ କିପରି ଥିଲା, ଏଠାରେ କିପରି ପାଠ ପଢ଼ା ଯାଉଥିଲା ଇତ୍ୟାଦି ବିଷୟରେ ସଠିକ ଭାବରେ କିଛି କହି ହେବନାହିଁ । ବିଧିବଦ୍ଧ ଭାବରେ ଏଭଳି ଆଶ୍ରମର ବ୍ୟବସ୍ଥା ପରବର୍ତ୍ତୀ କାଳରେ ହୋଇଥିବାର ବିଶ୍ୱାସଯୋଗ୍ୟ । କିନ୍ତୁ ଋଗ୍‌ବେଦ କାଳରେ ପିଲମାନଙ୍କୁ ଯେ ପାଠ ପଢ଼ା ଯାଉ ନଥିଲା, ତାହା ନୁହେଁ । ଅନ୍ୟ ପକ୍ଷରେ କହିବାକୁ ଗଲେ, ସେମାନଙ୍କୁ ପାଠ ପଢ଼ା ଯାଉଥିଲା ; କିନ୍ତୁ ଆଶ୍ରମ-ବ୍ୟବସ୍ଥାଟି ସେତେବେଳେ ପ୍ରାଥମିକ ଅବସ୍ଥାରେ ରହିଥିଲା । ଋଗ୍‌ବେଦରେ ଥିବା 'ମଣ୍ଡୂକ-ସୂକ୍ତ'ରୁ ଆମେ ଏଭଳି ଏକ ବ୍ୟବସ୍ଥା ଥିବାର ସୂଚନା ପାଇଥାଉଁ । (୧୫) ତହିଁରେ ବେଙ୍ଗମାନେ କିପରି ସୃଷ୍ଟିର ଚିରନ୍ତନ ନିୟମକୁ (ଋତ) ମାନି ବର୍ଷର ଏକ ନିର୍ଦ୍ଦିଷ୍ଟ ସମୟରେ ରଡ଼ି ଛାଡ଼ୁଛନ୍ତି, ସେ କଥା କୁହାଯାଇଛି ଏବଂ ଏହି ରଡ଼ିକୁ ଗୁରୁଙ୍କ ଠାରୁ ମନ୍ତ୍ର ଶିଖୁଥିବା ଶିଷ୍ୟମାନଙ୍କର ଐକ୍ୟତାନ ସହିତ ତୁଳନା କରାଯାଇଛି । ଏହି ବେଦମନ୍ତ୍ରରେ ବ୍ୟବହୃତ ହୋଇଥିବା 'ଶିକ୍ଷମାଣ' ଶବ୍ଦଟି ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଏଥିରୁ ଜଣାପଡ଼ୁଛି ଯେ ଶିଷ୍ୟମାନେ ଗୁରୁଙ୍କଠାରୁ ମନ୍ତ୍ର ଶିଖୁଥିଲେ । ଗୁରୁ ମନ୍ତ୍ରପାଠ କରିସାରିବା ପରେ ଶିଷ୍ୟମାନେ ସମବେତ କଣ୍ଠରେ ତାହାକୁ ଉଚ୍ଚାରଣ କରୁଥିଲେ । ତାହା ଠିକ୍ ଯେପରି ବେଙ୍ଗ ରଡ଼ି କଲା ଭଳି ଶୁଭୁଥିଲା । ଅବିନାଶଚନ୍ଦ୍ର ଦାସ ଏଥି ପ୍ରତି ଲକ୍ଷ୍ୟ କରି ଯଥାର୍ଥରେ କହିଛନ୍ତି :

"This clearly means that there were schools already in existence to which a number of students flocked." (୧୫-କ)

ବେଙ୍ଗମାନେ ରଡ଼ି କରିବାକୁ ଆରମ୍ଭ କରନ୍ତି ବର୍ଷା ଦିନେ । ବେଦୋକ୍ତ ଏହି ଉପମାରୁ ସୂଚନା ମିଳୁଛି ଯେ ବୈଦିକ ଆଶ୍ରମମାନଙ୍କରେ ପାଠ ପଢ଼ା ଏହି ବର୍ଷା ଦିନେ ହିଁ ଆରମ୍ଭ କରାଯାଉଥିଲା । ଋଗ୍‌ବେଦର ସାବିତ୍ରୀ ମନ୍ତ୍ରରେ (୩।୬୨।୧୦) ଯେଉଁପରି ଭାବରେ ତା'ର ଜ୍ଞାନର ବିକାଶ ଲାଗି ପ୍ରାର୍ଥନା କରିବା ପାଇଁ କୁହାଯାଇଛି, ତହିଁରୁ ସୂଚନା ମିଳୁଛି ଯେ ବ୍ରହ୍ମଚର୍ଯ୍ୟାଶ୍ରମର ମୂଳ ଲକ୍ଷ୍ୟ ଥିଲା ଆଧ୍ୟାତ୍ମିକ ଓ ଆଧିଭୌତିକ ଉଭୟ କ୍ଷେତ୍ରରେ ଜ୍ଞାନାର୍ଜନ କରିବା । ଏ ପ୍ରକାର ସୁସମନ୍ୱିତ ଜ୍ଞାନାର୍ଜନ ଲାଗି ସଚ୍ଚରିତ୍ର ଓ ଧିଶକ୍ତିର

ଆବଶ୍ୟକତା ଥିବାରୁ ତାହା ଉପରେ ମଧ୍ୟ ସମଧିକ ଗୁରୁତ୍ୱ ଆରୋପ କରାଯାଉଥିଲା । ଭି. ଏମ୍. ଆପ୍ଟେ ଏଥି ପ୍ରତି ଲକ୍ଷ୍ୟ କରି ଯଥାର୍ଥରେ କହିଛନ୍ତି :

> "The sharpening of the intellect, as well as the development of character, in the Brahmacharin was aimed at." (୧୭)

ବାସ୍ତବିକ ବୈଦିକ ଯୁଗରୁ ଆରମ୍ଭ କରି ଉପନିଷଦ-ସୂତ୍ର ଯୁଗ ପର୍ଯ୍ୟନ୍ତ ପ୍ରଚଳିତ ଥିବା ଶିକ୍ଷା ପ୍ରଣାଳୀକୁ ଅନୁଧ୍ୟାନ କଲେ ଆମେ ଜାଣି ପାରିବା ଯେ ମାନବ-ଜୀବନରେ କିଭଳି ଭାବରେ ନିଃଶ୍ରେୟସ୍ ଲାଭ କରିହେବ, ସେହି ବିଷୟରେ ଶିଷ୍ୟମାନଙ୍କ ମଧ୍ୟରେ ଜ୍ଞାନ ବିତରଣ କରିବା ଥିଲା ଏହାର ମୂଳ ଉଦ୍ଦେଶ୍ୟ । ବାଳଶାସ୍ତ୍ରୀ ହରିଦାସ ଏହାକୁ ଲକ୍ଷ୍ୟ କରି କହିଛନ୍ତି :

> "The disciple gathers in the hermitage of the Guru the requisite knowledge of sciences and arts as well as the secrets of life here and hereafter." (୧୭-କ)

ବର୍ତ୍ତମାନ ଏହି ଶିକ୍ଷା କିପରି ଭାବରେ ଦିଆ ଯାଉଥିଲା, ଲିଖିତ ଆକାରରେ ନା ମୌଖିକ ଆକାରରେ, ତାହା ବିଚାର୍ଯ୍ୟ । ବେଦମନ୍ତ୍ରଗୁଡ଼ିକୁ ଶୁଣି କରି ମନେ ରଖା ଯାଉଥିଲା ବୋଲି ବେଦର ଅନ୍ୟ ନାମ ହେଉଛି ଶ୍ରୁତି । ଗୁରୁ-ଶିଷ୍ୟ ପରମ୍ପରା କ୍ରମେ ଶତ ଶତ, ସହସ୍ର ସହସ୍ର ବର୍ଷ ଧରି ବେଦମନ୍ତ୍ରଗୁଡ଼ିକ ଲୋକେ ମନେ ରଖି ଆସୁଥିଲେ । ତେଣୁ ସେଗୁଡ଼ିକ ଯେ ମୌଖିକ ଭାବରେ ଶିକ୍ଷା ଦିଆଯାଉଥିବ, ଏଥିରେ ସନ୍ଦେହ ନାହିଁ । ବାସ୍ତବିକ ପୂର୍ବବର୍ତ୍ତିତ ମଣ୍ଡୂକ-ସୂକ୍ତିରେ ଗୁରୁଙ୍କ ଅନୁକରଣ କରି ଶିଷ୍ୟମାନେ ଏକ ସ୍ୱରରେ ବେଦମନ୍ତ୍ର-ଗୁଡ଼ିକ ଉଚ୍ଚାରଣ କରୁଥିବା କଥା କୁହା ଯାଇଛି । ଲିଖନ ପ୍ରଣାଳୀ ସେତେବେଳେ ପ୍ରଚଳିତ ଥିଲା କି ନାହିଁ, ସେ ବିଷୟଟି ବର୍ତ୍ତମାନ ବିବାଦୀୟ ହୋଇ ଉଠିଛି । ବାସ୍ତବିକ ଦେଖିବାକୁ ଗଲେ ଅଶୋକଙ୍କ ଶିଳାଲେଖ ପୂର୍ବରୁ (ଖ୍ରୀ. ପୂ. ୪ର୍ଥ ଶତାବ୍ଦୀ) ଥିବା କୌଣସି ଭାରତୀୟ ଲିପି ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ । ସେଥିପାଇଁ ବୈଦିକ କାଳରେ ଲିପିର ପ୍ରଚଳନ ଥିଲା କି ନାହିଁ ସେ ବିଷୟରେ ସନ୍ଦେହ ପ୍ରକାଶ କରି ଆପ୍ଟେ ନିମ୍ନଲିଖିତ ମତେ କହିଛନ୍ତି :

> "While there is no doubt that the instruction was orally imparted, it is a very debatable point

whether the art of writing was known at all in this age. It is a wellknown fact that no actual specimens of alphabets have been discovered in India which can be definitely dated before the 4th century B. C." (୧୭)

ଅଶୋକଙ୍କ ପୂର୍ବରୁ କୌଣସି ଲିପି ଆମେ ଯେ ଏପର୍ଯ୍ୟନ୍ତ ପାଇନାହୁଁ, ସେ କଥା ଯାହା ଆପ୍ତେ କହୁଛନ୍ତି, ତାହା ଅବଶ୍ୟ ଠିକ୍ । କିନ୍ତୁ ତତ୍ପୂର୍ବରୁ ଯେ କୌଣସି ଲିପି ଭାରତରେ ନଥିଲା, ତାହା କହିବା ଠିକ୍ ହେବନାହିଁ । ବୁଦ୍ଧଙ୍କ ମୁଖରୁ ନିଃସୃତ (ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀ) ଅନେକ ଜାତକ-ଗଳ୍ପରେ ଲିଖନ-ପ୍ରଣାଳୀର ଉଲ୍ଲେଖ ଅଛି । ବୈଶାଳୀର ଲିଚ୍ଛବିମାନେ (ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀ) 'ପ୍ରବେଣୀ ପୁସ୍ତକ'ରେ (Book of precedents) ନିର୍ଦ୍ଧାରିତ ପୂର୍ବ ନିର୍ଣ୍ଣୟଗୁଡ଼ିକ ଅନୁସରଣ କରି ସେମାନଙ୍କ ନ୍ୟାୟାଳୟମାନଙ୍କରେ ମକଦ୍ଦମା-ଗୁଡ଼ିକର ବିଚାର କରୁଥିଲେ । ଯଦି ଏଭଳି 'ପ୍ରବେଣୀ ପୁସ୍ତକ'ଟିଏ ଥିଲା, ତେବେ ତାହାକୁ ତିଆରି କରିବା ପାଇଁ କିଛି ନା କିଛି ଲିପି ନିଶ୍ଚୟ ବ୍ୟବହୃତ ହୋଇଥିବ । ଶିଳସୂପି ଜାତକରେ (୪୭) 'ଲେଖ'କୁ ପ୍ରଶଂସା କରି ଅନେକ କଥା କୁହାଯାଇଛି । ରାଇସ୍ ଡାଭିଡ୍ସ୍ ବହୁ ପ୍ରମାଣ ଦର୍ଶାଇ କହୁଛନ୍ତି ଯେ ବୁଦ୍ଧଙ୍କ ସମୟରେ (ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀ) ଲିଖନ-ପ୍ରଣାଳୀ ଭାରତରେ ପ୍ରଚଳିତ ଥିଲା । (୧୮) ସିନ୍ଧୁ ସଭ୍ୟତାର (ଖ୍ରୀ. ପୂ. ୨୫୦୦ ଶତାବ୍ଦୀ) ଧ୍ୱଂସା-ବଶେଷରୁ ଯେଉଁ ମୃଣ୍ମୟ ମୋହରମାନ ବାହାରିଛି, ସେଗୁଡ଼ିକ ଚିତ୍ରଲିପି ବୋଲି ଏସ୍. ଆର୍. ରାଓ. ଓ ବି. ବି ଲାଲ୍ଙ୍କ ଭଳି କେତେ ପ୍ରାଚ୍ୟତତ୍ତ୍ୱବିତ୍ ତଥା ପ୍ରତ୍ନତତ୍ତ୍ୱବିତ୍ ବର୍ତ୍ତମାନ କହିବାକୁ ଆରମ୍ଭ କଲେଣି । ଆମେ ମଧ୍ୟ ଏହି ବିଷୟରେ 'ଭାରତୀୟ ସଂସ୍କୃତି—ପ୍ରାଗୈତିହାସିକ ପର୍ବ' ପୁସ୍ତକଟିରେ ବିଶଦ ଭାବରେ ଆଲୋଚନା କରିଛୁ । (୧୯) ଏହି ପୁସ୍ତକର ଦ୍ୱିତୀୟ ଓ ତୃତୀୟ ପରିଚ୍ଛେଦରେ ଯେ ବିଷୟରେ କିଛିଟା ସୂଚନା ଦିଆ ହେବା ସଙ୍ଗେ ସଙ୍ଗେ 'ସିନ୍ଧୁ ସଂସ୍କୃତି' ବୈଦିକ ସଂସ୍କୃତିର ଏକ ଅଂଶ ବୋଲି କୁହାଯାଇଛି । ଏଥିରୁ ଅନୁମିତ ହୁଏ ଯେ ବୈଦିକ କାଳରେ ଲିଖନ-ପ୍ରଣାଳୀ ଲୋକମାନଙ୍କୁ ଜଣାଥିଲା । ଅବଶ୍ୟ ସିନ୍ଧୁ-ସଂସ୍କୃତିର ଧ୍ୱଂସାବଶେଷରୁ ଆବିଷ୍କୃତ ସମସ୍ତ ମୋହରଗୁଡ଼ିକର ପାଠୋଦ୍ଧାର ସଂପୂର୍ଣ୍ଣ ଭାବରେ ହୋଇଗଲେ, ଏ ବିଷୟରେ ଥିବା ସନ୍ଦେହ ବଳେ ବଳେ ଦୂର ହୋଇଯିବ ।

ଋଗ୍ବେଦର ଆଉ ଗୋଟିଏ ମନ୍ତ୍ରରୁ ମଧ୍ୟ ସେତେବେଳେ ଲିଖନ-ପ୍ରଣାଳୀ ପ୍ରଚଳିତ ଥିବାର ପରୋକ୍ଷ ସୂଚନା ମିଳୁଛି । ମନ୍ତ୍ରଟିର ଅର୍ଥ ହେଲା :

"ଜଣେ ମଣିଷ ବାଣୀକୁ ଦେଖି ମଧ୍ୟ ଦେଖି ପାରେ ନାହିଁ ; ଆଉ ଜଣେ ଶୁଣି ମଧ୍ୟ ଶୁଣି ପାରେ ନାହିଁ । ସୁନ୍ଦର ପୋଷାକପତ୍ର ପିନ୍ଧିଥିବା ପ୍ରିୟତମା ପତ୍ନୀ ନିଜକୁ ତା'ର ସ୍ୱାମୀ ନିକଟରେ ସମର୍ପଣ କରି ଦେଲା ପରି, ଆଉ ଜଣକ ପାଖରେ ସେ ବାଣୀ ଖୁବ୍ ସହଜରେ ଆସି ଧରା ଦେଇଥାଏ ।" (୨୦)

ପ୍ରକୃତ ବେଦ-ମନ୍ତ୍ରର ତାତ୍ପର୍ଯ୍ୟ କିଏ ବୁଝି ପାରେ, ତାହା ଦେଖାଇ ଦେବା ଲାଗି ଏଠାରେ ଏଭଳି କୁହା ଯାଇଛି । ଜଣେ ମଣିଷ ବେଦ-ମନ୍ତ୍ରକୁ ଦେଖି ମଧ୍ୟ ଦେଖି ପାରେ ନାହିଁ କହିବାର ତାତ୍ପର୍ଯ୍ୟ କ'ଣ ? ଏହା ଯଦି ଲେଖା ଯାଉ ନଥାନ୍ତା, ତେବେ ଏହାକୁ ଦେଖିବା ପ୍ରଶ୍ନ ଉଠନ୍ତା ବା କୁଆଡ଼ୁ ? ଋଗ୍‌ବେଦର ଋଷି ଏହାର ଲିଖିତ ରୂପକୁ କଳ୍ପନା କରିଥାନ୍ତେ ବା କେମିତି ? ଏଥିରୁ ଅନୁମିତ ହେଉଛି ଯେ ଋଗ୍‌ବେଦକାଳୀନ ଭାରତରେ କିଛି ନା କିଛି ଲିପିର ପ୍ରଚଳନ ଥିଲା । ହୁଏତ ଏହା ସିନ୍ଧୁ ସଂସ୍କୃତିର ଚିତ୍ରଲିପି ହୋଇପାରେ କିମ୍ବା ତତ୍‌ପୂର୍ବବର୍ତ୍ତୀ ଆଉ କିଛି ଲିପି ହୋଇପାରେ । ବୈଦିକ ଲିପି ସମ୍ବନ୍ଧରେ ଆମକୁ କିଛି ନିର୍ଦ୍ଦିଷ୍ଟ ଜ୍ଞାନ ଉପଲବ୍ଧ ହେଉ ନଥିଲେ ମଧ୍ୟ, ଆମେ ଦୃଢ଼ତାର ସହିତ କହି ପାରିବା ଯେ ସେତେବେଳେ ଲୋକମାନଙ୍କୁ ଲିଖନପ୍ରଣାଳୀ ଜଣାଥିଲା । ବେଦ-ମନ୍ତ୍ରଗୁଡ଼ିକର ସଠିକ ଉଚ୍ଚାରଣ ଉପରେ ଅଧିକ ଗୁରୁତ୍ୱ ଆରୋପ କରା ଯାଉଥିବାରୁ ପଠନ ଅପେକ୍ଷା ଶ୍ରବଣ ଅଧିକତର ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ତାହା ହିଁ ବେଦର 'ଶ୍ରୁତି' ନାମକୁ ସାର୍ଥକ କରିଛି ।

ବୈଦିକ ଶିକ୍ଷା ଥିଲା ଖୁବ୍ କଠିନ । ତେଣୁ ଏହା ଥିଲା ନିର୍ବାଚନମୂଳକ । ସମସ୍ତେ ବିଦ୍ୟାଳାଭ କରିବାର ଗୌରବ ପାଇ ପାରୁ ନଥିଲେ । କେବଳ ଯୋଗ୍ୟ ବ୍ୟକ୍ତିମାନେ ହିଁ ଏହା ପାଇପାରୁଥିଲେ । ବିଦ୍ୟା କେମିତି ପ୍ରକୃତ ବ୍ୟକ୍ତିଙ୍କ ପାଖକୁ ଯାଏ, ସେଥି ପ୍ରତି ଲକ୍ଷ୍ୟ କରି ଯାସ୍କ ତାଙ୍କ ନିରୁକ୍ତରେ କହିଛନ୍ତି ;

"ବିଦ୍ୟା ହ ବୈ ବ୍ରାହ୍ମଣମାଜଗାମ ଗୋପାୟ ମାଂ ଶେବଧିଷ୍ଟେଽହମସ୍ମି ।"

ଅର୍ଥାତ୍ ବିଦ୍ୟା ବ୍ରାହ୍ମଣଙ୍କ ପାଖକୁ ଆସି କୁହେ—ତୁମେ ମତେ ରକ୍ଷା କର ; ମୁଁ ତୁମର ରତ୍ନ ସ୍ୱରୂପ ଅଟେ । ଏହାର ତାତ୍ପର୍ଯ୍ୟ ହେଲା ପ୍ରକୃତ ଜ୍ଞାନୀ ଲୋକ ହିଁ ବିଦ୍ୟା-ଧନକୁ ରକ୍ଷା କରି ପାରନ୍ତି ; ତେଣୁ ବିଦ୍ୟା ତାଙ୍କର ଆଶ୍ରୟ ଲୋଡ଼ିଥାଏ । ଶିଷ୍ୟମାନଙ୍କୁ ବାଛି କରି ଋଗ୍ୱୈଦିକମାନେ ଗ୍ରହଣ କରୁଥିଲେ । ତାହା ସତ୍ତ୍ୱେ ଆନୁଷ୍ଠାନିକ ଭାବରେ ଉପନୟନ କର୍ମ ତିନି ଉଚ୍ଚ ବର୍ଣ୍ଣର ସବୁ ପିଲାମାନଙ୍କ ପାଇଁ ପ୍ରଯୁଜ୍ୟ ଥିଲା । ଏହାର କାରଣ ଥିଲା ଦୁଇଟି । ପ୍ରଥମତଃ ଷୋଡ଼ଶ ସଂସ୍କାର ମଧ୍ୟରୁ ଅନ୍ୟତମ ହିସାବରେ ଉପନୟନକୁ ସମ୍ମାନ ପ୍ରଦର୍ଶନ କରା ଯାଉଥିଲା । ଦ୍ୱିତୀୟତଃ ଏହା କରିବା ଦ୍ୱାରା ଏହାର ଶୁଦ୍ଧିକରଣ ପ୍ରଭାବ

ପିଲମାନଙ୍କ ଉପରେ ପତିତ ବୋଲି ଆଖ୍ୟା କରି ଯାଉଥିଲେ । ଯେ 'ଉପନୟନ' କର୍ମ ମଧ୍ୟ ଦେଇ ଆସି ନଥିଲେ, ତା'ଙ୍କୁ 'ବ୍ରାତ୍ୟ' ବୋଲି କହି ସମସ୍ତେ ଘୃଣା କରୁଥିଲେ । ସେ ଥିଲେ ସମାଜରେ ପତିତ । ଆର୍ଯ୍ୟମାନେ ତାହା ସହିତ ବିବାହ ସମ୍ପର୍କ କିମ୍ବା ଅନ୍ୟାନ୍ୟ ସାମାଜିକ ସମ୍ପର୍କ ସ୍ଥାପନ କରିବା ଲାଗି କୁଣ୍ଠିତ ହେଉଥିଲେ । 'ବ୍ରାତ୍ୟଷ୍ଟୋମ ଯଜ୍ଞ' କଲେ ଯାଇ ସେ ପୁଣି ଆର୍ଯ୍ୟ-ସମ୍ପ୍ରଦାୟକୁ ଫେରି ଆସି ପାରୁଥିଲେ ; ନଚେତ୍ ନାହିଁ ।

ବର୍ତ୍ତମାନ ଉପନୟନର କେତେକ ବିଶିଷ୍ଟ ଓ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟବିଧି ଏବଂ ବ୍ରହ୍ମଚର୍ଯ୍ୟ ପାଳନରେ ସେଗୁଡ଼ିକର ତାତ୍ପର୍ଯ୍ୟ ବିଷୟ ଆଲୋଚ୍ୟ । ପ୍ରଥମ କର୍ମ ହେଲା ମାତୃ-ଭୋଜନ । ଯଜ୍ଞ-ବେଦୀକୁ ଯିବା ପୂର୍ବରୁ ପିଲାକୁ ଗାଧୋଇ ପାଧୋଇ ଦିଆଯାଏ ଏବଂ ସେ ଏକ ଥାଳୀରେ ମାଆଙ୍କ ସହିତ ଖାଏ । ଏହା ହେଉଛି ତା'ର ମାଆଙ୍କ ସହିତ ଖାଇବାର ଶେଷ ଭୋଜନ । ଏଣିକି ସେ ଯଜ୍ଞୋପବୀତ ଧାରଣ କଲା ; ଦ୍ୱିଜ ହେଲା । ତେଣୁ ଆଉ ମାଆଙ୍କ ସହିତ ଏକାଠି ଖାଇବାର ସୁଯୋଗ ତା'କୁ ମିଳିବ ନାହିଁ । ଆଗରୁ ଗାଧୁଆ ପାଧୁଆ ନକରି ମଧ୍ୟ ସେ ଖାଇ ଦେଉଥିଲା ; କାରଣ ସେ ଥିଲା ଅଜ୍ଞାନ ଶିଶୁ । ଏଣିକି ସେ ଜ୍ଞାନୀ ବ୍ରହ୍ମଚାରୀ ହେଲା । ତେଣୁ ଆଉ ଏଣିକି ସେ ନ ଗାଧୋଇ ଖାଇପାରିବ ନାହିଁ । ସେ ଯେ ଅନ୍ୟ ସାଧାରଣ ଶିଶୁଠାରୁ ପୃଥକ୍ ଏବଂ ତାକୁ ଯେ ବ୍ରହ୍ମଚାରୀର ବିଭିନ୍ନ ଶୃଙ୍ଖଳା ମଧ୍ୟ ଦେଇ ଜୀବନ ବିତାଇବାକୁ ହେବ, ଏହି ମୌଳିକ ଧାରଣାଟି ତାକୁ ଶଂସିତ କର୍ମବିଧି ମାଧ୍ୟମରେ ଜଣାଇ ଦିଆଯାଉଥିଲା ।

ଏହା ପରେ ପିଲାକୁ ଲଣ୍ଡିତମସ୍ତକ ହେବାକୁ ପଡ଼ୁଥିଲା । ପୁଣି ଥରେ ଗାଧୋଇ ସାରିବା ପରେ ସେ ଅଣ୍ଟା ଚାରିପଟେ ତିନି ସରି ବଳା ହୋଇଥିବା 'ମୁଞ୍ଜ' ଘାସରେ ଦଉଡ଼ି ବାନ୍ଧୁଥିଲା । ଏହାକୁ କୁହାଯାଉଥିଲା 'ମୌଞ୍ଜେୟ ମେଖଳା' । ଏହି ଘାସ ହିମାଳୟ ପର୍ବତରେ ପ୍ରଚୁର ପରିମାଣରେ ଉତ୍ପନ୍ନ ହେଉଥିଲା । ବର୍ତ୍ତମାନ କୁଶର ମେଖଳା ଦିଆଯାଉଛି । ଏହାକୁ ତିନି ସରି ରଖିବାର ତାତ୍ପର୍ଯ୍ୟ ହେଲା, ବ୍ରହ୍ମଚାରୀକୁ 'ବେଦତ୍ରୟୀ' ବା ତିନି ବେଦ ପଢ଼ିବାକୁ ହେବ । ଏହି ତିନି ବେଦ ହେଲା ଋକ୍, ଯଜୁଃ ଓ ସାମ । ଏହି ମେଖଳାର ସାହାଯ୍ୟରେ ବ୍ରହ୍ମଚାରୀ କୌପୀନଟିଏ ପିନ୍ଧୁଥିଲା । ଏହା ତିଆରି ହେଉଥିଲା ଛଣପଟରେ । ଏହା ଥିଲା ଖୁବ୍ ମୋଟା । ବ୍ରହ୍ମଚର୍ଯ୍ୟାଶ୍ରମରେ କୌଣସି ସୂକ୍ଷ୍ମ ବସ୍ତ୍ର ପିନ୍ଧିବାକୁ ହେବ ନାହିଁ ବୋଲି ଏଭଳି ବ୍ୟବସ୍ଥା କରାଯାଉଥିଲା । ଏହି କୌପୀନ ଓ ମେଖଳା ପିନ୍ଧିଲା ବେଳେ ବ୍ରହ୍ମଚାରୀ 'ଶ୍ରଦ୍ଧାୟାଃ ଦୁହିତା' ମନ୍ତ୍ରଟି ବୋଲୁଥିଲା । ଏହାର ତାତ୍ପର୍ଯ୍ୟ ହେଲା, ଏଣିକି ସେ ଶ୍ରଦ୍ଧାର ସହିତ ବ୍ରହ୍ମଚର୍ଯ୍ୟ-ବ୍ରତ ପାଳନ କରିବ ଏବଂ ତିନି ବେଦ ଅଧ୍ୟୟନ

କରିବ । ଶ୍ରଦ୍ଧା ନଥିଲେ ଜ୍ଞାନ ଲାଭ ହୋଇ ପାରେନାହିଁ । ସେଥିପାଇଁ ଗୀତାରେ କୁହା ଯାଇଛି :

"ଶ୍ରଦ୍ଧାବାନ୍ ଲଭତେ ଜ୍ଞାନମ୍" ।

ଅର୍ଥାତ୍ ଶ୍ରଦ୍ଧାବାନ୍ ଲୋକ ହିଁ ଜ୍ଞାନ ଲାଭ କରିଥାଏ । ସ୍ୱାଧ୍ୟାୟ ଲାଗି ବ୍ରହ୍ମଚାରୀ ମନରେ ଶ୍ରଦ୍ଧା ଓ ଅନୁରକ୍ତି ଜାଗ୍ରତ କରାଇବା ଥିଲା 'ଶ୍ରଦ୍ଧା ମନ୍ତ୍ର' ଉଚ୍ଚାରଣ କରିବାର ଲକ୍ଷ୍ୟ ।

ତା'ପରେ ବ୍ରହ୍ମଚାରୀ ତିନି ଗୋଟି ସମିଧ ଆଣି ହୋମାଗ୍ନିରେ ନିକ୍ଷେପ କରୁଥିଲା । ଏହି ସମିଧ ଅଗ୍ନିଙ୍କର ତିନି ରୂପକୁ କଳ୍ପନା କରି ଅର୍ପଣ କରାଯାଉଥିଲା । ଅଗ୍ନିଙ୍କର 'ନିପସ୍ତ୍ୟଭବ' ବା ତିନି ଜାଗାରେ ରହିବାର 'ଭାବ' ଅଛି ବୋଲି ବେଦ କହିଥାଏ । ଏହାର ତାତ୍ପର୍ଯ୍ୟ ହେଲା ଅଗ୍ନି ଥାଆନ୍ତି ତିନି ଜାଗାରେ । ଗୋଟିଏ ହେଲା ସାଧାରଣ ଅଗ୍ନି, ଯାହା ପୃଥିବୀରେ ବିଦ୍ୟମାନ । ଦ୍ୱିତୀୟ ସ୍ଥାନ ହେଲା ଅନ୍ତରୀକ୍ଷରେ ଯେଉଁଠି କି ଅଗ୍ନି ସୂର୍ଯ୍ୟ ରୂପରେ ବିଦ୍ୟମାନ । ତୃତୀୟ ସ୍ଥାନ ହେଲା ସମୁଦ୍ର, ଯେଉଁଠି କି ଅଗ୍ନି ବଡ଼ବାଗ୍ନି ରୂପରେ ବିଦ୍ୟମାନ । ବାସ୍ତବିକ ବୈଦିକ ଆର୍ଯ୍ୟମାନେ ଅଗ୍ନିଙ୍କର ଏହି 'ନିପସ୍ତ୍ୟ-ଭବ'କୁ ବହୁ ଦିନୁ ପୂଜା କରି ଆସୁଥିଲେ । ସିନ୍ଧୁ-ସଂସ୍କୃତିରେ ମଧ୍ୟ ଏହିଭଳି ଅଗ୍ନି ପୂଜାର ପ୍ରଭାବ ପଡ଼ିଛି । ମାର୍ଶାଲ୍ ମହେଞ୍ଜୋଦାରୋଠାରେ ଯେଉଁ ମୃଣ୍ମୟ ମୋହରଟି ଗୋଟିଏ ମୂର୍ତ୍ତିକୁ ପଶୁପତି ଶିବ ମୂର୍ତ୍ତି ବୋଲି କୁହନ୍ତି, ତାହା ପ୍ରକୃତରେ ଅଗ୍ନି ଦେବଙ୍କର ତିନି ମୁହଁ ଥିବା ମୂର୍ତ୍ତି । ଗୋଟିଏ ମୁହଁ ପରିଷ୍କାର ଦିଶୁଛି ଏବଂ ଆଉ ମୁହଁ ଦିଓଟିର ଅଂଶମାନ ଦିଶୁଛି । ଏ ସମ୍ପର୍କରେ ବିଶଦ ଆଲୋଚନା ଆମ ଦ୍ୱାରା ଅନ୍ୟତ୍ର କରାଯାଇଛି । (୨୧) ସେ ଯାହା ହେଉ, ଅଗ୍ନିଙ୍କର ଏହି 'ନିପସ୍ତ୍ୟ-ଭବ'କୁ ତିନୋଟି ସମିଧ ପ୍ରଦାନ ମାଧ୍ୟମରେ ବ୍ରହ୍ମଚର୍ଯ୍ୟାଶ୍ରମରେ ଆରାଧନା କରାଯାଉଥିଲା । ସବୁଦା ସକାଳେ ଓ ସଂଧ୍ୟାରେ ବ୍ରହ୍ମଚାରୀକୁ ସମିଧ ସଂଗ୍ରହ କରିବାକୁ ପଡ଼ୁଥିଲା । ଗୋପଥ ବ୍ରାହ୍ମଣରେ ସେଥିପାଇଁ କୁହାଯାଇଛି :

"ସମିଧଃ ଆହୃତ୍ୟ ଚ ଅହରହଃ ସାୟଂ ପ୍ରାତଃ ଅଗ୍ନିଂ ପରିଚରେତ୍" । (୨୨)

ଅର୍ଥାତ୍ ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ସମିଧ ସଂଗ୍ରହ କରି ବ୍ରହ୍ମଚାରୀର ଅଗ୍ନିଙ୍କୁ ପରିଚର୍ଯ୍ୟା କରିବା ଉଚିତ । ବାସ୍ତବିକ 'ସମିଧ'ର ମାହାତ୍ମ୍ୟ ବୈଦିକ ଶିକ୍ଷାରେ ଏମିତି ଥିଲା ଯେ ପ୍ରତ୍ୟେକ ଶିଷ୍ୟକୁ ପ୍ରଥମେ ଗୁରୁ-ଆଶ୍ରମକୁ ଆସିଲା ବେଳେ ସମିଧ ଧରି ଆସିବାକୁ ପଡ଼ୁଥିଲା । ସମିଧ ଜାଣ ସେତେବେଳେ ଆଜିକାର ବିଦ୍ୟାଳୟମାନଙ୍କର ପ୍ରବେଶିକା ଫି (admission fee) ରୂପେ କାର୍ଯ୍ୟ କରୁଥିଲା ।

ବ୍ରହ୍ମଚାରୀଙ୍କୁ ଏହି ଯଜ୍ଞ ବା ଅଗ୍ନି-ଉପାସନା ପ୍ରତ୍ୟହ କରିବାକୁ ପଡୁଥିଲା । ତା'ର ପୋଷାକ ଥିଲା ସେତେବେଳେ ଖଣ୍ଡିଏ ମୋଟା ମୃଗ-ଚର୍ମ । ମୃଗ ଚର୍ମର ମାହାତ୍ମ୍ୟ ସମ୍ପର୍କରେ ବାଲଶାସ୍ତ୍ରୀ ହରିଦାସ କୁହନ୍ତି :

> "The Gopath Brahman tells us that the deer-skin which is so soft, shining and attractive is the sign of power of Brahman and inspires the Brahmachari to strive for acquisition of that purity and power." (୨୩)

ବହୁ ବର୍ଷ ଧରି ଏହି ମୃଗ ଚର୍ମର ବ୍ୟବହାର ଚାଲିଥିଲା । କାଳକ୍ରମେ ମୃଗ ଚର୍ମର ଅଭାବ ହେଲା ଏବଂ ତତ୍ସହ ସଙ୍ଗେ ସଙ୍ଗେ ସୂକ୍ଷ୍ମ ସୂତାଲୁଗାର ଆବିର୍ଭାବ ହେଲା । ତେଣୁ ମୃଗ ଚର୍ମର ବ୍ୟବହାର ଉଠିଗଲା । କିନ୍ତୁ ଅତୀତର ଏହି ପାରମ୍ପରିକ ପ୍ରଥାର ସ୍ମାରକୀ ସ୍ୱରୂପ ଏବେ ଉପନୟନ କାଳରେ ଯଜ୍ଞୋପବୀତରେ ମୃଗ ଚର୍ମକୁ ଖଣ୍ଡେ ବନ୍ଧା ଯାଉଛି । ଅତଏବ, ପୂର୍ବପ୍ରଥାର ସ୍ମାରକୀ ସ୍ୱରୂପ ଆମପାଇଁ କୁଶର ମେଖଳା, କୌପୀନ ଓ ମୃଗ ଚର୍ମ ବନ୍ଧା ଯାଇଥିବା ଯଜ୍ଞୋପବୀତ ରହି ଯାଇଛି, ଯାହାକି ବ୍ରତୋପନୟନ ଉତ୍ସବରେ ବର୍ତ୍ତମାନ ବ୍ୟବହୃତ ।

ବୈଦିକ ଆର୍ଯ୍ୟମାନଙ୍କର ଧାରଣା ଥିଲା ଯେ ଗୁରୁଙ୍କ ବିନା ସହାୟତାରେ ବିଦ୍ୟାଲାଭ କରି ହେବନାହିଁ । ସେହି ଭାରତୀୟ ପରମ୍ପରା ଏବେ ମଧ୍ୟ ସହସ୍ର ସହସ୍ର ବର୍ଷ ପରେ ସମ୍ମାନିତ ହୋଇ ଆସୁଛି । କୌଣସି ଗୂଢ଼ ଜ୍ଞାନ ଗୁରୁଙ୍କ ସାହାଯ୍ୟ ଓ ଆଶୀର୍ବାଦ ବିନା ମିଳିପାରିବ ନାହିଁ ବୋଲି ଆମେ ଏବେ ମଧ୍ୟ ବିଶ୍ୱାସ କରିଥାଉଁ । ଗୁରୁ ଓ ଶିଷ୍ୟ ଉଭୟଙ୍କ ହୃଦୟ ମିଶିଲେ ଯାଇ ବିଦ୍ୟାଲାଭ ସମ୍ଭବ । ସେଥିପାଇଁ ଉପନୟନ କର୍ମବିଧିରେ ଗୁରୁ ଓ ଶିଷ୍ୟର ହୃଦୟ ସ୍ପର୍ଶ କରିବାର ବିଧାନଟି ଅଛି । ଗୁରୁ ଶିଷ୍ୟର ଶୁଭ ଚୁଇଁ କୁହନ୍ତି, "ଆଜିଠାରୁ ଆମ ଦୁହିଁଙ୍କ ମଧ୍ୟରେ ଚିରନ୍ତନ ସ୍ନେହ ଓ ବିଶ୍ୱାସ ବିରାଜମାନ କରୁ ।" ଏଭଳି ପବିତ୍ର ଓ ପ୍ରାଣସ୍ପର୍ଶୀ ଗୁରୁ-ଶିଷ୍ୟ ପରମ୍ପରା ପୃଥିବୀର ଅନ୍ୟ କୌଣସି ସଂସ୍କୃତିରେ ଦୁର୍ଲଭ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଉପନୟନ କର୍ମବିଧିରେ ଗୋଟିଏ ବିଧାନ ଅଛି, ଯାହାକୁ କୁହା ଯାଏ 'ଅଶ୍ମାରୋହଣ' । ଏଥିରେ ବ୍ରହ୍ମଚାରୀଙ୍କୁ ଗୋଟିଏ ଶିଳ ଉପରେ ଚଢ଼ିବାକୁ ହୋଇଥାଏ । ଶିଳ ଥାଏ ଖୁବ୍ ଦୃଢ଼ ; ତେଣୁ ବ୍ରହ୍ମଚାରୀ ତାହା ଉପରେ ଚଢ଼ିଲେ ମଧ୍ୟ ତାହା ଦୋହଲି ଯାଏନାହିଁ ;

ସେହିପରି ଧୀର ସ୍ଥିର ହୋଇ ରହୁଥାଏ । ଗୁରୁ ସେତେବେଳେ ଶିଷ୍ୟଙ୍କୁ ପଥର ଭଳି ନିଜ ମନକୁ ଦୃଢ଼ ରଖିବା ପାଇଁ ଉପଦେଶ ଦେଇ କହୁଥାନ୍ତି । ଏହା ହେଉଛି 'ଶିଳାରୋହଣ' ବିଧିର ତାତ୍ପର୍ଯ୍ୟ ।

ବ୍ରହ୍ମଚର୍ଯ୍ୟାଶ୍ରମ ପରେ ବ୍ରହ୍ମଚାରୀଙ୍କୁ ନିଜ ଘରକୁ ଫେରି ଆସିବାକୁ ପଡୁଥାଏ । ତା'ଙ୍କୁ ଗୁରୁ-ଆଶ୍ରମରେ ଏଥିପାଇଁ ଶେଷ ସ୍ନାନ କରିବାକୁ ପଡୁଥାଏ । ତେଣୁ ତା'ଙ୍କୁ କୁହାଯାଏ 'ସ୍ନାତକ' ବା 'ସ୍ନାନ କରିବା ଲୋକ' । ଗୁରୁ-ଆଶ୍ରମରୁ ସ୍ୱଗୃହକୁ ଫେରିବାକୁ କୁହାଯାଏ 'ସମାବର୍ତ୍ତନ' । ସେତେବେଳେ ତା'ର ରୂପ ଥାଏ ଅଗ୍ନି ଭଳି ସମୁଜ୍ଜ୍ୱଳ । ଏଥିପ୍ରତି ଲକ୍ଷ୍ୟ କରି ଶତପଥ ବ୍ରାହ୍ମଣରେ କୁହାଯାଇଛି :

> "ଯଥା ହ ବା ଅଗ୍ନିଃ ସମିଦ୍ଧୋ ରୋଚତେ ଏବଂ ହ ବୈ
> ସଃ ସ୍ନାତ୍ୱା ରୋଚତେ ଯ ଏବଂ ବିଦ୍ୱାନ୍ ବ୍ରହ୍ମଚର୍ଯ୍ୟଂ ଚରତି ।" (୬୪)

ଏହାର ଅର୍ଥ ହେଲା, ଅଗ୍ନି ପ୍ରଜ୍ୱଳିତ ହେଲେ ଯେମିତି ସୁନ୍ଦର ଦେଖାଯାନ୍ତି, ସେମିତି ସେହି "ବିଦ୍ୱାନ୍ ବ୍ରହ୍ମଚାରୀ ସ୍ନାନ କରି ସାରିବା ପରେ ସୁନ୍ଦର ଦିଶନ୍ତି ।"

ବ୍ରହ୍ମଚାରୀଙ୍କୁ ଅଗ୍ନି-ଦେବତାଙ୍କ ସହିତ ଏଭଳି ଭାବରେ ତୁଳନା କରିବା ଦ୍ୱାରା ଏହି ପ୍ରମାଣ ଆମକୁ ମିଳୁଛି ଯେ ସେତେବେଳେ ବିଦ୍ୟାଧ୍ୟୟନ ପ୍ରତି ଖୁବ୍ ଗୁରୁତ୍ୱ ଦିଆଯାଉଥିଲା ଏବଂ ବିଦ୍ୟାର୍ଥୀ ଓ ଗୁରୁ ଉଭୟ ସମାଜରେ ଖୁବ୍ ସମ୍ମାନ ପାଉଥିଲେ । ଗୃହ୍ୟ-ସୂତ୍ରର ବର୍ଣ୍ଣନା ଅନୁଯାୟୀ ଭିକ୍ଷାର୍ଥୀ ବ୍ରହ୍ମଚାରୀ ଗୃହଦ୍ୱାରରେ ଉପସ୍ଥିତ ହେବା ମାତ୍ରେ, ଗୃହସ୍ଥଙ୍କୁ ଖାଇବା ଥାଳିରୁ ଉଠି ଆସିବାକୁ ପଡୁଥିଲା । ଖାଲି ସେତିକି ନୁହେଁ, ବ୍ରହ୍ମଚାରୀ ଆସିଗଲେ ରାଜ-ଦରବାରର ସଭ୍ୟମାନେ ତଥା ସ୍ୱୟଂ ରାଜା ମଧ୍ୟ ନିଜ ନିଜର ଆସନ ଛାଡ଼ି ଠିଆ ହୋଇ ଯାଉଥିଲେ । ବୈଦିକ କାଳରେ ଲୋକମାନଙ୍କର ବିଦ୍ୟା ପ୍ରତି ଖାଲି ତ ଶ୍ରଦ୍ଧା ଓ ଅନୁରାଗ ନଥିଲା ; ସମ୍ମାନ ମଧ୍ୟ ଥିଲା ତତୋଽଧିକ । ଏହି ସ୍ଥିତିକୁ ଲକ୍ଷ୍ୟ କରି ବାଳଶାସ୍ତ୍ରୀ ହରଦାସ ଯାହା ଯଥାର୍ଥରେ କହିଛନ୍ତି, ତାହା ଏଠାରେ ପ୍ରଣିଧାନଯୋଗ୍ୟ :

> "The Vedic people highly esteemed that preparatory course of education and studies. They gave it an indispensable character converting it into a major sacred 'Sanskar' rite

> without which no individual was allowed to enter into the social contract in life. They sanctified the system and planned every small form and precedent in the ceremony, with a careful thought and vision to shape the child in such a way as to turn him into a pillar of strength to the society in which he was to live," (୨୫)

ବିଦ୍ୟା, ବିଦ୍ୟାର୍ଥୀ ଓ ଆଚାର୍ଯ୍ୟଙ୍କୁ ଏହି ଯେଉଁ ସମ୍ମାନ ବୈଦିକ ଯୁଗରେ ଦିଆଯାଉଥିଲା, ତାହା ନିଶ୍ଚିତ ଭାବରେ ଅନନ୍ୟ ।

ପୂର୍ବରୁ କୁହାଯାଇଛି ଯେ ସ୍ନାନ କରିବା ପରେ ବ୍ରହ୍ମଚାରୀମାନଙ୍କୁ ନିଜ ନିଜର ଘରମାନଙ୍କୁ ଗୃହସ୍ଥାଶ୍ରମ ଲାଗି ଫେରି ଆସିବାକୁ ପଡ଼ୁଥିଲା । ସେମାନଙ୍କୁ କୁହାଯାଉଥିଲା 'ଉପକୁର୍ବାଣ ବ୍ରହ୍ମଚାରୀ' । ଆଉ କେତେକ ବ୍ରହ୍ମଚାରୀ ଆଜୀବନ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବା ପାଇଁ ଗୁରୁ-ଆଶ୍ରମରେ ରହି ଯାଉଥିଲେ । ସେମାନଙ୍କୁ କୁହାଯାଉଥିଲା 'ନୈଷ୍ଠିକ ବ୍ରହ୍ମଚାରୀ' । ବୈଦିକ ସମାଜରେ ଏହି ଦୁଇ ପ୍ରକାର ବ୍ରହ୍ମଚାରୀଙ୍କର ପୃଥକ୍ ପୃଥକ୍ ଆବଶ୍ୟକତା ଥିଲା ଏବଂ ସେମାନେ ତାହା ପୂରଣ କରୁଥିଲେ ।

ବର୍ତ୍ତମାନ ଗୁରୁ-ଗୃହରେ ବ୍ରହ୍ମଚାରୀର କ'ଣ କ'ଣ କର୍ତ୍ତବ୍ୟ ଥିଲା, ତାହା ବିଚାର୍ଯ୍ୟ । ଗୁରୁ-ଆଶ୍ରମରେ ବ୍ରହ୍ମଚାରୀର ଯଜ୍ଞାନୁଷ୍ଠାନ କରିବା କଥା ପୂର୍ବରୁ କୁହାଯାଇଛି । ଏହା ଥିଲା ତା'ର ଏକ ଅତି ମହତ୍ତ୍ୱପୂର୍ଣ୍ଣ କର୍ତ୍ତବ୍ୟ । ଆଉ ଗୋଟିଏ ପ୍ରଧାନ କର୍ତ୍ତବ୍ୟ ହେଲା ତ୍ରିକାଳରେ ସଂଧ୍ୟା କରିବା । ସକାଳେ, ଦିପହରରେ ଏବଂ ସନ୍ଧ୍ୟାରେ ସୂର୍ଯ୍ୟ ଦେବତାଙ୍କ ଉଦ୍ଦେଶ୍ୟରେ ତାଙ୍କୁ ଅର୍ଘ୍ୟ ଅର୍ପଣ କରିବାକୁ ପଡ଼ୁଥିଲା ଏବଂ ଏହି ସମୟରେ 'ଭୂର୍ଭୁବଃ ସ୍ୱଃ' ଆଦି ଗାୟତ୍ରୀମନ୍ତ୍ର ଉଚ୍ଚାରଣ କରିବାକୁ ପଡ଼ୁଥିଲା । ଏହାର ତାତ୍ପର୍ଯ୍ୟ ହେଲା ତା'ର ମନଃ-ଶୁଦ୍ଧି ଓ ଚିନ୍ତା-ଶୁଦ୍ଧି ଆସୁ ବୋଲି ଦିନକୁ ତିନି ଥର ନିର୍ଦ୍ଦିଷ୍ଟ ସମୟରେ ତାଙ୍କୁ ସବିତା ଦେବ ବା ସୃଷ୍ଟିକର୍ତ୍ତା ଭଗବାନଙ୍କୁ ପ୍ରାର୍ଥନା କରିବାକୁ ପଡ଼ୁଥିଲା । ସ୍ୱାଧ୍ୟାୟ ଲାଗି ଶୁଦ୍ଧପୂତ ଓ ସଦା ପ୍ରଫୁଲ୍ଲ ଚେତନାର ଯେ ଏକାନ୍ତ ଆବଶ୍ୟକତା ଅଛି ସେ କଥା ବ୍ରହ୍ମଚାରୀକୁ ଆଚାର୍ଯ୍ୟ ବୁଝାଇ ଦେଉଥିଲେ । ସେଥିପାଇଁ ବାସମ୍ ଯଥାର୍ଥରେ କହିଛନ୍ତି :

"Among the first lessons of the student was the performance of Sandhya, the morning, noon and evening devotions, which included reciting Gayatri, restraint of the breath, sipping and sprinkling water and pouring libations of water to the sun, which was looked on rather as a symbol of the special deity of the worshipper, whether Visnu or Siva, than as the Sun god himself." (୨୭)

'ସ୍ୱାଧ୍ୟାୟ', 'ପ୍ରବଚନ' ବା ଅଧ୍ୟୟନ ଓ ଅଧ୍ୟାପନ ଥିଲା ବ୍ରହ୍ମଚାରୀର ଆଉ ଏକ ମହତ୍ତ୍ୱପୂର୍ଣ୍ଣ କର୍ତ୍ତବ୍ୟ । ବର୍ତ୍ତମାନ ପ୍ରଶ୍ନ ହୋଇପାରେ, ବ୍ରହ୍ମଚାରୀ ତ ନିଜେ ପାଠ ପଢୁଥିଲା ; ସେ ପୁଣି ପାଠ ପଢ଼ାଉଥିଲା କାହାକୁ ? ଆଜିକାଲି ଶ୍ରେଣୀମାନଙ୍କରେ ଯେମିତି ମନିଟରମାନେ ଅଛନ୍ତି ସେମିତି ଗୁରୁ-ଆଶ୍ରମରେ ବଡ଼ ଛାତ୍ରମାନେ ଥିଲେ । ଗୁରୁଙ୍କ ଅନୁପସ୍ଥିତିରେ ସେମାନେ ବେଳେ ବେଳେ କନିଷ୍ଠ ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିଲେ । ଗୁରୁ ଶିଷ୍ୟମାନଙ୍କୁ ଉପଦେଶ ଦେଇ କହୁଥିଲେ :

"ସ୍ୱାଧ୍ୟାୟ ପ୍ରବଚନାଭ୍ୟାଂ ନ ପ୍ରମଦିତବ୍ୟମ୍" (୨୭)

ଅର୍ଥାତ୍ ତୁମ୍ଭେମାନେ ଅଧ୍ୟୟନ ଓ ଅଧ୍ୟାପନାକୁ ଛାଡ଼ିବ ନାହିଁ । ଅଧ୍ୟୟନ ଓ ଅଧ୍ୟାପନା ସେତେବେଳେ ବ୍ରହ୍ମଚାରୀ ଲାଗି ଏକ ତପସ୍ୟା ସ୍ୱରୂପ ଥିଲା । ସ୍ମୃତି-ଶାସ୍ତ୍ର ସେଥିପାଇଁ ଯଥାର୍ଥରେ କହିଥାଏ :

"ଛାତ୍ରାଣାମଧ୍ୟୟନଂ ତପଃ"

ଅର୍ଥାତ୍ ଅଧ୍ୟୟନ ହେଉଛି ଛାତ୍ରମାନଙ୍କର ତପସ୍ୟା ସ୍ୱରୂପ । ଏ ଯେଉଁ ସ୍ୱାଧ୍ୟାୟ, ତାହା କିଭଳି ହେବା ଉଚିତ ? ଖାଲି ଶୁଆ ପରି ଘୋଷି ପାଠ ମନେ ରଖିଦେଲେ ପଢ଼ା ସରିଗଲା ନାହିଁ ; ପଢାର ଲକ୍ଷ୍ୟ ସାଧିତ ହେଲାନାହିଁ । ତାହାର ସମ୍ୟକ୍ ଅର୍ଥ ବିଦ୍ୟାର୍ଥୀକୁ ପ୍ରାପ୍ତ ହେବା ଉଚିତ । ତଦ୍ୱାରା ତାହାର ବୋଧ ଓ ଜ୍ଞାନ ଶାଣିତ ହେବା ଉଚିତ । ସେଥିପାଇଁ ଯାସ୍କ ଯଥାର୍ଥରେ କହିଛନ୍ତି :

"ସ୍ଥାଣୁଃ ଅୟଂ ଭାରବାହଃ କି ଲାଭୂତ୍,
ଅଧୀତ୍ୟ ବେଦଂ ନ ବିଜାନାତି ଯୋଽର୍ଥମ୍ ।

ଯୋ ଅର୍ଥଜ୍ଞଃ ଇତ୍ ସକଳଂ ଭଦ୍ରଂ ଅଶ୍ନୁତେ,
ନାକଂ ଏତି ଜ୍ଞାନବିଧୂତ ପାପ୍ମା ।।" (୬୮)

ଅର୍ଥାତ୍ କଣ୍ଠିତ ରୂପରେ ଯେ ବେଦ ପଢ଼ି ତାହାର ଅର୍ଥ ବୁଝି ପାରନାହିଁ, ସେ ହେଉଛି ଭାର ବୋହୁଥିବା ଗଧଟିଏ ଭଳି । ଯେ ଏହାର ଅର୍ଥ ଜାଣିଛି, ସେ ଜ୍ଞାନ ଦ୍ୱାରା କଳୁଷମାନଙ୍କୁ ଦୂର କରି ଶୁଭ ପାଇଥାଏ ଏବଂ ସ୍ୱର୍ଗକୁ ଯାଇଥାଏ । ଅତଏବ, ବ୍ରହ୍ମଚାରୀର କର୍ତ୍ତବ୍ୟ ହେଲା କେବଳ ବେଦ ଅଧ୍ୟୟନ କରିବା ନୁହେଁ, ତାହାର ଅର୍ଥକୁ ସମ୍ୟକ୍ ଭାବରେ ଉପଲବ୍ଧି କରିବା ଏବଂ ତଦ୍ୱାରା ଶିଷ୍ୟ ଜ୍ଞାନ ପ୍ରଦୀପକୁ ଅଧିକରୁ ଅଧିକ ପ୍ରଜ୍ୱଳିତ କରାଇବା ।

ବୈଦିକ ଆର୍ଯ୍ୟମାନେ କେବଳ ଜ୍ଞାନଲାଭକୁ ଶିକ୍ଷାର ପରମ ଲକ୍ଷ୍ୟ ବୋଲି ବୁଝୁ ନଥିଲେ । ଶିକ୍ଷାର ଜୀବନ ସହିତ ସମ୍ବନ୍ଧ ଅଛି । କିପରି ଭାବରେ ସୁନ୍ଦର ଜୀବନଟିଏ ଯାପନ କରିବାକୁ ହେବ ତାହାର ମାର୍ଗ ଶିକ୍ଷା ଦର୍ଶାଇଥାଏ । ଜୀବନର ଅର୍ଥ ଖାଲି ଇହଲୋକର ଜୀବନ ନୁହେଁ । ଏହାକୁ ଅନନ୍ତ ଜୀବନ ଅର୍ଥରେ ଗ୍ରହଣ କରିବାକୁ ହେବ । ଜନ୍ମମୃତ୍ୟୁର ବନ୍ଧନକୁ ଛିନ୍ନ କଲେ ବ୍ୟକ୍ତି ଅନନ୍ତ ଜୀବନର ସନ୍ଧାନ ପାଇ ପାରିବ ଏବଂ ସେହି ଜୀବନ ଜୀଇଁ ପାରିବ । ଅତଏବ ମୁକ୍ତି ମଧ୍ୟ ହେଉଛି ଶିକ୍ଷାର ଆଉ ଏକ ଲକ୍ଷ୍ୟ । ଏହାର ତାତ୍ପର୍ଯ୍ୟ ହେଲା, ବୈଦିକ ଶିକ୍ଷା ସର୍ବଦା ବ୍ୟକ୍ତିକୁ ଜୀବନ ଓ ମୁକ୍ତି ପ୍ରତି ସମ୍ବେଦନଶୀଳ କରାଇ ଗଢ଼ି ତୋଳିଥିଲା । ବାସ୍ତବିକ ଏହା ହିଁ ହେଉଛି ସତ୍ ଶିକ୍ଷାର ଲକ୍ଷ୍ୟ ଏବଂ ଯୁଗ ଯୁଗ ଧରି ବହୁ ମନୀଷୀ ଏହା ଉପରେ ଗୁରୁତ୍ୱ ଆରୋପ କରି ଆସିଛନ୍ତି । ରାଧାକୃଷ୍ଣନ୍ ଏ ସମ୍ପର୍କରେ ଯାହା କହିଛନ୍ତି, ତାହା ଏଠାରେ ଉଲ୍ଲେଖନୀୟ :

"If education is to help us to meet the moral challenge of the age and play its part in the life of community, it should be liberating and life-giving. It must give a basic meaning to personality and existence and equip us with the power to overcome spiritual inertia and foster spiritual sentivity." (୬୮-କ)

ବୈଦିକ ଆର୍ଯ୍ୟମାନେ ଯେ ଶିକ୍ଷାର ଏହି ଦିଗ ପ୍ରତି ସଚେତନ ଥିଲେ, ତାହା ସେମାନଙ୍କ ଦୂରଦର୍ଶିତାର ପରିଚୟ ଦେଇଥାଏ ।

ବିଦ୍ୟା ଅଧ୍ୟୟନ କଲେ କିମ୍ବା ତାହାର ଅର୍ଥକୁ ଭଲ ଭାବରେ ବୁଝିଗଲେ ଯେ ବିଦ୍ୟାର ଲକ୍ଷ୍ୟ ସାଧିତ ହୋଇଗଲା, ତାହା ନୁହେଁ । ଅର୍ଜିତ ଜ୍ଞାନକୁ ଜୀବନ-ଯାତ୍ରାରେ ପ୍ରୟୋଗ କରିବାରେ ହିଁ ଥାଏ ବିଦ୍ୟାର ଚରମ ସାର୍ଥକତା । ଏହା ଉପରେ ବୈଦିକ ଶିକ୍ଷା ଯଥେଷ୍ଟ ଗୁରୁତ୍ୱ ଆରୋପ କରୁଥିଲା । ସେଥିପାଇଁ ଆଚାର୍ଯ୍ୟ ଶିଷ୍ୟକୁ କହୁଥାନ୍ତି :

"ସତ୍ୟଂ ବଦ ଧର୍ମଂ ଚର ।"

ଅର୍ଥାତ୍ ସତ କୁହ, ଧର୍ମାଚରଣ କର । ମନୁସ୍ମୃତିରେ ମଧ୍ୟ ଠିକ୍ ଅନୁରୂପ ଝଙ୍କାର ଅନୁରଣିତ । ସେଠାରେ କୁହା ଯାଇଛି :

"ଆଚାରଃ ପରମୋ ଧର୍ମଃ ଶ୍ରୁତ୍ୟୁକ୍ତଃ ସ୍ମାର୍ତ୍ତ ଏବ ଚ" । (୨୯)

ଅର୍ଥାତ୍ ବେଦ ଓ ସ୍ମୃତି ଶାସ୍ତ୍ର କହିବା ଅନୁସାରେ ଆଚାର ହେଉଛି ପରମ ଧର୍ମ । ଯେଉଁ ଗୁରୁ ଆଲୋଚିତ ଶୁଦ୍ଧ ଆଚରଣ ଦେଖାଇଥାନ୍ତି, ତାଙ୍କୁ କୁହାଯାଏ 'ଆଚାର୍ଯ୍ୟ' । ତଥାପି କାଳେ ତାଙ୍କ ନିଜ ଆଚରଣରେ କିଛି ଭୁଲ ଭଟକା ରହି ଯାଇଥିବ, ସେଥିପାଇଁ ସେ ଶିଷ୍ୟକୁ ସାବଧାନ କରି ଦେଇଥାନ୍ତି ଏବଂ କହିଥାନ୍ତି, "ମୋ'ର ଭଲ ଆଚରଣଗୁଡ଼ିକୁ ହିଁ କେବଳ ଅନୁକରଣ କର ।" ଏଥିରୁ ଏହି ପ୍ରମାଣ ମିଳୁଛି ଯେ ଜ୍ଞାନର ସହିତ ସ୍ୱୀୟ ଆଚରଣ-ଶୁଦ୍ଧି ଲାଗି ଚେଷ୍ଟା କରିବା ଏବଂ ସେହି ସିଦ୍ଧିରେ ପହଞ୍ଚିବା ଥିଲା ବ୍ରହ୍ମଚାରୀର ଆଉ ଏକ ପରମ କର୍ତ୍ତବ୍ୟ ।

ଖାଇବା, ପିଇବା, ପିନ୍ଧିବା, ରହିବା, ଶୋଇବା ଇତ୍ୟାଦିରେ ବ୍ରହ୍ମଚାରୀକୁ ଖୁବ୍ କୃଚ୍ଛ୍ରବ୍ରତ ଅବଲମ୍ବନ କରିବାକୁ ପଡ଼ୁଥିଲା । ଗୁରୁ-ଆଶ୍ରମରେ ରହି ବ୍ରହ୍ମଚର୍ଯ୍ୟ-ବ୍ରତ ପାଳନ କରୁଥିବା ସମୟରେ ତାହା ପାଇଁ ମୁଣ୍ଡରେ ତେଲ ଲଗାଇବା ପାଇଁ ମଧ୍ୟ ବାରଣ ଥିଲା । ସେ ସ୍ନାତକ ହେବା ଦିନ ହିଁ ଗୁରୁପତ୍ନୀ ତା'କୁ ବାସନା ତେଲ ଲଗାଇ ଦେଇ ଗାଧୋଇ ଦେଉଥିଲେ ଏବଂ ମୁଣ୍ଡ କୁଣ୍ଡାଇ ଭଲ ଲୁଗା ପିନ୍ଧାଇ ଦେଉଥିଲେ । ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେ ଯାଇ ତା'କୁ ଗୁରୁ-ପତ୍ନୀ ପ୍ରଦାକୁ ବାହାରିବାର ସୁଯୋଗ ଦେଉଥିଲେ । ଏହାର ତାତ୍ପର୍ଯ୍ୟ ହେଲା, କାଳେ ବାଳ-ସୂର୍ଯ୍ୟ ବ୍ରହ୍ମଚାରୀର ଦେହରୁ ନିର୍ଗତ ହେଉଥିବା ତେଜକୁ ସହି ପାରିବେ ନାହିଁ, ସେଥିପାଇଁ ମଧ୍ୟାହ୍ନ ସୂର୍ଯ୍ୟଙ୍କର ପ୍ରଖର କିରଣ ସପାତ ହେବା ପରେ ଯାଇ ତା'କୁ ବାହାରକୁ ଛଡ଼ା ଯାଉଥିଲା । ପ୍ରଶ୍ନ ହୋଇପାରେ, ଏ ପ୍ରକାର କୃଚ୍ଛ୍ର ସାଧନା କାହିଁକି ବ୍ରହ୍ମଚାରୀ କରୁଥିଲେ ? କାହିଁକି ସେ ତପସ୍ୱୀ ଭଳି ଜୀବନ ଯାପନ କରୁଥିଲେ ? ଏଭଳି ସାଧନା ତା'ର ଉତ୍ତର-ଜୀବନରେ ତଥା ଭାରତୀୟ ସାଂସ୍କୃତିକ କ୍ଷେତ୍ରର ବିକାଶରେ କେତେଦୂର ବା ସହାୟକ ହେଉଥିଲା ? ଭାରତୀୟ ସଂସ୍କୃତିର ଆତ୍ମା

ହୋଇଛନ୍ତି ଦର୍ଶନ ଓ ଧର୍ମ । ଏ ଦୁଇଟି ପରସ୍ପର ସହିତ ଏଭଳି ଭାବରେ ଅନ୍ତଃସ୍ୟୂତ ଯେ, ଏ ଦୁହିଁଙ୍କୁ ପରସ୍ପରଠାରୁ ପୃଥକ୍ କରି ହେବ ନାହିଁ । ବୈଦିକ ଶିକ୍ଷାର ଉଦ୍ଦେଶ୍ୟ ଥିଲା ଏହି ସଂସ୍କୃତିକୁ ପରିପୃଷ୍ଟ କରିବା । ଧର୍ମ ଓ ଦର୍ଶନର ପରିପୃଷ୍ଟି ବିନା ଏହି ସାଂସ୍କୃତିକ ପରିପୃଷ୍ଟି ଅସମ୍ଭବ । ଅତଏବ, ଧର୍ମ ଓ ଦର୍ଶନର ପୃଷ୍ଟିସାଧନ କରିବା ହିଁ ଥିଲା ବୈଦିକ ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ । ଧର୍ମ, ଅର୍ଥ, କାମ ଓ ମୋକ୍ଷ, ଏହି ଚତୁର୍ବର୍ଗ ଫଳ ମାଧ୍ୟମରେ ଏ ପ୍ରକାର ପରିପୃଷ୍ଟି ସାଧନ କରିବା ପାଇଁ ବ୍ରହ୍ମଚର୍ଯ୍ୟାଶ୍ରମ ଉପଯୁକ୍ତ ବାତାବରଣ ସୃଷ୍ଟି କରିଥିଲା ; ପ୍ରକୃଷ୍ଟ ସୁବିଧା ସୁଯୋଗ ଆଣି ଦେଇଥିଲା । ସଂସ୍କୃତିର ପରିପୂର୍ଣ୍ଣତା ହାସଲ କରିବା ପାଇଁ ଯେ କେତେକ ପରିମାଣରେ ସନ୍ନ୍ୟାସଧର୍ମ (asceticism) ଆବଶ୍ୟକ, ଏଥିରେ ସନ୍ଦେହର ଅବକାଶ ନାହିଁ । ଏ ସମ୍ପର୍କରେ ଶ୍ରୀଅରବିନ୍ଦ ଯଥାର୍ଥରେ କହିଛନ୍ତି :

> "ଅନ୍ତତଃ କେତେକ ପରିମାଣରେ ସନ୍ନ୍ୟାସ-ଧର୍ମ (asceticism) ଭିନ୍ନ କୌଣସି ସଂସ୍କୃତି ମହତ୍ତ୍ୱ ଓ ପୂର୍ଣ୍ଣତା ଲାଭ କରିପାରି ନାହିଁ, କାରଣ ଯାହା ଦ୍ୱାରା ମନୁଷ୍ୟ ତାହାର ନିମ୍ନ ପ୍ରକୃତି ଓ ପ୍ରାଣର ଆବେଗକୁ ଦମନ କରି ତାହାର ସତ୍ତ୍ୱାର ଉଚ୍ଚତର ସ୍ତରକୁ ଆରୋହଣ କରିପାରେ, ସେହି ତ୍ୟାଗ ଓ ଆତ୍ମଜୟ ହିଁ ସନ୍ନ୍ୟାସ-ଧର୍ମୀ ତପସ୍ୟାର ପ୍ରକୃତ ଅର୍ଥ । ଭାରତୀୟ ତପଶ୍ଚର୍ଯ୍ୟା ଦୁଃଖ ଓ କରୁଣାତ୍ମକ ଅଥବା ପୀଡ଼ାଦାୟକ ପ୍ରାୟଶ୍ଚିତ୍ତ ଓ କଠୋର ଶାରୀରିକ ପୀଡ଼ନ ମାତ୍ର ନୁହେଁ ; ପରନ୍ତୁ ଏହା ମହତ୍ତର ଆନନ୍ଦଲାଭ ଓ ପୂର୍ଣ୍ଣତମ ଅଧ୍ୟାତ୍ମ ସତ୍ତ୍ୱାରେ ପ୍ରତିଷ୍ଠିତ ହେବାପାଇଁ ମହତ୍ତ୍ୱ ପ୍ରଚେଷ୍ଟା ।" (୩୦)

ଏହି ପରିପ୍ରେକ୍ଷୀରେ ଏବଂ ଏହି ଲକ୍ଷ୍ୟ ରଖି ଗୁରୁ-ଆଶ୍ରମରେ ବ୍ରହ୍ମଚାରୀଙ୍କୁ ପରମ କର୍ତ୍ତବ୍ୟ ସ୍ୱରୂପ କଠିନ ତପଶ୍ଚର୍ଯ୍ୟା କରିବାକୁ ପଡ଼ୁଥିଲା ।

ଆଚାର୍ଯ୍ୟଙ୍କୁ ରକ୍ଷା କରିବା ମଧ୍ୟ ଥିଲା ବ୍ରହ୍ମଚାରୀର ଆଉ ଏକ କର୍ତ୍ତବ୍ୟ । ଏଥିପ୍ରତି ଲକ୍ଷ୍ୟ କରି ଶତପଥ ବ୍ରାହ୍ମଣରେ କୁହାଯାଇଛି :

> "ବ୍ରହ୍ମଚାରିଣ ଆଚାର୍ଯ୍ୟଂ ଗୋପାୟନ୍ତି ଗୃହାନ୍ ପଶୂନ୍ନେନ୍ନୋ ପହରାନିତି ।" (୩୧)

ଅର୍ଥାତ୍ ବ୍ରହ୍ମଚାରୀମାନେ ଆଚାର୍ଯ୍ୟଙ୍କୁ, ତାଙ୍କ ଘରକୁ ଓ ଗାଈଗୋରୁଙ୍କୁ ରକ୍ଷା କରିଥାନ୍ତି । ଆଚାର୍ଯ୍ୟଙ୍କୁ ବ୍ରହ୍ମଚାରୀ ବିଭିନ୍ନ ଦୁଃଖ, ବିପଦ ଆଦିରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ସବୁବେଳେ ତାଙ୍କର ସେବା କରୁଥାଏ ; ତାଙ୍କୁ ଦେବତା ଭଳି ଜ୍ଞାନ କରି ପୂଜା କରୁଥାଏ ।

'ଆଚାର୍ଯ୍ୟ ଦେବୋ ଭବ', ଅର୍ଥାତ୍ 'ଆଚାର୍ଯ୍ୟଙ୍କୁ ଦେବତା ଭଳି ଜ୍ଞାନ କରି ପୂଜା କର' ବୋଲି ତାଙ୍କୁ ଯେଉଁ ଉପଦେଶ ଆଚାର୍ଯ୍ୟ ଦେଇଥାନ୍ତି, ତାହାଙ୍କୁ ସେ ଅକ୍ଷରେ ଅକ୍ଷରେ ପାଳନ କରୁଥାଏ । ପ୍ରକୃତ ଜ୍ଞାନ ପାଇବାକୁ ହେଲେ ତିନୋଟି ବାଟରେ ଚାଲିବାକୁ ହେବ । ପ୍ରଥମେ ଗୁରୁଙ୍କ ଠାରେ ନିଜକୁ ସଂପୂର୍ଣ୍ଣ ରୂପେ ସମର୍ପି ଦେଇ ତାଙ୍କୁ ଭୂମିଷ୍ଠ ପ୍ରଣାମ କରିବାକୁ ହେବ । ଦ୍ୱିତୀୟରେ ତାଙ୍କୁ ବାରମ୍ବାର ପ୍ରଶ୍ନ ପଚାରିବାକୁ ହେବ । ତୃତୀୟରେ ତାଙ୍କର ସେବା କରିବାକୁ ହେବ । ଏହି ପନ୍ଥା ଅବଲମ୍ବନ କଲେ ଯେ ତତ୍ତ୍ୱଦର୍ଶୀ ଜ୍ଞାନୀମାନେ ସମୁଚିତ ଉପଦେଶ ଦେବେ ତାହା ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଗୀତାରେ ସେହିପରି ବୁଝାଇ ଦେଇଥିଲେ । ଗୀତାର ଏହି ଚିନ୍ତାଧାରାଟି ହେଉଛି ଅତି ପ୍ରାଚୀନ ବୈଦିକ ଚିନ୍ତାଧାରାର ଅନୁସାରୀ, ଯାହାକୁ କି ଗୁରୁ-ଆଶ୍ରମମାନଙ୍କରେ ରୂପାୟିତ କରାଯାଇଥିଲା । ଶ୍ରୀକୃଷ୍ଣଙ୍କର ଅର୍ଜୁନଙ୍କ ପ୍ରତି ବକ୍ତବ୍ୟ ହେଲା :

"ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା ।
ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ ଜ୍ଞାନିନସ୍ତତ୍ତ୍ୱଦର୍ଶିନଃ ॥" (୩୨)

ଅର୍ଥାତ୍ ହେ ଅର୍ଜୁନ ! ତୁମେ ପ୍ରଣିପାତ କରି, ବାରମ୍ବାର ପ୍ରଶ୍ନ କରି ଏବଂ ସେବା କରି ସେହି ଜ୍ଞାନକୁ ପ୍ରାପ୍ତ ହୁଅ । ତା'ହେଲେ ତତ୍ତ୍ୱଦର୍ଶୀ ଜ୍ଞାନୀମାନେ ତୁମକୁ ସେହି ଜ୍ଞାନ ସମ୍ପର୍କରେ ଉପଦେଶ ଦେବେ । ଆମେ ଛାନ୍ଦୋଗ୍ୟ ଉପନିଷଦରେ ବ୍ରହ୍ମଚାରୀ ସତ୍ୟକାମଙ୍କ ଗୁରୁ-ସେବା ସମ୍ପର୍କରେ କେତେକ ଦୃଷ୍ଟାନ୍ତ ପାଇଥାଉଁ । ତହିଁର ବର୍ଣ୍ଣନା ଅନୁଯାୟୀ ସତ୍ୟକାମ ଗୁରୁଙ୍କ ଗାଈଗୋରୁମାନଙ୍କୁ ଚରାଇବା ଲାଗି ଗୋଟିଏ ଦୂର ଜାଗାକୁ ନେଇ ଯାଇଥିଲେ ଏବଂ ସେଠାରେ ସେମାନଙ୍କର ସଂଖ୍ୟା ଚାରି ଶହରୁ ଏକ ହଜାରକୁ ବଢ଼ି ଯିବା ପରେ ସେ ଗୁରୁଙ୍କ ନିର୍ଦ୍ଦେଶକ୍ରମେ ଆଶ୍ରମକୁ ଫେରି ଆସିଥିଲେ । (୩୩) ଐତରେୟ ଆରଣ୍ୟକରେ (୩।୧।୬।୩) ମଧ୍ୟ ଶିଷ୍ୟମାନେ ଗୁରୁମାନଙ୍କର ଗାଈଗୋରୁ ଜଗୁଥିବା କଥାର ଅବତାରଣା କରାଯାଇଛି । ଶିଷ୍ୟ ଆରୁଣି କପରି ଗୁରୁଙ୍କ କ୍ଷେତରୁ ବୋହି ଯାଉଥିବା ପାଣିକୁ ଅଟକାଇବାକୁ ଯାଇ ନିଜେ ହିଡ଼ ଉପରେ ଶୋଇ ରହିଥିଲେ, ଏ କଥା ସମସ୍ତେ ଜାଣନ୍ତି । ତାହା ଗୁରୁ-ଭକ୍ତି ତଥା ଗୁରୁ-ସେବାର ଏକ ଅପୂର୍ବ ଓ ଅନନ୍ୟ ନିଦର୍ଶନ ।

ସେତେବେଳେ ରାଷ୍ଟ୍ର ଶିକ୍ଷାନୀତିକୁ ନିୟନ୍ତ୍ରିତ କରୁନଥିଲା ଏବଂ ରାଷ୍ଟ୍ର ତରଫରୁ କୌଣସି ଶିକ୍ଷାୟତନ ଖୋଲା ଯାଉନଥିଲା । ପ୍ରତ୍ୟେକ ଗୁରୁ-ଆଶ୍ରମ ଗୋଟିଏ ଗୋଟିଏ ଆବାସିକ ବିଶ୍ୱବିଦ୍ୟାଳୟ ଭଳି କାର୍ଯ୍ୟ କରୁଥିଲା । ସେଠାରେ ଶିଷ୍ୟମାନେ ଗୁରୁ ସେବା ସମେତ ଚରିତ୍ର ଗଠନ, ଯଜ୍ଞାନୁଷ୍ଠାନ ଓ ବିଦ୍ୟାଧ୍ୟୟନ ବିଷୟରେ ଶିକ୍ଷା ପାଉଥିଲେ । ଭି. ଏମ୍. ଆପ୍ଟେ ଏଥିପ୍ରତି ଲକ୍ଷ୍ୟ କରି କହିଛନ୍ତି :

"There was then no system of State education. The Brahmana teachers taught students of the three higher castes at their houses, giving them free board and lodging. In return, the students served the teachers and gave them fees (*Guru Dakhina*). That the education in this Home University was not merely literary, but also included physical and moral training, is seen from the hard daily routine of the pupil and the code of moral conduct prescribed for him, while residing with the teacher." (୩୪)

ଅତଏବ, ଏଥିରୁ ଏହି ପ୍ରମାଣ ମିଳୁଛି ଯେ ଅନ୍ୟାନ୍ୟ କର୍ତ୍ତବ୍ୟମାନଙ୍କ ମଧ୍ୟରେ ଗୁରୁଙ୍କ ସେବା କରିବା ଥିଲା ବ୍ରହ୍ମଚାରୀର ଆଉ ଏକ ମହତ୍ତ୍ୱପୂର୍ଣ୍ଣ କର୍ତ୍ତବ୍ୟ ।

ଉପରେ କୁହାଯାଇଛି ଯେ ଆଚାର୍ଯ୍ୟ ଶିଷ୍ୟମାନଙ୍କୁ ଘରେ ରଖି ମାଗଣାରେ ଖାଇବା ପିଇବା ଓ ରହିବାର ବ୍ୟବସ୍ଥା କରୁଥିଲେ । ବର୍ତ୍ତମାନ ପ୍ରଶ୍ନ ହୋଇପାରେ, ଏତେ ଜଣ ଶିଷ୍ୟଙ୍କର ଖାଇବା ପିଇବାର ଖର୍ଚ୍ଚ ଆଚାର୍ଯ୍ୟ କିପରି ବହନ କରୁଥିଲେ ? ସେ ତ ସେଭଳି ଧନବାନ୍ ବ୍ୟକ୍ତି ନଥିଲେ । ତେବେ ଏହା କିପରି ଭାବରେ ସମ୍ଭବ ହୋଇପାରୁଥିଲା ? ଏହାର ଉତ୍ତର ଅତି ସରଳ । ବ୍ରହ୍ମଚାରୀମାନେ ପ୍ରତ୍ୟହ ଭିକ୍ଷା କରୁଥିଲେ । ତେଣୁ ସେମାନଙ୍କ ଭୋଜନ ଲାଗି ଆଚାର୍ଯ୍ୟଙ୍କୁ କିଛି ଖର୍ଚ୍ଚ କରିବାକୁ ପଡ଼ୁ ନଥିଲା । ବରଂ ଏହି ଭିକ୍ଷାନ୍ନ ଦ୍ୱାରା ଆଚାର୍ଯ୍ୟ ଓ ତାଙ୍କ ପରିବାର ମଧ୍ୟ କେତେକାଂଶରେ ପରିପାଳିତ ହେଉଥିଲେ । ଗୃହସ୍ଥଙ୍କ ପକ୍ଷରେ ଭିକ୍ଷା କରିବା ମନା । କିନ୍ତୁ ବ୍ରହ୍ମଚାରୀ ପାଇଁ ଭିକ୍ଷା କରିବାରେ କିଛି ବାରଣ ନାହିଁ । ବରଂ ସେ ଲଜ୍ଜା ନ କରି ଭିକ୍ଷା କରିବା ଉଚିତ ବୋଲି ବୈଦିକ ସାହିତ୍ୟରେ କୁହାଯାଇଛି । ଏହାକୁ ଲକ୍ଷ୍ୟ କରି ଶତପଥ ବ୍ରାହ୍ମଣ କହିଛି :

"ବ୍ରହ୍ମଚାରୀ ଅହ୍ରୀର୍ଭୂତ୍ୱା ଭିକ୍ଷ୍ୟତେ ।"

ଅର୍ଥାତ୍ ବ୍ରହ୍ମଚାରୀ ଲଜ୍ଜା ନ କରି ଭିକ୍ଷା କରିବା ଉଚିତ । ବ୍ରହ୍ମଚାରୀ ପ୍ରଥମ ଭିକ୍ଷା କରୁଥିଲା ଗୁରୁ-ପତ୍ନୀଙ୍କ ଠାରୁ ଏବଂ ଦ୍ୱିତୀୟ ଭିକ୍ଷା କରୁଥିଲା ନିଜ ମାଆଙ୍କ ଠାରୁ । ଏଭଳି

କରିବା ଦ୍ୱାରା ପରବର୍ତ୍ତୀ ଶିକ୍ଷା ସଫଳ ହୁଏ ବୋଲି ବିଶ୍ୱାସ କରା ଯାଉଥିଲା । ଧନୀ ଦରିଦ୍ର ନିର୍ବିଶେଷରେ ସବୁ କୁଳର ବ୍ରହ୍ମଚାରୀମାନେ ଏଭଳି ଭିକ୍ଷା କରୁଥିଲେ । ତାହା ଫଳରେ ସେମାନଙ୍କ ମନରେ ବିଦ୍ୟାଧ୍ୟୟନ କାଳରୁ ହିଁ ନମ୍ରତା ପ୍ରକାଶନର ବୀଜ ବୁଣା ଯାଉଥିଲା । ଅତଏବ, ଭିକ୍ଷା କରିବା ମଧ୍ୟ ଥିଲା ବ୍ରହ୍ମଚାରୀ ଲାଗି ଆଉ ଏକ କର୍ତ୍ତବ୍ୟ । ଏହି କର୍ତ୍ତବ୍ୟ କେବଳ ଗୁରୁ-ଆଶ୍ରମରେ ଥିବା ପର୍ଯ୍ୟନ୍ତ ସୀମାବଦ୍ଧ ଥିଲା । ଥରେ ବ୍ରହ୍ମଚାରୀ ସ୍ନାତକ ହୋଇ ଘରକୁ ଫେରିଲେ, ତା' ପକ୍ଷରେ ଭିକ୍ଷା ଥିଲା ନିଷିଦ୍ଧ । ତା'କୁ ପରିଶ୍ରମ କରି ନିଜର ଓ ପରିବାରର ଭରଣପୋଷଣ କରିବାକୁ ପଡ଼ୁଥିଲା । ସେଥିପାଇଁ ଯଥାର୍ଥରେ କୁହାଯାଇଛି :

"ସମାବୃତ୍ତସ୍ୟ ଭିକ୍ଷା ଅଶୁଚିକରୀ" ।

ଅର୍ଥାତ୍ ବିଦ୍ୟାଧ୍ୟୟନ ପରେ ଯେ ଗୃହକୁ ସମାବର୍ତ୍ତନ କରିଛି, ତା' ପକ୍ଷରେ ଭିକ୍ଷା ଭଲ ନୁହେଁ ।

ଗୁରୁ-ଆଶ୍ରମରେ ଯଜ୍ଞାନୁଷ୍ଠାନ ଥିଲା ନିତ୍ୟ ନୈମିତ୍ତିକ କାର୍ଯ୍ୟ । ସେଥିପାଇଁ ଆବଶ୍ୟକ ହେଉଥିବା 'ସମିଧ' ସଂଗ୍ରହ ଥିଲା ବ୍ରହ୍ମଚାରୀର ଆଉ ଏକ କର୍ତ୍ତବ୍ୟର ଅନ୍ତର୍ଭୁକ୍ତ । ଏହାକୁ ଖୁବ୍ କଡ଼ାକଡ଼ି ଭାବରେ ପାଳନ କରା ଯାଉଥିଲା । ସେତେବେଳେ ବିଶ୍ୱାସ କରାଯାଉଥିଲା ଯେ ବ୍ରହ୍ମଚାରୀ କୌଣସି ଦିନ ସମିଧ ସଂଗ୍ରହ ନ କଲେ, ତା'ର ସେହି ଦିନର ଗଣିତର ଆୟୁଷ କ୍ଷୟ ହେଉଥିଲା । ଏ ସମ୍ପର୍କରେ ଶତପଥ ବ୍ରାହ୍ମଣରେ ଯାହା ଲେଖା ଅଛି, ତାହା ଅନୁଧ୍ୟାନ କରିବାର କଥା :

"ଯଂ ରାତ୍ରିଂ ବ୍ରହ୍ମଚାରୀ ସମିଧଂ ନାହରତି ଆୟୁଷ ଏବ ତମବଦାୟ ବସତି ।"

ଅର୍ଥାତ୍, ଯେଉଁଦିନ ବ୍ରହ୍ମଚାରୀ ସମିଧ ଆହରଣ କରୁ ନଥିଲା, ସେହି ଦିନ ଗଣିତର ଆୟୁଷ ତା'ର କ୍ଷୟ ହେଉଥିଲା । ଆଚାର୍ଯ୍ୟ ବ୍ରହ୍ମଚାରୀଙ୍କୁ ଯଜ୍ଞ-କୁଣ୍ଡରେ ସମିଧ ଅର୍ପଣ କରିବାପାଇଁ ଯେଉଁ ଉପଦେଶ ଦେଉଥିଲେ, ତାହାର ଏକ ପ୍ରତୀକାତ୍ମକ ଅର୍ଥ ଅଛି । ଏହା ସାଧାରଣ ନିଆଁରେ ସାଧାରଣ କାଠ ଖଣ୍ଡେ ପକାଇବାରେ ପର୍ଯ୍ୟବସିତ ନୁହେଁ । ପ୍ରଦୀପ୍ତ ଅଗ୍ନିଙ୍କର ତେଜକୁ ନିଜ ଅନ୍ତଃସ୍ଥଳରେ ଧାରଣ କରିବା ପାଇଁ ଏବଂ ସେହି ତେଜରେ ନିଜକୁ ଉଦ୍ଭାସିତ କରିବା ପାଇଁ ଆଚାର୍ଯ୍ୟ ଉପଦେଶ ଦେଇଥାନ୍ତି । ବାଳଶାସ୍ତ୍ରୀ ହରିଦାସ ଏଥି ପ୍ରତି ଲକ୍ଷ୍ୟ କରି ଯଥାର୍ଥରେ କହିଛନ୍ତି :

"In asking the *Brahmachari* to put the sticks in the fire it was the intention to tell him to kindle the fire and to become one like him, by enlightening oneself by rousing the potent powers of the soul. When the sticks were offered, a prayer had to be actually recited invoking the powers that be to confer on the student the process and lustre of fire." (୩୫)

ଏଭଳି ଭାବରେ ସମିଧ ଅର୍ପଣ କଲାବେଳେ ବ୍ରହ୍ମଚାରୀ ଯେଉଁ ମନ୍ତ୍ରମାନ ଉଚ୍ଚାରଣ କରିଥାଏ, ସେମାନଙ୍କର ତାତ୍ପର୍ଯ୍ୟ ହେଲା, ଅଗ୍ନି ଭଳି ଦୀପ୍ତି ଧାରଣ କରିବା ପାଇଁ ତା'ର ପ୍ରାର୍ଥନା । ଏହି ମନ୍ତ୍ରମାନଙ୍କରୁ ଗୋଟିଏ ପଙ୍କ୍ତି ନିମ୍ନରେ ଦର୍ଶାଯାଉଛି :

"ଯଥା ତ୍ୱମଗ୍ନେ ସମିଧା ସମିଧ୍ୟସେ,
ଏବମହମାୟୁଷା ମେଧୟା ବର୍ଚସା
ପଶୁଭିର୍ବ୍ରହ୍ମବର୍ଚସେନ ସମିନ୍ଧେ ।"

ଅର୍ଥାତ୍ ହେ ଅଗ୍ନି ଦେବ ! ତୁମେ ଯେମିତି ସମିଧର ଅର୍ପଣରେ ପ୍ରଦୀପ୍ତ ହୋଇ ଉଠୁଛ, ମୁଁ ସେମିତି ତୁମର ଆଶୀର୍ବାଦ ପାଇ ଦୀର୍ଘାୟୁ, ଜ୍ଞାନୀ, ବ୍ରହ୍ମବାଦୀ ଓ ଦୀପ୍ତିମାନ୍ ହୁଏଁ । ଅଗ୍ନିରେ ସମିଧ ସମର୍ପଣ କରିବାର ଏହା ହିଁ ଥିଲା ମୂଳ ଉଦ୍ଦେଶ୍ୟ ; ଏହା ହିଁ ଏହି କର୍ମବିଧାନର ପ୍ରତୀକାତ୍ମକ ଅର୍ଥ । ଅଳ୍ପ ବୟସର ବାଳକଟିଏ ସମାଜର କଳୁଷିତ ବାତାବରଣଠାରୁ ଦୂରରେ ରହି ନିତ୍ୟ ଦିନ ନିର୍ଦ୍ଦିଷ୍ଟ ସମୟରେ ଅଗ୍ନି ଦେବତାଙ୍କୁ ନିର୍ଦ୍ଦିଷ୍ଟ ସମୟରେ ଭକ୍ତି-ପୂର୍ଣ୍ଣ ଢଙ୍ଗରେ ସମିଧ ଅର୍ପଣ କରୁଥିବା ଚିତ୍ରଟିକୁ ଯଦି ଆମେ ମନେ ମନେ ଧ୍ୟାନ କରିବା, ତେବେ ନିଶ୍ଚିତ ଭାବରେ ଆମର ବିଶ୍ୱାସ ଆସିବ ଯେ ଏହି ବାଳକ ସଂସାର କ୍ଷେତ୍ରରେ ଦିନେ ନା ଦିନେ ଅଗ୍ନି ଭଳି ଶୁଦ୍ଧ, ପୂତ ଓ ଦୀପ୍ତ ବ୍ୟକ୍ତିତ୍ୱ ନେଇ ଅବତୀର୍ଣ୍ଣ ହେବ । ଅତଏବ, ଏହିସବୁ ବିଚାରରୁ ଆମେ ବୁଝିପାରିବା ଯେ ସମିଧ ସଂଗ୍ରହ ମଧ୍ୟ ଥିଲା ବ୍ରହ୍ମଚାରୀର ଆଉ ଏକ ବଡ଼ କର୍ତ୍ତବ୍ୟ ।

ବର୍ତ୍ତମାନ ବୈଦିକ ବିଦ୍ୟାଳୟମାନଙ୍କର କ'ଣ ପାଠ୍ୟକ୍ରମ ଥିଲା, ସେ ବିଷୟ ବିଚାରକୁ ନେବା । ଶତପଥ ବ୍ରାହ୍ମଣରେ (୧୧।୫) ଆମେ ଏ ବିଷୟରେ ସୂଚନା ପାଇ

ଆଉ । ବୈଦିକ ମନ୍ତ୍ର, ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ ଓ ବେଦାଙ୍ଗ ଥିଲା ମୁଖ୍ୟ ପାଠ୍ୟକ୍ରମର ଅନ୍ତର୍ଗତ । (୩୬) ବୈଦିକ ଶିକ୍ଷାକୁ କୁହାଯାଉଥିଲା ସ୍ୱାଧ୍ୟାୟ ଏବଂ ଏହି ସ୍ୱାଧ୍ୟାୟର ଅନ୍ୟ ନାମ ଥିଲା ବ୍ରହ୍ମ । ଶତପଥ ବ୍ରାହ୍ମଣ ଚେଣ୍ଡ ଏହି ମର୍ମରେ କହୁଥାଏ :

'ସ୍ୱାଧ୍ୟାୟୋ ବୈ ବ୍ରହ୍ମଯଜ୍ଞଃ' । (୩୭)

ଅର୍ଥାତ୍ ସ୍ୱାଧ୍ୟାୟ ହେଉଛି ବ୍ରହ୍ମଯଜ୍ଞ । ଅତଏବ ବ୍ରହ୍ମ ଯଜ୍ଞରେ ସିଦ୍ଧି ଲାଭ କରିବା ପାଇଁ ବା ବ୍ରହ୍ମଜ୍ଞାନ ପାଇବା ପାଇଁ ଗୃହମାନଙ୍କୁ ବେଦାଧ୍ୟୟନ କରିବାକୁ ପଡୁଥିଲା । ସକଳ ବିଦ୍ୟା ମଧ୍ୟରେ ବୈଦିକ ମନ୍ତ୍ରର ଅଧ୍ୟୟନ ଯେ ଏହି ଶିକ୍ଷାର ଏକ ବିଶିଷ୍ଟ ଅଙ୍ଗ ଥିଲା, ସେଥି ପ୍ରତି ଲକ୍ଷ୍ୟ କରି ଡ. ଏମ୍. ଅଟ୍ରେ ଯଥାର୍ଥରେ କହୁଛନ୍ତି :

> "The Vedic literature must, therefore, have formed the chief subject of instruction and the vital part of education," (୩୮)

ଏହି ବୈଦିକ ସାହିତ୍ୟ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା ସକଳ ବେଦମନ୍ତ୍ର ଓ ତତ୍ ସମ୍ପର୍କିତ ଛନ୍ଦ ବିଦ୍ୟା ଏବଂ ବେଦୋତ୍ତର କାଳର ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ, ବେଦାଙ୍ଗ ଆଦି ଗ୍ରନ୍ଥସମୂହ । ପ୍ରାଥମିକ ଅବସ୍ଥାରେ କେବଳ ବେଦାଧ୍ୟୟନ ଉପରେ ଗୁରୁତ୍ୱ ଦିଆ ଯାଉଥିବା ବେଳେ ପରବର୍ତ୍ତୀ କାଳରେ ବେଦାଧ୍ୟୟନ ସମେତ ଅନ୍ୟାନ୍ୟ ଗ୍ରନ୍ଥଗୁଡ଼ିକର ଅଧ୍ୟୟନ ଉପରେ ଗୁରୁତ୍ୱ ଦିଆ ଯାଇଥିଲା । ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଗୃହ ବୈଦିକ କର୍ମକାଣ୍ଡ ସମ୍ପର୍କରେ ବିଶେଷ ଜ୍ଞାନ ଅର୍ଜନ କରିବା ପାଇଁ ଉଦ୍ୟମ କରୁଥିଲେ । ସେମାନେ ହେଲେ ବ୍ରାହ୍ମଣ-ଗୋଷ୍ଠୀର, ଯେଉଁମାନେ କି ଭବିଷ୍ୟତରେ ପୌରୋହିତ୍ୟ କରିବା ପାଇଁ ସ୍ଥିର କରିଥିଲେ । ବିଭିନ୍ନ କର୍ମକାଣ୍ଡର ଠିକ ଜଣି ବିଧିବିଧାନମାନଙ୍କ ବିଷୟରେ ସେମାନଙ୍କୁ ବିଶେଷ ଭାବରେ ଅବହିତ ହେବାକୁ ପଡୁଥିଲା ଏବଂ ବିଭିନ୍ନ ମନ୍ତ୍ରଗୁଡ଼ିକୁ ଭଲ ଭାବରେ ମୁଖସ୍ଥ କରି ରଖିବାକୁ ପଡୁଥିଲା । ଭାର୍ଗବଙ୍କ ମତରେ :

> "Those who intended to take up priestly profession must have been required to master the details of the rituals associated with the hymns they had memorized." (୩୯)

ବିଭିନ୍ନ ଆକାରର ଯଜ୍ଞ-ବେଦୀ ନିର୍ମାଣ କରିବା ଲାଗି ନିଶ୍ଚିତ ଭାବରେ ଶିଷ୍ୟମାନଙ୍କୁ ମୌଳିକ ଜ୍ୟାମିତିକ ସୂତ୍ର ବିଷୟରେ ଶିକ୍ଷା ଦିଆ ଯାଉଥିବ । ଏଥି ସହିତ ସମ୍ପୃକ୍ତ ମୌଳିକ ଗାଣିତିକ ସୂତ୍ର ବିଷୟରେ ମଧ୍ୟ ସେମାନେ ଶିକ୍ଷା ପାଉଥିବେ ।

ଚାନ୍ଦ୍ର ମାସ ଓ ସୌର ବର୍ଷ ମଧ୍ୟରେ ପ୍ରଭେଦ ନିର୍ଣ୍ଣୟ କରିବା ଲାଗି ଜ୍ୟୋତିର୍ବିଦ୍ୟା ଅଧ୍ୟୟନର ଆବଶ୍ୟକତା ନିଶ୍ଚୟ ଥିବ । ଏହା ଛଡ଼ା ବିଭିନ୍ନ ଯଜ୍ଞର କାଳନିର୍ଣ୍ଣୟ ଲାଗି ଜ୍ୟୋତିର୍ବିଦ୍ୟା ସଂପର୍କୀୟ ଜ୍ଞାନର ଆବଶ୍ୟକତା ପଡ଼ୁଥିବ । ଏ ବିଷୟରେ ମୌଳିକ ଶିକ୍ଷା ସମସ୍ତଙ୍କୁ ଦିଆ ଯାଉଥିବ ବୋଲି ବିଶ୍ୱାସ କରାଯାଏ । ବୈଦିକ ଜ୍ୟୋତିର୍ବିଦ୍ୟା ସମ୍ପର୍କରେ ବିଶଦ ଆଲୋଚନା ଏହି ପୁସ୍ତକର ଦ୍ୱିତୀୟ ପରିଚ୍ଛେଦରେ କରାଯାଇଛି । ଏଥିରୁ ଅନୁମିତ ହୁଏ ଯେ ବୈଦିକ କାଳରେ ଜ୍ୟୋତିର୍ବିଦ୍ୟା ଖୁବ୍ ଲୋକପ୍ରିୟ ଥିଲା । ବୈଦିକ ଶିକ୍ଷାର ପାଠ୍ୟକ୍ରମରେ ଯେ ଜ୍ୟୋତିର୍ବିଦ୍ୟାର ଅଧ୍ୟୟନ ଅନ୍ତର୍ଭୁକ୍ତ ଥିଲା, ଏ ବିଷୟରେ ଭାର୍ଗବ ଓ ଅନ୍ୟାନ୍ୟ ବିଦ୍ୱାନଗଣ ସ୍ଥିରନିଶ୍ଚୟ । ଭାର୍ଗବଙ୍କ ମତକୁ ଉଦ୍ଧାର କରିବାକୁ ଗଲେ :

> "The knowledge of elementary astronomy which enabled the people of the Vedic age to find out the differences between the lunar and solar years was probably imparted to all." (୪୦)

ଋଗ୍‌ବେଦରେ ଓ ଅନ୍ୟାନ୍ୟ ବୈଦିକ ଗ୍ରନ୍ଥମାନଙ୍କରେ କିଭଳି ଭାବରେ ନଦୀ, ପର୍ବତ, ସମୁଦ୍ର, ଅରଣ୍ୟ ଆଦିର ବର୍ଣ୍ଣନା ରହିଅଛି, ସେ ସଂପର୍କରେ ଏହି ପୁସ୍ତକର ପ୍ରଥମ ଭାଗରେ ଏକ ପୃଥକ୍ ପରିଚ୍ଛେଦରେ ଆଲୋଚନା କରାଯାଇଛି । ବୈଦିକ ଋଷି-ମାନଙ୍କର ଦେଶର ଭୌଗୋଳିକ ସ୍ଥିତି ସଂପର୍କରେ ସମ୍ୟକ୍ ଜ୍ଞାନ ଥିବାର ତାହା ସୂଚନା ଦେଉଛି । ତତ୍ ସଙ୍ଗେ ସଙ୍ଗେ ଏହି ଭୌଗୋଳିକ ଜ୍ଞାନକୁ ଜନସମାଜ ମଧ୍ୟରେ ବିତରଣ କରିବା ଲାଗି ସେମାନଙ୍କର ଯେଉଁ ଆକାଙ୍‌କ୍ଷା ଥିଲା, ତାହା ମଧ୍ୟ ଏଥିରୁ ପ୍ରତିଭାତ ହେଉଛି । ଏଥିରୁ ବିଶ୍ୱାସ କରାଯାଏ ଯେ, ବୈଦିକ ପାଠ୍ୟକ୍ରମରେ ଭୂଗୋଳ ବିଷୟକ ମୌଳିକ ଶିକ୍ଷାଦାନ ନିଶ୍ଚିତ ଭାବରେ ଅନ୍ତର୍ଭୁକ୍ତ ଥିବ । ଏଥି ପ୍ରତି ଲକ୍ଷ୍ୟ କରି ଭାର୍ଗବ ଆଉ ଠାଏ ଯଥାର୍ଥରେ କହିଛନ୍ତି :

> "The minute knowledge of the rivers, mountains and other physical features of the royal territory shown by the poets of the Rig-Veda

> proves that some knowledge of geography of the motherland was also imparted to students.'' (୪୧)

ଏହା ଛଡ଼ା ନିରୁକ୍ତ, ବ୍ୟାକରଣ, ବିଦ୍ୟା ବା ବିଜ୍ଞାନ, ଇତିହାସ-ପୁରାଣ ବା ଆଖ୍ୟାନ ସମ୍ବନ୍ଧ ବିଷୟ ମଧ୍ୟ ବୈଦିକ ଶିକ୍ଷା-ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ଥିଲା । ଋଗ୍‌ବେଦକାଳୀନ ଶିକ୍ଷାପାଠ୍ୟକ୍ରମରେ ଯେଉଁ ଯେଉଁ ପାଠ୍ୟ ବିଷୟମାନ ଅନ୍ତର୍ଭୁକ୍ତ ଥିଲା, କାଳକ୍ରମେ ଋଗ୍‌ବେଦୋତ୍ତର ଯୁଗରେ ସେଗୁଡ଼ିକର ସଂଖ୍ୟା ବଢ଼ିବାକୁ ଲାଗିଲା । ସେତେବେଳେ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟରେ ବିଶାରଦ-ଜ୍ଞାନ (specialization) ହାସଲ କରିବାର ଆବଶ୍ୟକତା ଅନୁଭୂତ ହେଲା । ସେହି ଆବଶ୍ୟକତାକୁ ପୂରଣ କରିବା ଲାଗି ଚେଷ୍ଟା ପାଠ୍ୟକ୍ରମର ଯଥୋଚିତ ପରିବର୍ତ୍ତନ ଓ ପରିବର୍ଦ୍ଧନ କରାଗଲା । ଏ ବିଷୟରେ ଯୋଗୀରାଜ ବସୁ ଯାହା କହିଛନ୍ତି, ତାହା ଉଲ୍ଲେଖନୀୟ ଃ

> "Satapatha Brahman (13|4|3) refers to *Sarpavidya* (science of serpents), *Raksovidya* (science of demons) and *Asuravidya* (magic tricks). The course of study gradually swelled in bulk with inclusion of new subjects,'' (୪୨)

ଆହୁରି ପରବର୍ତ୍ତୀ କାଳରେ ଉପନିଷଦ-ଯୁଗରେ ନୂଆ ନୂଆ ଅନେକ ପାଠ ଯୋଗ ହୋଇଥିବାର ନିଦର୍ଶନ ଆମେ ପାଇଥାଉଁ । ଛାନ୍ଦୋଗ୍ୟ ଉପନିଷଦରେ ନାରଦ ଋଷି ତାଙ୍କ ଗୁରୁ ସନତ୍‌କୁମାରଙ୍କ ଠାରୁ କେଉଁ କେଉଁ ବିଷୟରେ ଶିକ୍ଷାଲାଭ କରିଥିଲେ, ତାହାର ଏକ ଲମ୍ବା ତାଲିକା ଦିଆ ଯାଇଛି । (୪୩) ଏହି ତାଲିକାକୁ ଅନୁଧ୍ୟାନ କଲେ ଆମେ ଜାଣି ପାରିବା ଯେ ଉପନିଷଦ-ଯୁଗ ବେଳକୁ ବୈଦିକ ଶିକ୍ଷା ଏକ ସୁବିନ୍ୟସ୍ତ ଓ ଶୃଙ୍ଖଳିତ ପର୍ଯ୍ୟାୟରେ ଆସି ପହଞ୍ଚିଥିଲା ଏବଂ ଉଭୟ ବିଶାରଦ-ଜ୍ଞାନ (specialization) ଓ ଆନ୍ତର୍ବିଦ୍ୟାଭିତ୍ତିକ (interdisciplinary) ଜ୍ଞାନ ବିତରଣ କରିବା ଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ । ଏଭଳି ଆନ୍ତର୍ବିଦ୍ୟାଭିତ୍ତିକ ଜ୍ଞାନ ଯେଉଁ ଗୁରୁ ବିତରଣ କରୁଥିବେ, ସେ ଯେ କି ପ୍ରଚଣ୍ଡ ପ୍ରତିଭା ଓ ଜ୍ଞାନର ଅଧିକାରୀ ହୋଇଥିବେ ତାହା ଏଥିରୁ ସହଜରେ ଅନୁମେୟ । ଏଥିରୁ ଏହି ସତ୍ୟ ପ୍ରତିପାଦିତ ହେବ ଯେ ଋଗ୍‌ବେଦୋତ୍ତର କାଳରେ ବୈଦିକ ଶିକ୍ଷାର ପାଠ୍ୟକ୍ରମ ବହୁଳ ଭାବରେ ବିସ୍ତାରିତ ହୋଇ ଯାଇଥିଲା ।

ବ୍ରହ୍ମଚର୍ଯ୍ୟାଶ୍ରମରେ ଯେମିତି କିଛୁ କର୍ତ୍ତବ୍ୟ ପାଳନର ବିଧି ଥିଲା, ଠିକ୍ ଅନୁରୂପ ଭାବରେ କ'ଣ କ'ଣ କରିବାକୁ ନହେବ, ସେଥିପାଇଁ ମଧ୍ୟ ନିୟମ ଖଞ୍ଜା ଯାଇଥିଲା । ଗୋପଥ ବ୍ରାହ୍ମଣରେ ଆମେ ଏ ସଂପର୍କରେ ଉଦ୍ଧୃତ ନିଷେଧ-ବିଧାନ ଦେଖିବାକୁ ପାଇଥାଉଁ । (୪୪) ନିମ୍ନଲିଖିତ କେତେକ ପ୍ରଧାନ ପ୍ରଧାନ ନିଷେଧ-ବିଧି ତହିଁର ଅନ୍ତର୍ଗତ :

(କ) ବ୍ରହ୍ମଚାରୀକୁ ଇନ୍ଦ୍ରିୟମାନଙ୍କୁ ଦମନ କରିବାକୁ ପଡ଼ିବ ।

(ଖ) ନିଦ୍ରା, ଆଳସ୍ୟ, କ୍ରୋଧ, ଲୋଭ ଓ ଗର୍ବଅଭିମାନକୁ ତା'କୁ ଦୂରେଇ ଦେବାକୁ ପଡ଼ିବ ।

(ଗ) ସେ ନିଜର ଯଶପ୍ରାପ୍ତି ଲାଗି ଲାଳାୟିତ ହେବନାହିଁ ।

(ଘ) ସେ ବ୍ୟକ୍ତିଗତ ସୌନ୍ଦର୍ଯ୍ୟ ବୃଦ୍ଧି ଲାଗି ଭଲ ଲୁଗାପଟା ପିନ୍ଧିବ ନାହିଁ କିମ୍ବା ଦେହରେ ସୁଗନ୍ଧ ଦ୍ରବ୍ୟାଦି ଲଗାଇବ ନାହିଁ ।

(ଙ) ସେ କୌଣସି ପ୍ରକାର ବିଳାସ ବ୍ୟସନରେ ମାତିବ ନାହିଁ ।

(ଚ) ତା'କୁ ସ୍ତ୍ରୀଜାତିର ସାନ୍ନିଧ୍ୟ ପରିହାର କରିବାକୁ ହେବ ।

(ଛ) ତା'କୁ ନାଚ ଗୀତଠାରୁ ଦୂରରେ ରହିବାକୁ ହେବ ।

(ଜ) ସେ କାହାକୁ କଡ଼ା କଥା କହି ମନରେ ଆଘାତ ଦେବ ନାହିଁ କିମ୍ବା କାହା ଉପରେ ରାଗିବ ନାହିଁ ।

(ଝ) ସେ ଉଲଗ୍ନ ନାରୀ ଆଡ଼କୁ ଚାହିଁବ ନାହିଁ ।

(ଞ) ସେ କୌଣସି ବାସନା ଜିନିଷ ଶୁଙ୍ଘିବ ନାହିଁ ; ଏପରିକି ବାସ ଛୁଟୁଥିବା କୌଣସି ଗଛ ଉପାଡ଼ି ତାହାକୁ ଶୁଙ୍ଘିବ ନାହିଁ ।

(ଟ) ସେ ଉଚ୍ଚ ଆସନରେ ବସିବ ନାହିଁ ।

(ଠ) ସେ ଖଟ ଉପରେ ନ ଶୋଇ ତଳେ ଶୋଇବ ।

(ଡ) ସେ ଅତି ନମ୍ର ଭାବରେ ଚଳବୁଲ କରିବ ।

(ଢ) ସେ ଛେପ ପକାଇବ ନାହିଁ ।

ଏହିସବୁ ନିଷେଧବିଧାନର ଲମ୍ବା ତାଲିକାଟି ଅନୁଧ୍ୟାନ କଲେ ଆମେ ବୁଝି ପାରିବା ଯେ ବ୍ରହ୍ମଚାରୀକୁ ଏକ ସଚ୍ଚରିତ୍ର ଓ ଶୀଳବାନ୍ ବ୍ୟକ୍ତି କରି ଗଢି ତୋଳିବା ଥିଲା ଏଗୁଡ଼ିକର ଲକ୍ଷ୍ୟ ।

ଶିଷ୍ୟକୁ ଗୋଟିଏ ସତ୍ୟସନ୍ଧ, ଆତ୍ମନିଷ୍ଠ ଓ ଶୀଳବାନ୍ ମନୁଷ୍ୟ ଭାବରେ ଗଢ଼ି ତୋଳିବା ଥିଲା ଆଚାର୍ଯ୍ୟଙ୍କର ପ୍ରଧାନ ଲକ୍ଷ୍ୟ ଏବଂ ସେହି ଲକ୍ଷ୍ୟ ସାଧନ ନିମିତ୍ତ ସେ ଥିଲେ

ସର୍ବଦା ସଚେତନ । ସେ ଶିଷ୍ୟଙ୍କୁ ଦେଉଥିବା ନିମ୍ନଲିଖିତ ଉପଦେଶାବଳୀ ଏବମ୍ବିଧ ସଚେତନତାର ପୃଷ୍କଳ ନିଦର୍ଶନ :

"ସତ୍ୟାନ୍ନ ପ୍ରମଦିତବ୍ୟଂ । ଧର୍ମାନ୍ନ ପ୍ରମଦିତବ୍ୟଂ । କୁଶଳାନ୍ନ ପ୍ରମଦିତବ୍ୟଂ । ଭୂତ୍ୟୈ ନ ପ୍ରମଦିତବ୍ୟଂ । ସ୍ୱାଧ୍ୟାୟପ୍ରବଚନାଭ୍ୟାଂ ନ ପ୍ରମଦିତବ୍ୟଂ । ମାତୃଦେବୋ ଭବ । ପିତୃଦେବୋ ଭବ । ଆଚାର୍ଯ୍ୟଦେବୋ ଭବ । ଅତିଥିଦେବୋ ଭବ । ଯାନ୍ୟନବଦ୍ୟାନି କର୍ମାଣି ତାନି ସେବିତବ୍ୟାନି ନୋ ଇତରାଣି । ଯାନ୍ୟସ୍ମାକଂ ସୁଚରିତାନି ତାନି ତ୍ୱୟୋପାସ୍ୟାନି ନୋ ଇତରାଣି ।" (୪୪-କ)

ଅର୍ଥାତ୍ ସତ୍ୟକୁ ଛାଡ଼ ନାହିଁ । ଧର୍ମକୁ ଛାଡ଼ ନାହିଁ । କୁଶଳ କର୍ମକୁ ଛାଡ଼ ନାହିଁ । ଐଶ୍ୱର୍ଯ୍ୟକୁ ଛାଡ଼ ନାହିଁ । ଅଧ୍ୟୟନ ଓ ଅଧ୍ୟାପନାକୁ ଛାଡ଼ ନାହିଁ । ମାଆଙ୍କର ପୂଜା କର । ବାପାଙ୍କର ପୂଜା କର । ଆଚାର୍ଯ୍ୟଙ୍କର ପୂଜା କର । ଅତିଥିଙ୍କର ପୂଜା କର । ଅନ୍ୟସବୁ କାମ ଛାଡ଼ି ଯେଉଁ ଗୁଡ଼ିକ ଭଲ କାମ, ସେଗୁଡ଼ିକ କର । ଆମ୍ଭେମାନେ ଯେଉଁ ଭଲ ଆଚରଣଗୁଡ଼ିକ ଦେଖାଉଛୁ, ତୁମେ ଅନ୍ୟସବୁ ଛାଡ଼ି ସେହିଗୁଡ଼ିକ ପାଳନ କର । ଏଠାରେ ଲକ୍ଷ୍ୟ କରିବାର କଥା, ଆଚାର୍ଯ୍ୟ ସବୁବେଳେ ଭଲ କାମ କରିବା ଉପରେ, ଭଲ ଚଳିବା ଉପରେ ଜୋର ଦେଉଛନ୍ତି । ଏପରି କି ନିଜେ କରୁଥିବା ସବୁ କାମକୁ ଅନୁକରଣ କରିବାକୁ ନ କହି, ସେ କହୁଛନ୍ତି ତାଙ୍କର କେବଳ ଭଲ କାମଗୁଡ଼ିକୁ ଓ ଭଲ ଆଚରଣ-ଗୁଡ଼ିକୁ ଅନୁକରଣ କରିବା ପାଇଁ । ଶିଷ୍ୟର ତଥା ସମାଜର ସର୍ବାଙ୍ଗୀନ ମଙ୍ଗଳ ଆଣିବା ଲାଗି ଆଚାର୍ଯ୍ୟ କେତେ ଦୂର ପ୍ରତିଶ୍ରୁତିବଦ୍ଧ ଥିଲେ, ତାହା ତାଙ୍କର ଏହି ଉପଦେଶାବଳୀରୁ ସମ୍ୟକ ଭାବରେ ସୂଚିତ ହୋଇଥାଏ ।

ବୈଦିକ ଶିକ୍ଷା ଗୁରୁ ଓ ଶିଷ୍ୟଙ୍କ ପାରସ୍ପରିକ ସହଯୋଗରେ ହିଁ ସମାହିତ ହେଉଥିଲା । ଗୁରୁଙ୍କୁ ମଧ୍ୟ ଶିଷ୍ୟ ସହିତ ଅଧ୍ୟୟନରତ ରହିବାକୁ ପଡ଼ୁଥିଲା । ଶିଷ୍ୟର ଆଚରଣ ଉପରେ ପ୍ରଭାବ ପକାଇବା ପାଇଁ ଗୁରୁଙ୍କୁ ମଧ୍ୟ ଆଚରଣଶୁଦ୍ଧି କରିବାକୁ ପଡ଼ୁଥିଲା । ବାସ୍ତବିକ, ଆଚାର୍ଯ୍ୟ ନାମଟି ସୃଷ୍ଟି ହୋଇଛି ଏହି ଆଚରଣ-ଶୁଦ୍ଧତା ପ୍ରତି ଉପଲକ୍ଷ୍ୟ କରି । ଏ ସମ୍ପର୍କରେ କୁହାଯାଇଛି :

"ଆଲୋଡ୍ୟ ସର୍ବଶାସ୍ତ୍ରାଣି ବିଚାର୍ଯ୍ୟ ଚ ପୁନଃ ପୁନଃ
ସ୍ୱୟଂ ଆଚରତେ ଯସ୍ମାଦ୍ ଆଚାର୍ଯ୍ୟଃ ସଃ ଉଦାହୃତଃ ।।"

ଅର୍ଥାତ୍ ନାନା ପ୍ରକାର ଶାସ୍ତ୍ର ଆଲୋଚନା କରି ଏବଂ ବାରମ୍ବାର ବିଚାର କରି ନିଜେ ସେହିଭଳି

ଆଚରଣ ଯେ କରନ୍ତି, ତାଙ୍କୁ କୁହାଯାଏ ଆଚାର୍ଯ୍ୟ । ତୈତ୍ତିରୀୟ ଉପନିଷଦରେ ଗୁରୁ ଓ ଶିଷ୍ୟ ଏକତ୍ର ପ୍ରାର୍ଥନା କରି କହୁଛନ୍ତି :

"ତେଜସ୍ୱି ନାବଧୀତମସ୍ତୁ ।" (୪୪-ଖ)

ଅର୍ଥାତ୍ ଆମ ଦୁହିଁଙ୍କ ଦ୍ୱାରା ପଠିତ ପାଠ ତେଜସ୍ୱୀ ହୋଇଉଠୁ । ଏଥିରୁ ଅନୁମିତ ହୁଏ ଯେ ଗୁରୁ ଓ ଶିଷ୍ୟଙ୍କର ପାରସ୍ପରିକ ସାହାଯ୍ୟ ଓ ସହଯୋଗରେ ଶିକ୍ଷା-ନିର୍ବାହ କରିବା ଥିଲା ଏକ ବଳିଷ୍ଠ ବୈଦିକ ପରମ୍ପରା ।

ବିଦ୍ୟାର ପରାକାଷ୍ଠା ପ୍ରଦର୍ଶନ ଲାଗି ସେତେବେଳେ ବିଭିନ୍ନ ତର୍କସଭାମାନ ଆୟୋଜିତ ହେଉଥିବା କଥାର ବହୁ ନିଦର୍ଶନ ଆମେ ବୈଦିକ ଗ୍ରନ୍ଥମାନଙ୍କରୁ ପାଇଥାଉଁ । ଉଦାହରଣ ସ୍ୱରୂପ ମିଥିଳାର ରାଜା ଜନକ ଏଭଳି ଗୋଟିଏ ତର୍କସଭାର ଆୟୋଜନ କରିଥିଲେ, ଯେଉଁଥିରେ କି ଯାଜ୍ଞବଲ୍କ୍ୟ, ଗାର୍ଗୀ, ମୈତ୍ରେୟୀ ଆଦି ବିଦ୍ୱାନ୍ ଓ ବିଦୁଷୀମାନେ ଯୋଗ ଦେଇଥିଲେ । ଏଭଳି ତର୍କସଭାରେ ଉଭୟ ଆଚାର୍ଯ୍ୟ ଓ ତାଙ୍କ ଶିଷ୍ୟମାନେ ଯୋଗ ଦେଉଥିଲେ । ଯେଉଁ ବ୍ୟକ୍ତି ପ୍ରଥମେ ପ୍ରଶ୍ନ ପଚାରୁଥିଲେ, ତାଙ୍କୁ କୁହା ଯାଉଥିଲା 'ପ୍ରଶ୍ନୀ' । ଯେଉଁ ବ୍ୟକ୍ତି ତାହାର ଉତ୍ତର ଦେବା ସଙ୍ଗେ ସଙ୍ଗେ ପୂର୍ବୋକ୍ତ ବ୍ୟକ୍ତିଙ୍କୁ ନିରସ୍ତ କରିବାକୁ ଯାଇ ପ୍ରଶ୍ନମାନ ପଚାରୁଥିଲେ, ତାଙ୍କୁ କୁହା ଯାଉଥିଲା 'ଅଭିପ୍ରଶ୍ନୀ' । ବୈଦିକ 'ବାକୋବାକମ୍' ଶବ୍ଦଟି ଏହି ପ୍ରକାର ତର୍କସଭାରେ ପ୍ରଶ୍ନୋତ୍ତର ଦେବା ପ୍ରସଙ୍ଗରୁ ବାହାରିଛି ବୋଲି ଅନେକ ବିଦ୍ୱାନ୍ ମତ ଦେଇଥାନ୍ତି । ବାସ୍ତବିକ ସମସ୍ତ 'ନ୍ୟାୟଶାସ୍ତ୍ର'ର ମୂଳଭିତ୍ତି ଅଛି ଏଇଠି । ଏହି ପ୍ରଶ୍ନୋତ୍ତରରୁ ହିଁ 'ନ୍ୟାୟଶାସ୍ତ୍ର'ର ନୀତି ନିୟମ ଓ ତତ୍ତ୍ୱମାନ ପରେ ପଲ୍ଲବିତ ଓ ପୁଷ୍ପିତ ହୋଇ ବିକାଶ ଲାଭ କରିଛି । ଏହାକୁ ଲକ୍ଷ୍ୟ କରି ଯୋଗୀରାଜ ବସୁ ଯଥାର୍ଥରେ କହୁଛନ୍ତି :

"The germ of logic or *Nyavasastra* can be traced in the system of debate. Debating competitions were regular feature of the academic career. Not only students, but also teachers who were eminent scholars and sages also participated in debating bouts with zeal and seriousness." (୪୫)

ଅତଏବ, ଏଥିରୁ ଏହି ସତ୍ୟ ନିଷ୍କାସିତ ହେବ ଯେ ସ୍ୱୀୟ ବିଦ୍ବତ୍ତାର ପରାକାଷ୍ଠା ଦେଖାଇବା ସଙ୍ଗେ ସଙ୍ଗେ ବୌଦ୍ଧିକ ସ୍ତରକୁ ଶାଣିତ କରିବା ପାଇଁ ଉଭୟ ଆଚାର୍ଯ୍ୟମାନେ ଓ ଶିଷ୍ୟମାନେ ବକ୍ତୃତା ପ୍ରତିଯୋଗିତାରେ ଯୋଗ ଦେଉଥିଲେ ।

ସମାଜରେ ଗୁରୁଙ୍କ ଆସନ ଥିଲା ଖୁବ୍ ଉଚ୍ଚରେ । ଶ୍ରେଷ୍ଠ ଆଧ୍ୟାତ୍ମିକ ପିତା ଭାବରେ ତାଙ୍କୁ ଗଣା ଯାଉଥିଲା । ଏଥି ପ୍ରତି ଲକ୍ଷ୍ୟ କରି ବାଳଶାସ୍ତ୍ରୀ ହରଦାସ ଯାହା କହିଛନ୍ତି, ତାହା ଦର୍ଶନୀୟ :

> "The *Guru* meaning the teacher, generally occupied an unrivalled place in the Vedic system of education. The *Guru* was considered to be the spiritual father of the pupil. The parents usher a soul to the life on the globe ; but according to the Vedic notion, it is the Vedic *Guru* who gives him light." (୪୬)

ଏହା ବୈଦିକ ସମାଜର ଶିକ୍ଷା ପ୍ରତି କିଭଳି ସମ୍ମାନ ଥିଲା, ତାହାର ସୂଚନା ଦର୍ଶାଉଛି । ଶିକ୍ଷାଦାତାଙ୍କୁ 'ଗୁରୁ' ବା ସବୁଠାରୁ ବଡ଼ ବୋଲି କହିବାର ତାତ୍ପର୍ଯ୍ୟ ଅଛି ଏହିଠାରେ ।

ବ୍ରହ୍ମଚାରୀର ମଧ୍ୟ ସାମାଜିକ ସ୍ଥିତି ଥିଲା ସମଧିକ ଉଚ୍ଚରେ । ତାଙ୍କୁ ଏକ ଅସାଧାରଣ ଶକ୍ତିସମ୍ପନ୍ନ ବ୍ୟକ୍ତି ବୋଲି କଳ୍ପନା କରାଯାଉଥିଲା । ସ୍ନାତକ ଗୁରୁ-ଆଶ୍ରମରୁ ସ୍ୱଗୃହକୁ ଫେରି ଆସିବା ସମୟର ଗୋଟିଏ ବର୍ଣ୍ଣନା ଅଛି । ତହିଁରେ କୁହା ଯାଇଛି :

> "ସ ସଦ୍ୟଃ ଏତି ପୂର୍ବସ୍ମାଦ୍ ଉତ୍ତରସମୁଦ୍ରମ୍,
> ଲୋକାନ୍ ସଂଗୃଭ୍ୟ ମୁହୁରଂ ଆଚରିକ୍ରତ୍ ।" (୪୭)

ଅର୍ଥାତ୍ ସେ ପୂର୍ବ-ସମୁଦ୍ରରୁ ଅର୍ଥାତ୍ ବ୍ରହ୍ମଚର୍ଯ୍ୟାଶ୍ରମରୁ ଉତ୍ତର-ସମୁଦ୍ରକୁ ଅର୍ଥାତ୍ ଗୃହସ୍ଥାଶ୍ରମକୁ ଆସୁଛି ଏବଂ ସବୁ ଲୋକଙ୍କୁ ସଂଗଠିତ କରି ନିଜ ଆଡ଼କୁ ଟାଣି ନେଉଛି । ସେତେବେଳେ ପାଠୁଆ ଲୋକେ ସମାଜକୁ ନିୟନ୍ତ୍ରିତ କରୁଥିଲେ । ଏବେ ଧନୀ ଲୋକେ ଓ ରାଜନୀତିଜ୍ଞମାନେ ସାଧାରଣତଃ ସମାଜକୁ ନିୟନ୍ତ୍ରିତ କରୁଛନ୍ତି । ଏଥିରୁ ବୁଝି ହେବ ବୈଦିକ ସମାଜରେ କାହିଁକି ସୁଖଶାନ୍ତି ବିରାଜମାନ କରୁଥିଲା—କାହିଁକି ବୈଦିକ ଆର୍ଯ୍ୟମାନଙ୍କର ଜୀବନ ଜୀବନର ମହାସଙ୍ଗୀତ ଗାଇବାରେ ସର୍ବଦା ଭରପୂର ହୋଇ ଉଠୁଥିଲା । ବ୍ରହ୍ମଚାରୀକୁ କିଭଳି ଭାବରେ ବାଳସୂର୍ଯ୍ୟଙ୍କଠାରୁ ଅଧିକତର ଭାସ୍ୱାନ୍ ବୋଲି ବିଚାର କରାଯାଉଥିଲା, ସେ କଥା ପୂର୍ବରୁ କୁହାଯାଇଛି । ସମାଜ ବ୍ରହ୍ମଚାରୀ ଲାଗି ସ୍ୱତନ୍ତ୍ର ଆତିଥେୟତାର ବ୍ୟବସ୍ଥା କରିଥିଲେ । ସାଧାରଣତଃ ଅତିଥିଙ୍କୁ ବର୍ଷକୁ ଥରେ 'ମଧୁପର୍କ' ଦେଇ ସତ୍କାର କରିବାର ବିଧି ଥିଲା । କେବଳ ରାଜାଙ୍କ ଲାଗି ଏ ବିଧିର ବ୍ୟତିକ୍ରମ ଘଟି ଥିଲା । ଅର୍ଥାତ୍ କୌଣସି ଘରକୁ ରାଜା ଆସିଲେ, ପ୍ରତି ଥର ତାଙ୍କୁ ମଧୁପର୍କ ଦିଆଯାଉଥିଲା । ବ୍ରହ୍ମଚାରୀ ପାଇଁ ରାଜାଙ୍କ

ପ୍ରତି ଲାଗୁ ଥିବା ନିୟମଟି ମଧ୍ୟ ପ୍ରଯୁଜ୍ୟ ହୋଉଥିଲା । ଏଦ୍ୱାରା ତାତ୍ପର୍ଯ୍ୟ ହେଲା, ବ୍ରହ୍ମଚାରୀ ରାଜାଙ୍କ ଭଳି ଏକ ସମକକ୍ଷ ଅବସ୍ଥା ଭାବରେ ଗଣା ଯାଉଥିଲା । ମାମଲାମକଦ୍ଦମାରେ ମଧ୍ୟ ବ୍ରହ୍ମଚାରୀ ଲାଗି ସ୍ୱତନ୍ତ୍ର ବ୍ୟବସ୍ଥା ଥିଲା । ଅନ୍ୟଠାରୁ ନିଜର ସମ୍ପତ୍ତିକୁ ମକଦ୍ଦମା କରି ଉଦ୍ଧାର କରିବା ଲାଗି ସମୟ-ସୀମା (limitation period) ସାଧାରଣ ଲୋକଙ୍କ ଲାଗି ରଖା ଯାଇଥିଲା ତିରିଶ ବର୍ଷ; କିନ୍ତୁ ବ୍ରହ୍ମଚାରୀ ଲାଗି ଏହା ଥିଲା ପଚାଶ ବର୍ଷ ।

ସବୁଠାରୁ ବଡ଼ ମହତ୍ତ୍ୱପୂର୍ଣ୍ଣ କଥା ହେଲା, ଗୁରୁ-ଆଶ୍ରମ ଥିଲା ଏକ ସଂପୂର୍ଣ୍ଣ ସ୍ୱାଧୀନ ଅନୁଷ୍ଠାନ । ଏହା ଉପରେ ରାଷ୍ଟ୍ରର କିମ୍ବା ରାଜାଙ୍କର କିଛି ହିଁ କର୍ତ୍ତୃତ୍ୱ ନଥିଲା । ଏହାକୁ ଲକ୍ଷ୍ୟ କରି ବାଲଶାସ୍ତ୍ରୀ ହରଦାସ ଯଥାର୍ଥରେ କହିଛନ୍ତି :

> "The most significant and estimable factor in the system of Vedic education was that the institutes of education, the Ashramas, were never subservient to the power of authority of the realm." (୪୮)

ଏଥିରୁ ଅନୁମିତ ହେବ କିପରି ବୈଦିକ ସମାଜରେ ଗୁରୁ, ଶିଷ୍ୟ ଏବଂ ବିଦ୍ୟାୟତନ ମହତ୍ତ୍ୱପୂର୍ଣ୍ଣ ଓ ମର୍ଯ୍ୟାଦାବନ୍ତ ସ୍ଥାନ ଅଧିକାର କରି ରହିଥିଲେ ।

ଉପରୋକ୍ତ ଆଲୋଚନା ଦୃଷ୍ଟିରୁ ଆମେ ବୈଦିକ ଶିକ୍ଷା ସମ୍ପର୍କରେ ନିମ୍ନଲିଖିତ ନିଷ୍କର୍ଷରେ ପହଞ୍ଚି ପାରିବା :

(କ) ବୈଦିକ ଶିକ୍ଷା ଥିଲା ନିର୍ବାଚନମୂଳକ ଏବଂ କେବଳ ଯୋଗ୍ୟ ବ୍ୟକ୍ତି ହିଁ ଏହି ଶିକ୍ଷା ପାଇ ପାରୁଥିଲେ ।

(ଖ) ରାଷ୍ଟ୍ର ଶିକ୍ଷା ସମ୍ପର୍କରେ କିଛି ଦାୟିତ୍ୱ ନେଉ ନଥିଲା କିମ୍ବା ଶିକ୍ଷାୟତନମାନ ଖୋଲୁ ନଥିଲା । ଗୁରୁ-ଆଶ୍ରମରେ ଗୁରୁଙ୍କ ଘରେ ଶିଷ୍ୟମାନେ ରହି ପାଠ ପଢୁଥିଲେ । ପ୍ରତ୍ୟେକ ଗୁରୁଆଶ୍ରମ ଥିଲା ଗୋଟିଏ ଗୋଟିଏ ଆବାସିକ ବିଶ୍ୱବିଦ୍ୟାଳୟ ଭଳି । ତାହା ଉପରେ ରାଷ୍ଟ୍ର କିମ୍ବା ରାଜାଙ୍କର କିଛି ହିଁ କର୍ତ୍ତୃତ୍ୱ ନଥିଲା ।

(ଗ) ପାଠ ପଢ଼ା ଆରମ୍ଭ ହେଉଥିଲା 'ଉପନୟନ'ରୁ ବା ଗୁରୁଙ୍କ ପାଖକୁ ପିଲାକୁ ନିଆ ହେବାଠାରୁ । ଏହା ସରୁଥିଲା ସ୍ନାତକ ହେବା ପରେ ପିଲା ସ୍ୱଗୃହକୁ

ଫେରିଲା ବେଳେ । ଏହି ମଧ୍ୟବର୍ତ୍ତୀ ସମୟକୁ କୁହା ଯାଉଥିଲା ବ୍ରହ୍ମଚର୍ଯ୍ୟାଶ୍ରମ ।

(ଘ) 'ଉପନୟନ' କର୍ମ ଉଚ୍ଚ ତିନି ବର୍ଣ୍ଣ, ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କ ପ୍ରତି ଲାଗୁ କରାଯାଉଥିଲା ।

(ଙ) ସ୍ତ୍ରୀମାନେ ମଧ୍ୟ 'ଉପନୟନ' କର୍ମ ମଧ୍ୟ ଦେଇ ଗତି କରି ବ୍ରହ୍ମଚାରିଣୀ ହୋଇପାରୁଥିଲେ ।

(ଚ) ବେଦପାଠ ଯେ କେବଳ ଉଚ୍ଚ ତିନି ବର୍ଣ୍ଣ ମଧ୍ୟରେ ସୀମାବଦ୍ଧ ଥିଲା, ତାହା ନୁହେଁ । ଶୂଦ୍ରମାନେ ମଧ୍ୟ ବେଦାଧ୍ୟୟନର ସୁଯୋଗ ପାଇପାରୁଥିଲେ ।

(ଛ) ସ୍ତ୍ରୀମାନେ ମଧ୍ୟ ବେଦାଧ୍ୟୟନର ସୁଯୋଗ ପାଇପାରୁଥିଲେ ।

(ଜ) ବେଦପାଠ ବୈଦିକ ଶିକ୍ଷାର ଏକ ପ୍ରଧାନ ଅଙ୍ଗ ଥିଲା ।

(ଝ) ଅଧ୍ୟୟନ ସଙ୍ଗେ ସଙ୍ଗେ ଶିକ୍ଷ୍ୟମାନଙ୍କର ଚରିତ୍ରଗଠନ ଉପରେ ଖୁବ୍ ଗୁରୁତ୍ୱ ଦିଆ ଯାଉଥିଲା । ସେମାନଙ୍କର ଉଭୟ ଆଧ୍ୟାତ୍ମିକ ଓ ଭୌତିକ ବିକାଶ ପ୍ରତି ଯଥୋଚିତ ଦୃଷ୍ଟି ଦିଆଯାଉଥିଲା ।

(ଞ) ଶିଷ୍ୟମାନେ ଗୁରୁଆଶ୍ରମରେ ଗୁରୁଙ୍କର ବ୍ୟକ୍ତିଗତ ସେବା କରିବା ସଙ୍ଗେ ସଙ୍ଗେ, ତାଙ୍କ ଲାଗି କାଠ ସଂଗ୍ରହ କରିବା, ତାଙ୍କ ଗାଈ ଜଗିବା ଆଦି ନାନା କର୍ମ କରୁଥିଲେ । ସେମାନଙ୍କୁ ବହୁ କୃଚ୍ଛ୍ର ସାଧନା ଦେଇ ଗତି କରିବାକୁ ପଡ଼ୁଥିଲା ।

(ଟ) ଶିଷ୍ୟମାନଙ୍କ ଲାଗି ନିର୍ଦ୍ଦିଷ୍ଟ କେତେକ କର୍ତ୍ତବ୍ୟ ଥିଲା, ଯାହାକୁ କି ସେମାନେ ପାଳନ କରୁଥିଲେ । ସେହିପରି, ସେମାନେ କ'ଣ କ'ଣ ନ କରିବା ଉଚିତ ସେଥିପାଇଁ ମଧ୍ୟ କଡ଼ା ବିଧିବିଧାନମାନ ଦିଆ ଯାଇଥିଲା ।

(ଠ) ଶିଷ୍ୟମାନଙ୍କୁ ଭିକ୍ଷା କରିବାକୁ ପଡୁଥିଲା । ବ୍ରହ୍ମଚର୍ଯ୍ୟାଶ୍ରମ ପରେ କିନ୍ତୁ ଏ ପ୍ରକାର ଭିକ୍ଷା କରିବା ନିଷିଦ୍ଧ ଥିଲା ।

(ଡ) ବେଦ, ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ, ବେଦାଙ୍ଗ ଆଦି ନାନା ପ୍ରକାର ବିଷୟ ବୈଦିକ ଶିକ୍ଷାର ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ଥିଲା । କାଳକ୍ରମେ ଏହି ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ବିଦ୍ୟାର ତାଲିକା ବଢ଼ିବାକୁ ଲାଗିଲା ।

(ଢ଼) ସେତେବେଳେ ଆନ୍ତର୍ବିଦ୍ୟାବୃତ୍ତିକ (interdisciplinary) ଶିକ୍ଷା ଶିଷ୍ୟମାନଙ୍କୁ ଦିଆ ଯାଉଥିଲା ।

(ଣ) ଗୁରୁ ଓ ଶିଷ୍ୟଙ୍କର ପାରସ୍ପରିକ ସହଯୋଗରେ ଶିକ୍ଷାଦାନ କରାଯାଉଥିଲା ।

(ତ) ବେଳେ ବେଳେ ତର୍କ ପ୍ରତିଯୋଗିତାର ଆୟୋଜନ କରାଯାଉଥିଲା । ଏଥିରେ ଉଭୟ ଆଚାର୍ଯ୍ୟ ଓ ତାଙ୍କ ଶିଷ୍ୟମାନେ ଯୋଗ ଦେଉଥିଲେ । ରାଜାମାନେ ବିଦ୍ୟାକୁ ସମ୍ମାନ ଦେଖାଇବାକୁ ଯାଇ ସାଧାରଣତଃ ଏହିଭଳି ବଡ଼ ବଡ଼ ତର୍କ ପ୍ରତିଯୋଗିତାମାନଙ୍କର ଆୟୋଜନ କରୁଥିଲେ ।

(ଥ) ସମାଜରେ ବ୍ରହ୍ମଚର୍ଯ୍ୟର ସ୍ଥାନ ଥିଲା ଖୁବ୍ ଉଚ୍ଚରେ । ଆତ୍ମଥେଯ୍ୟତା ଅର୍ପଣ ଲାଗି ରାଜାଙ୍କ ସହିତ ସେ ଥିଲା ସମକକ୍ଷ ।

(ଦ) ଗୁରୁଆଶ୍ରମରେ ଥିବା ଶିଷ୍ୟମାନଙ୍କ ସହିତ ଗୁରୁଙ୍କର ଖୁବ୍ ସ୍ନେହ ଶ୍ରଦ୍ଧା ଥିଲା । ଗୁରୁ-ଶିଷ୍ୟ ସଂପର୍କ କେବଳ ଔପଚାରିକ ସ୍ତରରେ ନଥିଲା; ଏହା ଥିଲା ବ୍ୟକ୍ତିଗତ । ଉଭୟ ଆନ୍ତରିକ ଭାବରେ ପରସ୍ପରଙ୍କ ଅଭ୍ୟୁଦୟ ଚାହୁଁଥିଲେ ।

(ଧ) ଋଗ୍‌ବେଦୋତ୍ତର କାଳରେ ବୈଦିକ ଶିକ୍ଷାର ଭୂୟୋବିକାଶ ଘଟିଥିଲା ଏବଂ ପାଠ୍ୟକ୍ରମର ବହୁଳ ପ୍ରସାର ହୋଇଥିଲା ।

(ନ) ସାଧାରଣତଃ ଗୁରୁଙ୍କଠାରୁ ଶୁଣି କରି ଶିଷ୍ୟମାନେ ପାଠ ମନେ ରଖୁଥିଲେ । ସେତେବେଳେ ଲିଖନପ୍ରଣାଳୀ ପ୍ରଚଳିତ ଥିଲା ବୋଲି ସାମାନ୍ୟ କିଛି ସୂଚନା ମିଳୁଥିଲେ ମଧ୍ୟ ତାହା ଏପର୍ଯ୍ୟନ୍ତ ଏକ ବିରାଟ ବିବାଦୀୟ ପ୍ରଶ୍ନ ହୋଇ ରହିଛି ।

(ପ) ପାଠ ପଢ଼ା ଶେଷରେ ବ୍ରହ୍ମଚାରୀ ଶେଷ ସ୍ନାନ କରି 'ସ୍ନାତକ' ରୂପେ ପରିଚିତ ହେଉଥିଲା ଏବଂ ଗୃହସ୍ଥାଶ୍ରମ କରିବା ଲାଗି ସ୍ୱଗୃହକୁ ବାପାମାଆଙ୍କ ପାଖକୁ ଫେରି ଆସୁଥିଲା ।

ସଂକ୍ଷେପରେ ଏହା ହିଁ ହେଲା ବୈଦିକ ଶିକ୍ଷାର କେତେକ ଦିଗ ଉପରେ ଆଲୋକପାତ ।

## ଟିପ୍‌ପଣୀ

୧ । ତୈତ୍ତିରୀୟ ଆରଣ୍ୟକ, ୭।୧୧।୧।୨।୩।୪ ।

୨ । ମନୁସ୍ମୃତି, ୨।୧୮ ।

୩ । Balasastri Haridas : Glimpses of the Vedic Nation : Meghasthens quoted : p. 236.

୪ । A. L. Basham : The Wonder that was India (1985 Reprint) : p. 160.

୪-କ । ସ୍ମୃତି ମତରେ ଷୋଡଶ ସଂସ୍କାର ହେଲା, ଗର୍ଭସଂସ୍କାର, ଗର୍ଭାଧାନ, ପୁଂସବନ, ସୀମନ୍ତୋନ୍ନୟନ, ଜାତକର୍ମ, ନାମକରଣ, ନିଷ୍କ୍ରମଣ,, ଅନ୍ନପ୍ରାଶନ, ଚୂଡ଼ାକର୍ମ, କର୍ଣ୍ଣବେଧ, ଉପନୟନ, ବ୍ରତାଦେଶ, ବେଦ-ସ୍ୱାଧ୍ୟାୟ, ସମାବର୍ତ୍ତନ, ବିବାହ ଓ ଅଗ୍ନି-ପରିଗ୍ରହ । ବିବାହ ପରେ ବ୍ୟକ୍ତି 'ଗାର୍ହପତ୍ୟାଗ୍ନି'ଙ୍କର ଉପାସନା କରିଥାଏ ।

୪-ଖ । ଅଥର୍ବବେଦ, ୧୧।୧।୨।୩ ।

୪-ଗ । ଶତପଥ ବ୍ରାହ୍ମଣ, ୧୧।୫।୪।୧୨ ।

୫ । ଋଗ୍‌ବେଦ, ୩।୭୨।୧୦ ।

୫-କ । Balasastri Hardas : op cit. : p. 238.

୬ । ଯଜୁର୍ବେଦ, ୨୬।୨ ।

୭ । ସ୍ୱାମୀ ଦୟାନନ୍ଦ ସରସ୍ୱତୀ : ସତ୍ୟାର୍ଥପ୍ରକାଶଃ ଶ୍ରୀବତ୍ସ ପଣ୍ଡା, ଓଡ଼ିଆ ଅନୁବାଦ : ପୃ. ୬୭-୬୮ ।

୮ । A.C. Das : Rig-Vedic Culture : p. 393.

୮-କ । ଋଗ୍‌ବେଦ, ୨।୧୨।୧୦ ; ୧୦।୧୦୨।୨ ।

୯ । P. L. Bhargava : India in the Vedic Age : The Upper India Publishing House (1971) : p. 246.

୧୦ । ତୈତ୍ତିରୀୟ ଆରଣ୍ୟକ, ୭।୧୧ ।

୧୧ । ସ୍ୱାମୀ ବିବେକାନନ୍ଦ : ବିବେକାନନ୍ଦ ସଞ୍ଚୟନ (ବିବେକାନନ୍ଦଙ୍କ ବାଣୀର ଓଡ଼ିଆ ଅନୁବାଦ) : ଶ୍ରୀରାମକୃଷ୍ଣ ମଠ, ଭୁବନେଶ୍ୱର (୧୯୮୮) : ପୃ. ୫୯ ।

୧୨ । Balasastri Hardas : op. cit : p. 242.

୧୨-କ । S. Radhakrishnan : Religion and Society : George Allen and Unwin Ltd, London (1966 Impression) : p. 135.

୧୩ । Balasastri Hardas : op. cit. : p. 242.

୧୪ । ବର୍ତ୍ତମାନ ବ୍ରାହ୍ମଣମାନଙ୍କ କ୍ଷେତ୍ରରେ ମଧ୍ୟ ଠିକ୍ ଅନୁରୂପ ପରିସ୍ଥିତି ଦେଖାଯାଉଛି । କେତେକ କ୍ଷେତ୍ରରେ ବ୍ରାହ୍ମଣମାନେ ମଧ୍ୟ ବିବାହ-ସମୟରେ

ସଙ୍କୋପବୀତ ଗ୍ରହଣ କରୁଥିଲେ । ବର୍ତ୍ତମାନ ଗୁରୁ-ଆଶ୍ରମକୁ ଯିବାର ଆବଶ୍ୟକତା ପଡ଼ୁ ନଥିବାରୁ ଉପନୟନ କର୍ମଟି କେବଳ ଏକ ଆନୁଷ୍ଠାନିକ ଓ ବୈଧିକ ରୂପ ନେଇଛି ଏବଂ ସେଥିପାଇଁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ବୟସ-ସୀମା ପାଳିତ ହେଉନାହିଁ । ଉପନୟନର ବହୁ ପୂର୍ବରୁ ପିଲମାନେ ପାଠପଢ଼ା ଆରମ୍ଭ କରିଦେଇ ପାରିଲେଣି ।

୧୪-କ । A.L. Basham : op. cit : p. 163.

୧୫ । ଋଗ୍‌ବେଦ, ୭ । ୧୦୩ ।

୧୫-କ । A.C. Das, op.cit. : p. 246.

୧୬ । History and Culture of the Indian People, Vol-I : Bharatiya Vidya Bhavan : "Social and Economic Conditions". : Article by V.M. Apte : p.395.

୧୬-କ । Balasastri Hardas : op. cit. p. 239.

୧୭ । Ibid.

୧୮ । Rhys Davids : Budhist India : Motilal Banarasidass (Reprint 1981) : Chapter-VII.

୧୯ । ସୁରେନ୍ଦ୍ରନାଥ ଶତପଥୀ : ଭାରତୀୟ ସଂସ୍କୃତି-ପ୍ରାଗୈତିହାସିକ ପର୍ବ (୧୯୮୭) : ତୃତୀୟ ପରିଚ୍ଛେଦ ।

୨୦ । ଋଗ୍‌ବେଦ, ୧୦।୭୧।୪ ।

ଶଂସିତ ମନ୍ତ୍ରଟି ନିମ୍ନରେ ଉଦ୍ଧାର କରାଯାଉଛି :

"ଉତ ତ୍ୱଃ ପଶ୍ୟନ୍ନ ଦଦର୍ଶ ବାଚମୁତ ତ୍ୱଃ ଶୃଣ୍ୱନ୍ନ ଶୃଣୋତ୍ୟେନାମ୍ ।
ଉତ ଉ ତ୍ୱସ୍ମୈ ତନ୍ୱଂ ବିସସ୍ରେ ଜାୟେବ ପତ୍ୟେ ଉଶତୀ ସୁବାସାଃ ॥"

୨୧ । ସୁରେନ୍ଦ୍ରନାଥ ଶତପଥୀ ଭାରତୀୟ ସଂସ୍କୃତି-ପ୍ରାଗୈତିହାସିକ ପର୍ବ : ୫ମ ଅଧ୍ୟାୟ ।

୨୨ । ଗୋପଥ ବ୍ରାହ୍ମଣ : ପୂର୍ବଭାଗ : ୨।୭ ।

୨୩ । Balasastri Hardas : op. cit : p.244.

୨୪ । ଶତପଥ ବ୍ରାହ୍ମଣ, ୧୧।୩।୧।୭ ।

୨୫ । Balasastri Hardas : op. cit: p. 246-247.

୨୬ । A.L. Basham : op. cit : p. 164.

୨୭ । ତୈତ୍ତିରୀୟ ଆରଣ୍ୟକ, ୭।୧୧।୧।୨।୩।୪ ।

୨୮ । ଯାସ୍କ : ନିରୁକ୍ତ : ୧।୧୮ ।

୨୮-କ । S. Radhakrishnan : True Knowledge : Orient Paperbacks (1989) : Preface.

୨୯ । ମନୁସ୍ମୃତି, ୧।୧୦୮ ।

୩୦ । ଶ୍ରୀଅରବିନ୍ଦ : ଭାରତୀୟ ସଂସ୍କୃତିର ଆଧାର (ଓଡ଼ିଆ ଅନୁବାଦ) ପୃ. ୧୦୭ ।

୩୧ । ଶତପଥ ବ୍ରାହ୍ମଣ, ୩।୭।୨।୧୫ ।

୩୨ । ଗୀତା, ୪।୩୪ ।

୩୩ । ଛାନ୍ଦୋଗ୍ୟ ଉପନିଷଦ, ୪।୪।୫ ।

୩୪ । History and Culture of the Indian People, Vol-I : Bharatiya Vidya Bhavan : "Social and Economic Conditions" : Article by V. M. Apte : p. 460.

୩୫ । Balasastri Hardas : op. cit : p. 247.

୩୬ । ମନ୍ତ୍ର, ବ୍ରାହ୍ମଣ, ଆରଣ୍ୟକ ଆଦିରେ କି ପାର୍ଥକ୍ୟ ରହିଛି ଏବଂ ତଦନ୍ତର୍ଗତ ଆଲୋଚ୍ୟ ବିଷୟବସ୍ତୁ କ'ଣ, ସେ ବିଷୟରେ ବିଶଦ ଭାବରେ ଜାଣିବାକୁ ହେଲେ ଦେଖନ୍ତୁ ଏହି ପୁସ୍ତକର ପ୍ରଥମ ଅଧ୍ୟାୟ ।

୩୭ । ଶତପଥ ବ୍ରାହ୍ମଣ, ୧୧।୫।୭।୩ ।

୩୮ । History and Culture of the India People, Vol-I : Bharatiya Vidya Bhavan : "Social and Economic Conditions." : Article by V.M. Apte : p. 458.

୩୯ । P.L. Bhargava : op. cit : p. 246.

୪୦ । Ibid.

୪୧ । Ibid.

୪୨ । Jogiraj Basu : India of the Age of the Brahmanas (1969) : p. 45.

୪୩ । ଛାନ୍ଦୋଗ୍ୟ ଉପନିଷଦ, ୭।୧।୨ ।

ନାରଦ ଋଷି ତାଙ୍କ ଗୁରୁଙ୍କଠାରୁ ନିମ୍ନଲିଖିତ ଚଉଦସ୍ଥରେ ଶିକ୍ଷା ପାଇଥିଲେ ବୋଲି କହିଛନ୍ତି :

(କ) ଋଗ୍‌ବେଦ, (ଖ) ଯଜୁର୍ବେଦ, (ଗ) ସାମବେଦ, (ଘ) ଅଥର୍ବଣ, (ଙ) ଇତିହାସ-ପୁରାଣ, (ଚ) ବେଦମାନଙ୍କର ବେଦ (ବେଦାନାଂ ବେଦଂ), (ଛ) ପିତୃମାନଙ୍କର ଉପାସନା ଲାଗି କର୍ମକାଣ୍ଡମାନ, (ଜ) ରାଶି ବା ଅଙ୍କ, (ଝ) ଯୁକ୍ତିତର୍କ କରିବା ବିଦ୍ୟା (ବାକୋବାକମ୍), (ଞ) ଆଚରଣବିଧି (ଏକାୟନମ୍), (ଟ) ଦେବ-ବିଦ୍ୟା, (ଠ) ବ୍ରହ୍ମବିଦ୍ୟା, (ଡ) ଭୂତବିଦ୍ୟା ବା ଜୀବ-ବିଦ୍ୟା, (ଢ) ରାଜନୀତି ଓ ଶାସନନୀତି (କ୍ଷାତ୍ରବିଦ୍ୟା), (ଣ)ଜ୍ୟୋତିର୍ବିଦ୍ୟା (ନକ୍ଷତ୍ରବିଦ୍ୟା) ଏବଂ (ତ) ସର୍ପବିଦ୍ୟା ।

'ବେଦାନାଂ ବେଦମ୍' ଅର୍ଥ ବ୍ୟାକରଣ ବୋଲି ବୁଝିବାକୁ ହେବ । ଏହା ଶଙ୍କରାଚାର୍ଯ୍ୟ ଛାନ୍ଦୋଗ୍ୟୋପନିଷଦର ବ୍ୟାଖ୍ୟାକ୍ରମରେ କହିଛନ୍ତି ।

୪୪ । ଗୋପଥ ବ୍ରାହ୍ମଣ, ୧୧।୧।୨।୧-୯ ।

୪୪-କ । ତୈତ୍ତିରୀୟ ଆରଣ୍ୟକ, ୭।୧୧।୧।୨।୩,୪ ।

୪୪-ଖ । ତୈତ୍ତିରୀୟ ଉପନିଷଦ, ୨।୧।୧ ।

୪୫ । Jogiraj Basu : op. cit : p. 46.

୪୬ । Balsastri Hardas : op. cit : p. 269.

୪୭ । ଅଥର୍ବବେଦ, ୧୧।୭।୭ ।

୪୮ । Balsastri Hardas : op. cit. : p. 280



## ପଞ୍ଚମ ପରିଚ୍ଛେଦ

# ବୈଦିକ ସମାଜ

ସମାଜ କହିଲେ ଆମେ ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଲୋକଙ୍କୁ ଏକହି ଗୋଟିଏ ଶାସନର ଶୃଙ୍ଖଳାରେ ରହି ଏକ ସ୍ୱତନ୍ତ୍ର ଜାତି (nation) ଗଠନ କରିବା ଅର୍ଥରେ ଗ୍ରହଣ କରିଥାଉ । ବ୍ୟକ୍ତି, ପରିବାର, କୁଳ, ରାଜ୍ୟ, ଏ ସମସ୍ତଙ୍କର ପାରସ୍ପରିକ ବନ୍ଧନ ନେଇ ସମାଜ ଗଢ଼ା ଯାଇଥାଏ । ବୈଦିକ ଆର୍ଯ୍ୟମାନଙ୍କର ଏହି ଏହି ଗୁଣମାନ ଥିଲେ ଯାଇ ସେମାନଙ୍କୁ ଏକ ସ୍ୱତନ୍ତ୍ର ସମାଜ ବୋଲି ଗ୍ରହଣ କରିବାକୁ ହେବ । ନିମ୍ନୋକ୍ତ ବିଶଦ ଆଲୋଚନାରୁ ଆମେ ଦେଖିପାରିବା ଯେ ସେମାନଙ୍କର ଏକ ପରିବାର ଥିଲା; ଏକ କୁଳ ମଧ୍ୟ ଥିଲା । ସେମାନେ ଗୋଷ୍ଠୀବଦ୍ଧ ଭାବରେ ଆଉ କୌଣସି ଜଣେ ବ୍ୟକ୍ତିଙ୍କର ଶାସନାଧୀନ ରହୁଥିଲେ । ତାଙ୍କୁ କୁହାଯାଉଥିଲା ରାଜା । ଏ ଶାସନ ରାଜତନ୍ତ୍ରୀ ହୋଇଥାଇପାରେ କିମ୍ବା ପ୍ରଜାତନ୍ତ୍ରୀ ହୋଇ-ଥାଇପାରେ । ଏକ ନିର୍ଦ୍ଦିଷ୍ଟ ନୀତିନିୟମ ଦ୍ୱାରା ସେମାନଙ୍କର ବ୍ୟକ୍ତିଗତ ଓ ପାରିବାରିକ ଜୀବନ ନିୟନ୍ତ୍ରିତ ହେଉଥିଲା । ଧର୍ମଧାରଣା ଓ ଆଧ୍ୟାତ୍ମିକତାର କ୍ଷେତ୍ରରେ ମଧ୍ୟ ସେମାନେ ଏକ ନିର୍ଦ୍ଦିଷ୍ଟ ଶୃଙ୍ଖଳାର ଅନୁବର୍ତ୍ତୀ ଥିଲେ । ଏହି ଦୃଷ୍ଟିରୁ ବିଚାର କଲେ ଆମେ ଦେଖିପାରିବା ଯେ ସେମାନେ ନିଶ୍ଚିତ ଭାବରେ ଏକ ସୁଶୃଙ୍ଖଳିତ ସାମାଜିକ ଜୀବନ ଯାପନ କରୁଥିଲେ । ବୈଦିକ ସାହିତ୍ୟରେ 'ରାଜ୍ୟ' ଓ 'ରାଷ୍ଟ୍ର' ଏହିଭଳି ଦୁଇଗୋଟି ଶବ୍ଦର ବ୍ୟବହାର କରା-ଯାଇଛି । ବୈଦିକ ଭାରତ ବିଭିନ୍ନ ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟରେ ବିଭକ୍ତ ହୋଇଥିବା କଥା ଆମେ ଜାଣୁ । ସେଗୁଡ଼ିକୁ କୁହାଯାଉଥିଲା ରାଜ୍ୟ ଏବଂ ସେଗୁଡ଼ିକର ଅଧିପତିଙ୍କୁ କୁହାଯାଉଥିଲା ରାଜା । 'ରାଜ୍ୟ'କୁ ଆଧୁନିକ ଅର୍ଥରେ State ବୋଲି କୁହାଯାଇପାରେ । କିନ୍ତୁ 'ରାଷ୍ଟ୍ର' କହିଲେ ସେତେବେଳେ ଏକ ବୃହତ୍ତର ଅର୍ଥ ବୁଝାଯାଉଥିଲା ; ତାହା ରାଜ୍ୟର ସୀମା-ସରହଦକୁ ଟପିଯାଉଥିଲା । ତାହାର ଅର୍ଥ ହେଲା ସାରା ବୈଦିକ ସମାଜ । ଗୋଟିଏ ଉଦାହରଣ ଏଠାରେ ଦିଆଯାଇପାରେ । ତୈତ୍ତିରୀୟ ବ୍ରାହ୍ମଣ କୁହେ :

"ଅସ୍ମିନ୍ ରାଷ୍ଟ୍ରେ ଆବ୍ରହ୍ମନ୍ ବ୍ରାହ୍ମଣୋ ବ୍ରହ୍ମବର୍ଚ୍ଚସୀ ଜାୟତାମ୍"

ଅର୍ଥାତ୍ ଏହି ରାଷ୍ଟ୍ରରେ ବ୍ରାହ୍ମଣମାନଙ୍କର ଆଧ୍ୟାତ୍ମିକ ଶକ୍ତି ନେଇ ପିଲାମାନେ ଜନ୍ମ ହୁଅନ୍ତୁ । ଏଠାରେ 'ରାଷ୍ଟ୍ର' ଅର୍ଥ କୌଣସି ନିର୍ଦ୍ଦିଷ୍ଟ ରାଜ୍ୟ ନୁହେଁ । ଏହାର ଅର୍ଥ ହେଉଛି ସାରା ବୈଦିକ ସମାଜ ; ସାରା ବୈଦିକ ଜାତି । ଅଥର୍ବ ବେଦରେ ଠାଏ କୁହାଯାଇଛି; "ବୟଂ ରାଷ୍ଟ୍ରେ ଜାଗୃୟାଂସଃ ପୁରୋହିତାଃ ।" ଅର୍ଥାତ୍ ଆମେ ପୁରୋହିତମାନେ ବା ଅଗ୍ରଣୀ

ଥିବା ବ୍ରାହ୍ମଣମାନେ 'ରାଷ୍ଟ୍ର'ରେ ସଦା ଜାଗ୍ରତ ରହନ୍ତୁ । ଏଠାରେ ମଧ୍ୟ ରାଷ୍ଟ୍ର ଶବ୍ଦ ସମାଜ ଅର୍ଥରେ ପ୍ରଯୁକ୍ତ । ବାଲଶାସ୍ତ୍ରୀ ହରଦାସ ଏହି ମତଟି ଉପରେ ଗୁରୁତ୍ୱ ଆରୋପ କରିବାକୁ ଯାଇ କହିଛନ୍ତି :

> "In the Atharva Veda in all places the word 'Rastra' has been used to denote a compact and united society. If there are in some places secondary meanings of the word 'Rastra', they are minor and only incidental." (୧)

ବେଦ, ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ, ଧର୍ମସୂତ୍ର ଆଦି ଗ୍ରନ୍ଥମାନ ଏ ଦେଶର ବିଭିନ୍ନ ସ୍ଥାନମାନଙ୍କରେ ବିଭିନ୍ନ ଲୋକମାନଙ୍କ ଦ୍ୱାରା ସୃଷ୍ଟ । କିନ୍ତୁ କୌଣସି ସ୍ଥଳରେ ସେଗୁଡ଼ିକର ଉପଦେଶ ଏକ ନିର୍ଦ୍ଦିଷ୍ଟ ରାଜ୍ୟର ଲୋକଙ୍କ ପାଇଁ ଉଦ୍ଦିଷ୍ଟ ବୋଲି କୁହା ଯାଇନାହିଁ । ଶତପଥ ବ୍ରାହ୍ମଣର ଗୋଟିଏ ପଙ୍କ୍ତି ଏଠାରେ ଉଦାହରଣ ସ୍ୱରୂପ ଗ୍ରହଣ କରାଯାଇପାରେ । ସେଠାରେ କୁହାଯାଇଛି :

> "ଅମେଧ୍ୟୋ ବୈ ପୁରୁଷୋ ଯଦନୃତଂ ବଦତି ।
> ତସ୍ୟ କନୀୟଃ କନୀୟଃ ଏବ ତେଜୋ ଭବତି ଶ୍ୱଃ
> ପାପୀୟାନ୍ ଭବତି ତସ୍ମାତ୍ ସତ୍ୟମେବ ବଦେତ୍ ।।"

ଅର୍ଥାତ୍ ଯେଉଁ ଲୋକ ମିଛ କୁହେ, ସେ ଘୃଣ୍ୟ । ସେ ପ୍ରତିଦିନ ପାପକର୍ମ କରୁଥିବାରୁ ତା'ର ଜ୍ୟୋତି ଦିନକୁ ଦିନ କ୍ଷୀଣ ହୋଇଉଠେ । ତେଣୁ ସମସ୍ତଙ୍କର ସତ କହିବା ଉଚିତ । ଏହି ଉପଦେଶ ନିଶ୍ଚିତ ଭାବରେ କୌଣସି ନିର୍ଦ୍ଦିଷ୍ଟ ରାଜ୍ୟର କିମ୍ବା ଗୋଷ୍ଠୀର ବା ଉପଗୋଷ୍ଠୀର ଲୋକଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଏହା ସାରା ଆର୍ଯ୍ୟ ସମାଜ ପାଇଁ ଉଦ୍ଦିଷ୍ଟ । ଅତଏବ ବୈଦିକ ଆର୍ଯ୍ୟମାନଙ୍କର ଯେ ଏକ ସୁଶୃଙ୍ଖଳ ସାମାଜିକ ବ୍ୟବସ୍ଥା ଥିଲା, ଏହା ଅନସ୍ୱୀକାର୍ଯ୍ୟ । ତେଣୁ ସେହି ବିଷୟରେ ବିସ୍ତୃତ-ଆଲୋଚନା କରିବା କୌତୂହଳୋଦ୍ଦୀପକ ।

ଆମେ ବୈଦିକ ସାହିତ୍ୟରେ ବିଶେଷ କରି ପ୍ରାଚୀନତମ ଋଗ୍‌ବେଦରେ ଆର୍ଯ୍ୟମାନେ ଜୀବନର ଆନନ୍ଦକୁ ପୂର୍ଣ୍ଣ ମାତ୍ରାରେ ଉପଲବ୍ଧ କରି ପାରୁଥିବାର ନିଦର୍ଶନକୁ ଦେଖିବାକୁ ପାଇଥାଉ । ମୃତ୍ୟୁ-ଚିନ୍ତାରେ ସେମାନେ କେବେହେଲେ ଅଧୀର ହୋଇ ଉଠିନାହାନ୍ତି ; ସର୍ବଦା ସେମାନେ ଜୀବନର ସ୍ୱାଦୁ ଚାଖିଛନ୍ତି; ପୃଥିବୀ, ଆକାଶ, ସମୁଦ୍ର, ଅରଣ୍ୟ, ବୃକ୍ଷଲତା

ସର୍ବତ୍ର ସେମାନେ ମଧୁର ସନ୍ଧାନ ପାଇଛନ୍ତି । ସେମାନଙ୍କର ଏହି ମନୋଭାବ ପ୍ରତି ଲକ୍ଷ୍ୟ କରି ଆପ୍ତେ ଯାହା କହିଛନ୍ତି, ତାହା ଏଠାରେ ପ୍ରଣିଧାନଯୋଗ୍ୟ :

> There is no trace of pessimism in the thoughts of the Rig-Vedic sages. Whether life was a reality or illusion, substance or shadow, they want to enjoy it to the full." (୯-କ)

ପ୍ରାଥମିକ ଅବସ୍ଥାରେ ସେମାନଙ୍କର 'ଆତ୍ମା' ବିଷୟରେ ଏକ ଭ୍ରାନ୍ତାତ୍ମକ ଧାରଣା ଥିଲା । ସେମାନେ ବିଶ୍ୱାସ କରୁଥିଲେ ଯେ ମୃତ୍ୟୁ ପରେ ମଧ୍ୟ ଜୀବନର କିଛି ଗୋଟାଏ ସ୍ଥିତି ଅଛି । ପରବର୍ତ୍ତୀ କାଳରେ ଉପନିଷଦ-ଯୁଗରେ ଏହି ଆତ୍ମା ସମ୍ପର୍କୀୟ ଧାରଣା, ଯେତେବେଳେ ଅଧିକତର ବିକଶିତ ହୋଇ ଉଠିଲା ଏବଂ ଏହାକୁ 'ପରଂବ୍ରହ୍ମ'ଙ୍କ ସହିତ ଚିହ୍ନିତ କରାଗଲା, ସେତେବେଳେ ଆର୍ଯ୍ୟ ଋଷି ବ୍ୟାକୁଳିତ ପ୍ରାଣରେ ସେହି ଅମୃତମୟ ସ୍ଥିତିଟି ଲାଗି ଆକାଂକ୍ଷିତ ହୋଇ ଗାଇ ଉଠିଲେ :

> "ତମସୋ ମା ଜ୍ୟୋତିର୍ଗମୟ
> ମୃତ୍ୟୋର୍ମା ଅମୃତଂ ଗମୟ ।"

ଅର୍ଥାତ୍ ମତେ ଅନ୍ଧକାରରୁ ଆଲୋକକୁ ନେଇଯାଅ ; ମୃତ୍ୟୁରୁ ଅମୃତକୁ ନେଇଯାଅ । ଏ ହେଲା ବେଦାନ୍ତ ଦର୍ଶନର ଗହନ-ଗମ୍ଭୀର କଥା । ଏଥିରୁ ଜଣାଯିବ ଯେ ବୈଦିକ ଆର୍ଯ୍ୟମାନେ ମୂଳରୁ ଜୀବନକୁ ଆନନ୍ଦମୟ ବୋଲି ଭାବୁଥିଲେ ଏବଂ ସେହି ଆନନ୍ଦକୁ ସମ୍ୟକ୍ ଭାବରେ ଉପଲବ୍ଧି କରୁଥିଲେ । ନିଜକୁ ଆନନ୍ଦ ଓ ଅମୃତର ସନ୍ତାନ ବୋଲି ଭାବି ସେହି ଆନନ୍ଦମୟ ଓ ଅମୃତମୟ ସ୍ଥିତିରେ ସେମାନେ ବୁଡ଼ି ରହିବାକୁ ଚାହୁଁଥିଲେ । ସେମାନଙ୍କର ଜୀବନକୁ ଏହି ଦୃଷ୍ଟିଭଙ୍ଗୀରେ ଦେଖିବାକୁ ଲକ୍ଷ୍ୟ କରି ଜବାହାରଲାଲ ନେହେରୁ ଯଥାର୍ଥରେ କହିଛନ୍ତି :

> The vitality and affirmation of life pervading them are extraordinary. The early Vedic Aryans were so full of the zest for life that they paid little attention to the soul. In a vague way they believed in some kind of existence after death." (୨)

ଜୀବନର ଏହି ଆନନ୍ଦଟିକୁ କିପରି ଭାବରେ ପୂର୍ଣ୍ଣ ମାତ୍ରାରେ ଉପଲବ୍ଧି କରିହେବ, ସେହି ଚତୁରାଶ୍ରମ ବୈଦିକ ଆର୍ଯ୍ୟମାନଙ୍କ ସାମାଜିକ ବ୍ୟବସ୍ଥାକୁ ନିୟନ୍ତ୍ରିତ କରୁଥିଲା ।

ବର୍ତ୍ତମାନର ସଂଘର୍ଷମୟ ଜୀବନରେ ହୁଏତ ସେଭଳି ଆନନ୍ଦମୟ ସ୍ଥିତି ଅଣାଇ ପାରିବା ଅସମ୍ଭବ । ସେହି ଦୃଷ୍ଟିରୁ ବିଚାର କରି ଆମେ ଯଦି କହିବା ଯେ ଉପରୋକ୍ତ ଚତୁରାଶ୍ରମ ଥିଲା ଆର୍ଯ୍ୟମାନଙ୍କର ଏକ କଳ୍ପନାର ବିଳାସ, ପଶ୍ଚାତ୍ୟଙ୍କର କଥାରେ ରୋମାଣ୍ଟିକର ହେଲେ ମଧ୍ୟ ମିଥ୍ୟା, ତାହା ଠିକ୍ ହେବ ନାହିଁ । ସେତେବେଳର ପରିସ୍ଥିତି ଥିଲା ଭିନ୍ନ । ଜୀବନ-ଯାତ୍ରା ସେତେବେଳେ ଥିଲା ଅତି ସରଳ । ଲୋକମାନଙ୍କର ଆବଶ୍ୟକତା ମଧ୍ୟ ଥିଲା ଅତି ସୀମିତ । ଏଣୁ ଜୀବିକା-ନିର୍ବାହ ଲାଗି ପ୍ରତିଯୋଗିତା ପ୍ରାୟ ନଥିଲା କହିଲେ ଚଳେ; ଥିଲେ ମଧ୍ୟ ତାହା ଆଜିକାର ଭଳି ଏତେ ତୀବ୍ର ନଥିଲା । ଏଭଳି ପରିସ୍ଥିତିରେ ଜୀବନରେ ଆନନ୍ଦ ପାଇବା କିଛି ଅସମ୍ଭବ କିମ୍ବା ଆଶ୍ଚର୍ଯ୍ୟଜନକ ନୁହେଁ । କିନ୍ତୁ ପ୍ରକୃତ ଆଶ୍ଚର୍ଯ୍ୟଜନକ ହେଉଛି ଏହି ଚତୁରାଶ୍ରମ, ଯାହା କି 'ଜୀବନରେ ଆନନ୍ଦ'କୁ ଛାଡ଼ି 'ଜୀବନର ଆନନ୍ଦ' ଉପରେ ଗୁରୁତ୍ୱ ଦେଉଥିଲା । ସେତେବେଳେ ମନୁଷ୍ୟ ମନଇଚ୍ଛା କରି 'ଜୀବନରେ ଆନନ୍ଦ' ପାଇବାର ଯଥେଷ୍ଟ ସୁବିଧାସୁଯୋଗ ଥିଲେ ମଧ୍ୟ ଆର୍ଯ୍ୟମାନେ ଜୀବନର ଆନନ୍ଦ' ଉପରେ ଗୁରୁତ୍ୱ ଦେଉଥିଲେ । ବସ୍ତୁ ଭୋଗର ସାମଗ୍ରୀ ଥିଲେ ମଧ୍ୟ ସେମାନେ ତ୍ୟାଗୀର ହୃଦୟ ନେଇ ସେଗୁଡ଼ିକୁ ଉପଭୋଗ କରୁଥିଲେ । ସେମାନେ ତ୍ୟାଗ ଓ ଭୋଗର ଏକ ସମନ୍ୱିତ ଗାରିମାରେ ସ୍ୱୀୟ ଜୀବନକୁ ଧନ୍ୟ କରାଇ ପାରୁଥିଲେ । ସେମାନଙ୍କ ଜୀବନର ଯେଉଁ ମୂଳ ଲକ୍ଷ୍ୟ ଥିଲା 'ଚତୁର୍ବର୍ଗ' ଫଳପ୍ରାପ୍ତି, ତାହାକୁ ଅନୁଧ୍ୟାନ କଲେ ଏ ବିଷୟଟି ସ୍ପଷ୍ଟ ହୋଇ ଉଠିବ

## ଚତୁର୍ବର୍ଗ ଫଳ :

ଧର୍ମ, ଅର୍ଥ, କାମ ଓ ମୋକ୍ଷ, ଏହି ଚାରୋଟି ଥିଲା ବୈଦିକ ଆର୍ଯ୍ୟମାନଙ୍କ ଜୀବନର ଲକ୍ଷ୍ୟ । ଏହାକୁ କୁହାଯାଏ 'ଚତୁର୍ବର୍ଗ ଫଳ' । ଏହା ମିଳିଗଲେ ଜୀବନରେ ସାର୍ଥକତା ଆସିଗଲା ବୋଲି ବୁଝାଯାଉଥିଲା । ଏହି ଫଳପ୍ରାପ୍ତି ଲାଗି ଯେଉଁ ସମନ୍ୱିତ ଉଦ୍ୟମ ଥାଏ, ଯେଉଁ ଆନ୍ତରିକ ଅଭୀପ୍‌ସା ଥାଏ ତାହା ହିଁ ଆଣିଦିଏ ଜୀବନରେ ପୂର୍ଣ୍ଣତା; ତାହା ହିଁ ମଣିଷକୁ ପଶୁଠାରୁ ପୃଥକ୍ କରି ତୋଳିଥାଏ । 'କାମ' ଅର୍ଥ ହେଲା ଜାଗତିକ ସକଳ କାମ୍ୟ ବସ୍ତୁ ଯେଉଁଗୁଡ଼ିକ ଇନ୍ଦ୍ରିୟ ଦ୍ୱାରା ଉପଲଭ୍ୟ । ସେଗୁଡ଼ିକୁ ପାଇଲେ ମଣିଷ ଖୁସି ହୁଏ ; ଆନନ୍ଦିତ ହୁଏ । ଏ ପ୍ରକାର ଆନନ୍ଦ ହେଉଛି ବାହ୍ୟ ଆନନ୍ଦ । ଏହାକୁ 'ଅର୍ଥ' ଦ୍ୱାରା ପ୍ରାପ୍ତ ହେବାକୁ ପଡ଼ିଥାଏ । 'ଅର୍ଥ'ର ସାଧାରଣ ଅର୍ଥ 'ଧନ' ହେଲେ ହେଁ ଏଠାରେ ଏହାକୁ ଆନନ୍ଦ ପାଇବାର ବିଭିନ୍ନ ଉପାୟ ଭାବରେ ଗ୍ରହଣ କରିବାକୁ ହେବ । 'କାମ' ଓ 'ଅର୍ଥ' ତ କେବଳ

ମଣିଷର ଉପସ୍ଥିତ ବସ୍ତୁ ନଥାଏ । ପଶୁମାନେ ମଧ୍ୟ ଏହା ଖୁଜୁଁଥାନ୍ତି । ତା'ହେଲେ ପଶୁ ଓ ମଣିଷ ମଧ୍ୟରେ ପ୍ରଭେଦ ରହିଲା କେଉଁଠି ? ସେହିମାନଙ୍କର ଜୀବନର ଲକ୍ଷ୍ୟରେ ପୃଥକ୍‌ତା ରହିଲା କେଉଁଠି ? ଏହି ପ୍ରଭେଦକୁ ବୈଦିକ ଆର୍ଯ୍ୟମାନେ ନିର୍ଣ୍ଣୟ କରିଥିଲେ । ତାହା ହେଉଛି ଅପର ଦୁଇଟି ଫଳ 'ଧର୍ମ' ଓ 'ମୋକ୍ଷ' ପାଇବାର ଅଭୀପ୍ସାରେ ପର୍ଯ୍ୟବସିତ । ପଶୁମାନଙ୍କଠାରେ ସେ ଅଭୀପ୍ସା ନାହିଁ । ମାନବ ଜୀବନର ଏହି ମହତ୍ତର ଲକ୍ଷ୍ୟ ପ୍ରତି ଉଲ୍ଲେଖ କରି ଶ୍ରୀଅରବିନ୍ଦ ଯଥାର୍ଥରେ କହିଛନ୍ତି :

> "ମୋଟାମୋଟି ଭାବେ ଜୀବନ କହିଲେ କ'ଣ ବୁଝାଏ ଏବଂ କେତେବେଳେ ଆମେ ପରିପୂର୍ଣ୍ଣ ମହତ୍ ଜୀବନ ଯାପନ କରୁ ? ପ୍ରକୃତରେ ଜୀବନଟା ଆଉ କିଛି ନୁହେଁ : କେବଳ ମଣିଷ-ଆତ୍ମାର, ତା'ର ଶକ୍ତିସାମର୍ଥ୍ୟର ସୃଷ୍ଟି ଓ ଆତ୍ମପ୍ରକାଶ, କିଛି ଗୋଟାଏ ବିରାଟ ହୋଇ ଉଠିବା ପାଇଁ, ଚିନ୍ତା କରିବା ପାଇଁ, ପ୍ରେମ କରିବା ପାଇଁ, କିଛି ଗୋଟାଏ ସାଧନ କରିବା ପାଇଁ, ହାସଲ କରିବା ପାଇଁ ତା'ର ଯେଉଁ ସଂକଳ୍ପ, ଏହା ସେହି ସଂକଳ୍ପର ସୃଷ୍ଟି ଏବଂ ସକ୍ରିୟ ଆତ୍ମାଭିବ୍ୟକ୍ତି ।" (୩)

ଅତଏବ, ବୈଦିକ ଜୀବନରେ କାମନାର ପରିପୂର୍ତ୍ତି ଲାଗି ଯେଉଁ 'ଅର୍ଥ' ବା ଉପାୟର ଚିନ୍ତା କରାଯାଉଥିଲା, ତାହା ଯେପରି ଧର୍ମନିଷ୍ଠ ହୁଏ, ସେଥିପ୍ରତି ସମ୍ୟକ୍ ଦୃଷ୍ଟି ଦିଆଯାଉଥିଲା । ସମ୍ପାଦନକୁ ହିଁ ବ୍ରହ୍ମଚର୍ଯ୍ୟାଶ୍ରମରେ ଗୁରୁ ଶିଷ୍ୟକୁ ଶିକ୍ଷା ଦେଇ କହୁଥିଲେ :

> "ଧର୍ମଂ ଚର ସତ୍ୟଂ ବଦ" ।

ଅର୍ଥାତ୍ ଧର୍ମ ବାଟରେ ଚାଲ ; ସତ କଥା କୁହ । ଏହି ଧର୍ମକୁ ଆଧୁନିକ ଯୁଗ ଭଳି କୌଣସି ସଙ୍କୀର୍ଣ୍ଣ ଅର୍ଥରେ ଗ୍ରହଣ କରାଯାଉ ନଥିଲା । ଏହା ଥିଲା ଏକ ସାର୍ବଜନୀନ ଧର୍ମ, ଯାହା କି ମାନବ-ଜାତିକୁ, ମାନବ-ସମାଜକୁ ଧରି ରଖିଛି । ଏହା ହେଉଛି ଚିରନ୍ତନ ମୂଲ୍ୟବୋଧଗୁଡ଼ିକର ସମଷ୍ଟି ଯାହାର ଗୁରୁତ୍ୱ ଯୁଗ ଯୁଗ ଧରି ରହିଆସିଛି । ବୈଦିକ ସମାଜକୁ ଏବଂବିଧ ଧର୍ମଚେତନା ଆଚ୍ଛନ୍ନ କରି ରଖିଥିଲା । ଏହି ଧର୍ମ ଉପରେ ଗୁରୁତ୍ୱ ଆରୋପ କରିବାକୁ ଯାଇ ବାଚସ୍ପତି ଗୈରୋଲା କୁହନ୍ତି :

> "ମନୁଷ୍ୟ ସ୍ୱୟଂ ସ୍ୱତନ୍ତ୍ର ହୋ କର ଅନର୍ଥୋଂ ସେ ବଚକର ଇଷ୍ଟ-ସାଧନ କରେ । ଐସା ତଭୀ ସମ୍ଭବ ହୈ, ଜବ ଧର୍ମ କା ଅନୁସରଣ କିୟା ଜାୟ ; କ୍ୟୋଂକି ଧର୍ମ ଉସକୋ ଇହଲିୟେ କହା ଗୟା ହୈ କି ଓ୍ୱହ ମନୁଷ୍ୟ କୋ ଅନର୍ଥୋଂ ସେ ବଚାକର ଇଷ୍ଟ ମେଂ ଯୋଜିତ କରତା ହୈ ।" (୩-କ)

ଚତୁର୍ବର୍ଗ ଫଳର ଶେଷ ପର୍ଯ୍ୟାୟ ହେଉଛି ମୋକ୍ଷ ବା ସଂସାରର ସକଳ ବନ୍ଧନରୁ ମୁକ୍ତି । ଏହା ଥିଲା ଜୀବନର ଚରମ ଲକ୍ଷ୍ୟ । ଜ୍ଞାନଶାସ୍ତ୍ରୀ ଭରଦ୍ୱାଜଙ୍କ ଭାଷାରେ କହିବାକୁ ଗଲେ ;

"Last of these four is specially considered to be the summum bonum to be achieved." (୪)

ମୋକ୍ଷର ଅର୍ଥ ନୁହେଁ ଯେ ମୃତ୍ୟୁ ପରେ ମଣିଷ ଆଉ କୌଣସି ଗୋଟିଏ ଲୋକକୁ ଯାଇ ସେଠାରେ ଅନନ୍ତ ଆନନ୍ଦ ଉପଭୋଗ କରିବ । ବୈଦିକ ଆର୍ଯ୍ୟମାନେ ଏହି ଅର୍ଥରେ 'ମୋକ୍ଷ'କୁ ଆଦୌ ଗ୍ରହଣ କରି ନଥିଲେ । ସେମାନେ ଏହାକୁ ବୁଝିଥିଲେ ଏକ ଅନୁଭୂତିର ସାମଗ୍ରୀ ବୋଲି । ଏହାକୁ କେହି କାହା ହାତରେ ଦେଇ ଦେବାକୁ ହେବ ନାହିଁ । ଏହାକୁ କେବଳ ଉପଲବ୍ଧି କରିବାକୁ ହେବ । ଏ ପ୍ରକାର ଅନୁଭୂତି ମିଳିବ ମାନସିକ-ଚେତନାର ଉର୍ଦ୍ଧ୍ୱତମ ସ୍ତରରେ । ରାଧାକୃଷ୍ଣନ୍‌ଙ୍କ ଭାଷାରେ, "ଏହା ଥିଲା ଋଷିମାନଙ୍କର ଏକ ମାନସିକ ସ୍ଥିତି; ଭବିଷ୍ୟତର ସିଦ୍ଧି କିନ୍ତୁ ନୁହେଁ ।" ଏହା ହେଲା 'ଚତୁର୍ବର୍ଗ' ଫଳ ବିଷୟରେ ଏକ ସଂକ୍ଷିପ୍ତ ବିସ୍ତର ଏବଂ ଏହା ହିଁ ଥିଲା ବୈଦିକ ସମାଜର ଆଦର୍ଶ । ଏହି ଆଦର୍ଶ ଲକ୍ଷ୍ୟସ୍ଥଳରେ ସମସ୍ତେ ଯେ ପହଞ୍ଚି ପାରୁଥିଲେ, ସେ କଥା କୁହାଯାଉନାହିଁ । ତେବେ ଏ କଥା ନିଶ୍ଚିତ ଯେ ଏଭଳି ଉଚ୍ଚ ଆଦର୍ଶକୁ ଆଖି ଆଗରେ ରଖିବା ଫଳରେ ସମାଜରେ ଶୀଳାତ୍ମକ ମୂଲ୍ୟବୋଧ-ଗୁଡ଼ିକର ବିକାଶ ପାଇଁ ଏକ ଉପଯୁକ୍ତ ବାତାବରଣର ସୃଷ୍ଟି ସମ୍ଭବ ହୋଇ ପାରିଥିଲା । ଆଧ୍ୟାତ୍ମିକ ଓ ଭୌତିକ ଉଭୟବିଧ ବିକାଶ ସାମାଜିକ ଜୀବନର ଲକ୍ଷ୍ୟ ହୋଇଥିବାରୁ, କିଭଳି ଭାବରେ ଏହି ସମନ୍ୱିତ ଲକ୍ଷ୍ୟ ସାଧିତ ହୋଇ ପାରିବ ଓ କିଭଳି ଭାବରେ ବିଭିନ୍ନ ଉପାସ୍ୟ-ମାନଙ୍କ ମଧ୍ୟରେ ସନ୍ତୁଳନ ରକ୍ଷା କରାଯାଇ ପାରିବ, ସେଥିପାଇଁ ନିଶ୍ଚିତ ଭାବରେ ଏକ କଡ଼ାକଡ଼ି ଶୃଙ୍ଖଳିତ ନିୟମଧାରା ପ୍ରବର୍ତ୍ତିତ ହୋଇଥିବ । ବାସ୍ତବିକ ଆମେ ବୈଦିକ ସାହିତ୍ୟ ଅନୁଧ୍ୟାନ କଲେ ଦେଖିବାକୁ ପାଉ ଯେ ଏଭଳି ଶୃଙ୍ଖଳା ଓ ନିୟନ୍ତ୍ରଣ ଋଗବେଦ କାଳରୁ ହିଁ ପ୍ରଚଳିତ ହୋଇଥିଲା । ଋଗ୍‌ବେଦୋତ୍ତର କାଳରେ ଏହାକୁ ଆହୁରି ଅଧିକତର ଭାବରେ କଡ଼ାକଡ଼ି ଓ ବାଧ୍ୟନିଷ୍ଠ କରିବାର ଚେଷ୍ଟା କରାଯାଇଥିଲା । ଏଥିପତି ଲକ୍ଷ୍ୟ କରି ବିଶ୍ୱାସ ଦେଶ୍ମ ଯଥାର୍ଥରେ କହିଛନ୍ତି :

"ଋଗ୍‌ବେଦ ଯୁଗ କା ସମାଜ ନିୟନ୍ତ୍ରିତ ସମାଜ ଥା ।" (୫)

**ଅତିଥି ସତ୍କାର :**

ଅତିଥି-ସତ୍କାର ବୈଦିକ ଆର୍ଯ୍ୟମାନଙ୍କର ଏକ ପ୍ରଧାନ କର୍ତ୍ତବ୍ୟ ବୋଲି ଗଣ୍ୟ ହେଉଥିଲା । 'ବ୍ରହ୍ମଚର୍ଯ୍ୟାଶ୍ରମ' ବେଳରୁ ହିଁ ପିଲାକୁ ଅତିଥି-ସତ୍କାର କରିବା ପାଇଁ ଶିକ୍ଷା ଦିଆ

ଯାଉଥିଲା । 'ଅତିଥି ଦେବୋ ଭବ' ବୋଲି ତୈତ୍ତିରୀୟ ଆରଣ୍ୟକରେ ଗୁରୁ ଶିଷ୍ୟଙ୍କୁ ଉପଦେଶ ଦେଇ କହୁଛନ୍ତି । ଏହାର ଅର୍ଥ ହେଲା, 'ତୁମେ ଅତିଥିଙ୍କୁ ଦେବତା ଭଳି ଜ୍ଞାନ କରି ପୂଜା କର ।' ରାଜା ଦିବୋଦାସ ଖୁବ୍ ଅତିଥିପରାୟଣ ଥିଲେ । ସେଥିପାଇଁ ତାଙ୍କୁ 'ଅତିଥିଗ୍ୱଃ' ବୋଲି କହି ଋଗ୍‌ବେଦରେ ବହୁତ ପ୍ରଶଂସା କରାଯାଇଛି । (୫–କ) ଏଥିପାଇଁ ତାଙ୍କୁ ସବୁ ରାଜାମାନଙ୍କ ମଧ୍ୟରେ ଏକ ଅଗ୍ରଗଣ୍ୟ ରାଜା ବୋଲି ବିଚାର କରାଯାଉଥିଲା । ଏବେ ମଧ୍ୟ ଭାରତୀୟମାନେ ସାଧାରଣତଃ ଖୁବ୍ ଅତିଥିପରାୟଣ । ଏହା ନିଶ୍ଚିତ ଭାବରେ ବୈଦିକ ପରମ୍ପରାର ଫଳଶ୍ରୁତି ଅଟେ । ଭାରତୀୟ ପୁରାଣମାନଙ୍କରେ ପୃଷ୍ଠା ଆଲୋଡ଼ନ କଲେ ଆମେ ଅନେକ ଅତିଥିପରାୟଣତାର ଦୃଷ୍ଟାନ୍ତ ପାଇପାରିବା । ପଞ୍ଚତନ୍ତ୍ର କହିବା ଅନୁସାରେ 'ସର୍ବଦେବମୟୋଽତିଥିଃ' ଅର୍ଥାତ୍ ଅତିଥି ହେଉଛନ୍ତି ସର୍ବଦେବତାଙ୍କ ଆଧାର ।

## ସଂସ୍କାର :

ବୈଦିକ ସମାଜରେ 'ଚତୁର୍ବର୍ଣ୍ଣ' ବ୍ୟବସ୍ଥା ଥିଲା ଏକ ବିଶିଷ୍ଟ ବିଭାବ । ଏହି ବିଷୟରେ ପରବର୍ତ୍ତୀ ଅନୁଚ୍ଛେଦମାନଙ୍କରେ ବିଶଦ ଭାବରେ ଆଲୋଚନା କରାଯିବ । ଏହି ଚାରି ବର୍ଣ୍ଣ ମଧ୍ୟରେ ପ୍ରଥମ ତିନି ଉଚ୍ଚ ବର୍ଣ୍ଣ ଥିଲେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ । ଏହି ତିନି ବର୍ଣ୍ଣର ବ୍ୟକ୍ତିମାନଙ୍କ ଜୀବନକୁ ନିୟନ୍ତ୍ରିତ କରିବା ପାଇଁ କୁହାଯାଉଥିଲା ସଂସ୍କାର । ସେଗୁଡ଼ିକର ସଂଖ୍ୟା ଥିଲା ଚାଳିଶ । କିନ୍ତୁ ତନ୍ମଧ୍ୟରୁ ଷୋହଳଟି ସଂସ୍କାର ଥିଲା ସ୍ୱୀକୃତି ସଂସ୍କାର ଯାହାକି 'ଷୋଡ଼ଶ ସଂସ୍କାର' ନାମରେ ଖ୍ୟାତ ଥିଲା । ସମସ୍ତଙ୍କୁ ଏହି ସଂସ୍କାରଗୁଡ଼ିକ ମଧ୍ୟ ଦେଇ ଗତି କରିବାକୁ ପଡ଼ୁଥିଲା । ଏତଦ୍ୱାରା ସେମାନେ ସଂସ୍କୃତ ହୋଇପାରିବେ ବା ଶୁଦ୍ଧପୂତ ହୋଇପାରିବେ ବୋଲି ବୈଦିକ ସମାଜତତ୍ତ୍ୱବିତ୍‌ମାନଙ୍କର ବିଶ୍ୱାସ ଥିଲା । ଋଗ୍‌ବେଦରେ (୫।୭୬।୨) ଅବଶ୍ୟ 'ସଂସ୍କୃତ' ଶବ୍ଦର ପ୍ରୟୋଗ ଅଛି । ଛାନ୍ଦୋଗ୍ୟ ଉପନିଷଦରେ (୪।୧୬।୧–୨) ମଧ୍ୟ ଏହାର ପ୍ରୟୋଗ ଅଛି । କିନ୍ତୁ ଆମେ ଯେଉଁ ଭାବରେ 'ସଂସ୍କାର' ଶବ୍ଦର ଅର୍ଥ କରିଥାଉଁ ଏହା ସେହି ଅର୍ଥରେ ସେଠାରେ ପ୍ରଯୁକ୍ତ ହୋଇ ନାହିଁ । ମୀମାଂସାକାର ଜୈମିନି ଋଷି ସର୍ବପ୍ରଥମେ (୩।୧।୩)'ସଂସ୍କାର' ଶବ୍ଦର ପ୍ରୟୋଗ 'ଉପନୟନ' ଅର୍ଥରେ କରିଛନ୍ତି । ଏହି ସୂତ୍ରଟିର ବ୍ୟାଖ୍ୟା କରିବାକୁ ଯାଇ ଶଙ୍କର ସ୍ୱାମୀ କହିଲେ ଯେ କୌଣସି ବ୍ୟକ୍ତି ଏକ ନିର୍ଦ୍ଦିଷ୍ଟ କର୍ମ ଦ୍ୱାରା ସେଥିପାଇଁ ଯୋଗ୍ୟ ବିବେଚିତ ହେଲେ, ତାହାକୁ କୁହାଯାଏ 'ସଂସ୍କାର' । ଅତଏବ ଏକ ନିର୍ଦ୍ଦିଷ୍ଟ କର୍ମ ଦ୍ୱାରା ନିଜକୁ ଶୁଦ୍ଧପୂତ କରାଇ ସେଥିପାଇଁ ଯୋଗ୍ୟତା ଅର୍ଜନ କରିବାର ନାମ ହେଲା ସଂସ୍କାର ; ଯଥା ଉପନୟନ ସଂସ୍କାର, ଚୂଡ଼ାକର୍ମ ସଂସ୍କାର ଇତ୍ୟାଦି । ଏହି ବ୍ୟକ୍ତିଗତ ପରିବିଧିଗୁଡ଼ିକ ବିଷୟରେ ମନ୍ତବ୍ୟ ଦେବାକୁ ଯାଇ ବାସମ୍ ଯାହା ମନ୍ତବ୍ୟ ଦେଇଛନ୍ତି, ତାହା ଏଠାରେ ଲକ୍ଷ୍ୟ କରିବାର କଥା :

"According to the texts on the subject there were some forty ceremonies (Samskaras), which covered the whole life of a man from his conception to his death; some of these were of great importance and were performed by all respectable members of Aryan community, while others were often neglected by the less pious " (୬)

ଏହି ପ୍ରଧାନ ପ୍ରଧାନ ଷୋଡ଼ଶ ସଂସ୍କାର ସମ୍ବନ୍ଧରେ ନିମ୍ନରେ ଆଲୋଚନା କରାଯାଉଛି ।

ଗର୍ଭାଧାନ :

ବୈଦିକ ବିବାହର ଉଦ୍ଦେଶ୍ୟ ନଥିଲା କାମ-ସୁଖ ଭୋଗ କରି ଜୀବନ ବିତାଇ ଦେବା । ପ୍ରତ୍ୟେକ ବ୍ୟକ୍ତିର ବିଭିନ୍ନ ଋଣ ମଧ୍ୟରୁ 'ପିତୃଋଣ' ଥିଲା ଅନ୍ୟତମ । ପିତୃପୁରୁଷମାନଙ୍କର ଏହି ଋଣ ଶୁଝିବା ଲାଗି ତାଙ୍କୁ ସନ୍ତାନ ଉତ୍ପାଦନ କରିବାକୁ ପଡୁଥିଲା । ସେଥିପାଇଁ କୁହାଯାଇଛି :

"ପୁତ୍ରାର୍ଥ କ୍ରିୟତେ ଭାର୍ଯ୍ୟା ପୁତ୍ରଃ ପିଣ୍ଡ-ପ୍ରୟୋଜନମ୍"।

ଅର୍ଥାତ୍ ସ୍ତ୍ରୀ କରାଯାଇଥାଏ ପୁତ୍ର ଜନ୍ମ କରାଇବା ଲାଗି ଏବଂ ପୁତ୍ର ଜନ୍ମ ହୋଇଥାଏ ପିତୃକୁଳକୁ ପିଣ୍ଡ ଦେବା ଲାଗି । କେମିତି ଉପଯୁକ୍ତ ପୁତ୍ରଟିଏ ମିଳିବ ସେଥିପାଇଁ ବୃହଦାରଣ୍ୟକ ଉପନିଷଦରେ ଆନ୍ତରିକ କାମନା କରାଯାଇଛି । (୭) ଏହି ସନ୍ତାନ କିପରି ଦଶମାସ ଧରି ମାତୃଗର୍ଭରେ ସୁରକ୍ଷିତ ହୋଇ ରହିବ ସେଥିପାଇଁ ଅଥର୍ବ-ବେଦରେ ପ୍ରଜାପତିଙ୍କୁ ପ୍ରାର୍ଥନା କରାଯାଇଛି । (୮) ପୁରୁଷ-ସ୍ତ୍ରୀର ରଜ-ବୀର୍ଯ୍ୟର ମିଳନରେ ସନ୍ତାନ ଉତ୍ପତ୍ତି ହୋଇଥାଏ । ଏହି ସନ୍ତାନ ମାତାପିତା ଉଭୟଙ୍କ ଗୁଣ ଧରି ଆସିଥାଏ ; ଆଉ ମଧ୍ୟ ଆସିଥାଏ ତା'ର ପ୍ରାରବ୍ଧ କର୍ମ-ଫଳ ଧରି । ଏହାଛଡ଼ା ମାତାପିତାଙ୍କ ରଜବୀର୍ଯ୍ୟର ପ୍ରାକୃତିକ ଦୋଷ ଜନିତ ପ୍ରଭାବ ମଧ୍ୟ ତାହା ଉପରେ ପଡ଼ିଥାଏ । ଏହିସବୁ ଦୋଷରୁ ସେହି ଆଗନ୍ତୁକ ସନ୍ତତିକୁ ରକ୍ଷା କରିବା ଲାଗି ଏବଂ ତା'କୁ ଶୁଦ୍ଧପୂତ ଭାବରେ ଧରଣୀର ଆଲୋକ ଦେଖିବାପାଇଁ ସୁଯୋଗ ଦେବା ଉଦ୍ଦେଶ୍ୟରେ ଏହି ସଂସ୍କାରଟି କରାଯାଇଥାଏ । ଏହି ସଂସ୍କାରର ନାମ ହେଉଛି ହେଲା 'ଗର୍ଭାଧାନ' । ବିବାହ ପରେ ଅନ୍ତତଃ କମ୍‌ରେ ତିନି ଦିନ କିମ୍ବା ଅତି ବେଶିରେ ସାତ ବର୍ଷ ପର୍ଯ୍ୟନ୍ତ ଗୃହସ୍ଥଙ୍କୁ ବ୍ରହ୍ମଚର୍ଯ୍ୟ-ବ୍ରତ ପାଳନ କରି ଗର୍ଭାଧାନ ସଂସ୍କାର ଲାଗି ପ୍ରସ୍ତୁତ ହେବାକୁ ପଡ଼ିଥାଏ ।

## ପୁଂସବନ :

ଗର୍ଭର ତିନି ମାସ ପରେ ଏହି ସଂସ୍କାର କରାଯାଇଥାଏ । ମନୁଙ୍କ (ଖ୍ରୀ ପୂ: ୮ମ ଶତାବ୍ଦୀ କହିବା ଅନୁସାରେ :

"ପୁମାନ୍ ପୁଂସୋଽଧିକେ ଶୁକ୍ରେ ସ୍ତ୍ରୀଭବତ୍ୟଧିକେ ସ୍ତ୍ରୀୟଃ" ।

ଅର୍ଥାତ୍ ଯଦି ଗର୍ଭଠାରେ ପୁରୁଷ ଭ୍ରୂଣର ଅଧିକତା ଥାଏ, ତେବେ ସନ୍ତାନ ପୁରୁଷ ହୁଏ ଏବଂ ସ୍ତ୍ରୀ ଭ୍ରୂଣର ଅଧିକତା ଥିଲେ ସ୍ତ୍ରୀ ହୁଏ । ଗର୍ଭିଣୀର ନାସା-ରନ୍ଧ୍ର ଦେଇ ବର ଓହଳ, କୁଶ ଓ ଘାସର ରସ ଦିଆଯାଏ । ଏହା ଛଡ଼ା ଆୟୁର୍ବେଦ ଶାସ୍ତ୍ର ଦ୍ୱାରା ଅନୁମୋଦିତ ଅନ୍ୟାନ୍ୟ କେତେ ଜଡ଼ିବୁଟି ମଧ୍ୟ ତା'କୁ ସେବନ କରିବାକୁ ପଡ଼ିଥାଏ । ଏହିସବୁ କାର୍ଯ୍ୟ ମନ୍ତ୍ରୋଚ୍ଚାରଣ ସହିତ କରାଯାଇଥାଏ । ଏତଦ୍ଦ୍ୱାରା ଗର୍ଭସ୍ଥ ଭ୍ରୂଣ ପରିପୁଷ୍ଟ ହୋଇଥାଏ ।

## ସୀମନ୍ତୋନ୍ନୟନ :

ସ୍ତ୍ରୀମାନଙ୍କର ମୁଣ୍ଡ ବାଳକୁ ମଝିରୁ ଦୁଇ ଭାଗ କରି ଦେଉଥିବା ସିନ୍ଦୁର-ରେଖାକୁ କୁହାଯାଏ ସୀମନ୍ତ । ଗର୍ଭର ଚତୁର୍ଥ, ଷଷ୍ଠ ଓ ଅଷ୍ଟମ ମାସରେ ଏହି ସଂସ୍କାର କରାଯାଏ । ଏହି ସଂସ୍କାରବିଧିରେ ସ୍ତ୍ରୀର ସୀମନ୍ତକୁ ଝିଙ୍କ-କାଠିରେ ସ୍ପର୍ଶ କରାଇ ଦିଆଯାଏ ଏବଂ ମନ୍ତ୍ରୋଚ୍ଚାରଣ କରି ସୋମ ଆଦି ଦେବତାମାନଙ୍କୁ ସ୍ତୁତି କରାଯାଏ । ଯେମିତି ଗର୍ଭପାତ ନ ହେବ, ସେହି ଉଦ୍ଦେଶ୍ୟରେ ଏହି ସଂସ୍କାରଟି କରାଯାଇଥାଏ । ଶରୀର-ଶାସ୍ତ୍ର ଅନୁସାରେ ଗର୍ଭର ଚତୁର୍ଥ ମାସରେ ଗର୍ଭପାତର ଆଶଙ୍କା ଥାଏ । ତେଣୁ ଏହି ଚତୁର୍ଥ ମାସରୁ ହିଁ ଶଂସିତ ସଂସ୍କାରଟି ସମାହିତ ହୋଇଥାଏ ।

## ଜାତକର୍ମ :

ସନ୍ତାନ ଜନ୍ମ ପରେ ଏହି ସଂସ୍କାରଟି କରାଯାଇଥାଏ । ଏହାର ଉଦ୍ଦେଶ୍ୟ ଥାଏ ପିଲାଟିର ଆୟୁଷ ଓ ବୁଦ୍ଧି ବଢ଼ାଇବା । ନାଭି-ଛେଦନ ପୂର୍ବରୁ ସୁନାର ଗିନାଟିରେ କିଛି ଦହି, ମହୁ ଓ ଘିଅ ଆଣି ତାହାକୁ ପିଲାର ଜିଭରେ ଚଟାଇ ଦିଆ ଯାଇଥାଏ । ମନ୍ତ୍ରୋଚ୍ଚାରଣ ସହିତ ଗୋଟିଏ ସୁନା-କାଠିରେ ତା'ର ଜିଭରେ 'ବେଦ' ବୋଲି ଶବ୍ଦଟିଏ ଲେଖି ଦିଆଯାଏ । ପିଲାଟି ବାପାଅଜାଙ୍କଠାରୁ ଆହୁରି ବେଶୀ ଜ୍ଞାନୀ ହୋଇ ଉଠୁ ବୋଲି କାମନା କରି ଦେବତାମାନଙ୍କୁ ସ୍ତୁତି କରାଯାଇଥାଏ ।

## ନାମକରଣ :

ଏହି ସଂସ୍କାରଟି ସନ୍ତାନ-ପ୍ରସବର ଏକାଦଶ ଦିବସରେ କରାଯାଇଥାଏ । ନାମ କିଭଳି ହେବା ଉଚିତ, ସେଥିପାଇଁ ମଧ୍ୟ ଶାସ୍ତ୍ରରେ ବିଧାନ ଦିଆଯାଇଛି । ପ୍ରଥମତଃ ଏହା

ସାତ୍ତ୍ୱିକ ଓ ପବିତ୍ର ଭାବର ଦ୍ୟୋତକ ହେବା ଉଚିତ । ଦ୍ୱିତୀୟତଃ ଏହା ଶ୍ରୁତିମଧୁର ହେବା ଉଚିତ । ତୃତୀୟତଃ ନାମଟି ଏଭଳି ହେବା ଉଚିତ, ଯେଉଁଥିରୁ ପିଲାଟିର କର୍ତ୍ତବ୍ୟ ବିଷୟରେ କିଛିଟା ସୂଚନା ମିଳିପାରୁଥିବ । ଚତୁର୍ଥତଃ ଝିଅ ପିଲା ହୋଇଥିଲେ ନାମଟି ଦୁଇ କିମ୍ବା ତିନି ଅକ୍ଷରରୁ ବେଶୀ ହେବା ଉଚିତ ନୁହେଁ । ଏହା ହେଲା ସାଧାରଣ ନିୟମ । ବେଳେବେଳେ ଏହାର ବ୍ୟତିକ୍ରମ ମଧ୍ୟ ଘଟୁଥିଲା । ଉଦାହରଣ ସ୍ୱରୂପ ଅଗସ୍ତ୍ୟ ମୁନିଙ୍କ ସ୍ତ୍ରୀ ଲୋପାମୁଦ୍ରାଙ୍କ ନାମ ଥିଲା ଚାରି ଅକ୍ଷର ବିଶିଷ୍ଟ ।

## ନିଷ୍କ୍ରମଣ :

ପିଲାକୁ ପ୍ରଥମ ଥର ପାଇଁ ଘର ଭିତରୁ ବାହାରକୁ ଆଣିଲାବେଳେ ଯେଉଁ ସଂସ୍କାର କରାଯାଏ, ତାହାକୁ କୁହାଯାଏ 'ନିଷ୍କ୍ରମଣ' । ପିଲାକୁ ଚାରି ମାସ ବୟସ ହୋଇଯିବା ପରେ ଏହା କରାଯାଇଥାଏ । ଶାରୀରିକ ଦୃଷ୍ଟିରୁ ଶିଶୁକୁ ନୀରୋଗ ରଖିବା ଉଦ୍ଦେଶ୍ୟ ରଖି ଏଭଳି କରାଯାଇଥାଏ ।

## ଅନ୍ନପ୍ରାଶନ :

ଏହି ସଂସ୍କାରରେ ପିଲାକୁ ପ୍ରଥମ ଥର ପାଇଁ ମଧୁ ଓ କ୍ଷୀର ମିଶାଇ କରି ଖାଇବାକୁ ଦିଆଯାଏ । ଏପର୍ଯ୍ୟନ୍ତ ପିଲା ମା'ଥି-କ୍ଷୀର ଖାଇ ବଞ୍ଚିଥାଏ । ଅନ୍ନପ୍ରାଶନ ସଂସ୍କାର ପିଲାର ଷଷ୍ଠ ମାସରେ କରିଯିବାର ବିଧାନ ଅଛି । କିନ୍ତୁ ବିଶେଷ ପରିସ୍ଥିତିରେ ଏହା ଅଷ୍ଟମ ମାସରେ କିମ୍ବା ବର୍ଷ ପୂରିଲେ କରାଯାଇଥାଏ । କନ୍ୟା ଲାଗି ପଞ୍ଚମ କିମ୍ବା ସପ୍ତମ ମାସରେ ଅନ୍ନପ୍ରାଶନ କରିବାର ବ୍ୟବସ୍ଥା ଅଛି ।

## ଚୂଡ଼ାକର୍ମ :

ଚୂଡ଼ାକର୍ମର ଦ୍ୱିତୀୟ ନାମ ହେଲା ମୁଣ୍ଡନ ବା ଲଣ୍ଡା ହେବା । ଏହି ସଂସ୍କାର ଜନ୍ମର ତୃତୀୟ କିମ୍ବା ପଞ୍ଚମ ବର୍ଷରେ କରାଯାଇଥାଏ । ମୁଣ୍ଡକୁ ସମ୍ପୂର୍ଣ୍ଣ ରୂପେ ଲଣ୍ଡା କରିବାକୁ ହୋଇ ନଥାଏ ; ଟିକିଏ ଚୁଟି ଦେବାକୁ ପଡ଼ିଥାଏ ।

## କର୍ଣ୍ଣବେଧ :

ଏହାକୁ ଆମେ କାନଫୋଡ଼ା କହିଥାଉ । ଚୂଡ଼ାକର୍ମ ଭଳି ପିଲାର ତୃତୀୟ କିମ୍ବା ପଞ୍ଚମ ବର୍ଷ ବୟସରେ ଏହି ସଂସ୍କାରଟି କରାଯାଇଥାଏ । ସେତେବେଳେ 'ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମଃ ଦେବାଃ' ଆଦି ଋଗ୍‌ବେଦୀୟ ମନ୍ତ୍ର ବୋଲାଯାଇଥାଏ । ଏହି ମନ୍ତ୍ର ବୋଲି କେବଳ ଭଲ କଥା ଶୁଣିବା ପାଇଁ ଏବଂ ଖରାପ କଥା ନ ଶୁଣିବା ପାଇଁ କାମନା କରାଯାଇଥାଏ ।

## ଉପନୟନ :

ଏହାକୁ ଯଜ୍ଞୋପବୀତ-ଗ୍ରହଣ ବା ବ୍ରତବନ୍ଧ ସଂସ୍କାର ବୋଲି ମଧ୍ୟ କୁହାଯାଇଥାଏ । ଏହି ସଂସ୍କାରରେ ପିଲାକୁ ଗୁରୁଙ୍କ ଆଶ୍ରମକୁ ବିଦ୍ୟାଧ୍ୟୟନ ଲାଗି ନିଆଯାଇଥାଏ । ଏହି ବିଷୟରେ 'ବୈଦିକ ଶିକ୍ଷା' ପ୍ରସଙ୍ଗରେ ଏକ ପୃଥକ୍ ପରିଚ୍ଛେଦରେ ସବିଶେଷ ଆଲୋଚନା କରାଯାଇଛି ।

## ବ୍ରତାଦେଶ :

ଉପନୟନ ପରେ ଆଚାର୍ଯ୍ୟ ଯେଉଁ ବ୍ରତମାନ ପାଳନ କରିବା ପାଇଁ ଉପଦେଶ ଦେଇଥାନ୍ତି, ତାହାକୁ 'ବ୍ରତାଦେଶ' କୁହାଯାଏ । ଗୁରୁ ଆଶ୍ରମରେ ବାର ବର୍ଷ ପର୍ଯ୍ୟନ୍ତ ରହି ବ୍ରହ୍ମଚର୍ଯ୍ୟ-ବ୍ରତ ପାଳନପୂର୍ବକ ପିଲାଟି ବେଦ ସମ୍ପର୍କରେ ସଂପୂର୍ଣ୍ଣ ଜ୍ଞାନ ଲାଭ କରିଥାଏ । ଗୃହସ୍ଥାଶ୍ରମରେ ପ୍ରବେଶ ପୂର୍ବରୁ ସେ ଯେମିତି ସତ୍ୟବାଦିତା, ଅହିଂସାପରାୟଣତା ଆଦି ସଦ୍‌ଗୁଣର ଅଧିକାରୀ ହୋଇ ଉଠିବ, ସେଥିପାଇଁ ଆଚାର୍ଯ୍ୟ ତା'କୁ ସମୁଚିତ ଉପଦେଶମାନ ଦେଇଥାନ୍ତି । ସେହି ଉପଦେଶମାନଙ୍କୁ ସେ ଜୀବନରେ ବ୍ରତ ବୋଲି ଭାବି ସର୍ବଦା ପାଳନ କରିଥାଏ । ଏହି ସଂସ୍କାରକୁ ସେଥିପାଇଁ କୁହାଯାଏ ବ୍ରତାଦେଶ । ଏହାର ଉଦ୍ଦେଶ୍ୟ ହେଲା ଗୁରୁ-ଆଶ୍ରମରେ ବାର ବର୍ଷ କାଳ ରହି ଯେଉଁ ସଦ୍‌ଗୁଣଗୁଡ଼ିକ ଶିଖା ଯାଇଥାଏ, ସେଗୁଡ଼ିକୁ ଗୃହସ୍ଥାଶ୍ରମରେ ନିଷ୍ଠାପର ଭାବରେ ପାଳନ କରିବା ପାଇଁ ବ୍ରତନିଷ୍ଠ ହେବା । ଏତଦ୍ଦ୍ୱାରା ଏକ ଶୁଦ୍ଧପୂତ, ନିଷ୍ଠାପର ଓ ସଫଳ ଜୀବନ-ଯାପନ କରିବା ପାଇଁ ବ୍ୟକ୍ତି ପ୍ରତିଶ୍ରୁତିବଦ୍ଧ ହୋଇଥାଏ ।

## ବେଦ-ସ୍ୱାଧ୍ୟାୟ :

ବେଦ-ସ୍ୱାଧ୍ୟାୟ ସଂସ୍କାର ବିନା ବ୍ରାହ୍ମଣ ଯଜ୍ଞାଦି କର୍ମ ସମ୍ପାଦନ କରିବାର ଅଧିକାର ପାଇପାରେ ନାହିଁ । ମନୁଙ୍କ ମତରେ ବେଦଗୁଡ଼ିକୁ ଉପଯୁକ୍ତ ଭାବରେ ଶିଖି ସାରିବା ପରେ ଯାଇ ଶିଷ୍ୟ ବ୍ରହ୍ମଚର୍ଯ୍ୟ-ରକ୍ଷା ପୂର୍ବକ ଗୃହସ୍ଥାଶ୍ରମରେ ପ୍ରବେଶ କରିବାପାଇଁ ଯୋଗ୍ୟ ବିବେଚିତ ହୋଇଥାଏ ।

## କେଶାନ୍ତ :

'କେଶାନ୍ତ' ସଂସ୍କାରରେ ପ୍ରଥମ ଥର ପାଇଁ ବାଳକର ଜଣ ଦାଢ଼ି କ୍ଷୌର କରା ଯାଇଥାଏ । ଏହି ସଂସ୍କାର ଲାଗି ବିଭିନ୍ନ ବର୍ଣ୍ଣର ଲୋକଙ୍କ ପାଇଁ ଭିନ୍ନ ଭିନ୍ନ ବୟସର ସୀମା ନିର୍ଦ୍ଦିଷ୍ଟ । ବ୍ରାହ୍ମଣ ଲାଗି ଏହା ଷୋହଳ ବର୍ଷ, କ୍ଷତ୍ରିୟ ଲାଗି ବାଇଶ ବର୍ଷ ଓ ବୈଶ୍ୟ ଲାଗି ଚବିଶ ବର୍ଷ ।

## ସମାବର୍ତ୍ତନ :

ବେଦାଧ୍ୟୟନ ସରିଗଲେ ଗୁରୁ-ଆଶ୍ରମରେ ବ୍ରହ୍ମଚର୍ଯ୍ୟାଶ୍ରମର ପରିସମାପ୍ତି ହେଲା ବୋଲି ଧରାଯାଏ । ସେତେବେଳେ ବ୍ରହ୍ମଚାରୀ ଗୁରୁ-ଆଶ୍ରମରେ ଶେଷ ସ୍ନାନ କରେ ଏବଂ 'ସ୍ନାତକ' ବୋଲି ପରିଚିତ ହୁଏ । ଗୁରୁପତ୍ନୀ ତାଙ୍କୁ ସୁନ୍ଦର ବେଶ ଭୂଷାରେ ସଜାଇ ଦିଅନ୍ତି । ସେ ଗୃହସ୍ଥାଶ୍ରମ ଲାଗି ନିଜ ଘରକୁ ଫେରି ଆସେ । ଏହି ସଂସ୍କାରକୁ କୁହାଯାଏ ସମାବର୍ତ୍ତନ । ଉଭୟ ଗୁରୁକୁଳ ଓ ପିତୃଗୃହରେ ଏହି ସମାବର୍ତ୍ତନ ଉତ୍ସବଟି ଯଥାବିଧି ସମାରୋହରେ ପାଳିତ ହୋଇଥାଏ ।

## ବିବାହ :

ଏହା ହେଉଛି ପଞ୍ଚଦଶ ସଂସ୍କାର । ବିବାହ-ସଂସ୍କାର ବ୍ୟକ୍ତିକୁ ଲୋକ-ପ୍ରତିଷ୍ଠା ଆଣି ଦେଇଥାଏ ଏବଂ ସେତେବେଳେ ସେ ସନ୍ତାନ ଉତ୍ପନ୍ନ ଓ ଧର୍ମାର୍ଜନ କରିବା ପାଇଁ ଯୋଗ୍ୟତା ହାସଲ କରିଥାଏ । ବୈଦିକ ବିବାହ କେବଳ ପୁରୁଷ ଓ ସ୍ତ୍ରୀର ମିଳନ ଲାଗି ଉଦ୍ଦିଷ୍ଟ ନୁହେଁ କିମ୍ବା ସନ୍ତାନ ଉତ୍ପନ୍ନ କରି କେବଳ ବଂଶ-ରକ୍ଷା କରିବା ଏହାର ଲକ୍ଷ୍ୟ ନୁହେଁ । ବ୍ୟକ୍ତିର ଭୌତିକ ଓ ଆଧ୍ୟାତ୍ମିକ ଉଭୟବିଧ ବିକାଶ-ସାଧନ ଦିଗରେ ଏହି ସଂସ୍କାରଟି ସହାୟକ ହୋଇଥାଏ । 'ବି'ର ଅର୍ଥ ହେଲା ଗତି ବା ମୁକ୍ତି । ତାହାକୁ ଯେ ବହନ କରିଥାଏ, ତାହାର ନାମ ହେଲା 'ବିବାହ' । ଏହାର ତାତ୍ପର୍ଯ୍ୟ ହେଲା ବିବାହ ପରେ ଗୃହସ୍ଥ ବିଭିନ୍ନ ସତ୍କର୍ମମାନ କରି ତା'ର ମୁକ୍ତି-ପଥକୁ ସରଳତର କରିଥାଏ । ସ୍ତ୍ରୀର ହାତ ଧରି ତା' ସହିତ ପୁରୁଷ ସାତ ପାଦ ଚାଲିଗଲେ ପାଣି ଗ୍ରହଣ ବା ବିବାହ ବିଧିବଦ୍ଧ ଭାବରେ ସମାହିତ ହେଲା ବୋଲି ଧରା ଯାଇଥାଏ । ଏବେ ମଧ୍ୟ ହିନ୍ଦୁ ବିବାହରେ ଏହି 'ସପ୍ତପଦୀ' ମନ୍ତ୍ର ବୋଲି ଯାଉଛି । ଏହାକୁ ଲକ୍ଷ୍ୟ କରି ମନୁ କହିଛନ୍ତି :

> "ପାଣି ଗ୍ରହଣିକା ମନ୍ତ୍ରା ନିୟତଂ ଦାରଲକ୍ଷଣମ୍ ।
> ତେଷାଂ ନିଷ୍ଠା ତୁ ବିଜ୍ଞେୟା ବିଦ୍ୱଦ୍ଭି ସପ୍ତମେ ପଦେ ॥ (୯)

ଅର୍ଥାତ୍ ପାଣିଗ୍ରହଣ-ମନ୍ତ୍ର ହେଲା ସ୍ତ୍ରୀ ଗ୍ରହଣର ଲକ୍ଷଣ । ପଣ୍ଡିତମାନଙ୍କ ମତରେ ସପ୍ତମ ପାଦ ଚାଲିବା ପରେ ବିବାହ ସିଦ୍ଧ ହୋଇଥାଏ । ସ୍ତ୍ରୀ ଓ ପୁରୁଷ ଏକାଠି ସାତ ପାଦ ଚାଲିବା କଥାକୁ ଏଠାରେ ଲକ୍ଷ୍ୟ କରି ଏଭଳି କୁହାଯାଇଛି । ବିବାହ ପ୍ରସଙ୍ଗଟି ଏକ ସ୍ୱତନ୍ତ୍ର ପରିଚ୍ଛେଦରେ ପୃଥକ୍ ଭାବରେ ଆଲୋଚିତ ହେବ ।

## ଅଗ୍ନି-ପରିଗ୍ରହ :

ବିବାହ-ସଂସ୍କାର ପରେ ଗୃହସ୍ଥ-ଜୀବନରେ ପ୍ରବେଶ ଉତ୍ତାରୁ ଅଗ୍ନି-ପରିଗ୍ରହ ସଂସ୍କାର କରାଯାଇଥାଏ । ଗୃହସ୍ଥ ଜୀବନରେ ସୁଖ ଓ ଐଶ୍ୱର୍ଯ୍ୟ ଅଣାଇବା ଲାଗି ଏବଂ ମନ ଓ ଦେହର

ପବିତ୍ରତା ରକ୍ଷା କରିବା ଲାଗି ଗୃହସ୍ଥଙ୍କୁ ପ୍ରତ୍ୟହ ହୋମ କରିବାକୁ ପଡ଼ୁଥାଏ । ଏହି ସଂସ୍କାରରେ ତାଙ୍କୁ 'ଗୃହ୍ୟାଗ୍ନି'ଙ୍କର ପ୍ରତିଷ୍ଠା କରିବାକୁ ପଡ଼ୁଥାଏ । ଏହି ଅଗ୍ନିଙ୍କ ମାଧ୍ୟମରେ ତାଙ୍କୁ ପଞ୍ଚ ମହାଯଜ୍ଞ କରିବାକୁ ପଡ଼ୁଥାଏ । (୧୦)

ଆଚାର :

ଗର୍ଭାଧାନଠାରୁ ଆରମ୍ଭ କରି ବିବାହ ପରେ ଗୃହ୍ୟାଗ୍ନିଙ୍କର ପ୍ରତିଷ୍ଠା ପର୍ଯ୍ୟନ୍ତ ବ୍ୟକ୍ତିକୁ କିପରି ଭିନ୍ନ ଭିନ୍ନ ଷୋହଳ ଗୋଟି ସଂସ୍କାର ବା ଶୁଦ୍ଧିକର୍ମ ମଧ୍ୟ ଦେଇ ଗତି କରିବାକୁ ହୋଇଥାଏ, ତାହା ଉପରଲିଖିତ ଅନୁଚ୍ଛେଦଗୁଡ଼ିକରେ ଆଲୋଚିତ ହେଲା । ଏହି ଆଲୋଚନାରୁ ବୁଝିହେବ ଯେ ଦେହ ଓ ମନର ଶୁଦ୍ଧତା ଆଣିବା ହେଉଛି ଏହି ସଂସ୍କାର-ଗୁଡ଼ିକର ମୂଳ ଲକ୍ଷ୍ୟ । ଏହି ମୂଳ ଲକ୍ଷ୍ୟକୁ ସାଧନ କରିବା ଲାଗି ବୈଦିକ ଆର୍ଯ୍ୟମାନଙ୍କୁ କେତେକ 'ଆଚାର' ପାଳିବାକୁ ପଡ଼ୁଥିଲା । ବ୍ୟକ୍ତିଗତ ଜୀବନ, ପାରିବାରିକ ଜୀବନ ଓ ସାମାଜିକ ଜୀବନ ଲାଗି ବିଭିନ୍ନ ଆଚାରମାନ ନିର୍ଦ୍ଦିଷ୍ଟ ଥିଲା । ଶାସ୍ତ୍ରର ବିଭିନ୍ନ ଉପଦେଶଗୁଡ଼ିକ ଖାଲି ପୋଥି ବାଇଗଣ ହୋଇ ରହିଯାଇ ନଥିଲା । ସେଗୁଡ଼ିକୁ କାର୍ଯ୍ୟକ୍ଷେତ୍ରରେ ପାଳନ କରାଯିବା ଉପରେ ଗୁରୁତ୍ୱ ଆରୋପ କରାଯାଉଥିଲା । ଶିଷ୍ୟ ସର୍ବପ୍ରଥମେ ଗୁରୁଙ୍କ ଆଶ୍ରମରେ ଏହାର ମାହାତ୍ମ୍ୟ ଉପଲବ୍ଧି କରୁଥିଲା । ଗୁରୁ ସ୍ୱୀୟ ଆଚରଣରେ ଶୁଦ୍ଧତା ହାସଲ କରିଥାନ୍ତି ବୋଲି ତାଙ୍କୁ କୁହାଯାଉଥିଲା ଆଚାର୍ଯ୍ୟ । ବାସ୍ତବିକ ମନୁ ଏହି ଆଚାର ଉପରେ ଗୁରୁତ୍ୱ ଆରୋପ କରିବାକୁ ଯାଇ କହିଛନ୍ତି :

"ଆଚାରପ୍ରଭବୋ ଧର୍ମଃ"

ଅର୍ଥାତ୍ ଧର୍ମ ଆଚାରରୁ ହିଁ ନିଷ୍ପନ୍ନ ହୋଇଥାଏ । ଏହାର ତାତ୍ପର୍ଯ୍ୟ ହେଲା, ବ୍ୟକ୍ତିର ଧର୍ମ-ନିଷ୍ଠା କିପରି, ତାହା ତା'ର ଆଚାରରୁ ହିଁ ଜଣା ପଡ଼ୁଥାଏ । ଅତଏବ, ବୈଦିକ ଆର୍ଯ୍ୟ-ମାନଙ୍କର ଆଚାର ବିଷୟରେ ଏକ ସଂକ୍ଷିପ୍ତ ଆଲୋଚନା କରିବା ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ ହେବ ।

ବେଦର ଛନ୍ଦେ ଛନ୍ଦେ 'ଋତ' ବା ଚିରନ୍ତନ ସତ୍ୟର ଜୟଗାନ କରାଯାଇଛି ; ବୈଦିକ ଋଷିମାନେ ଏହି 'ଋତ'ର ବଶବର୍ତ୍ତୀ ହୋଇ ଚାଲିବା ପାଇଁ ସମସ୍ତଙ୍କୁ ଉପଦେଶ ଦେଇଛନ୍ତି । ଏହାର ବିପରୀତ ଭାବକୁ କୁହାଯାଉଥିଲା 'ଅନୃତ' ବା 'ଅଘ' ବା 'ଏନ' । ଏହାଠାରୁ ଦୂରରେ ରହିବା ଥିଲା ବୈଦିକ ଆର୍ଯ୍ୟମାନଙ୍କର ପରମ କର୍ତ୍ତବ୍ୟ । (୧୦-କ) ସତ୍‌କର୍ମର ସୁଫଳ ଓ ଅସତ୍‌କର୍ମର କୁଫଳ ମିଳିବ ବୋଲି ସେମାନଙ୍କର ଧାରଣା ଥିଲା । ବାସ୍ତବିକ୍ ଏହି ଧାରଣାର କ୍ରମବିକାଶ ଘଟି ପରବର୍ତ୍ତୀ କାଳରେ 'କର୍ମବାଦ'ର ସୃଷ୍ଟି ହୋଇଥିଲା । ଏହି କର୍ମର ଫଳ ମନୁଷ୍ୟମାନଙ୍କୁ ତଥା ଦେବତାମାନଙ୍କୁ ସମସ୍ତଙ୍କୁ

ଖେଳିବାକୁ ହୁଏ ବୋଲି ସେମାନଙ୍କର ଧାରଣା ଥିଲା । ଏଥି ପ୍ରତି ଲକ୍ଷ୍ୟ କରି ଆପ୍ତେ କହିଛନ୍ତି :

"In the unalterable law of good or bad effects, flowing from good or bad conduct, are to be found the first law of Karma (that most outstanding characteristic of Indian thought)—binding on gods and mortals alike. Offering prayers and performing rites, living in short in perfect harmony with the will of God—this was the ideal moral life according to the Rig-Veda." (୧୧)

ଖାଲି ସେତିକ ନୁହେଁ, ମନୁଷ୍ୟର ଯେ ଅନ୍ୟ ମନୁଷ୍ୟ ତଥା ଇତର ଜୀବମାନଙ୍କ ପାଇଁ କିଛି କର୍ତ୍ତବ୍ୟ ରହିଛି, ସେ କଥା ମଧ୍ୟ ଋଗ୍‌ବେଦ ସ୍ୱୀକାର କରିଥାଏ । (୧୨) ଅସତ୍ୟଠାରୁ ଦୂରରେ ରହିବା ପାଇଁ ଆର୍ଯ୍ୟ ଋଷିଙ୍କର କିଭଳି ଅଭୀପ୍ସା ଫୁଟି ଉଠିଥିଲା, ତାହାର ନିଦର୍ଶନ ଆମେ ଯଜୁର୍ବେଦର ଗୋଟିଏ ମନ୍ତ୍ରରେ (୧।୫) ମଧ୍ୟ ପାଉଥାଉଁ, ଯେଉଁଠି କି କୁହାଯାଇଛି :

"ଅହମନୃତାତ୍ ସତ୍ୟମୁପୈମି ।"

ଅର୍ଥାତ୍ ମୁଁ ଅସତ୍ୟରୁ ସତ୍ୟ ଦିଗକୁ ଯାଉଛି । ଋଗ୍‌ବେଦର ଗୋଟିଏ ମନ୍ତ୍ରରେ (୪।୨।୫।୫) ଆର୍ଯ୍ୟ ଋଷି ଅଗ୍ନିଦେବଙ୍କୁ ପ୍ରାର୍ଥନା କରି କହୁଛନ୍ତି, "ହେ ଅଗ୍ନି ! ମତେ ଏଭଳି ପୁତ୍ର ମିଳୁ ଯେ କି ସତ୍ୟ ପାଳୁଥିବ, ଶତ୍ରୁମାନଙ୍କୁ ପରାଜିତ କରୁଥିବ ଏବଂ ନିଜ ବଂଶର ଯଶକୁ ବଢାଉଥିବ ।" ଋତର କ୍ଷମତା ବିଷୟରେ ତାଣ୍ଡ୍ୟ ବ୍ରାହ୍ମଣରେ ଗୋଟିଏ ସ୍ଥାନରେ ବର୍ଣ୍ଣନା କରି କୁହାଯାଇଛି :

"ଋତେନୈବ ସ୍ୱର୍ଗଂ ଲୋକଂ ଗମୟନ୍ତି ।" (୧୩)

ଅର୍ଥାତ୍ 'ଋତ' ସାହାଯ୍ୟରେ ମଣିଷ ସ୍ୱର୍ଗ-ଲୋକକୁ ଯାଇପାରେ । ଉତ୍ତମ ଚରିତ୍ର ଗଠନ ଥିଲା ଆର୍ଯ୍ୟମାନଙ୍କର ଏକ ମହାନ ଆଦର୍ଶ ଏବଂ ଏହି ଆଦର୍ଶ-ସିଦ୍ଧି ଲାଗି ସତ୍ୟର ସେବା ଉପରେ ଖୁବ୍ ଗୁରୁତ୍ୱ ଦିଆଯାଉଥିଲା । ଅତଏବ 'ଋତ' ଓ 'ସତ୍ୟ'ର ସେବା କରିବା ଥିଲା ଆର୍ଯ୍ୟମାନଙ୍କର ପରମ ଧର୍ମ, ପରମ କର୍ତ୍ତବ୍ୟ । ଏହାର ସାହାଯ୍ୟରେ ସେମାନେ ମୁକ୍ତିପଥର ଯାତ୍ରୀ ହେବା ପାଇଁ ନିରନ୍ତର ଉଦ୍ୟମ କରୁଥିଲେ । ଏହି ଭାବଧାରା ସେମାନଙ୍କର

ସାମାଜିକ ସ୍ଥିତି ଓ କର୍ମକଳାପକୁ ନିୟନ୍ତ୍ରିତ କରୁଥିଲା । ଏଭଳି ଆଚରଣଯୁକ୍ତ ସମାଜ ଯେ ନିଶ୍ଚିତ ଭାବରେ ସୁଖ ଓ ଆନନ୍ଦର ଉତ୍ସ ହୋଇଥିବ, ଏଥିରେ ସନ୍ଦେହ ନାହିଁ । ସେଥିପାଇଁ ବୋଧହୁଏ ଆମେ ବେଦର ଛନ୍ଦେ ଛନ୍ଦେ ଆର୍ଯ୍ୟମାନଙ୍କର ଜୀବନକୁ ଉପଭୋଗ କରିବାର ଅଭିପ୍ସାର ଧାରା ଉଜ୍ଜ୍ୱଳ ଭାବରେ ଉଚ୍ଛୁଳି ଉଠିଥିବାର ଦେଖିବାକୁ ପାଇଥାଉଁ । ବାଚସ୍ପତି ଗୈରୋଲା ଏଥିପ୍ରତି ଲକ୍ଷ୍ୟ କରି ଯଥାର୍ଥରେ କହିଛନ୍ତି :

> "ବେଦୋଂ କା 'ଋତ' ସିଦ୍ଧାନ୍ତ ତତ୍‌କାଲୀନ ସତ୍ୟନିଷ୍ଠ, ନୈତିକତାପରିପୂର୍ଣ୍ଣ ଔର୍ ଅନୁଶାସନବଦ୍ଧ ସମାଜ କା ଉଜ୍ଜ୍ୱଳ ଉଦାହରଣ ହୈ ।" (୧୪)

ଋଗ୍‌ବେଦରେ ସାତଗୋଟି ମର୍ଯ୍ୟାଦା ବା ମୂଲ୍ୟବୋଧ ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ବୈଦିକ ସମାଜରେ ଏହି ମର୍ଯ୍ୟାଦାଗୁଡ଼ିକୁ ଯଥେଷ୍ଟ ସମ୍ମାନ ଦିଆଯାଉଥିଲା । ବୌଦ୍ଧମାନଙ୍କ ନିକଟରେ ପରବର୍ତ୍ତୀ କାଳରେ 'ପଞ୍ଚଶୀଳ' ଓ 'ଦଶଶୀଳ' ଯେଉଁ ଆସନ ଅଧିକାର କରିଥିଲା, ବୈଦିକ ଆର୍ଯ୍ୟମାନଙ୍କ ନିକଟରେ ଏହି 'ସପ୍ତ ମର୍ଯ୍ୟାଦା' ଠିକ୍ ଅନୁରୂପ ସ୍ଥାନ ଅଧିକାର କରିଥିଲା । ନିମ୍ନଲିଖିତ ସାତ ଗୋଟି କାର୍ଯ୍ୟରୁ ବିରତ ହେଉଛି ଏହି 'ସପ୍ତମର୍ଯ୍ୟାଦା'ର ଅନ୍ତର୍ଭୁକ୍ତ :

(କ) ହିଂସା

(ଖ) ଚୋରି

(ଗ) ବ୍ୟଭିଚାର

(ଘ) ଜୁଆଖେଳ

(ଙ) ମଦ୍ୟପାନ

(ଚ) ଅସତ୍ୟଭାଷଣ

(ଛ) ଏହି ପାପ କରୁଥିବା ଲୋକମାନଙ୍କ ସାଥିରେ ରହିବା (୧୫)

ସଂହିତୋତ୍ତର ସାହିତ୍ୟ ଓ ନୀତିଶାସ୍ତ୍ରମାନଙ୍କରେ ସଦାଚାରର ସ୍ଥାପନ ଲାଗି ଯେଉଁ ଯେଉଁ ଉପଦେଶମାନ ଦିଆଯାଇଛି, ବାସ୍ତବିକ୍ ତାହାସବୁ ଏହି ବୈଦିକ 'ସପ୍ତମର୍ଯ୍ୟାଦା' ଉପରେ ଆଧାରିଭୂତ । ଏହି ସପ୍ତମର୍ଯ୍ୟାଦା ସାରା ଭାରତୀୟ ସଂସ୍କୃତିର ଦୀପସ୍ତମ୍ଭ ସ୍ୱରୂପ ଯୁଗ ଯୁଗ ଧରି ରହିଆସିଛି । ଯେଉଁ ବ୍ୟକ୍ତି ପୂର୍ଣ୍ଣ ଭାବରେ ଏହି ମର୍ଯ୍ୟାଦାଗୁଡ଼ିକର ଅଧିକାରୀ, ଭାରତୀୟମାନେ ତାଙ୍କୁ ଭଗବାନ ଜ୍ଞାନରେ ପୂଜା କରି ଆସିଛନ୍ତି । ସେହି ଦୃଷ୍ଟିରୁ ରାମଚନ୍ଦ୍ରଙ୍କୁ ଆମେ କହୁଛୁ ମର୍ଯ୍ୟାଦା-ପୁରୁଷୋତ୍ତମ ବୋଲି ଏବଂ ପୂଜା କରୁଛୁ ଭଗବାନଙ୍କ

ଅବତାର ହିସାବରେ । ବୈଦିକ ସମାଜ କିଭଳି ଭାବରେ ମର୍ଯ୍ୟାଦାନିଷ୍ଠ ଥିଲା, ତାହା ଏଥିରୁ ସହଜରେ ଅନୁମିତ ହେବ । ଏହି ମର୍ଯ୍ୟାଦାଗୁଡ଼ିକ ଥିଲା ସକଳ ବ୍ୟକ୍ତିଙ୍କ ଲାଗି ଆଦର୍ଶ । ଯେ ଯେଉଁ ପରିମାଣରେ ଏହି ମର୍ଯ୍ୟାଦାଗୁଡ଼ିକର ଅଧିକାରୀ ହେଉଥିଲା, ସେ ତଦନୁରୂପ ସମାଜରେ ଆଦର ସମ୍ମାନ ପାଉଥିଲା ।

ଏହିପରି ଭାବରେ ବେଦରେ ଶୀଳ, ନୈତିକତା, ସଦାଚାର ଆଦି ସଦ୍‌ଗୁଣାବଳୀ ଉପରେ ଖୁବ୍ ଗୁରୁତ୍ୱ ଦିଆଯାଉଥିଲା ଏବଂ ବ୍ୟକ୍ତି ତଥା ସମାଜ ଉପରେ କିଭଳି ଏଗୁଡ଼ିକର ସତ୍‌ପ୍ରଭାବ ପଡ଼ିବ, ସେଥିପାଇଁ ଉଦ୍ୟମ କରାଯାଉଥିଲା । ଅତଏବ, ବୈଦିକ ସଂସ୍କୃତିର ଏବଂବିଧ ଆଚାର-ଦୃଷ୍ଟି ମନୁଷ୍ୟର ସାର୍ବିକ ଅଭ୍ୟୁଦୟ ଲାଗି ଥିଲା ଏକ ଉପଯୁକ୍ତ ସାଧନ ।

ପରିବାର :

ପରିବାର ଥିଲା ବୈଦିକ ସମାଜର କୃତ୍‌କେନ୍ଦ୍ର ସ୍ୱରୂପ । ଏଠାରେ ଯେଉଁ ରୀତି, ନୀତି, ନିୟମ, ନିଷ୍ଠାମାନ ପାଳିତ ହେଉଥିଲା, ତାହାର ବଳିଷ୍ଠ ଓ ଫଳପ୍ରଦ ପ୍ରଭାବ ସାମାଜିକ ଓ ଗୋଷ୍ଠୀ-ଜୀବନରେ ପଡ଼ୁଥିଲା । ଜ୍ୟେଷ୍ଠଙ୍କୁ ମାନିବା, ସମ୍ମାନ ଦେଖାଇବା ଏବଂ କନିଷ୍ଠଙ୍କୁ ସ୍ନେହଶ୍ରଦ୍ଧା କରିବା ଥିଲା ବୈଦିକ ପାରିବାରିକ ଜୀବନର ମୂଳ-ଭିତ୍ତି । ଏହା ଥିଲା ପିତୃକେନ୍ଦ୍ରିକ ; କିନ୍ତୁ ପିତୃସର୍ବସ୍ୱ ନୁହେଁ । ପରିବାରର ମୁଖ୍ୟ ଥିଲେ ପିତା ; ତାଙ୍କୁ ସମସ୍ତେ ମାନୁଥିଲେ । କିନ୍ତୁ ସେ ଯଥେଚ୍ଛାଚାରୀ ନଥିଲେ । ନିଜର ସୁଖ ପାଇଁ ସେ ଧାଉଁ ନଥିଲେ । ବରଂ ସ୍ୱାର୍ଥତ୍ୟାଗ କରି ସେ ପରିବାରର ସମସ୍ତଙ୍କର ମଙ୍ଗଳ ପାଇଁ ଉଦ୍ୟମ କରୁଥିଲେ । ତାଙ୍କର ଥିଲା ତ୍ୟାଗୀ ଓ ଭୋଗୀର ଏକ ସମନ୍ୱିତ ଜୀବନ । ପରିବାରରୁ ଏହି କଥାଟି ସମସ୍ତେ ଶିଖୁଥିଲେ ; ଏହି ନୀତି ଦ୍ୱାରା ସମସ୍ତେ ଉଦ୍‌ବୁଦ୍ଧ ହେଉଥିଲେ । ତେଣୁ ସେମାନଙ୍କ ସାମାଜିକ ଜୀବନରେ ମଧ୍ୟ ସମସ୍ତଙ୍କର ଅଭ୍ୟୁଦୟ ଲାଗି ଆତ୍ମତ୍ୟାଗ କରିବାକୁ ସେମାନେ ପଶ୍ଚାତ୍‌ପଦ ହେଉ ନଥିଲେ । ଏହି ପିତୃକୈନ୍ଦ୍ରିକ ପରିବାରର ପରାକାଷ୍ଠା ଦର୍ଶାଇବାକୁ ଯାଇ ଅବିନାଶଚନ୍ଦ୍ର ଦାସ ଯାହା କହିଛନ୍ତି, ତାହା ଏଠାରେ ପ୍ରଣିଧାନଯୋଗ୍ୟ

> "The type of family was patriarchal. The father was the head of the family as long as he lived or was physically able to discharge his duties. His place was taken by the eldest son, who not only maintained his old parents in

comfort with due regard to their helpless condition, but also took proper care of all the members of the family and dependants." (୧୬)

ଋଗ୍‌ବେଦରେ (୧।୨।୯) ପିତାଙ୍କ ଦୟାମୟ ଓ ପରିବାରର ମଙ୍ଗଳ-ସାଧକ ସ୍ୱଭବରେ ଯେଉଁ ବର୍ଣ୍ଣନା କରାଯାଇଛି, ତାହାର ତାତ୍ପର୍ଯ୍ୟ ଅଛି ଏଇଠି । ବୈଦିକ ଆର୍ଯ୍ୟ-ମାନଙ୍କର ପରିବାର ସାଧାରଣତଃ ଥିଲା ସଂଯୁକ୍ତ ଓ ଏକାନ୍ନବର୍ତ୍ତୀ । ଏଥିର ଅନ୍ତର୍ଗତ ଥିଲେ ବୃଦ୍ଧ ପିତାମାତା, ପୁତ୍ର ଓ ତାଙ୍କ ସ୍ତ୍ରୀ, ପିଲାପିଲି, ତଥା ଭାଇ ଓ ତାଙ୍କ ପରିବାର ଏବଂ ଅବିବାହିତା ଭଉଣୀ । ଅବିବାହିତା ଭଉଣୀ ପ୍ରତି ଭାଇର ଯଥେଷ୍ଟ କର୍ତ୍ତବ୍ୟ ଥିଲା । ସେ ତାକୁ ବାହାସାହା କରାଇଦେବାର ଦାୟିତ୍ୱ ଗ୍ରହଣ କରୁଥିଲା । ଯେଉଁ ଅବିବାହିତା ଭଉଣୀର ଭାଇ ନାହିଁ ତା'ର ଜୀବନ ଦୁଃଖମୟ ଏବଂ ସେ ଅବାଟରେ ଚାଲିଯିବାର ସମ୍ଭାବନା ଅଛି ବୋଲି ଋଗ୍‌ବେଦରେ ସମାଜକୁ ସତର୍କ କରି ଦିଆଯାଇଛି । (୧୭) ଏହି ସ୍ଥିତି ଉପରେ ଗୁରୁତ୍ୱ ଆରୋପ କରି ଚେଣ୍ଡ୍ କୁହାଯାଇଛି :

"A fatherless and brotherless spinster was considered unlucky and pitied." (୧୮)

ପରିବାରରେ ପିତାଙ୍କର ସ୍ଥାନ କିପରି ମହତ୍ତ୍ୱପୂର୍ଣ୍ଣ ଥିଲା, ତାହା ସହଜରେ ଏଥିରୁ ଉପଲବ୍ଧ ।

ପିତାଙ୍କର ଆସନ୍ନ ମୃତ୍ୟୁ ସମୟରେ ପୁତ୍ର ପାଇଁ ଏକ ବିଧାନ ଦିଆଯାଇଥିଲା, ଯାହା ଅନୁଧ୍ୟାନ କଲେ ଆମେ ତତ୍‌କାଳୀନ ସମାଜର ପିତୃପ୍ରାଧାନ୍ୟ ଓ ପରିବାରର ପିତୃନିର୍ଭରତା ସଂମ୍ପର୍କରେ ଅବହିତ ହୋଇଥାଉଁ । ଏହି ବିଧାନଟିର ନାମ ହେଉଛି 'ପିତାପୁତ୍ରୀୟ ସଂପ୍ରତ୍ତି' ବା ସଂପ୍ରଦାନ । ଏଥିରେ ପିତା ପୁତ୍ରକୁ ତାଙ୍କର ଶେଷ ଦାନ ଦେଇଯାନ୍ତି । ବୃହଦାରଣ୍ୟକୋପନିଷଦ୍‌ରେ (୧।୫।୧୭) ଆମେ ଏହାର ଉଲ୍ଲେଖ ଦେଖିଥାଉଁ । କୌଷୀତକି ବ୍ରାହ୍ମଣରେ ଏହି ବିଧାନର ଠିକ ଠିକ ବିବରଣୀ ଦିଆଯାଇଛି । ଏହି ବର୍ଣ୍ଣନା ଅନୁସାରେ ପିତାଙ୍କ ଆସନ୍ନ ମୃତ୍ୟୁ ବେଳକୁ ପୁତ୍ର ଆସି ତାଙ୍କର ମୁଖ ପାଖରେ ବସୁଥିଲା । ପିତା କହୁଥିଲେ, "ବାଚଂ ମେ ତ୍ୱୟି ଦଧାନି ଚକ୍ଷୁର୍ମେ ତ୍ୱୟି ଦଧାନି ଶ୍ରୋତ୍ରଂ ମେ ତ୍ୱୟି ଦଧାନି ..." ଇତ୍ୟାଦି । ଅର୍ଥାତ୍ ତୋ'ଠାରେ ବାକ୍, ଆଖି ଓ କାନ ନେଇ ଥୋଉଛି । ଏହାର ତାତ୍ପର୍ଯ୍ୟ ହେଲା ଏଣିକି ପୁତ୍ର ପିତାଙ୍କର ବାକ୍‌ଶକ୍ତି, ଦୃଷ୍ଟିଶକ୍ତି ଓ ଶ୍ରବଣଶକ୍ତି ଇତ୍ୟାଦିର ଅଧିକାରୀ ହେବ । ଏହିପରି ଗୋଟିକ ପରେ ଗୋଟିଏ କରି ପ୍ରାଣଶକ୍ତି ପର୍ଯ୍ୟନ୍ତ ବି ପିତା ପୁତ୍ରକୁ ଅର୍ପଣ କରିଥାନ୍ତି । ଯଦି ସେ ବେଶି କଥା କହିବା ଅବସ୍ଥାରେ ନଥାନ୍ତି,

ତେବେ ସଂକ୍ଷେପରେ କହିଦିଅନ୍ତି, 'ପ୍ରାଣାନ୍‌ମେ ତ୍ୱୟି ଦଧାମି' । ଅର୍ଥାତ୍ ମୁଁ ତୋତେ ମୋ'ର ପ୍ରାଣ-ଶକ୍ତି ଅର୍ପଣ କଲି । ପୁତ୍ର ସେତେବେଳେ ଗୋଟିକ ପରେ ଗୋଟିଏ ଶକ୍ତିକୁ ଧାରଣ କଲି ବୋଲି ବୁଝେ । ତା'ପରେ ପିତା ଶାନ୍ତିରେ ନିଃଶ୍ୱାସ ମାରନ୍ତି । ଯଦି କୌଣସି ମତେ ପିତା ବଞ୍ଚି ଯାଆନ୍ତି, ତେବେ ତାଙ୍କୁ ଆଉ ସଂସାରୀ ହୋଇ ରହିବାକୁ ପଡେ ନାହିଁ । ତାଙ୍କୁ ପ୍ରବ୍ରଜ୍ୟା ନେବାକୁ ହୁଏ ଅଥବା ସେ ପୁତ୍ର-ଗୃହରେ ଅତିଥି ଭଳି ରହନ୍ତି । ଏଥିରୁ ପିତାଙ୍କର ମର୍ଯ୍ୟାଦାପୂର୍ଣ୍ଣ ସ୍ଥିତି କଥା ସହଜରେ ଅନୁମେୟ ।

ବାସ୍ତବିକ୍, 'ପିତା' ଶବ୍ଦଟି ନିଷ୍ପନ୍ନ ହୋଇଛି ରକ୍ଷଣାର୍ଥକ ବା ପାଳନାର୍ଥକ 'ପା' ଧାତୁରୁ । ଯେ ପରିବାରର ସମସ୍ତଙ୍କୁ ପାଳନ କରନ୍ତି ବା ରକ୍ଷଣ କରନ୍ତି ସେ ହେଲେ ପିତା । ଅତଏବ, ଆଦର୍ଶ ପିତାଙ୍କର କର୍ତ୍ତବ୍ୟ ସେତେବେଳେ ଥିଲା ସନ୍ତାନସନ୍ତତିମାନଙ୍କୁ ତଥା ପରିବାରର ସମସ୍ତଙ୍କୁ ପାଳନ କରିବା ଓ ରକ୍ଷଣ କରିବା । ଏହି କର୍ତ୍ତବ୍ୟରେ ତ୍ରୁଟି କଲେ ସେ ସମାଜ ଦ୍ୱାରା ନିନ୍ଦିତ ହେଉଥିଲେ । ଆମେ ପୂର୍ବରୁ ବୈଦିକ ଶୁନଃଶେପ ଆଖ୍ୟାନ ବିଷୟରେ (ପ୍ରଥମଭାଗ : ସପ୍ତମ ପରିଚ୍ଛେଦ) ଆଲୋଚନା କରିଛୁ । ସେଥିରେ ଦର୍ଶାଇ ଦେଇଛୁ, କିପରି ଭାବରେ ଧନ ଲୋଭରେ ଅଜୀଗର୍ତ୍ତ ମୁନି ତାଙ୍କର ମଧ୍ୟମ ପୁତ୍ର ଶୁନଃଶେପଙ୍କୁ ବରୁଣଙ୍କ ଯଜ୍ଞ-ବେଦୀରେ ବଳି ରୂପରେ ଅର୍ପିତ ହେବା ପାଇଁ ବିକ୍ରୟ କରି ଦେଇଥିଲେ ଏବଂ କିପରି ପିତାର ପାଳନାତ୍ମକ କର୍ତ୍ତବ୍ୟରୁ ବିଚ୍ୟୁତ ହୋଇଥିବାରୁ ଜ୍ଞାନୀ ଲୋକମାନେ ତାଙ୍କୁ ଶୁନଃଶେପଙ୍କ ପିତୃତ୍ୱର ଗୌରବରୁ ବଞ୍ଚିତ କରିଥିଲେ । ଏହାର ତାତ୍ପର୍ଯ୍ୟ ହେଲା, ପିତାଙ୍କର ସର୍ବପ୍ରଧାନ କର୍ତ୍ତବ୍ୟ ହେଉଛି ସନ୍ତାନସନ୍ତତିମାନଙ୍କୁ ରକ୍ଷା କରିବା । ଏହା ନକଲେ କେହି ପିତୃତ୍ୱର ଅଧିକାର ଦାବି କରିପାରିବେ ନାହିଁ । ଅଜୀଗର୍ତ୍ତଙ୍କ ଭଳି ଆହୁରି କେତେକ କ୍ରୂରକର୍ମା ପିତା ମଧ୍ୟ ସେତେବେଳେ ଥିଲେ । ସେମାନେ ସନ୍ତାନସନ୍ତତି ଓ ପରିବାରର ସଭ୍ୟମାନଙ୍କୁ ବେଳେବେଳେ ମୃତ୍ୟୁଦଣ୍ଡ ପର୍ଯ୍ୟନ୍ତ ବି ଦେଉଥିଲେ କିମ୍ବା ସେମାନଙ୍କର ଅଙ୍ଗଚ୍ଛେଦନ କରୁଥିଲେ । (୧୯) କିନ୍ତୁ ଏହା ଥିଲା ଅସାଧାରଣ ଘଟଣା ଏବଂ ଏହା ସମାଜ ଦ୍ୱାରା ସର୍ବଥା ନିନ୍ଦିତ ହେଉଥିଲା ।

ପିତାଙ୍କର ମୁଖ୍ୟ ଦାୟିତ୍ୱ ଥିଲା ସନ୍ତାନସନ୍ତତିମାନଙ୍କୁ ଉପଯୁକ୍ତ ଭାବରେ ଶିକ୍ଷା ଦିଆଇ ମଣିଷ କରାଇବା । ପାରିବାରିକ କାରିଗରୀ ବିଦ୍ୟାରେ ମଧ୍ୟ ସେମାନଙ୍କୁ କୁଶଳୀ କରାଇବା ଥିଲା ତାଙ୍କର ଆଉ ଏକ କର୍ତ୍ତବ୍ୟ । ଏହି କର୍ତ୍ତବ୍ୟ ସୁଚାରୁ ରୂପେ ସଂପାଦନ କରିବା ପାଇଁ ସେ ସର୍ବଦା ଉଦ୍ୟମଶୀଳ ରହୁଥିଲେ । ଏଥିପ୍ରତି ଲକ୍ଷ୍ୟ କରି ଆଲ୍‌ଟେକର୍ କହିଛନ୍ତି :

> "The education of children was a personal concern of the father, and he initiated them into the Vedic studies and family crafts. There were rituals for securing intellectual pre-eminence and success in debates." (୨୦)

ପିତା ତାଙ୍କର ଏହି କର୍ତ୍ତବ୍ୟ ସମାପନ କରିବା ସଙ୍ଗେ ସଙ୍ଗେ ସନ୍ତାନସନ୍ତତି-ମାନଙ୍କର ସବୁ ପ୍ରକାର କାର୍ଯ୍ୟକଳାପକୁ ମଧ୍ୟ ନିୟନ୍ତ୍ରିତ କରୁଥିଲେ । ବିଶେଷ କରି ସେମାନେ ପ୍ରାପ୍ତ ବୟସ୍କ ନହେବା ପର୍ଯ୍ୟନ୍ତ ଏପ୍ରକାର ନିୟନ୍ତ୍ରଣ ଚାଲୁ ରହିଥିଲା । ସେମାନଙ୍କ ବିବାହ ଉପରେ ମଧ୍ୟ ପିତାଙ୍କର ନିୟନ୍ତ୍ରଣ ରହୁଥିଲା । ସେଥିପାଇଁ ଭାର୍ଗବ ଯଥାର୍ଥରେ କହିଛନ୍ତି :

> The father was the head of the family and controlled all the activities of his children including in some measure, at least their marriage." (୨୦-କ)

ଘରର ବୋହୂ ଥିଲା ଶ୍ୱଶୁରଙ୍କ ପାଖରେ ଲଜ୍ଜାନମ୍ରା । ସେଥିପାଇଁ ଐତରେୟ ବ୍ରାହ୍ମଣରେ କୁହାଯାଇଛି ;

> "ସ୍ନୁଷା ଶ୍ୱଶୁରାଲଜ୍ଜମାନା ନିଲୀୟମାନା ଏତି ।"

ଅର୍ଥାତ୍ ଶ୍ୱଶୁରଙ୍କ ଆଗରେ ବୋହୂ ଲଜେଇ ଯାଇ ନିଜର ଦେହକୁ ଘୋଡ଼ାଇ ଆସିଥାଏ । ଏହା ନାରୀ ସମାଜର ନମ୍ରତା ତଥା ଶାଶୁ-ଶ୍ୱଶୁରଙ୍କ ପ୍ରତି ଭକ୍ତିଭାବର ସୂଚକ ।

ପରିବାରର ଗୁରୁତ୍ୱ ସେତେବେଳେ ଏଭଳି ଥିଲା ଯେ, ବ୍ୟକ୍ତିବିଶେଷ ନୁହେଁ, ଏହା ହିଁ ସମାଜର ଏକକ ଭାବରେ ଗଣା ଯାଉଥିଲା । କୌଣସି ଅଞ୍ଚଳର ଲୋକସଂଖ୍ୟା ନିର୍ଦ୍ଧାରିତ କରିବାକୁ ଗଲେ, ପରିବାରଗୁଡ଼ିକୁ ହିଁ ବିଚାରକୁ ନିଆଯାଉଥିଲା । ଆଧୁନିକ ଯୁଗ ପରି ବ୍ୟକ୍ତିବିଶେଷଙ୍କୁ ଗଣାଯାଉ ନଥିଲା । ପରିବାରର ବିଶାଳ ବକ୍ଷରେ ବ୍ୟକ୍ତି-ସତ୍ତା ପ୍ରାୟ ଲୋପ ପାଇ ଯାଇଥିଲା କହିଲେ ଚଳେ । ଏହାର ଅର୍ଥ ନୁହେଁ ଯେ ବ୍ୟକ୍ତିଙ୍କର ଅଭିବୃଦ୍ଧି ଲାଗି ସେତେବେଳେ ଉଦ୍ୟମ କରାଯାଉ ନଥିଲା । ଏହା ନିଶ୍ଚିତ ଭାବରେ କରାଯାଉଥିଲା ; କିନ୍ତୁ ଏହି ଅଭିବୃଦ୍ଧିର କେନ୍ଦ୍ରଭୂମି ଥିଲା ପରିବାର । ପରିବାରର ଓ ବ୍ୟକ୍ତି-ବିଶେଷର ଅଭିବୃଦ୍ଧି ମଧ୍ୟରେ ସଂଘର୍ଷ ଉପୁଜିଲେ ପରିବାରର ଅଭିବୃଦ୍ଧି ଉପରେ

ପ୍ରାଧାନ୍ୟ ଦିଆ ଯାଉଥିଲା । ମୋଟ ଉପରେ, ବ୍ୟକ୍ତି ଓ ପରିବାର ମଧ୍ୟରେ ଏକ ପ୍ରକାର ସମନ୍ୱୟ ସ୍ଥାପିତ କରାଯାଇଥିଲା । ସଂକ୍ଷେପରେ କହିବାକୁ ଗଲେ ବ୍ୟକ୍ତି ଥିଲା ପରିବାର ପାଇଁକି ଏବଂ ପରିବାର ଥିଲା ବ୍ୟକ୍ତି ପାଇଁକି । ବାଶମ୍ ଏ ସମ୍ପର୍କରେ ଯାହା କହନ୍ତି, ତାହା ଏଠାରେ ଲକ୍ଷ୍ୟଣୀୟ :

> "The family, rather than the individual, was looked upon as the unit of the social system; thus, the population of a given region was generally estimated in families rather than in heads. The bonds of family were such that relationships within the group were often blurred or lost sight of ; for instance a son might commonly refer to all his father's wives indiscriminately as his mothers." (୨୧)

ଅତଏବ, ବ୍ୟକ୍ତିବିଶେଷମାନଙ୍କୁ ଏକ ଦୃଢ଼ ବନ୍ଧନରେ ବାନ୍ଧି ରଖିବାରେ ପାରିବାରିକ ବ୍ୟବସ୍ଥାଟି ସହାୟକ ହୋଇ ଉଠିଥିଲା ।

ଏହି ବ୍ୟବସ୍ଥାକୁ ଆହୁରି ଦୃଢ଼ତର କରି ତୋଳିଥିଲା 'ଗୋତ୍ର' ଓ 'ପ୍ରବର' ସମ୍ପର୍କୀୟ ଚିନ୍ତାଧାରା । ଗୋତ୍ରର ମୌଳିକ ଅର୍ଥ ହେଲା 'ଗାଈଗୁହାଳ' । ଅଥର୍ବ ବେଦରେ ସର୍ବପ୍ରଥମେ 'ଗୋତ୍ର'କୁ 'ଗୋଷ୍ଠୀ' ଅର୍ଥରେ ଗ୍ରହଣ କରାଯାଇଛି । (୨୨) କୌଣସି ପରିବାରର ଗାଈମାନେ ଗୋଟିଏ ଗୁହାଳରେ ଥିଲେ ସେମାନଙ୍କୁ ସେହି ପରିବାରର ଗାଈ ବୋଲି ଚିହ୍ନିତ କରାଯାଉଥିଲା । କାଳକ୍ରମେ ଏହି ଚିନ୍ତାଧାରା ବ୍ୟକ୍ତିବିଶେଷଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ ହେବାକୁ ଲାଗିଲା । ସେହି ପରିବାରର ବ୍ୟକ୍ତିମାନଙ୍କୁ ଗୋଟିଏ ଗୋତ୍ରର ଅନ୍ତର୍ଭୁକ୍ତ ବୋଲି ବୁଝାଯିବାକୁ ଲାଗିଲା । ବୃହତ୍ ପରିବାରମାନ ଭାଙ୍ଗି କାଳକ୍ରମେ କ୍ଷୁଦ୍ର କ୍ଷୁଦ୍ର ପରିବାରରେ ବିଭକ୍ତ ହେଲେ ମଧ୍ୟ ସେହି ପରିବାରଗୁଡ଼ିକର ବ୍ୟକ୍ତିବିଶେଷଙ୍କୁ ଗୋଟିଏ ଗୋତ୍ରର ଅନ୍ତର୍ଭୁକ୍ତ ବୋଲି ଗଣାଯିବାକୁ ଲାଗିଲା । ଏହି 'ଗୋତ୍ର' ଚିନ୍ତାଧାରା ପ୍ରଥମେ ବ୍ରାହ୍ମଣମାନଙ୍କ ପ୍ରତି ପ୍ରଯୁଜ୍ୟ ଥିଲା । ସେମାନେ ମୂଳ ଋଷିଙ୍କ ନାମରେ ନିଜ ଗୋତ୍ରକୁ ପରିଚିତ କରାଇବାକୁ ଲାଗିଲେ ; ଯଥା, ବଶିଷ୍ଠ, ଭରଦ୍ୱାଜ, ଶାଣ୍ଡିଲ୍ୟ ଇତ୍ୟାଦି । କାଳକ୍ରମେ ତାହା ଅନ୍ୟ ଉଚ୍ଚ ଦୁଇ ବର୍ଣ୍ଣ, ଯଥା, କ୍ଷତ୍ରିୟ ଓ ବୈଶ୍ୟ ଗ୍ରହଣ କରିନେଲେ । ଏହି ଗୋତ୍ରର ବନ୍ଧନ ଖୁବ୍ ଦୃଢ଼ ଥିଲା । ଏଥିର ଲୋକମାନଙ୍କୁ ବୁଝାଯାଉଥିଲା 'ସପିଣ୍ଡକ' ।

ସପିଣ୍ଡକମାନଙ୍କ ମଧ୍ୟରେ ବିବାହବନ୍ଧନ ନିଷିଦ୍ଧ ଥିଲା । 'ପ୍ରବର' ତନ୍ତ୍ରାଧୀନରେ ବ୍ୟକ୍ତି-ବିଶେଷଙ୍କୁ ମୂଳ ଗୋତ୍ରର ସ୍ରଷ୍ଟା ଋଷିଙ୍କ ପୂର୍ବପୁରୁଷମାନଙ୍କ ପାଖକୁ ଫେରି ଆସିବାକୁ ପଡୁଥିଲା । ସେମାନଙ୍କୁ ମଧ୍ୟ ସେ ନିଜର ପୂର୍ବଜ ବୋଲି ମନେ କରୁଥିଲେ । କେତେକ ଗୋତ୍ରର ପ୍ରଥା ଅନୁଯାୟୀ ଗୋତ୍ର ପୃଥକ୍ ପୃଥକ୍ ହେଲେ ମଧ୍ୟ, 'ପ୍ରବର' ଯଦି ସମାନ, ତେବେ ପୁଅ ଝିଅଙ୍କ ମଧ୍ୟରେ ବିବାହ ହୋଇପାରୁ ନଥିଲା । ବାସମ୍ ଏଥିପ୍ରତି ଲକ୍ଷ୍ୟ କରି ଯଥାର୍ଥରେ କହିଛନ୍ତି :

> "According to the custom of some Gotras, marriage was impossible with a member of another Gotra having one pravara name in common, while others barred intermarriage only when there were two common names in the pravaras." (୨୩)

ଏହିପରି ଭାବରେ 'ଗୋତ୍ର' ଓ 'ପ୍ରବର' ସମ୍ପର୍କିତ ତନ୍ତ୍ରାଧୀନ ବୈଦିକ ପରିବାରର ବନ୍ଧନକୁ ଆହୁରି ଦୃଢ଼ କରିବାରେ ସହାୟକ ହୋଇଥିଲା । ଏହି ଦୃଢ଼ ବନ୍ଧନ ଯେଉଁ ଏକତାର ଯୋଗସୂତ୍ରଟି ସ୍ଥାପନ କରିଥିଲା, ତତ୍‌ଫଳରେ ସାଧାରଣ ଶତ୍ରୁ ଆଗରେ ଏକୀଭୂତ ହୋଇ ଠିଆହେବା ଏବଂ ପରିଶେଷରେ ସେହି ଶତ୍ରୁକୁ ପରାସ୍ତ କରିବା ସମ୍ଭବପର ହୋଇ ପାରିଥିଲା । ଅତଏବ, 'ଗୋତ୍ର' ଓ 'ପ୍ରବର' ତନ୍ତ୍ରାଧୀନ ସାମାଜିକ ଏକତା ଆଣିବାରେ କେତେକ ପରିମାଣରେ ସହାୟକ ହୋଇଥିଲା ।

**ବର୍ଣ୍ଣବିଭାଗ :**

ଚାରି ବର୍ଣ୍ଣବିଭାଗ ଏବଂ ଚାରି ଆଶ୍ରମବିଭାଗ (ଜୀବନର ଚାରି ଅବସ୍ଥା) ମିଶି ସୃଷ୍ଟି ହୋଇଛି 'ବର୍ଣ୍ଣାଶ୍ରମଧର୍ମ' । ଏହା ବୈଦିକ ଆର୍ଯ୍ୟମାନଙ୍କର ଏକ ମହାନ୍ ସୃଷ୍ଟି ଯାହାର ପ୍ରଭାବ କି ଏବେ ମଧ୍ୟ ଭାରତୀୟ ଜୀବନରେ ଅନୁଭୂତ । ଏହି 'ବର୍ଣ୍ଣାଶ୍ରମଧର୍ମ' ଉପରେ ଗୁରୁତ୍ୱ ଆରୋପ କରିବାକୁ ଯାଇ ତନ୍ତ୍ରଶାସ୍ତ୍ରବିତ୍ ନ୍ୟାୟମୂର୍ତ୍ତି ଉଡ୍‌ରଫ୍ ଯାହା କହିଛନ୍ତି, ତାହା ଏଠାରେ ଲକ୍ଷ୍ୟ କରିବାର କଥା :

> "India has presented itself as one of the immortal peoples. Suffering racial divisions, politically disrupted with a variety of languages

> and scripts, governed for centuries by strangers, she has yet held together, so that we can still speak of India. This I think, is due principally to certain religious and philosophical concepts held in common by the people and as regards Hinduism in its technical sense, the wonderful organisation called Varnashram Dharma." (୨୪)

ଅତଏବ ବୈଦିକ ସମାଜରେ ଏକତା ଓ ଶୃଙ୍ଖଳା ରକ୍ଷା କରିବା ଦିଗରେ ଯେ ଏହି ବର୍ଣ୍ଣାଶ୍ରମ ଧର୍ମର ଅବଦାନ ଥିଲା ଅନନ୍ୟ, ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ 'ବର୍ଣ୍ଣଧର୍ମ' ବିଷୟରେ ଆଲୋଚନା କରାଯାଉଛି । ପରେ ଆଶ୍ରମ-ଧର୍ମ ବିଷୟରେ ଆଲୋଚନା କରାଯିବ ।

ବର୍ଣ୍ଣଧର୍ମ ବିଷୟ ବିଚାରକୁ ନେଲେ ବହୁ ପ୍ରଶ୍ନ ମନରେ ହୁଙ୍କିମାରେ । ବର୍ଣ୍ଣ କ'ଣ ? ଏହାର ତାତ୍ପର୍ଯ୍ୟ କ'ଣ ? ଏହା କ'ଣ ଆର୍ଯ୍ୟମାନଙ୍କର ଏକ ସାମାଜିକ ବ୍ୟବସ୍ଥା ହୋଇ ମୂଳରୁ ଥିଲା ? ଅର୍ଥାତ୍ ଋଗ୍‌ବେଦର ସୃଷ୍ଟି ଆରମ୍ଭରୁ ଏହା ଥିଲା କି ? ଏହି ପ୍ରଶ୍ନଟି ଯେପରି ଜଟିଳ, ଏହାର ସମାଧାନ ଖୋଜି ବାହାର କରିବା ମଧ୍ୟ ସେହିପରି ସମଧିକ ରୋମାଞ୍ଚକର ତଥା କୌତୂହଳୋଦ୍ଦୀପକ । ଏହାର ସମାଧାନର ମାର୍ଗରେ ଗ୍ରତିକଲାବେଳେ ଆମେ ଦେଖିପାରିବା କିପରି ଏହି 'ବର୍ଣ୍ଣଧର୍ମ'ର ପୃଷ୍ଠଭୂମିରେ ରହିଛି ସହସ୍ର ସହସ୍ର ବର୍ଷ ଧରି ବୈଦିକ ଆର୍ଯ୍ୟମାନଙ୍କ ସାଂସ୍କୃତିକ ଅଭ୍ୟୁଦୟ ଓ ସାମାଜିକ ସଙ୍ଗଠନର ଇତିହାସ । 'ବର୍ଣ୍ଣ' ଅର୍ଥ ଆମେ ସାଧାରଣରେ ରଙ୍ଗ ବୋଲି ଗ୍ରହଣ କରିଥାଉ । ତେଣୁ କେତେକ ତତ୍ତ୍ୱବିତଙ୍କ ମତରେ ଏହି ରଙ୍ଗର ବୈଭିନ୍ନ୍ୟକୁ ନେଇ ସର୍ବପ୍ରଥମେ ବର୍ଣ୍ଣ-ବିଭାଗର ସୃଷ୍ଟି ହୋଇଥିଲା । ସେମାନଙ୍କ ମତରେ ପ୍ରଥମେ ଥିଲା ଦୁଇଟି ବର୍ଣ୍ଣ, ଯଥା, 'ଆର୍ଯ୍ୟବର୍ଣ୍ଣ' ଓ 'ଦାସବର୍ଣ୍ଣ' । ଗୋରାଲୋକମାନେ ଥିଲେ 'ଆର୍ଯ୍ୟବର୍ଣ୍ଣ'ର ଏବଂ ଆର୍ଯ୍ୟେତର କଳା ଲୋକମାନେ ଥିଲେ 'ଦାସବର୍ଣ୍ଣ'ର । ସେମାନେ ଦେହର ରଙ୍ଗ ଭେଦରେ 'ଆର୍ଯ୍ୟ' ଓ 'ଦାସ' ଗୋଷ୍ଠୀର ସ୍ଥିତିକୁ ନିର୍ଣ୍ଣୟ କରିଥାନ୍ତି । ଏହି ମତ ଖ୍ୟାପନ କରୁଥିବା ବ୍ୟକ୍ତି-ମାନଙ୍କ ମଧ୍ୟରେ ଘୁର୍ଯେ ହେଉଛନ୍ତି ଅନ୍ୟତମ । ତାଙ୍କ ମତରେ :

> "The white Aryan people constituted the Arya Varna and the dark Dasas similarly constituted the Dasa Varna." (୨୫)

ପ୍ରଥମେ 'ଆର୍ଯ୍ୟବର୍ଣ୍ଣ' ଓ 'ଦାସବର୍ଣ୍ଣ' ବୋଲି ଦୁଇଟି ବର୍ଣ୍ଣ ଥିଲା ବୋଲି ଏହି ତତ୍ତ୍ୱବିଦମାନେ ଯାହା କୁହନ୍ତି, ତାହା ଠିକ୍ । କିନ୍ତୁ ଦେହର ରଙ୍ଗ ଭେଦରେ ସେମାନେ ଆର୍ଯ୍ୟ-ଗୋଷ୍ଠୀ ଓ ଦାସ-ଗୋଷ୍ଠୀଦ୍ୱୟଙ୍କୁ ଯେଉଁଭଳି ଭାବରେ ବିଭାଗୀକରଣ କରନ୍ତି ତାହା ଠିକ୍ ନୁହେଁ । 'ଆର୍ଯ୍ୟ' ଓ 'ଦାସ' ଶବ୍ଦଦ୍ୱୟ କିପରି ଭାବରେ ଗୁଣାତ୍ମକ ଅର୍ଥରେ ପ୍ରଯୁକ୍ତ, ସେ ବିଷୟରେ ବିଶଦ ଆଲୋଚନା ଏହି ପୁସ୍ତକର ପ୍ରଥମ ଭାଗସ୍ଥ 'ଆର୍ଯ୍ୟ ଦସ୍ୟୁ ଦାସ' ଶୀର୍ଷକ ପରିଚ୍ଛେଦରେ କରାଯାଇଛି । ଅତଏବ, ସେହି ବିଚାରରୁ ବୁଝା ପଡ଼ିବ ଯେ ଯେଉଁମାନେ ଆର୍ଯ୍ୟ-ଜୀବନଧାରାର ଅନୁବର୍ତ୍ତୀ ଥିଲେ ସେମାନଙ୍କୁ କୁହାଯାଉଥିଲା 'ଆର୍ଯ୍ୟବର୍ଣ୍ଣ' । ଅନ୍ୟ ପକ୍ଷରେ ଯେଉଁମାନେ ଆର୍ଯ୍ୟେତର ଦାସ-ଜୀବନଧାରାର ଅନୁବର୍ତ୍ତୀ ଥିଲେ, ସେମାନଙ୍କୁ କୁହାଯାଉଥିଲା ଦାସ-ବର୍ଣ୍ଣ ।

ଭାରତ ବର୍ଷରେ ଆର୍ଯ୍ୟ-ଦାସ ସଂଘର୍ଷ ଚାଲିବା ପରେ ଦାସମାନେ କିପରି ଭାବରେ ଆର୍ଯ୍ୟମାନଙ୍କ ଦ୍ୱାରା ସଂପୂର୍ଣ୍ଣ ରୂପେ ପରାଭୂତ ହୋଇସାରି ସେମାନଙ୍କ ବଶ୍ୟତା ସ୍ୱୀକାର କଲେ ଏବଂ କାଳକ୍ରମେ ସେମାନଙ୍କ ସହିତ ଏକାଠି ରହିବା ପାଇଁ ଆଗେଇ ଆସିଲେ, ସେ କଥା ପୂର୍ବରୁ ଉପରୋକ୍ତ ସ୍ୱତନ୍ତ୍ର ପରିଚ୍ଛେଦରେ କୁହାଯାଇଛି । ଏହି ପରିସ୍ଥିତି ଯେତେବେଳେ ଆସିଲା, ସେତେବେଳେ ବୈଦିକ ଆର୍ଯ୍ୟମାନେ ଦାସମାନଙ୍କୁ ମିଧା ହଲଖ ଭାବରେ ଆର୍ଯ୍ୟ-ସମାଜକୁ ନନେଇ ସେମାନଙ୍କୁ ଡ଼ାକଲେ 'ଦାସ-ବର୍ଣ୍ଣ' ବୋଲି । ଏଭଳି ବ୍ୟବସ୍ଥାରେ ଆର୍ଯ୍ୟମାନଙ୍କ ଉଚ୍ଚମନ୍ୟତା ଓ ଦାସମାନଙ୍କ ହୀନମନ୍ୟତା ପ୍ରକଟିତ ହେଉଥିଲା । ଏହି ଦୁଇ ବର୍ଣ୍ଣଙ୍କୁ ସମାଜର ସାର୍ବିକ ହିତ ଦୃଷ୍ଟିରୁ ଯେଉଁ ମନୀଷୀମାନେ ପରସ୍ପରର ନିକଟକୁ ଆଣିବାର ଚେଷ୍ଟା କରିଥିଲେ, ସେମାନଙ୍କ ମଧ୍ୟରେ ଋଷି ଅଗସ୍ତ୍ୟ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି । ସେଥିପାଇଁ ଋଗ୍‌ବେଦରେ ତାଙ୍କୁ କୁହାଯାଇଛି 'ଆର୍ଯ୍ୟବର୍ଣ୍ଣ' ଓ 'ଦାସ-ବର୍ଣ୍ଣ'ର ରକ୍ଷକ । (୨୬) ଋଷି ଅଗସ୍ତ୍ୟ ତାଙ୍କ ସ୍ତ୍ରୀ ଲୋପାମୁଦ୍ରାଙ୍କ ସହିତ ଘଞ୍ଚ ଅରଣ୍ୟ ଓ ଦୁର୍ଗମ ଗିରିପଥ ଦେଇ ବୁଲି ବୁଲି କିପରି ଭାବରେ ଆର୍ଯ୍ୟେତର ଗୋଷ୍ଠୀ ମଧ୍ୟରେ ଆର୍ଯ୍ୟଧର୍ମର ପ୍ରଚାର ଓ ପ୍ରସାର କରିଥିଲେ, ତାହାର ଭୂରି ଭୂରି ପ୍ରମାଣ ଆମେ ଋଗ୍‌-ବେଦରେ ପାଇଥାଉ । ଆର୍ଯ୍ୟସଂସ୍କୃତିକୁ ଦକ୍ଷିଣ ଭାରତକୁ ନେଇ ଯିବାରେ ସେ ହେଉଛନ୍ତି ପ୍ରଥମ ବ୍ୟକ୍ତି । ସେଥିପାଇଁ ସେ ଆର୍ଯ୍ୟ ଓ ଦାସ ଉଭୟ ଗୋଷ୍ଠୀର ପ୍ରିୟପାତ୍ର ଓ ବିଶ୍ୱାସଭାଜନ ହୋଇ ପାରିଥିଲେ ଏବଂ ତାଙ୍କୁ ଯଥାର୍ଥରେ କୁହା ଯାଉଥିଲା 'ଆର୍ଯ୍ୟବର୍ଣ୍ଣ' ଓ 'ଦାସବର୍ଣ୍ଣ'ର ରକ୍ଷକ ବୋଲି ।

କାଳକ୍ରମେ କର୍ମର ବିଭାଗ ନେଇ ଆର୍ଯ୍ୟମାନେ ନିଜକୁ ତିନି ଶ୍ରେଣୀରେ ବିଭକ୍ତ କଲେ । ଏଗୁଡ଼ିକ ହେଲେ, ବ୍ରହ୍ମ, ରାଜନ୍ୟ ଓ ବୈଶ୍ୟ । କର୍ମରେ କୁଶଳତା ହାସଲ କରିବାର ଲକ୍ଷ୍ୟ ରଖି ଏହି ବିଭାଗଗୁଡ଼ିକର ସୃଷ୍ଟି ହୋଇଥିଲା । ଏଠାରେ ମନେ ରଖିବାକୁ ହେବ ଯେ ପ୍ରାଥମିକ ଅବସ୍ଥାରେ ଋଗ୍‌ବେଦରେ ବ୍ରାହ୍ମଣ-ବର୍ଣ୍ଣକୁ 'ବ୍ରହ୍ମ' ବୋଲି କୁହାଯାଉଥିଲା । ସେହିପରି କ୍ଷତ୍ରିୟ ବର୍ଣ୍ଣକୁ ରାଜନ୍ୟ ବୋଲି କୁହାଯାଉଥିଲା ; ପରେ ଏହାର ନାମ ହେଲା

କ୍ଷତ୍ରିୟ । ଋଗ୍‌ବେଦର ୧୦ମ ମଣ୍ଡଳସ୍ଥ 'ପୁରୁଷ ସୂକ୍ତ'ରେ ହିଁ ଆମେ ପ୍ରଥମ ଥର ପାଇଁ 'ବ୍ରାହ୍ମଣ' ନାମରେ ଉଲ୍ଲେଖ ପାଉଥାଉଁ । ତତ୍ତ୍ୱଜ୍ଞମାନଙ୍କ ମତରେ ଏହି ଦଶମ ମଣ୍ଡଳଟି ଅନ୍ୟାନ୍ୟ ମଣ୍ଡଳଗୁଡ଼ିକ ଅପେକ୍ଷାକୃତ ଅର୍ବାଚୀନ । ଅତଏବ 'ବ୍ରାହ୍ମଣ' ନାମର ଉଦ୍ଭବ ପରେ ହୋଇଛି ବୋଲି ଆମକୁ ଗ୍ରହଣ କରିବାକୁ ହେବ । ଏହି ତିନି ବର୍ଣ୍ଣର କ'ଣ କ'ଣ କର୍ତ୍ତବ୍ୟ ତାହା ଋଗ୍‌ବେଦରେ (ପ୍ରାକ୍‌-ଦଶମ ମଣ୍ଡଳ) ଅନେକତ୍ର ବର୍ଣ୍ଣନା କରାଯାଇଛି । (୨୭) ଏଥିରୁ ପ୍ରମାଣ ମିଳୁଛି ଯେ ଏହି ବର୍ଣ୍ଣବିଭାଗ କେବଳ ଗୁଣ ଓ କର୍ମକୁ ଭିତ୍ତି କରି କରାଯାଇଥିଲା । କିନ୍ତୁ ସେ ପର୍ଯ୍ୟନ୍ତ 'ଦାସବର୍ଣ୍ଣ'ର ଲୋକମାନେ ଆର୍ଯ୍ୟମାନଙ୍କ ସାମାଜିକ ଗୋଷ୍ଠୀର ଅନ୍ତର୍ଭୁକ୍ତ ହୋଇ ନଥିଲେ । ତେଣୁ ଶୂଦ୍ର-ବର୍ଣ୍ଣ କଥା ପ୍ରାଥମିକ ଅବସ୍ଥାରେ ଋଗ୍‌ବେଦରେ ଉଲ୍ଲିଖିତ ହୋଇ ନାହିଁ । କାଳକ୍ରମେ ଅଗସ୍ତ୍ୟ ମୁନିଙ୍କ ଭଳି ମନୀଷୀମାନଙ୍କ ଉଦ୍ୟମ ଫଳରେ ଆର୍ଯ୍ୟ ଓ ଦାସମାନଙ୍କର ସଦ୍ଭାବସ୍ଥାନ ଏକ ସାଂସ୍କୃତିକ ମିଳନର ରୂପ ନେବାକୁ ବସିଲା । ଦାସମାନେ ମଧ୍ୟ ଆର୍ଯ୍ୟମାନଙ୍କ ସମାଜକୁ ଆସିଗଲେ । ଅବଶ୍ୟ ସମାଜରେ ସେମାନଙ୍କୁ ନିମ୍ନତମ ସ୍ଥାନ ଦିଆଗଲା । ସେମାନଙ୍କୁ କୁହାଗଲା ଶୂଦ୍ର । ଋଗ୍‌ବେଦର ପୁରୁଷସୂକ୍ତରେ ଆମେ ଏହି ଶୂଦ୍ର ନାମର ଉଲ୍ଲେଖ ସର୍ବପ୍ରଥମେ ପାଉଥାଉଁ । ସେଠାରେ ବିରାଟ ପୁରୁଷଙ୍କ ଦେହର ବିଭିନ୍ନ ଅଂଶରୁ ଚାରି ବର୍ଣ୍ଣର ସୃଷ୍ଟି କିପରି ହେଲା, ସେହି ବିଷୟ ବର୍ଣ୍ଣନାକ୍ରମରେ କୁହାଯାଇଛି :

"ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍‌ବାହୂ ରାଜନ୍ୟଃ କୃତଃ ।
ଊରୂ ତଦସ୍ୟ ଯଦ୍‌ବୈଶ୍ୟଃ ପଦ୍‌ଭ୍ୟାଂ ଶୂଦ୍ରୋ ଅଜାୟତ ।।

ଅର୍ଥାତ୍‌ ଏହାଙ୍କ (ବିରାଟ ପୁରୁଷଙ୍କ) ମୁଖରୁ ବ୍ରାହ୍ମଣଙ୍କ ସୃଷ୍ଟି ହେଲା ; ଦୁଇ ବାହୁରୁ ରାଜନ୍ୟଙ୍କ (କ୍ଷତ୍ରିୟ) ସୃଷ୍ଟି ହେଲା ; ଦୁଇ ଉରୁରୁ ବୈଶ୍ୟଙ୍କ ସୃଷ୍ଟି ହେଲା ଏବଂ ଦୁଇ ପାଦରୁ ଶୂଦ୍ରଙ୍କ ସୃଷ୍ଟି ହେଲା ।

ପାଶ୍ଚାତ୍ୟ ପଣ୍ଡିତମାନେ ଏବଂ ସେମାନଙ୍କୁ ଅନୁକରଣ କରି କେତେକ ଭାରତୀୟ ପଣ୍ଡିତ ମଧ୍ୟ ଏହି ଉକ୍ତିକୁ ଥଟ୍ଟାରେ ଉଡ଼ାଇ ଦିଅନ୍ତି ଏବଂ ଏହାକୁ କଳ୍ପନାର ଏକ ବିଳାସ ବୋଲି ଆଖ୍ୟା ଦିଅନ୍ତି । ମାର୍କସ୍‌ବାଦରେ ବିଶ୍ୱାସ କରୁଥିବା କେତେକ ପଣ୍ଡିତ ଆଉ ଟିକିଏ ଆଗେଇ ଯାଇ କୁହନ୍ତି ଯେ ଏ ପ୍ରକାର ବର୍ଣ୍ଣ-ବିଭାଜନ ବୈଦିକ ଆର୍ଯ୍ୟମାନଙ୍କର ମଣିଷ ମଣିଷ ଭିତରେ ଭେଦଭାବର ସୂଚନା ଦେଉଛି ଏବଂ ଏହା ସେମାନଙ୍କ ପ୍ରାଚୀନପନ୍ଥୀ ପ୍ରତିକ୍ରିୟାଶୀଳ ଚିନ୍ତାଧାରାର ନିଦର୍ଶନ । ଏମାନେ କିନ୍ତୁ କେହି ଠିକ୍ କଥା କୁହନ୍ତି ନାହିଁ । ଶଂସିତ ମନ୍ତ୍ରଟି ହେଉଛି ପ୍ରତୀକଧର୍ମୀ । ପ୍ରକୃତରେ କୌଣସି ଜଣେ ପୁରୁଷଙ୍କର ବିଭିନ୍ନ ଅଙ୍ଗରୁ ଏମାନଙ୍କର ଉଦ୍ଭବ ହୋଇନାହିଁ । ଏହି ମନ୍ତ୍ରଟିରେ ଚାରିବର୍ଣ୍ଣଙ୍କ ଠାରେ ନିହିତ ଥିବା ଚାରି ପ୍ରକାର ବିଶାଚ୍ଛିଦ ଗୁଣ ଉପରେ ହିଁ ଗୁରୁତ୍ୱ ଆରୋପ କରାଯାଇଛି । ଯେ ଶୁଦ୍ଧବାଣୀ କହିବେ, ଶୁଦ୍ଧ

ଚିନ୍ତା କରିବେ, ସେ ହେଲେ ବ୍ରାହ୍ମଣ । ଯେ ବାହୁ-ବଳରେ ଦେଶକୁ ରକ୍ଷା କରିବେ ସେ ହେଲେ କ୍ଷତ୍ରିୟ । ଯେଉଁମାନଙ୍କର 'ଊରୁ'ର ବଳିଷ୍ଠତା ଅଛି, ବା ଯେଉଁମାନେ ଭଲ ଭାବରେ ବ୍ୟବସାୟ, ବେପାର ବଣିଜ କରିପାରିବେ ସେମାନେ ହେଲେ ବୈଶ୍ୟ । ଯେଉଁମାନେ ସେବା କାର୍ଯ୍ୟ କରିବାରେ ଦକ୍ଷ, ସେମାନେ ହେଲେ ଶୂଦ୍ର । ଗୀତାରେ ତ ଭଗବାନ୍ ଶ୍ରୀକୃଷ୍ଣ ଠିକ୍ ଏହି ମର୍ମରେ କହିଛନ୍ତି :

"ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ"

ଅର୍ଥାତ୍ ଗୁଣ ଓ କର୍ମର ବିଭାଗକୁ ନେଇ ମୁଁ ଚାରି ବର୍ଣ୍ଣର ସୃଷ୍ଟି କରିଛି । ବାସ୍ତବିକ ସମାଜରେ ସବୁବେଳେ ଚାରି ଶ୍ରେଣୀର ଲୋକ ରହିଥାନ୍ତି ; ଏବେ ମଧ୍ୟ ଅଛନ୍ତି । ଗୋଟିଏ ଗୋଷ୍ଠୀ ଜ୍ଞାନ ଚର୍ଚ୍ଚା କରନ୍ତି । ସେମାନେ ହେଲେ ବ୍ରାହ୍ମଣ । ଗୋଟିଏ ଗୋଷ୍ଠୀ ଦେଶକୁ ରକ୍ଷା କରିଥାନ୍ତି । ସେମାନେ ହେଲେ କ୍ଷତ୍ରିୟ । ଗୋଟିଏ ଗୋଷ୍ଠୀ ବାଣିଜ୍ୟ ବ୍ୟବସାୟ, ଶିଳ୍ପ ଆଦିରେ ମାତିଥାନ୍ତି । ସେମାନେ ହେଲେ ବୈଶ୍ୟ । ଆଉ ଚତୁର୍ଥ ଗୋଷ୍ଠୀଟି ଥାଆନ୍ତି ଚାକିରିଆ ଶ୍ରେଣୀର । ନିମ୍ନବର୍ଗର ଚାକିରିଆ ଠାରୁ ଆରମ୍ଭ କରି ଉଚ୍ଚ ବର୍ଗର ଚାକିରିଆ ପର୍ଯ୍ୟନ୍ତ ସମସ୍ତେ ଏଥିର ଅନ୍ତର୍ଭୁକ୍ତ । ସେମାନେ ହେଲେ ଶୂଦ୍ର । ପ୍ଲାଟୋ ବି ତ ସମାଜକୁ ଚାରି ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ବିଭକ୍ତ କରିଥିଲେ । ପ୍ରାଚୀନ ଇରାନରେ ମଧ୍ୟ ଏହିପରି ଚାରି ଗୋଷ୍ଠୀ ଥିଲେ । ସେମାନେ ହେଲେ ଅଥ୍ରବନ୍ (ବ୍ରାହ୍ମଣ), ରଥେଷ୍ଟାର (କ୍ଷତ୍ରିୟ), ବସ୍ତ୍ରୋସ (ବୈଶ୍ୟ) ଏବଂ ହୁତୋକ୍ଷ (ଶୂଦ୍ର) । ତା'ହେଲେ ବୈଦିକ ଆର୍ଯ୍ୟମାନଙ୍କର ଚାରି ବର୍ଣ୍ଣକୁ ସମାଲୋଚନା କରିବାର ଅବକାଶ ରହୁଛି କେଉଁଠି ? ବରଂ ବିଭିନ୍ନ ବର୍ଣ୍ଣମାନଙ୍କ ମଧ୍ୟରେ ଯୋଗ୍ୟତାକୁ ଭିତ୍ତି କରି କର୍ମଗୁଡ଼ିକ ବାଣ୍ଟି ଦେବା ଫଳରେ କିପରି ଭାବରେ ଏକ ଶୃଙ୍ଖଳିତ ସାମାଜିକ ସ୍ଥିତି ମଧ୍ୟରେ ଦେଶ ଓ ଜାତିର ସାର୍ବିକ ଅଭ୍ୟୁଦୟ ସମ୍ଭବ ହୋଇ ପାରିଥିଲା, ତାହା ପରବର୍ତ୍ତୀ ଆଲୋଚନାରୁ ବୁଝାପଡ଼ିବ । କିନ୍ତୁ ଏହି ଯେଉଁ ବର୍ଣ୍ଣବିଭାଗ କରାଯାଇଥିଲା, ତାହା ଆଦୌ ଜନ୍ମଭିତ୍ତିକ ନଥିଲା । ବ୍ରାହ୍ମଣର ପୁଅ ବ୍ରାହ୍ମଣ କିମ୍ବା କ୍ଷତ୍ରିୟର ପୁଅ କ୍ଷତ୍ରିୟ ହେବ ବୋଲି କିଛି ଠିକ୍ ଠିକଣା ନଥିଲା । ଋଗ୍‌ବେଦରେ ଗୋଟିଏ ମନ୍ତ୍ରରେ ଋଷି କହିଛନ୍ତି କିପରି ସେ ଜଣେ କବି ହୋଇଛନ୍ତି, ଅଥଚ ତାଙ୍କ ବାପା ଥିଲେ ଜଣେ ବୈଦ୍ୟ ଏବଂ ଅଜା ଥିଲେ ଜଣେ ପଥୁରିଆ । (୨୭-କ) ମନୁ ମଧ୍ୟ ଠିକ୍ ଏହି ମର୍ମରେ କହିଛନ୍ତି । ତାଙ୍କ ମତରେ :

"ଆର୍ଯ୍ୟାନାର୍ଯ୍ୟୌ ଭବେଦ୍ ଗୁଣୈଃ ।" (୨୭-ଖ)

ଅର୍ଥାତ୍ ଗୁଣଭିତ୍ତିରେ ଆର୍ଯ୍ୟ ଓ ଅନାର୍ଯ୍ୟଙ୍କୁ ନିର୍ଣ୍ଣୟ କରିବାକୁ ହେବ । ଅତଏବ, ବର୍ଣ୍ଣବିଭାଗ ଗୁଣ ଓ କର୍ମକୁ ନେଇ କରାଯାଇଥିଲା ।

ସମାଜକୁ ଚାରି ଶ୍ରେଣୀରେ ବିଭକ୍ତ କରିବାରେ ଆର୍ଯ୍ୟମାନେ ଏତେ ତତ୍ପରତା ଦେଖାଇଥିଲେ ଯେ ସେମାନେ ଦେବତାମାନଙ୍କ ଠାରେ ମଧ୍ୟ ଏହିପରି ଚାରି ଶ୍ରେଣୀବିଭାଗ ଲକ୍ଷ୍ୟ କରି ପାରିଥିଲେ । ସାୟଣାଚାର୍ଯ୍ୟ ଐତରେୟ ବ୍ରାହ୍ମଣର ବ୍ୟାଖାନୁକ୍ରମରେ ଏକଥା ସ୍ପଷ୍ଟ ଭାବରେ କହିଛନ୍ତି । (୨୮) ଆହୁରି କୌତୂହଳୋଦ୍ଦୀପକ କଥା ହେଲା, ସେମାନେ ପଶୁମାନଙ୍କ ମଧ୍ୟରେ ବି ଏଭଳି ଶ୍ରେଣୀବିଭାଗ କରିଥିଲେ । ଶତପଥ ବ୍ରାହ୍ମଣରେ ଗୋଟିଏ ସ୍ଥାନରେ କୁହାଯାଇଛି :

ବ୍ରହ୍ମ ବା ଅଜଃ କ୍ଷତ୍ରଂ ବା ଅଶ୍ୱଃ
ବୈଶ୍ୟଶ୍ଚ ଶୂଦ୍ରଶ୍ଚାନୁରାସଭଃ । (୨୯)

ଅର୍ଥାତ୍ ଛେଳି ହେଉଛି ବ୍ରାହ୍ମଣ ; ଘୋଡ଼ା ହେଉଛି କ୍ଷତ୍ରିୟ ; ଏବଂ ଗଧ ହେଉଛି ବୈଶ୍ୟ ଓ ଶୂଦ୍ର । ସେହିପରି ପକ୍ଷୀମାନଙ୍କ ମଧ୍ୟରେ ବି ବିଭାଗୀକରଣ କରାଯାଇଥିଲା । ସମସ୍ତ ଜୀବମାନଙ୍କ ମଧ୍ୟରେ ତଥା ଦେବତାମାନଙ୍କ ମଧ୍ୟରେ ଏହି ଯେଉଁ ଚାରି ଭାଗରେ ବିଭାଗୀକରଣ କରାଯାଇଥିଲା, ତାହା ଯେ ଥିଲା ଗୁଣଭିତ୍ତିକ, ଏଥିରେ ସନ୍ଦେହ ନାହିଁ । ସେହି ଦୃଷ୍ଟିରୁ ବିଚାର କଲେ ଆମେ ବୁଝି ପାରିବା ଯେ ବୈଦିକ ଆର୍ଯ୍ୟମାନଙ୍କର ପ୍ରାଥମିକ ଅବସ୍ଥାରେ ଚାରି ବର୍ଣ୍ଣର ବିଭାଗ ଥିଲା ଗୁଣଭିତ୍ତିକ ; ଜନ୍ମଭିତ୍ତିକ କଦାପି ନୁହେଁ । କର୍ମ ବଳରେ କ୍ଷତ୍ରିୟ ମଧ୍ୟ ବ୍ରାହ୍ମଣ ହୋଇ ପାରୁଥିଲା ଏବଂ ଋଷିତ୍ୱର ଅଧିକାରୀ ହୋଇ ପାରୁଥିଲା । ରାଜା ଜନକ, ପ୍ରବାହଣ, ରଥବୀତି ହେଉଛନ୍ତି ଏହାର ନିଦର୍ଶନ । ଖାଲି ସେତିକି ନୁହେଁ, କର୍ମ ବଳରେ ଶୂଦ୍ର ମଧ୍ୟ ଋଷିତ୍ୱର ମର୍ଯ୍ୟାଦା ହାସଲ କରିପାରୁଥିଲା । ଋଷି କକ୍ଷିବାନ୍, ତାଙ୍କ କନ୍ୟା ଋଷିକା ଘୋଷା, ଇତରାଙ୍କ ପୁତ୍ର ମହୀଦାସ, ଯେ କି ଐତରେୟ ନାମରେ ଖ୍ୟାତ, ହେଉଛନ୍ତି ଗୋଟିଏ ଗୋଟିଏ ନିଦର୍ଶନ । ଏହିସବୁ ଆଲୋଚନାରୁ ଜଣାଯିବ ଯେ ପ୍ରାଥମିକ ଅବସ୍ଥାରେ ବୈଦିକ ସମାଜରେ ଜାତିଭେଦ ପ୍ରଥା ଆଦୌ ନଥିଲା । ଏହା ଥିଲା ବର୍ଣ୍ଣଭେଦରେ ସୀମିତ ଯଦ୍ଦ୍ୱାରା ସମାଜକୁ କେତୋଟି ଶ୍ରେଣୀରେ ବିଭକ୍ତ କରାଯାଇଥିଲା । ପ୍ରଥମେ ଥିଲେ ଆର୍ଯ୍ୟ ଉଚ୍ଚ ବର୍ଣ୍ଣର ତିନି ଶ୍ରେଣୀ ଏବଂ ତତ୍ପରେ ସେଥି ସହିତ ସାମିଲ ହେଲେ ଶୂଦ୍ର-ବର୍ଣ୍ଣ । ଏହି ସ୍ଥିତିକୁ ଲକ୍ଷ୍ୟ କରି ଭାର୍ଗବ ଯାହା କହିଛନ୍ତି, ତାହା ପ୍ରଣିଧାନଯୋଗ୍ୟ :

> "The Aryan society of the Vedic age had no caste system but was divided into three classes of priests, rulers and commoners." (୨୯-କ)

ଏହି commoners ବା ସାଧାରଣ ଲୋକଙ୍କ ମଧ୍ୟରେ ଥିଲେ ଉଭୟ ବୈଶ୍ୟ ଓ ଶୂଦ୍ର ଅନ୍ତର୍ଭୁକ୍ତ ।

ପ୍ରାଥମିକ ଅବସ୍ଥାରେ ତ ଆର୍ଯ୍ୟମାନଙ୍କ ମଧ୍ୟରେ ବର୍ଣ୍ଣଭେଦର ବିଷୟ ଉପରୋକ୍ତ ମତେ ଖୋଲା ଥିଲା ଏବଂ ଏହା କେବଳ ଗୁଣକୁ ଅନୁସରି କରି କରାଯାଉଥିଲା । ଏହା କେତେବେଳେ ପୁଣି ଦୃଢତା ପାଇଲା ? କେତେବେଳେ ପୁଣି ଏହାକୁ ଜନ୍ମ ସହିତ ଯୋଡ଼ି ଦିଆଗଲା ? କେତେବେଳେ ପୁଣି ଏହାକୁ ଜାତି ଅର୍ଥରେ ଗ୍ରହଣ କରାଗଲା ? କେଉଁ ପରିସ୍ଥିତିରେ ବିଭିନ୍ନ ଜାତି ଓ ଉପଜାତିର ଉଦ୍ଭବ ହେଲା ? ଏହା ନିଶ୍ଚିତ ଭାବରେ କେତେକ କୌତୂହଳପୂର୍ଣ୍ଣ ପ୍ରଶ୍ନ । ସପ୍ତସିନ୍ଧୁ ଅଞ୍ଚଳ ଛାଡ଼ି ଆର୍ଯ୍ୟମାନେ କ୍ରମେ କ୍ରମେ ପୂର୍ବାଭିମୁଖରେ ଗତି କରିବା କଥା ପୂର୍ବରୁ ଏହି ପୁସ୍ତକର ପ୍ରଥମ ଭାଗସ୍ଥ ଏକ ସ୍ୱତନ୍ତ୍ର ପରିଚ୍ଛେଦରେ କୁହାଯାଇଛି । ଉଭୟ ସପ୍ତସିନ୍ଧୁ ଅଞ୍ଚଳରେ ଓ ସପ୍ତସିନ୍ଧୁ ବାହାରେ ସେମାନଙ୍କୁ ଆର୍ଯ୍ୟେତର ଦାସ-ସଂସ୍କୃତି ସହିତ ସମ୍ମୁଖୀନ ହେବାକୁ ପଡ଼ିଥିଲା । କାଳକ୍ରମେ ଏହି ଉଭୟ ଗୋଷ୍ଠୀ ସହାବସ୍ଥାନ ନୀତି ଅବଲମ୍ବନ କରି ଶାନ୍ତିପୂର୍ଣ୍ଣ ଜୀବନ ଯାପନ କରିବାକୁ ଲାଗିଲେ । ଏ ପ୍ରକାର ପରିସ୍ଥିତି ବିଶେଷ କରି ବିଦ୍ୟମାନ ଥିଲା, ଆର୍ଯ୍ୟମାନଙ୍କ ପୂର୍ବାଭିମୁଖରେ ଗତି କରିବା ସମୟରେ । ଏହା ଫଳରେ ଦୁଇ ସଂସ୍କୃତିର ମିଳନ ଘଟିଲା । ପ୍ରାଚୀନପନ୍ଥୀ ଶୁଦ୍ଧବାଦୀ ଗୋଷ୍ଠୀ ଯେତେ ଚେଷ୍ଟା କଲେ ମଧ୍ୟ ଏହି ସାଂସ୍କୃତିକ ମିଶ୍ରଣକୁ ପ୍ରତିହତ କରିପାରିଲେ ନାହିଁ । ଆର୍ଯ୍ୟ ଓ ଦାସମାନଙ୍କ ମଧ୍ୟରେ ବେଳେ-ବେଳେ ପାରସ୍ପରିକ ବିବାହ ମଧ୍ୟ ସଂଘଟିତ ହେବାକୁ ଲାଗିଲା । ଉଚ୍ଚ ତିନି ବର୍ଣ୍ଣ, ଯଥା ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କ ମଧ୍ୟରେ ବି ଏ ପ୍ରକାର ବୈବାହିକ ବନ୍ଧନ ସଂଘଟିତ ହେବାକୁ ଲାଗିଲା । ଏହି ବିବାହ ଥିଲା ଦୁଇ ପ୍ରକାର । ପୁରୁଷ ଉଚ୍ଚ ବର୍ଣ୍ଣର ଓ ସ୍ତ୍ରୀ ନୀଚ ବର୍ଣ୍ଣର ଥିଲେ, ସେହି ବିବାହକୁ କୁହାଯାଉଥିଲା 'ଅନୁଲୋମ' ବିବାହ । ଏହା ଆର୍ଯ୍ୟମାନଙ୍କ ପାଇଁ ନିଷିଦ୍ଧ ନଥିଲା । ବ୍ରହ୍ମର୍ଷି ଅଗସ୍ତ୍ୟ କ୍ଷତ୍ରିୟକନ୍ୟା ଲୋପାମୁଦ୍ରାଙ୍କୁ ବିବାହ କରିଥିବା ଏହାର ନିଦର୍ଶନ । ସ୍ତ୍ରୀ ଉଚ୍ଚ ବର୍ଣ୍ଣର ଓ ପୁରୁଷ ନୀଚ ବର୍ଣ୍ଣର ହେଲେ, ଏ ପ୍ରକାର ବିବାହକୁ କୁହାଯାଉଥିଲା 'ପ୍ରତିଲୋମ' ବିବାହ, ଯାହା କି ଆର୍ଯ୍ୟମାନଙ୍କ ପାଇଁ ନିଷିଦ୍ଧ ଥିଲା । ମଣିଷର ମନ ଏମିତି ଯେ ସେ ମନେ ମନେ ନିଷିଦ୍ଧ ବସ୍ତୁଟିକୁ ଖୁବ୍ ସ୍ୱାଦ୍ୟ ବୋଲି ଭାବିଥାଏ ଏବଂ ତାହା ପାଇବା ପାଇଁ ଆଗ୍ରହୀ ହୋଇ ଉଠେ । ଏହି ପରିପ୍ରେକ୍ଷୀରେ ବାରମ୍ବାର ନିଷେଧ ସତ୍ତ୍ୱେ ଆର୍ଯ୍ୟସମାଜରେ ଅନେକ ପ୍ରତିଲୋମ ବିବାହ ଅନୁଷ୍ଠିତ ହେବାକୁ ଲାଗିଲା । ଏହିଭଳି ଭାବରେ ଅନୁଲୋମ ଓ ପ୍ରତିଲୋମ ବିବାହ ଫଳରେ ଯେଉଁ ସନ୍ତାନସନ୍ତତିମାନେ ଜାତ ହେଲେ ସେମାନଙ୍କଠାରେ ମୌଳିକ ଆର୍ଯ୍ୟ-ସ୍ୱଭାବ ଓ ଆର୍ଯ୍ୟ-ଗୁଣ ରହିଲା ନାହିଁ । ତେଣୁ ସେମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଶ୍ରେଣୀବିଭାଗର ଆବଶ୍ୟକତା ପଡ଼ିଲା । ଏହି ପରି-ପ୍ରେକ୍ଷୀରେ ମୌଳିକ ଚାରି ବର୍ଣ୍ଣରୁ ନାନା ପ୍ରକାର ଜାତି, ଉପଜାତିର ସୃଷ୍ଟି ହେଲା ଏବଂ ଯୁଗ ଯୁଗ ଧରି ଗଢ଼ିଆସୁଥିବା ଏହି ପ୍ରକାର ସ୍ଥିତି ଯଜୁର୍ବେଦର ରଚନା ବେଳକୁ ଖୁବ୍ ଦୃଢ଼ ହୋଇ ଯାଇଥିଲା । ତାହାକୁ ଲକ୍ଷ୍ୟ କରି ଆପ୍ତେ ଯଥାର୍ଥରେ କହିଛନ୍ତି :

"The transition from the casteless, through classified society of the bulk of the Rig-Veda, to elaborate caste system of the Yajur Veda is to be traced to the complication of life resulting from the migration of the Vedic Aryans from the Punjab to the east.'' (୩୦)

ଜାତିଭେଦର ଏହି ଯେଉଁ ଭିତ୍ତିଭୂମିଟି ଯଜୁର୍ବେଦ ସମୟରେ ପଡ଼ିଥିଲା, ତାହା କ୍ରମେ ଦୃଢ଼ରୁ ଦୃଢ଼ତର ହେବାକୁ ଲାଗିଲା । ଜାତି ଓ ଉପଜାତିମାନଙ୍କର ସଂଖ୍ୟା କ୍ରମେ କ୍ରମେ ବଢ଼ିବାକୁ ଲାଗିଲା । ପ୍ରତିଟି କାମ ପାଇଁ ପ୍ରାୟ ଗୋଟିଏ ଜାତିର ସୃଷ୍ଟି ହେଲା । ବାଜସନେୟୀ ସଂହିତାର ଶତରୁଦ୍ରୀୟ ସୂକ୍ତରେ ଆମେ ଦେଖିବାକୁ ପାଉଁ ଯେ ପ୍ରାୟ ସତୁରିଟି ବିଭିନ୍ନ କର୍ମର ଉଲ୍ଲେଖ ତହିଁରେ ଅଛି ଏବଂ ପ୍ରତିଟି କର୍ମକୁ ଅନୁସରଣ କରି ଗୋଟିଏ ଗୋଟିଏ ଜାତି କିମ୍ବା ଉପଜାତିର ସୃଷ୍ଟି ହୋଇଛି । (୩୧) କମାର, କୁମ୍ଭାର, ବଢ଼େଇ, ଭଣ୍ଡାରି, ଧୋବା ଆଦିଙ୍କର ସୃଷ୍ଟି ହୋଇଛି ଏହି ପୃଷ୍ଠଭୂମିରେ ।

ଏହି ଜାତିବିଭାଗ ପରେ ଏଭଳି ଉଗ୍ର ରୂପ ନେଲା ଯେ ଜାତିଭିତ୍ତିରେ ଦଣ୍ଡବିଧି ଆଇନ୍ ଓ ସ୍ୱତ୍ୱସମ୍ପର୍କୀୟ ଆଇନ ମଧ୍ୟ ପରିବର୍ତ୍ତିତ ହୋଇଗଲା । ଏ ପ୍ରକାର ଦୁଃଖଦ ସ୍ଥିତି ପ୍ରତି ଲକ୍ଷ୍ୟ କରି ଆପ୍ଟେ ଦେଇଥିବା ନିମ୍ନଲିଖିତ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ :

"The Dharma-Sutras show that caste distinction has outstripped its paper limits and has even invaded the field of civil and criminal law. The legal rate of interest and fines were graded according to the castes and a Shudra received capital punishment for a crime like homicide for which lighter punishments were awarded to the members of the higher castes.''(୩୨)

ଏ ପ୍ରକାର ବାଧ୍ୟବାଧକ ସାମାଜିକ ବ୍ୟବସ୍ଥାକୁ ଦୁର୍ବଳ କରିଦେଲା ସିନା; ଏହାକୁ ଗତିଶୀଳ ଓ ଜୀବନ୍ତ କରିବାରେ ଆଦୌ ସହାୟକ ହେଲା ନାହିଁ । ଏହା ସମାଜରେ ବଡ଼ସାନର ବାଛବିଚାର ଆଣି ଥୋଇଲା । ଏହା ଫଳରେ ସାମାଜିକ ଏକତାର ଧ୍ୱଂସଟି

ଦୁର୍ବଳ ହୋଇପଡ଼ିଲା । ଆର୍ଯ୍ୟମାନେ ଯେଉଁ ମୂଳ ଉଦ୍ଦେଶ୍ୟ ନେଇ ଚତୁର୍ବର୍ଣ୍ଣର ସୃଷ୍ଟି କରିଥିଲେ ତାହା ଲକ୍ଷ୍ୟଭ୍ରଷ୍ଟ ହୋଇଗଲା । ଜାତିବିଭାଗ ଏକ ସାମାଜିକ କଳଙ୍କ ଭାବରେ ଆସି ଠିଆହେଲା । 'ବର୍ଣ୍ଣ ବିଭାଗ' ସମାଜରେ ଜୀବନୀଶକ୍ତି ଭରି ଦେଉଥିବାବେଳେ 'ଜାତି ବିଭାଗ' ତାହାକୁ ଦୁର୍ବଳ କରି ଦେଲା ।

ଉପର୍ଯ୍ୟୁକ୍ତ ଆଲୋଚନା ଦୃଷ୍ଟେ ଆମେ ଚତୁର୍ବର୍ଣ୍ଣ ସମ୍ପର୍କରେ ନିମ୍ନଲିଖିତ ନିଷ୍କର୍ଷରେ ପହଞ୍ଚି ପାରିବା :

(କ) ପ୍ରଥମେ ଆର୍ଯ୍ୟମାନଙ୍କ ମଧ୍ୟରେ ଦୁଇଟି ବର୍ଣ୍ଣ ଥିଲା । ଗୋଟିଏ ହେଲା 'ଆର୍ଯ୍ୟବର୍ଣ୍ଣ' ଓ ଅପରଟି ହେଲା 'ଦାସବର୍ଣ୍ଣ' ।

(ଖ) ଏହି ବର୍ଣ୍ଣ ନିର୍ଣ୍ଣୟ ଦେହର ରଙ୍ଗକୁ ନେଇ କରା ଯାଉନଥିଲା । ଅନ୍ୟ ପକ୍ଷରେ ଏହା ଗୁଣ ଓ କର୍ମକୁ ନେଇ କରାଯାଉଥିଲା ।

(ଗ) 'ଆର୍ଯ୍ୟବର୍ଣ୍ଣ' ଓ 'ଦାସବର୍ଣ୍ଣ' ପରସ୍ପରଠାରୁ ପୃଥକ୍ ଥିଲେ ଏବଂ ସେମାନଙ୍କ ଜୀବନଧାରଣର ପ୍ରଣାଳୀ ମଧ୍ୟ ଥିଲା ପୃଥକ୍ । 'ଦାସ ବର୍ଣ୍ଣ' ଆର୍ଯ୍ୟବର୍ଣ୍ଣରେ ଅନ୍ତର୍ଭୁକ୍ତ ହୋଇ ପାରୁନଥିଲା । ଆର୍ଯ୍ୟବର୍ଣ୍ଣର ଲୋକେ ଦାସବର୍ଣ୍ଣର ଲୋକଙ୍କ ଠାରୁ ନିଜକୁ ବଡ଼ ବୋଲି ମନେ କରୁଥିଲେ ।

(ଘ) କାଳକ୍ରମେ 'ଆର୍ଯ୍ୟବର୍ଣ୍ଣ' ଓ 'ଦାସବର୍ଣ୍ଣ' ପରସ୍ପର ସହିତ ସଦ୍ଭାବସ୍ଥାନ ନୀତି ଅବଲମ୍ବନ କରି ରହିବାକୁ ଲାଗିଲେ ଏବଂ ସେମାନଙ୍କର ସାଂସ୍କୃତିକ ସମନ୍ୱୟ ସଂଘଟିତ ହେବାକୁ ଲାଗିଲା । 'ଆର୍ଯ୍ୟବର୍ଣ୍ଣ' ତିନି ଭାଗରେ ବିଭକ୍ତ ହେଲା । ଏହି ଭାଗଗୁଡ଼ିକ ହେଲା ବ୍ରହ୍ମ, ରାଜନ୍ୟ ଓ ବୈଶ୍ୟ । ସେହିପରି ଦାସବର୍ଣ୍ଣକୁ କୁହାଗଲା ଶୂଦ୍ର । ପରେ 'ବ୍ରହ୍ମ' ଓ 'ରାଜନ୍ୟ' ଯଥାକ୍ରମେ 'ବ୍ରାହ୍ମଣ' ଓ 'କ୍ଷତ୍ରିୟ' ନାମରେ ଅଭିହିତ ହେଲେ ।

(ଙ) ଋଗ୍‌ବେଦ ସମୟରେ ଜାତି-ଭେଦ ପ୍ରଥା ଆଦୌ ନଥିଲା । ପ୍ରାଥମିକ ଅବସ୍ଥାରେ ଆର୍ଯ୍ୟ ତିନି ବର୍ଣ୍ଣ ଓ ପରେ ଶୂଦ୍ର ବର୍ଣ୍ଣର ସୃଷ୍ଟି ହୋଇଥିଲା । ଏତଦ୍ଦ୍ୱାରା ସମାଜ ଚାରି ଶ୍ରେଣୀରେ ବିଭକ୍ତ ହୋଇଥିଲା ; ଚାରି ଜାତିରେ ନୁହେଁ ।

(ଚ) ଯଜୁର୍ବେଦର ସୃଷ୍ଟି ବେଳକୁ ଚାରି ବର୍ଣ୍ଣ ସଂପର୍କିତ ଧାରଣା ଏକ ଦୃଢ଼ ଭିତ୍ତି ଗ୍ରହଣ କରିଥିଲା । କାଳକ୍ରମେ 'ବର୍ଣ୍ଣ' ଜାତିର ରୂପ ନେଲା ।

(ଛ) 'ଅନୁଲୋମ' ଓ 'ପ୍ରତିଲୋମ' ପଦ୍ଧତିରେ ବିବାହ ପ୍ରଚଳନ ଫଳରେ ବହୁ ଜାତି ଓ ଉପଜାତିଙ୍କର ସୃଷ୍ଟି ହେଲା । ବ୍ରାହ୍ମଣ ଯୁଗ ବେଳକୁ ପ୍ରାୟ

ପ୍ରଭୃତି କର୍ମ ଲାଗି ଗୋଷ୍ଠିଏ ଗୋଷ୍ଠିଏ ଜାତି କମ୍ବା ଉପଜାତି ସୃଷ୍ଟି ହୋଇଥିଲେ ।

(ଜ) ବର୍ଣ୍ଣବିଭାଗ ସମାଜରେ ଦୃଢ଼ତା ଆଣି ଦେଉଥିବାବେଳେ ଜାତିବିଭାଗ ସମାଜକୁ ଦୁର୍ବଳ କରି ତୋଳିଲା ।

ଏହି ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥାରେ ବିଭିନ୍ନ ଗୋଷ୍ଠୀର ପାରସ୍ପରିକ ସମ୍ବନ୍ଧ ସମ୍ପର୍କରେ କିଛିଟା ଆଲୋକପାତ କରିବା ବର୍ତ୍ତମାନ ଆବଶ୍ୟକ ।

ବ୍ରାହ୍ମଣ :

'ବ୍ରାହ୍ମଣ'ଙ୍କ ପାଇଁ ବେଦମନ୍ତ୍ରଗୁଡ଼ିକରେ 'ବ୍ରହ୍ମ' ଶବ୍ଦର ପ୍ରୟୋଗ ହୋଇଛି । (୩୩) ଋଗ୍‌ବେଦର ୧୦ମ ମଣ୍ଡଳସ୍ଥ ପୁରୁଷସୂକ୍ତରେ ସର୍ବପ୍ରଥମେ 'ବ୍ରାହ୍ମଣ' ଶବ୍ଦର ବ୍ୟବହାର ହୋଇଥିବା କଥା ପୂର୍ବରୁ କୁହାଯାଇଛି । ଚାରି ବର୍ଣ୍ଣ ମଧ୍ୟରେ ବ୍ରାହ୍ମଣମାନଙ୍କୁ ଶ୍ରେଷ୍ଠ ବୋଲି ଧରାଯାଉଥିଲା । ସେମାନେ ଥିଲେ ସମାଜର ନେତା ସ୍ୱରୂପ । ନିଜେ ତ୍ୟାଗମନ୍ତ୍ରରେ ଦୀକ୍ଷିତ ହୋଇ ସେମାନେ ସମାଜର ସମସ୍ତଙ୍କ ଲାଗି ଐହିକ ଓ ପାରତ୍ରିକ ମଙ୍ଗଳ ପାଇଁ ପଥ ପରିଷ୍କାର କରି ଦେଉଥିଲେ । ସେଥିପାଇଁ ଯଥାର୍ଥରେ କୁହାଯାଇଛି :

> "The Brahmin who having very smilingly taken this hard course of deprivation of physical comforts and dedication to knowledge had indeed paved the way for the acquisition of joys of life and happiness of the rest of the society which he led." (୩୪)

ସଂସାରର ଯାହା ଯାହା ଭୋଗ୍ୟ ବସ୍ତୁ, ବ୍ରାହ୍ମଣମାନେ ନିଜ ଇଚ୍ଛାରେ ସେଗୁଡ଼ିକୁ ତ୍ୟାଗ କରିଥିଲେ ଏବଂ ସମାଜର ଅନ୍ୟ ବର୍ଗର ବ୍ୟକ୍ତିମାନେ କିପରି ସେଗୁଡ଼ିକୁ ଉପଭୋଗ କରି ସୁଖି ପାଇପାରିବେ, ସେଥିର ବ୍ୟବସ୍ଥା କରିଥିଲେ । ସେମାନେ ଥିଲେ ସମାଜର ଅଗ୍ରଣୀ ; ସେମାନେ ଚାହିଁଥିଲେ ନିଜର ସୁଖସୁବିଧା ପାଇଁ ବ୍ୟବସ୍ଥାମାନ ଖଞ୍ଜିଥାନ୍ତେ ଏବଂ ସମାଜ ବାଧ୍ୟ ହୋଇ ତାହାକୁ ସ୍ୱୀକାର କରିଥାନ୍ତା । ସେମାନଙ୍କର ଏହା ନକରିବା ସେମାନଙ୍କ ସ୍ୱାର୍ଥତ୍ୟାଗ ଓ ଉଦାରତାର ପରିଚାୟକ । ପାଶ୍ଚାତ୍ୟ ପଣ୍ଡିତମାନେ ବ୍ରାହ୍ମଣମାନଙ୍କୁ ସେମାନଙ୍କର ନିଜ ପୁରୋହିତ-ଗୋଷ୍ଠୀଙ୍କ (clergy) ସହିତ ତୁଳନା କରିଥାନ୍ତି । ଏହା କିନ୍ତୁ ଭ୍ରମାତ୍ମକ । ବ୍ରାହ୍ମଣମାନେ ଥିଲେ ପାଶ୍ଚାତ୍ୟ ପୁରୋହିତ-ଗୋଷ୍ଠୀଠାରୁ ବହୁତ ଉଚ୍ଚରେ । ପୁରୋହିତ-କର୍ମ ସେମାନଙ୍କର ବହୁ କର୍ତ୍ତବ୍ୟର ଏକ ଅଂଶ ସ୍ୱରୂପ ଥିଲା । ସେମାନଙ୍କୁ

ପୁରୋହିତ କୁହାଯାଉଥିଲେ ବିଭିନ୍ନ ସାମାଜିକ କର୍ମକର୍ମାଣି କରୁଥିବା ଯୋଗରୁ ନୁହେଁ । ସେମାନେ ଥିଲେ ସବୁ କାମର ଆଗୁଆ ; ସାରା ସମାଜକୁ ସେମାନେ ଅଗ୍ରଣୀ ଭାବରେ ବାଟ ଦେଖାଇ ଦେଉଥିଲେ । ସାରା ରାଷ୍ଟ୍ରରେ ସାଂସ୍କୃତିକ ମୂଲ୍ୟବୋଧଗୁଡ଼ିକର ରକ୍ଷଣ ଲାଗି ସେମାନେ ଜାଗ୍ରତ ପ୍ରହରୀ ସ୍ୱରୂପ କାର୍ଯ୍ୟ କରୁଥିଲେ । ଅଥର୍ବବେଦରେ ଠାଏ ସେମାନେ ନିଜ ବିଷୟରେ କହିଛନ୍ତି :

"ବୟଂ ରାଷ୍ଟ୍ରେ ଜାଗୃବାଂସଃ ପୁରୋହିତାଃ ।"

ଅର୍ଥାତ୍ ଆମେ ପୁରୋହିତମାନେ ବା ବ୍ରାହ୍ମଣମାନେ ରାଷ୍ଟ୍ରରେ ଜାଗ୍ରତ ରହିଅଛୁଁ । ବ୍ରାହ୍ମଣମାନେ ଯୁଦ୍ଧବିଗ୍ରହ ବେଳେ ମଧ୍ୟ ରାଜାଙ୍କ ସେନାବାହିନୀ ସହିତ ଆଗେ ଆଗେ ଚାଲୁଥିଲେ । 'ଦାଶରାଜ୍ଞ' ଯୁଦ୍ଧରେ ବଶିଷ୍ଠ ଓ ବିଶ୍ୱାମିତ୍ର ସ୍ୱ ସ୍ୱ ସେନାବାହିନୀର ନେତୃତ୍ୱ ନେଇଥିବା ଏହାର ନିଦର୍ଶନ । ସେମାନଙ୍କ ପୁରୋହିତ ନାମର ସାର୍ଥକତା ଅଛି ଏଇଠି । ଐତରେୟ ବ୍ରାହ୍ମଣରେ ସେଥିପାଇଁ ଯଥାର୍ଥରେ ପୁରୋହିତଙ୍କ ଠାରେ ଦୁଇଗୋଟି ଗୁଣର ଆରୋପ କରାଯାଇଛି । ପ୍ରଥମରେ ସେ ହେଉଛନ୍ତି 'ବିଦ୍ୱାନ୍' ଏବଂ ଦ୍ୱିତୀୟରେ 'ରାଷ୍ଟ୍ରଗୋପଃ' ବା ରାଷ୍ଟ୍ରର ରକ୍ଷକ । ସେଠାରେ କୁହା ଯାଇଛି :

"ତସ୍ୟ ରାଜା ମିତ୍ରଂ ଭବତି ଦ୍ୱିଷନ୍ତମପବାଧତେ ଯସ୍ୟୈବଂ ବିଦ୍ୱାନ୍
ବ୍ରାହ୍ମଣୋ ରାଷ୍ଟ୍ରଗୋପଃ ପୁରୋହିତଃ ।" (୩୪-କ)

ଅର୍ଥାତ୍ ଯେଉଁ ରାଷ୍ଟ୍ରରେ ଏଭଳି ବିଦ୍ୱାନ୍ ରାଷ୍ଟ୍ରର ରକ୍ଷକ ପୁରୋହିତ ଅଛନ୍ତି, ତାହାର ରାଜାଙ୍କୁ ସମସ୍ତେ ମିତ୍ର ବୋଲି ଭାବନ୍ତି ଏବଂ ଶତ୍ରୁମାନେ ତାଙ୍କ ଦ୍ୱାରା ପର୍ଯ୍ୟୁଦସ୍ତ ହୁଅନ୍ତି । ପୁରୋହିତଙ୍କୁ କେଭଳି ସମ୍ମାନ ବୈଦିକ ସମାଜରେ ଦିଆଯାଉଥିଲା, ଏହା ତାହାର ନିଦର୍ଶନ । ପାଶ୍ଚାତ୍ୟ ଚିନ୍ତାଧାରାର ପୁରୋହିତ (priest) କଦାପି ଏ ପୁରୋହିତଙ୍କର ସମକକ୍ଷ ହୋଇ ନପାରନ୍ତି ।

ବ୍ରାହ୍ମଣମାନେ ସେମାନଙ୍କ ଜୀବନକୁ ସକଳ ସାଂସାରିକ କାମନାବାସନାର ଊର୍ଦ୍ଧ୍ୱରେ ରଖିବା ପାଇଁ ଚେଷ୍ଟା କରୁଥିଲେ । ସେମାନେ କିପରି ଶୁଦ୍ଧପୂତ ଜୀବନଯାପନ କରି ସାରା ସମାଜର ଆଦର୍ଶ ପୁରୁଷ ହୋଇ ଠିଆ ହେବେ ସେଥିପ୍ରତି ବୈଦିକ ସମାଜତତ୍ତ୍ୱବିତ୍‌ମାନେ ସତତ ଯତ୍ନଶୀଳ ଥିଲେ । ଏଥିପ୍ରତି ଲକ୍ଷ୍ୟ କରି ବାଲଶାସ୍ତ୍ରୀ ହରଦାସ କହିଛନ୍ତି :

"The Vedic sociologists laid extreme stress upon the purity of this class." (୩୫)

ତାଙ୍କର ଏହି ଅଭିବ୍ୟକ୍ତିରେ ବୈଦିକ ପରମ୍ପରାମାନେ ଗଢିଆସୁଥିବା ଏବଂ ବ୍ୟାସଙ୍କ ଦ୍ୱାରା ମଧ୍ୟ ସ୍ୱୀକୃତ ହୋଇଥିବା ନିମ୍ନୋକ୍ତ ପଙ୍କ୍ତିର ଝଙ୍କାର ସମଧିକ ଅନୁରଣିତ :

"ବ୍ରାହ୍ମଣସ୍ୟ ହି ଦେହୋଽୟଂ କ୍ଷୁଦ୍ରକାମାୟ ନେଷ୍ୟତେ ।
କୃଚ୍ଛ୍ରାୟ ତପସେ ଚେହ ପ୍ରେତ୍ୟାନନ୍ତସୁଖାୟ ଚ ।।" (୩୫-କ)

ଅର୍ଥାତ୍ ବ୍ରାହ୍ମଣଙ୍କର ଏହି ଦେହ କ୍ଷୁଦ୍ର କାମ-ସୁଖ ଲାଗି ଉଦ୍ଦିଷ୍ଟ ନୁହେଁ । ଏହାର ଉଦ୍ଦେଶ୍ୟ ହେଲା ଏଥିରେ କୃଚ୍ଛ୍ର ତପସ୍ୟାସାଧନ ଦ୍ୱାରା ଅନନ୍ତ ସୁଖ ପାଇବା । ଅତଏବ ବ୍ରାହ୍ମଣମାନେ ଥିଲେ ଅନନ୍ତ ସୁଖ ପାଇଁ ଆଶାର୍ଥୀ ; କ୍ଷଣଭଙ୍ଗୁର ଦେହର ସୁଖ ପାଇଁକି କାଳୁ ନୁହେଁ । ବ୍ରାହ୍ମଣମାନଙ୍କର ମୁଖ୍ୟ କର୍ତ୍ତବ୍ୟମାନ କ'ଣ ଥିଲା, ତାହା ଅନୁଧ୍ୟାନ କଲେ ଆମେ ଏ ବିଷୟଟିକୁ ଆହୁରି ସ୍ପଷ୍ଟତର ଭାବରେ ବୁଝିପାରିବା । ଏହି ବୈଦିକ ପରଂପରା ସୂତ୍ର-ଯୁଗ ପର୍ଯ୍ୟନ୍ତ ମଧ୍ୟ ଥିଲା । ଏ ବିଷୟରେ ଗୌତମ ଧର୍ମସୂତ୍ର କ'ଣ କହୁଛି, ତାହା ଦେଖାଯାଉ । ତହିଁରେ ଲେଖାଅଛି :

"ଦ୍ୱିଜାତୀନାଂ ଅଧ୍ୟୟନମିଜ୍ୟାଦାନମ୍ ।
ବ୍ରାହ୍ମଣସ୍ୟାଧିକାଃ ପ୍ରବଚନଯାଜନପ୍ରତିଗ୍ରହାଃ ।
ପୂର୍ବେଷୁ ନିୟମସ୍ତୁ ।" (୩୬)

ଏହାର ଅର୍ଥ ହେଲା ଦ୍ୱିଜମାନଙ୍କର (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ) ଅଧ୍ୟୟନ, ପୂଜା ଓ ଦାନ ଦେବା ହେଉଛି କର୍ତ୍ତବ୍ୟ । ବ୍ରାହ୍ମଣଙ୍କର ଅଧିକ କର୍ତ୍ତବ୍ୟ ହେଲା, ପାଠ ପଢ଼ାଇବା, ଯଜ୍ଞ-କର୍ମରେ ସାହାଯ୍ୟ କରିବା ଏବଂ ଦାନ ଗ୍ରହଣ କରିବା । ପୂର୍ବରୁ ଏହି ନିୟମ ଚାଲି ଆସୁଛି । ଏହାର ତାତ୍ପର୍ଯ୍ୟ ହେଲା, ଏହି ନିୟମଟି ବହୁ ପୂର୍ବରୁ ବୈଦିକ କାଳରୁ ଚାଲି ଆସୁଛି । ବ୍ରାହ୍ମଣମାନେ ସମ୍ପତ୍ତି ଠୁଳ କରିବାର ଅଧିକାରକୁ ସ୍ୱଇଚ୍ଛାରେ ଛାଡ଼ି ଦେଇଥିଲେ । ତେବେ ସେମାନେ ବଞ୍ଚୁଥିଲେ ପୁଣି କେମିତି ? ସେମାନଙ୍କ ଭରଣପୋଷଣ ଭାର ସମାଜ ଗ୍ରହଣ କରିଥିଲା । ପାଠ ପଢ଼ାଇ, ଯଜ୍ଞ କରି ଏବଂ ଦାନ ଗ୍ରହଣ କରି ସେମାନେ ନିଜର ଏବଂ ନିଜ ପରିବାରର ଭରଣପୋଷଣ କରୁଥିଲେ । ସଂକ୍ଷେପରେ କହିବାକୁ ଗଲେ, ସେମାନେ ସମାଜ କଥା ଭାବୁଥିଲେ ଏବଂ ସମାଜ ସେମାନଙ୍କ କଥା ଭାବୁଥିଲା । ବାସ୍ତବିକ, ସମାଜର ଶୀର୍ଷତମ ସ୍ଥାନରେ ଥାଇ, ସକଳ ଜ୍ଞାନର ଅଧିକାରୀ ହୋଇ, ଗୋଟିଏ ଗୋଷ୍ଠୀ ସ୍ୱତଃପ୍ରବୃତ୍ତ ଭାବରେ ନିଜର ସୁଖସ୍ୱାଚ୍ଛନ୍ଦ୍ୟକୁ ବଳି ଦେଇ ସମାଜ ଗଠନ କାର୍ଯ୍ୟରେ ନିଜକୁ ସତତ ନିଯୁକ୍ତ କରି ରଖିବାର ଏଭଳି ଦୃଷ୍ଟାନ୍ତ ଅନ୍ୟତ୍ର ବିରଳ । ଏଥିପାଇଁ ବ୍ରାହ୍ମଣଗୋଷ୍ଠୀ ଥିଲେ ସମସ୍ତଙ୍କର ସମ୍ମାନାସ୍ପଦ; ସମସ୍ତଙ୍କର ପୂଜାର୍ହ । ପ୍ରାଚୀନ ଚୈନିକ ସଂସ୍କୃତି ଭଳି ବୈଦିକ ସଂସ୍କୃତିରେ ମଧ୍ୟ ବିଦ୍ୟା ଓ ଜ୍ଞାନକୁ ଉଚ୍ଚତମ ସ୍ଥାନ ଦିଆ ଯାଇଛି ଏବଂ ଏହାର ଅଧିକାରୀଙ୍କୁ ବହୁଧା ପୂଜା

କରିଦେଇ ଆସିଛି । ବାସ୍ତବିକ, ନେହେରୁ ଏହି ପ୍ରାଚୀନ ବୈଦିକ ପରଂପରା ଉପରେ ଗୁରୁତ୍ୱ ଆରୋପ କରି କହିଛନ୍ତି :

> "In India, as in China, learning and erudition have always stood high in public esteem, for learning was supposed to imply both superior knowledge and virtue. Before the learned man the ruler and the warrior have always bowed." (୩୭-କ)

ଉଚ୍ଚ ତିନି ବର୍ଣ୍ଣ ମଧ୍ୟରେ ବ୍ରାହ୍ମଣ ଓ କ୍ଷତ୍ରିୟ ଥିଲେ ପ୍ରମୁଖ ସ୍ଥାନର ଅଧିକାରୀ । ରାଷ୍ଟ୍ରର ଆଧ୍ୟାତ୍ମିକ ସମ୍ପତ୍ତିକୁ ବ୍ରାହ୍ମଣମାନେ ରକ୍ଷା କରୁଥିଲା ବେଳେ କ୍ଷତ୍ରିୟମାନେ ଥିଲେ ଆଧିଭୌତିକ ସମ୍ପତ୍ତିର ରକ୍ଷକ । ଆଧ୍ୟାତ୍ମିକ ଓ ଆଧିଭୌତିକ କ୍ଷେତ୍ରରେ ସମନ୍ୱିତ ବିକାଶ ଘଟାଇବା ହେଉଛି ପ୍ରକୃତ ବିକାଶର ଲକ୍ଷଣ ; ପ୍ରକୃତ ଅଭିବୃଦ୍ଧିର ପରିଚାୟକ । ତେଣୁ ବ୍ରାହ୍ମଣ ଓ କ୍ଷତ୍ରିୟ ଏହି ଦୁଇ ଗୋଷ୍ଠୀର ପାରସ୍ପରିକ ସହଯୋଗ ସର୍ବଦା କାମନା କରାଯାଉଥିଲା । ଏଥିପ୍ରତି ଲକ୍ଷ୍ୟ କରି ତେଣୁ ଯଥାର୍ଥରେ କୁହାଯାଇଛି :

> "The co-operation of the two was essential for the upkeep and smooth running of the social and political machinery." (୩୭-ଖ)

ଏ ପ୍ରକାର ସହଯୋଗର ବାତାବରଣ ଥିଲେ ମଧ୍ୟ କ୍ଷତ୍ରିୟମାନେ କାଳେ ଶସ୍ତ୍ରବଳରେ ଗର୍ବ କରି ବ୍ରାହ୍ମଣମାନଙ୍କୁ ହେୟ ଆଖିରେ ଦେଖିବେ, ସେମାନଙ୍କ ଉପରେ ଅତ୍ୟାଚାର କରିବେ, ସେଥିପାଇଁ ବ୍ୟବସ୍ଥାମାନ ଖଞ୍ଜା ଯାଇଥିଲା । କ୍ଷତ୍ରିୟମାନଙ୍କୁ ସଦାସର୍ବଦା ସତର୍କ କରାଇ ଦିଆ ଯାଉଥିଲା ଯେ, ବ୍ରାହ୍ମଣମାନେ ସେମାନଙ୍କ ଠାରୁ ଉଚ୍ଚତର ଆସନର ଅଧିକାରୀ । ଏଥିପାଇଁ ଐତରେୟ ବ୍ରାହ୍ମଣରେ ସ୍ପଷ୍ଟ ଭାବରେ କୁହାଯାଇଥିଲା :

> "ବ୍ରହ୍ମ ବୈ କ୍ଷତ୍ରାତ୍ ପୂର୍ବମ୍" । (୩୭-ଗ)

ଅର୍ଥାତ୍ 'ବ୍ରହ୍ମ' ବା ବ୍ରାହ୍ମଣ ଆଗ ଏବଂ ତାଙ୍କ ପଛରେ 'କ୍ଷତ୍ର' ବା କ୍ଷତ୍ରିୟ । ରାଜା ବ୍ରାହ୍ମଣଙ୍କୁ ଖୁବ୍ ମାନୁଥିଲେ । ଯେଉଁ ରାଜା ବ୍ରାହ୍ମଣଙ୍କର ଅଧୀନ ବୋଲି ସ୍ୱୀକାର କରୁଥିଲେ, ସେହି ରାଜ୍ୟ ସମୃଦ୍ଧ ହୁଏ ବୋଲି ବିଶ୍ୱାସ କରାଯାଉଥିଲା । ଆଉ ମଧ୍ୟ ବିଶ୍ୱାସ କରାଯାଉଥିଲା ଯେ ସେହି ରାଜାଙ୍କର ସନ୍ତାନମାନେ ଖୁବ୍ ବୀର ହୁଅନ୍ତି । ଐତରେୟ ବ୍ରାହ୍ମଣର ଆଉ ଗୋଟିଏ ପଙ୍‌କ୍ତି ଏ ସଂପର୍କରେ ଦ୍ରଷ୍ଟବ୍ୟ :

"ତତ୍ର ତଦ ବୈ ବ୍ରାହ୍ମଣଃ କ୍ଷତ୍ରଂ ବଂଶମେତି
ତଦ୍‌ରାଷ୍ଟ୍ରଂ ସମୃଦ୍ଧଂ ଅସ୍ମିନ୍ ବୀରୋ ଜାୟତେ ।" (୩୭)

ଅର୍ଥାତ୍ ଯେଉଁଠି ବ୍ରାହ୍ମଣର ଅଧୀନ କ୍ଷତ୍ରିୟ, ସେହି ରାଷ୍ଟ୍ର ସମୃଦ୍ଧ ହୋଇଥାଏ ଏବଂ ସେଠାରେ ବୀର ସନ୍ତାନ ଜନ୍ମ ହୁଅନ୍ତି । ରାଜା ବ୍ରାହ୍ମଣଙ୍କୁ ସର୍ବଦା ଦେବତା ଜ୍ଞାନରେ ପୂଜା କରୁଥିଲେ । ଖାଲି ତ ରାଜା ନୁହନ୍ତି, ସାରା ବୈଦିକ ସମାଜ ମଧ୍ୟ ବ୍ରାହ୍ମଣଙ୍କୁ ଦେବତା ଜ୍ଞାନରେ ପୂଜା କରୁଥିଲା । ବାସ୍ତବିକ, ଶତପଥ ବ୍ରାହ୍ମଣରେ (୧୨।୭।୨) ଗୋଟିଏ ଜାଗାରେ କୁହାଯାଇଛି :

"ଦୈବୋ ବୈ ବର୍ଣ୍ଣୋ ବ୍ରାହ୍ମଣଃ ।"

ଅର୍ଥାତ୍ ବ୍ରାହ୍ମଣବର୍ଣ୍ଣ ହେଉଛି ଦେବତା । ଏହାର ତାତ୍ପର୍ଯ୍ୟ ହେଲା ବ୍ରାହ୍ମଣମାନେ ଦେବତା ଭଳି ପୂଜନୀୟ । ବ୍ରାହ୍ମଣଙ୍କର 'ପୁରୋହିତ' ନାମଟିକୁ ସବୁ ଦେବତାମାନଙ୍କ ଅଗ୍ରଣୀସ୍ୱରୂପ ଥିବା ଅଗ୍ନିଙ୍କ ପ୍ରତି ପ୍ରଯୁକ୍ତ ହୋଇଥିଲା । ସେଥିପାଇଁ ଯଥାର୍ଥରେ ଋଗ୍‌ବେଦର ପ୍ରଥମ ମନ୍ତ୍ରରେ ଅଗ୍ନିଙ୍କୁ ପୁରୋହିତ ଭାବରେ ଆବାହନ କରାଯାଇଛି । ସମାଜରେ ବ୍ରାହ୍ମଣଙ୍କର ଏହି ଉଚ୍ଚତମ ସ୍ଥିତି ପ୍ରତି ଲକ୍ଷ୍ୟ କରି ଆଲ୍‌ଟେକର୍ ଯଥାର୍ଥରେ କହିଛନ୍ତି :

> "The priest could ensure divine aid and intercession and was indispensable even for the king. The warrior was the main instrument of the Aryan expansion and naturally was regarded highly." (୩୮)

ଏଥିପାଇଁ ତ ଭାରତୀୟ ପରମ୍ପରାରେ ବ୍ରାହ୍ମଣଙ୍କୁ 'ଭୂଦେବ' ବା 'ପୃଥିବୀର ଦେବତା' ବୋଲି କୁହା ହୋଇଆସିଛି ।

ଏ ବ୍ରାହ୍ମଣ କେବେ କିଏ ? ଏ କ'ଣ ଥିଲେ ବ୍ରାହ୍ମଣଙ୍କ ପୁତ୍ର ବ୍ରାହ୍ମଣ ନା ଆଉ କେହି ? ବଂଶ ପରଂପରାକ୍ରମେ କ'ଣ କେହି ବ୍ରାହ୍ମଣ ହୋଇ ପାରୁଥିଲେ ? ଏ ବିଷୟରେ ବେଦ, ଉପନିଷଦ ଓ ମହାଭାରତରେ ବହୁଳ ଭାବରେ ଆଲୋଚନା କରାଯାଇଛି ଏବଂ ସିଦ୍ଧାନ୍ତ ଗ୍ରହଣ କରାଯାଇଛି ଯେ ପ୍ରକୃତ ଚରିତ୍ର ଓ କର୍ମକୁ ନେଇ ଜଣେ ବ୍ୟକ୍ତି ବ୍ରାହ୍ମଣ ବୋଲି ନିଜକୁ ପରିଚିତ କରାଇ ପାରିବେ ; ଅନ୍ୟଥା ନୁହେଁ । ଦାସୀପୁତ୍ର ସତ୍ୟକାମ ଜାବାଲ ସତ୍ୟ କଥା କହିବାରୁ କିପରି ଭାବରେ ଗୌତମ ଋଷିଙ୍କ ଦ୍ୱାରା ବ୍ରାହ୍ମଣ ବୋଲି ଗଣ୍ୟ ହୋଇଥିଲେ, ସେ ବିଷୟରେ ଛାନ୍ଦୋଗ୍ୟ ଉପନିଷଦରେ ଏକ ସୁନ୍ଦର ଗଳ୍ପ ଅଛି । ଅତଏବ ବୈଦିକ ବ୍ରାହ୍ମଣତ୍ୱ ଥିଲା ଏକ ଚରିତ୍ର, ଏକ ମନୋବୃତ୍ତି । ଯେ କୌଣସି ବ୍ୟକ୍ତି ନିଜର ନିଷ୍ଠାପର ଉଦ୍ୟମ ଫଳରେ ଏହି ସ୍ଥିତିକୁ ପାଇ ପାରୁଥିଲେ । ସେଥିପାଇଁ ତ ଜକ୍ଷିବାନ୍‌ଙ୍କ

ଭଳି ଶୂଦ୍ର ବ୍ୟକ୍ତିଙ୍କୁ ମନ୍ତ୍ରଦ୍ରଷ୍ଟା ଋଷିଙ୍କ ସ୍ଥାନ ଦିଆଯାଇଛି । ସେଥିପାଇଁ ତ ତାଙ୍କ କନ୍ୟା ଘୋଷା ଜଣେ ଋଷିକାଙ୍କ ମର୍ଯ୍ୟାଦା ପାଇ ପାରିଛନ୍ତି । ରାଧାକୃଷ୍ଣନ୍ ଠିକ୍ ଯଥାର୍ଥରେ କହନ୍ତି :

> "Brahminhood is not an order, but a temperament. Any one can have it, though many born in the Brahmin caste may be without it. It is independent of sex or calling, birth or breeding. Everyone has a right to Brahminhood, the state where inward grace and outward beauty fuse." (୩୮-କ)

ଯଥାର୍ଥରେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କ ବଳ ବିଷୟରେ ତୁଳନା କରି ଠାଏ କୁହାଯାଇଛି :

"ଧିଗ୍‌ବଳଂ କ୍ଷତ୍ରିୟବଳଂ ବ୍ରହ୍ମତେଜୋବଳଂ ବଳମ୍ "।

ଅର୍ଥାତ୍ କ୍ଷତ୍ରିୟଙ୍କ ବଳକୁ ଧିକ୍ ; ବ୍ରହ୍ମତେଜର ବଳ ହେଉଛି ପ୍ରକୃତ ବଳ । ବିଶ୍ୱାମିତ୍ର ଓ ବଶିଷ୍ଠଙ୍କ ବିରୋଧିତା ସଂପର୍କରେ ବଶିଷ୍ଠଙ୍କ ଗାଈକୁ ନେଇ ଯେଉଁ କାହାଣୀଟି ଅଛି, ତାହା ଏଠାରେ ଉଲ୍ଲେଖନୀୟ । ରାଜା ବିଶ୍ୱାମିତ୍ର ବଶିଷ୍ଠଙ୍କ ଆଶ୍ରମରେ ଅତିଥି ହୋଇ ଖୁବ୍ ସତ୍କାର ପାଇଥିଲେ; ଆଶ୍ରମର କାମଧେନୁଙ୍କ ଯୋଗରୁ ଏହା ସମ୍ଭବ ହୋଇଥିଲା । ଲୋଭପରବଶ ହୋଇ ବିଶ୍ୱାମିତ୍ର କାମଧେନୁଙ୍କୁ କବଳିତ କରି ନେବାକୁ ଚାହିଁଲେ । ସେ କାମଧେନୁଙ୍କୁ ବଳାତ୍କାରରେ ନେଇଯିବାକୁ ବସିଲେ । କାମଧେନୁଙ୍କ ମହିମାରୁ ବହୁ ଲୋକ ଜନ୍ମ ହୋଇ ସେଠାରେ ଠୁଳ ହେଲେ ଏବଂ ବିଶ୍ୱାମିତ୍ରଙ୍କୁ ପରାସ୍ତ କଲେ । କ୍ଷତ୍ରିୟ ବିଶ୍ୱାମିତ୍ର ସେତେବେଳେ ବ୍ରାହ୍ମଣ ବଶିଷ୍ଠଙ୍କ ଠାରୁ ପରାଭୂତ ହେଲେ । ଏହି ଗଳ୍ପର ଏକ ସାଙ୍କେତିକ ଅର୍ଥ ଅଛି । କ୍ଷତ୍ରିୟ ରାଜା ବ୍ରାହ୍ମଣଙ୍କ ଉପରେ ଅତ୍ୟାଚାର କରିବାରୁ ବ୍ରାହ୍ମଣଙ୍କ ସୁରକ୍ଷା ଲାଗି ସାଧାରଣ ଜନତା ଏକଜୁଟ ହୋଇଥିଲେ ଏବଂ ସେହି କ୍ଷତ୍ରିୟ ରାଜାଙ୍କ ବିରୁଦ୍ଧରେ ଲଢ଼ି ତାଙ୍କୁ ପରାସ୍ତ କରିଥିଲେ । ଏଥିରୁ ଅନୁମିତ ହେବ ଯେ ବ୍ରାହ୍ମଣ-ଗୋଷ୍ଠୀର ସ୍ୱାର୍ଥ-ରକ୍ଷା ଲାଗି ଏବଂ ସେମାନଙ୍କୁ ଉପଯୁକ୍ତ ମାନ୍ୟତା ଦେବା ଲାଗି ସାରା ସମାଜ ସେତେବେଳେ ଜାଗ୍ରତ ହୋଇ ରହିଥିଲା । ଉପରୋକ୍ତ ଆଲୋଚନାରୁ ପ୍ରତୀତ ହେବ ଯେ ବୈଦିକ ସମାଜରେ ବ୍ରାହ୍ମଣଙ୍କର ଆସନ ଥିଲା ଖୁବ୍ ଉଚ୍ଚରେ । ବାସ୍ତବିକ, ସେ ଥିଲେ ସାରା ସମାଜର ବନ୍ଧୁ, ଦାର୍ଶନିକ ଓ ପଥପ୍ରଦର୍ଶକ ।

## କ୍ଷତ୍ରିୟ :

ବୈଦିକ ସମାଜରେ ବ୍ରାହ୍ମଣଙ୍କ ତଳକୁ ପରବର୍ତ୍ତୀ ଆସନ ଅଧିକାର କରିଥିଲେ କ୍ଷତ୍ରିୟ । ଏମାନେ ଥିଲେ ବାହୁ-ବଳ ବା ଦୈହିକ ବଳର ପ୍ରତୀକ । ଏମାନଙ୍କର ସାହାଯ୍ୟ ବିନା ଆର୍ଯ୍ୟ-ସଂସ୍କୃତିର ସଂରକ୍ଷଣ ତଥା ପ୍ରସାର ସମ୍ଭବ ହୋଇ ପାରୁନଥିଲା । ଦାସ, ଦସ୍ୟୁ ଓ ଅସୁରମାନଙ୍କ ସହିତ ଆର୍ଯ୍ୟମାନଙ୍କର ବହୁକାଳବ୍ୟାପୀ ଯେଉଁ ସଂଗ୍ରାମ ଲାଗି ରହିଥିଲା, ସେଥିରେ ବିଜୟ ହାସଲ କରିବାରେ ଏହି 'ରାଜନ୍ୟଗୋଷ୍ଠୀ' ବା କ୍ଷତ୍ରିୟଗୋଷ୍ଠୀଙ୍କର ଭୂମିକା ଥିଲା ଅନନ୍ୟ । ସେମାନଙ୍କ ଶାରୀରିକ ବଳ ଉପରେ ପ୍ରାଧାନ୍ୟ ଦେବା ଉଦ୍ଦେଶ୍ୟରେ ସେଥିପାଇଁ ଋଗ୍‌ବେଦୀୟ ପୁରୁଷସୂକ୍ତରେ କୁହାଯାଇଛି :

"ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ ବାହୂ ରାଜନ୍ୟଃ କୃତଃ ।"

ଅର୍ଥାତ୍ ଏହାଙ୍କର (ବିରାଟ ପୁରୁଷଙ୍କର) ମୁଖରୁ ବ୍ରାହ୍ମଣଙ୍କର ସୃଷ୍ଟି ହେଲା ଏବଂ ବାହୁ-ଦ୍ୱୟରୁ ରାଜନ୍ୟଙ୍କର ବା କ୍ଷତ୍ରିୟଙ୍କର ସୃଷ୍ଟି ହେଲା ।

ବିଦ୍ୟାଧ୍ୟୟନ ଓ ଜ୍ଞାନଚର୍ଚ୍ଚାର ଏକ ଉପଯୁକ୍ତ ପରିବେଶ ସୃଷ୍ଟି କରିବା ଲାଗି ଦେଶରେ ଶାନ୍ତି ବିରାଜମାନ କରିବା ଆବଶ୍ୟକ । ବହିଃଶତ୍ରୁଙ୍କ ଆକ୍ରମଣର ଭୟ ନଥିଲେ ହିଁ ଏ ପ୍ରକାର ଶାନ୍ତି ସମ୍ଭବ । ତାହା ଛଡ଼ା, ଦେଶରେ ଆଭ୍ୟନ୍ତରୀଣ ବିଦ୍ରୋହ ଆଦି ମଧ୍ୟ ନହେବା ଆବଶ୍ୟକ । ଏ ପ୍ରକାର ଶାନ୍ତିମୟ ସ୍ଥିତି କେବଳ ଶସ୍ତ୍ରବଳରେ ଅଣାଯାଇପାରିବ । ସେଥିପାଇଁ ଯଥାର୍ଥରେ କୁହାଯାଇଛି :

"ଶସ୍ତ୍ରେଣ ରକ୍ଷିତେ ରାଷ୍ଟ୍ରେ ଶାସ୍ତ୍ରଚର୍ଚ୍ଚା ପ୍ରବର୍ତ୍ତତେ ।"

ଅର୍ଥାତ୍ ଯେଉଁ ରାଷ୍ଟ୍ର ଶସ୍ତ୍ରଦ୍ୱାରା ସୁରକ୍ଷିତ, ସେଠାରେ ଶାସ୍ତ୍ରଚର୍ଚ୍ଚା ସମ୍ଭବ ହୋଇପାରେ । ଯୁଦ୍ଧ ସମୟରେ ହେଉ ଅଥବା ଶାନ୍ତି ସମୟରେ ହେଉ, ସର୍ବଦା ଜାତିର ଗୋଟିଏ ସୁଶିକ୍ଷିତ ସୈନ୍ୟବାହିନୀ ରହିଥିବା ଆବଶ୍ୟକ । ସାମାଜିକ ଆବଶ୍ୟକତାକୁ ଉପଲବ୍ଧି କରି ବୈଦିକ ଆର୍ଯ୍ୟମାନେ କ୍ଷତ୍ରିୟଶ୍ରେଣୀର ସୃଷ୍ଟି କରିଥିଲେ । ବାଳଶାସ୍ତ୍ରୀ ହରିଦାସଙ୍କ ଭାଷାରେ

> "The Kshatriya Varna was created by the first class of Brahmins, for the protection of society and maintenance of the social order in the nation." (୩୯)

ସମାଜ-ନିୟନ୍ତା ବ୍ରାହ୍ମଣମାନେ କ୍ଷତ୍ରିୟମାନଙ୍କୁ ସୃଷ୍ଟି କରିଥିଲେ ମଧ୍ୟ ସେମାନଙ୍କୁ ଯଥାଯୋଗ୍ୟ ମର୍ଯ୍ୟାଦା ଓ ସମ୍ମାନ ଦେବା ପାଇଁ ଆଦୌ ପଶ୍ଚାତ୍‌ପଦ ହେଉନଥିଲେ । ରାଜା ଦେଶକୁ ଓ ସମାଜକୁ ରକ୍ଷା କରୁଥିବାରୁ ତାଙ୍କୁ ବ୍ରାହ୍ମଣସମେତ ସକଳ ଜନସାଧାରଣ ସମ୍ମାନ ଦେଖାଉଥିଲେ ଏବଂ ତାଙ୍କୁ ରକ୍ଷାକର୍ମର ପ୍ରତିବଦଳରେ କର ଦେଉଥିଲେ । ଏପରି କି ମୁନି-ଋଷିମାନେ ମଧ୍ୟ ଯେତେ ସାମାନ୍ୟ ହେଲେ ମଧ୍ୟ ଏହି କର ଦେବାରୁ ବାଦ ଯାଉନଥିଲେ । ରାଜସୂୟ ଯଜ୍ଞରେ ରାଜା ଉଚ୍ଚାସନରେ ବସୁଥିଲେ ଏବଂ ବ୍ରାହ୍ମଣ ତାଙ୍କଠାରୁ ନିମ୍ନତର ଆସନରେ ବସୁଥିଲେ । ଏଥିରେ ସମାଜର ଉଚ୍ଚତମ ବର୍ଗ କ୍ଷତ୍ରିୟଙ୍କ ଆସନକୁ ସମ୍ମାନ ଦେଖାଉଥିବା ଭାବଟି ପରିଷ୍କାର ଭାବରେ ପରିସ୍ଫୁଟ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ବ୍ରାହ୍ମଣଙ୍କ ସ୍ଥାନ କ୍ଷତ୍ରିୟଙ୍କ ସ୍ଥାନଠାରୁ ତଳକୁ ଖସିଗଲା । ଏଭଳି ସ୍ଥିତିରେ ମଧ୍ୟ ବ୍ରାହ୍ମଣ ଯେ କ୍ଷତ୍ରିୟଙ୍କର ପରମ ମାନନୀୟ, ତାହା ସ୍ପଷ୍ଟ ଭାବରେ ଶତପଥ ବ୍ରାହ୍ମଣ ସ୍ୱୀକାର କରିଛି । ସେଠାରେ କୁହାଯାଇଛି :

"ସୈଷା କ୍ଷତ୍ରସ୍ୟ ଯୋନିର୍ଯଦ୍ ବ୍ରହ୍ମ । ତସ୍ମାଦ୍ ଯଦ୍ୟପି ରାଜା ପରମତାଂ ଗଚ୍ଛତି, ବ୍ରହ୍ମୈବାନ୍ତତ ଉପନିଂଶ୍ରୟତି ସ୍ୱାଂ ଯୋନିଃ ।"

ଅର୍ଥାତ୍ ଯେହେତୁ ସେହି ବ୍ରହ୍ମ (ବ୍ରାହ୍ମଣ) ଏହି କ୍ଷତ୍ରିୟଙ୍କର ସୃଷ୍ଟିକର୍ତ୍ତା, ତେଣୁ ରାଜା ଏପରି ଅବସ୍ଥାରେ ଉଚ୍ଚତର ଆସନ ପାଇଲେ ମଧ୍ୟ ସେ ତାଙ୍କ ନିଜ ସୃଷ୍ଟିକର୍ତ୍ତା ବ୍ରହ୍ମଙ୍କୁ (ବ୍ରାହ୍ମଣଙ୍କୁ) ସମ୍ମାନ ଦେଖାଇଥାନ୍ତି । କ୍ଷତ୍ରିୟମାନେ ବ୍ରାହ୍ମଣମାନଙ୍କୁ ଏଭଳି ସମ୍ମାନ ଦେଖାଇବା ଲାଗି ବୈଦିକ ସମାଜବିଜ୍ଞାନୀମାନେ ଜାଣି ଶୁଣି ନିୟମମାନ ରଚିଥିଲେ । କାରଣ କ୍ଷତ୍ରିୟମାନଙ୍କ ହାତରେ ଥିଲା ଅସ୍ତ୍ର ବଳ । ମନୁଷ୍ୟର ସ୍ୱଭାବ ଏଭଳି ଯେ ସେ ବାହୁ-ବଳର ଅଧିକାରୀ ହୋଇ ଉଠିଲେ, ବେଳେବେଳେ ଭଲ କ'ଣ ମନ୍ଦ କ'ଣ ଭୁଲିଯାଏ ଏବଂ ତାର ସ୍ୱାର୍ଥସାଧନ ଲାଗି ନାନା ପ୍ରକାର କୁକର୍ମ କରି ବସେ । ଏହା ଫଳରେ ସମାଜର ଅହିତସାଧନ ହୋଇଥାଏ । ତା'କୁ ଚେତାଇ ଦେବା ଲାଗି ତେଣୁ ଆଉ ଗୋଟିଏ ନିଃସ୍ୱାର୍ଥପର ଜ୍ଞାନୀ ବ୍ୟକ୍ତିଙ୍କର ପ୍ରୟୋଜନୀୟତା ଅଛି । ଏହି ପ୍ରୟୋଜନୀୟତାକୁ ବ୍ରାହ୍ମଣ-ଗୋଷ୍ଠୀ ପୂରଣ କରୁଥିଲେ । ନେହେରୁ ଠିକ୍ ଅନୁରୂପ କଥା କହିଛନ୍ତି । (୩୯-କ) ଏଥିରୁ ଜଣାପଡ଼ୁଛି ଯେ ବ୍ରାହ୍ମଣ ଓ କ୍ଷତ୍ରିୟ ପରସ୍ପରର ମର୍ଯ୍ୟାଦା ବିଷୟରେ ସମ୍ପୂର୍ଣ୍ଣ ଅବହିତ ଥିଲେ ଏବଂ ପରସ୍ପରକୁ ଯଥାଯୋଗ୍ୟ ସମ୍ମାନ ଦେଖାଉଥିଲେ । ଏହି ଦୁଇ ବର୍ଣ୍ଣ ମଧ୍ୟରେ ଥିବା ପାରସ୍ପରିକ ସହଯୋଗ ହିଁ ଏକ ସୁସ୍ଥ ଓ ସୁସଂହତ ସମାଜଗଠନ କରିବାରେ ସହାୟକ ହୋଇ ପାରିଥିଲା । ସେଥିପାଇଁ ଯଥାର୍ଥରେ କୁହାଯାଇଛି :

"There was perfect co-operation between the Brahmanas and Ksatriyas. The real strength

and progress of society lay in the concerted functioning of these two important classes. The two together maintained the balance of power in the socio-political sphere." (୪୦)

ଉପରୋକ୍ତ ଆଲୋଚନାରୁ କ୍ଷତ୍ରିୟମାନଙ୍କର କର୍ତ୍ତବ୍ୟ ଏବଂ କ୍ଷତ୍ରିୟ-ବ୍ରାହ୍ମଣ ସମ୍ପର୍କ ବିଷୟରେ କିଛି ତଥ୍ୟ ଆହରଣ କରିହେବ ।

**ବୈଶ୍ୟ :**

ବୈଦିକ ଗୃତୁର୍ବର୍ଣ୍ଣ୍ୟ ଚନ୍ତାଧାରାରେ ବୈଶ୍ୟ-ବର୍ଣ୍ଣର ସ୍ଥାନ ହେଉଛି ତୃତୀୟରେ । 'ବୈଶ୍ୟ' ଶବ୍ଦଟି ବୈଦିକ 'ବିଶ୍' ଶବ୍ଦ ସହିତ ସମ୍ବନ୍ଧିତ । 'ବିଶ୍' ଶବ୍ଦର ଅର୍ଥ ହେଲା ପ୍ରଜା ବା ଜନସାଧାରଣ । ଅଥର୍ବବେଦରେ ରାଜାଙ୍କ ମୂର୍ଦ୍ଧାଭିଷେକ-ମନ୍ତ୍ର ବୋଲାଯିବା ପ୍ରସଙ୍ଗରେ କୁହାଯାଇଛି :

"ବାଞ୍ଛନ୍ତୁ ନୋ ବିଶଃ ।"

ଅର୍ଥାତ୍ ଭୂମକୁ (ରାଜାଙ୍କୁ) ପ୍ରଜାମାନେ ଚାହାନ୍ତୁ ବା ନିର୍ବାଚନ କରନ୍ତୁ । ଋଗ୍-ବେଦରେ ମଧ୍ୟ 'ବିଶଃ' ଅର୍ଥ ସାଧାରଣ ଜନତା ବୋଲି ଉଲ୍ଲେଖ ଅଛି । (୪୦ କ) ବ୍ରାହ୍ମଣ ଓ ରାଜନ୍ୟ ବା କ୍ଷତ୍ରିୟଙ୍କୁ ଛାଡ଼ିଦେଲେ ଆଉ ଯେଉଁ ଜନସାଧାରଣ ରହିଗଲେ ସେମାନଙ୍କୁ କୁହାଯାଉଥିଲା ବୈଶ୍ୟ । ଏ ପ୍ରକାର ସ୍ଥିତି ଥିଲା ଋଗବେଦର ପ୍ରାଥମିକ କାଳରେ, ଯେତେବେଳେ କି 'ଶୂଦ୍ର' ବର୍ଣ୍ଣର ଉଦ୍ଭବ ହୋଇ ନଥିଲା । କୃଷୀ, ବ୍ୟବସାୟୀ, ଶିଳ୍ପୀ, କଳାକାର ଆଦି ଗୋଷ୍ଠୀ ଥିଲେ ଏହି ବୈଶ୍ୟ ସଂପ୍ରଦାୟର ଅନ୍ତର୍ଗତ । ବୈଶ୍ୟମାନଙ୍କ ଉତ୍ପତ୍ତିର ପୃଷ୍ଠଭୂମି ଉପରେ ଆଲୋକପାତ କରିବାକୁ ଯାଇ ନେହେରୁ ଯଥାର୍ଥରେ କହିଛନ୍ତି :

"Life was graded and out of the mass of agriculturists evolved the Vaishyas, the agriculturists, artisans and merchants; the Kshatriyas or rulers and warriors; and the Brahmins, priests and thinkers who were supposed to guide policy and preserve and maintain the ideals of the nation. Below these three were the Shudras or labourers

and unskilled workers, other than the agriculturists." (୪୮)

ଏଥିରୁ ଜଣାଯିବ ଯେ ସମାଜର ଦରକାରରେ ଆସୁଥିବା ବିଭିନ୍ନ ଦ୍ରବ୍ୟର ଉତ୍ପାଦନ ଓ ବଣ୍ଟନର ଦାୟିତ୍ୱ ଥିଲା 'ବୈଶ୍ୟ' ଗୋଷ୍ଠୀ ଉପରେ ।

କୃଷି ଉତ୍ପାଦନ, ବିଭିନ୍ନ ଖାଉଟି ଦ୍ରବ୍ୟର ଉତ୍ପାଦନ ଏବଂ ଏହି ଉତ୍ପନ୍ନ ଦ୍ରବ୍ୟଗୁଡ଼ିକର ବଣ୍ଟନ କାର୍ଯ୍ୟ ଯେଉଁ ଗୋଷ୍ଠୀ ଉପରେ ଥିଲା, ସେହି ଗୋଷ୍ଠୀ ସମାଜରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିବାର କଥା । ସେହି ଗୋଷ୍ଠୀକୁ ସମାଜରେ ମାନ୍ୟତା ଦିଆ ଯିବାର କଥା । ବାସ୍ତବିକ୍, ଆଜିକାର ବସ୍ତୁତାନ୍ତ୍ରିକ ସମାଜରେ ସେହି ଗୋଷ୍ଠୀ ହିଁ ଖୁବ୍ ପ୍ରଭାବଶାଳୀ । କିନ୍ତୁ ବୈଦିକ ସମାଜରେ ସେହି ଗୋଷ୍ଠୀର ପ୍ରାଧାନ୍ୟ ସେଭଳି କିଛି ଉଚ୍ଚ ସ୍ତରରେ ନଥିଲା । ଆର୍ଯ୍ୟ ତିନି ବର୍ଣ୍ଣ ମଧ୍ୟରେ ବୈଶ୍ୟବର୍ଣ୍ଣ ଥିଲା ନିମ୍ନତମ ବର୍ଣ୍ଣ । ଏହି ବର୍ଣ୍ଣ ସର୍ବଦା ବ୍ରାହ୍ମଣ ଓ ରାଜନ୍ୟ ବା କ୍ଷତ୍ରିୟ ବର୍ଣ୍ଣଦ୍ୱୟର ଅଧସ୍ତନ ହୋଇ ରହିଥିଲା । ଐତରେୟ ବ୍ରାହ୍ମଣର ଗୋଟିଏ ସ୍ଥଳରେ ଉଲ୍ଲେଖ ଅଛି ଯେ ବୈଶ୍ୟମାନଙ୍କୁ ରାଜାଙ୍କୁ ଟିକସ୍ ଦେବାକୁ ପଡ଼ିବ ଏବଂ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ସେମାନଙ୍କୁ ଇଚ୍ଛାନୁସାରେ ଶୋଷଣ କରିପାରିବେ । ଆହୁରି ମଧ୍ୟ କୁହାଯାଇଛି ଯେ କ୍ଷତ୍ରିୟମାନେ ଜମିମାଲିକ ହେଲେ ବୈଶ୍ୟମାନେ ହେଉଛନ୍ତି ପ୍ରଜା ଏବଂ ବୈଶ୍ୟମାନେ ସର୍ବଦା କ୍ଷତ୍ରିୟମାନଙ୍କର ଅଧୀନ । ବୈଶ୍ୟମାନଙ୍କୁ କ୍ଷତ୍ରିୟମାନଙ୍କଠାରୁ ସମାଜରେ ଯେଉଁ ନିମ୍ନତର ସ୍ଥାନ ଦିଆଯାଇଥିଲା, ସେଥିପ୍ରତି ଧର୍ମଗତ ସ୍ୱୀକୃତି ପ୍ରଦାନ ଲାଗି ଏକ ପ୍ରକାର ଯାଜ୍ଞିକ ବିଧି ମଧ୍ୟ ରଚିତ୍ତା ଯାଇଥିଲା । ଏହା ହେଲା :

"ବ୍ରାହ୍ମଣ ଏବ ତତ୍ କ୍ଷତ୍ରମନ୍ୱାରମ୍ଭନ୍ତ
କ୍ଷତ୍ରେ ଏବ ତଦ୍ ବିଶମନ୍ୱାରମ୍ଭନ୍ତ ।" (୪୬)

ଅର୍ଥାତ୍ ପୁରୋହିତ ବ୍ରାହ୍ମଣଙ୍କ ପଛରେ କ୍ଷତ୍ରିୟଙ୍କୁ ରଖନ୍ତି ଏବଂ କ୍ଷତ୍ରିୟଙ୍କ ପଛରେ ବୈଶ୍ୟଙ୍କୁ ରଖନ୍ତି । ଏପରି କି ବାଟ ଚାଲିବାରେ ମଧ୍ୟ ବୈଶ୍ୟମାନଙ୍କୁ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର ପଛରେ ରହିବାକୁ ପଡ଼ୁଥିଲା । ସେଥିପାଇଁ ଶତପଥ ବ୍ରାହ୍ମଣରେ କୁହାଯାଇଛି :

"ନ କଦାଚନ ବ୍ରାହ୍ମଣଶ୍ଚ କ୍ଷତ୍ରିୟଶ୍ଚ ବୈଶ୍ୟଂ ଶୂଦ୍ରଂ ଚ ପଶ୍ଚାଦନ୍ୱୀତଃ"

ଅର୍ଥାତ୍ କେବେହେଲେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କୁ ବୈଶ୍ୟ ଓ ଶୂଦ୍ରଙ୍କର ପଛରେ ରହିବାକୁ ହେବ ନାହିଁ ।

ପ୍ରାଥମିକ ଅବସ୍ଥାରେ ବୈଶ୍ୟମାନଙ୍କର ସ୍ଥିତି ସାମାନ୍ୟ ଟିକଏ ଭଲ ଅବଶ୍ୟ ଥିଲା, ଯଦିଓ ତାହା ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର ସାମାଜିକ ସ୍ଥିତିଠାରୁ ଥିଲା ନ୍ୟୂନ । କିନ୍ତୁ କାଳକ୍ରମେ ଋଗ୍‌ବେଦୋତ୍ତର କାଳରେ ଏବଂ ବ୍ରାହ୍ମଣ-ଯୁଗ ବେଳକୁ ସେମାନଙ୍କର ଏହି ସ୍ଥିତି କ୍ରମେ ଖରାପ ଆଡ଼କୁ ଗତି କଲା । ଏହାର କାରଣ ହେଲା, ବୈଶ୍ୟମାନଙ୍କୁ ସେମାନଙ୍କ ବୃତ୍ତି-ନିର୍ବାହ ଲାଗି ଶୂଦ୍ର-ଗୋଷ୍ଠୀ ସହିତ ବାରମ୍ବାର ସମ୍ପର୍କ ସ୍ଥାପନ କରିବାକୁ ପଡ଼ୁଥିଲା । ଏହି ଶୂଦ୍ର-ଗୋଷ୍ଠୀ ସେତେବେଳେ ଥିଲେ ଏକ ବିରାଟ ସେବାକାରୀ ଦଳ ଏବଂ ସେମାନଙ୍କ ମଧ୍ୟରୁ ଶ୍ରମିକମାନେ ଆସୁଥିଲେ । ଏଭଳି ଅଣକୁଶଳୀ ଶ୍ରମିକଙ୍କ ବିନା ସାହାଯ୍ୟରେ ବୈଶ୍ୟମାନେ ସେମାନଙ୍କ ବୃତ୍ତି-ନିର୍ବାହ କିପରି ବା କରିପାରିଥାନ୍ତେ ? ଏହା କିନ୍ତୁ ସମାଜର ଉଚ୍ଚତର ଦ୍ୱିଜ-ଗୋଷ୍ଠୀ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କୁ ସୁହାଇଲା ନାହିଁ । ଏହି ଶୂଦ୍ରଗୋଷ୍ଠୀ ଥିଲେ ଭୂତପୂର୍ବ ଆର୍ଯ୍ୟେତର ଦାସ ବର୍ଣ୍ଣର । ତେଣୁ ସେମାନେ ଥିଲେ ଆର୍ଯ୍ୟ ସମାଜପତି-ମାନଙ୍କର ଘୃଣାର ଶରବ୍ୟ । ସେମାନଙ୍କ ମତରେ ବୈଶ୍ୟମାନେ ଶୂଦ୍ରମାନଙ୍କ ସହିତ ଏଭଳି ଅବାଧ ଭାବରେ ମିଳାମିଶା କରିବା ଫଳରେ ଆର୍ଯ୍ୟ-ସଂସ୍କୃତିର ଶୁଦ୍ଧତା ନଷ୍ଟ ହେଉଥିଲା । ଏଣୁ ବୈଶ୍ୟମାନେ ଯେ କିଭଳି ଆର୍ଯ୍ୟ ସଂସ୍କୃତିର ବାହକ, ଏ ବିଶ୍ୱାସ ସେମାନଙ୍କର ନଥିଲା । ସେଥିପାଇଁ ସେମାନେ ବୈଶ୍ୟମାନଙ୍କୁ ସମାଜରେ ଏଭଳି ନିମ୍ନସ୍ଥାନ ଦେଇଥିଲେ । ଏହି ବିଷୟଟି ପ୍ରତି ଲକ୍ଷ୍ୟ କରି ଆପ୍ଟେ ଯେଉଁ ମନ୍ତବ୍ୟ ଦେଇଛନ୍ତି ତାହା ଏଠାରେ ଯଥାର୍ଥରେ ପ୍ରଣିଧାନଯୋଗ୍ୟ :

> "Although things might not have been as bad as this, there is no doubt that the position of the Vaisyas was steadily deteriorating in this age (post-Rig-Vedic)." (୪୩)

ଏହିସବୁ ଆଲୋଚନାରୁ ଅନୁମିତ ହେବ ଯେ ବୈଶ୍ୟମାନଙ୍କର ସାମାଜିକ ସ୍ଥିତି ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ସାମାଜିକ ସ୍ଥିତିଠାରୁ ଖୁବ୍ ଦୁର୍ବଳ ଥିଲା ।

ଶୂଦ୍ର :

ଶୂଦ୍ରବର୍ଣ୍ଣ ଥିଲା ସମାଜର ନିମ୍ନତମ ବର୍ଣ୍ଣ । ପୂର୍ବରୁ କୁହାଯାଇଛି, କିପରି ଏହା ମୂଳରୁ ଆର୍ଯ୍ୟବର୍ଣ୍ଣ ମଧ୍ୟରେ ନଥାଇ ଆର୍ଯ୍ୟେତର ଦାସବର୍ଣ୍ଣର ଅନ୍ତର୍ଗତ ଥିଲା ଏବଂ ଆର୍ଯ୍ୟ ତିନି ବର୍ଣ୍ଣର ବିକାଶ ହେବା ପରେ ପରେ ଏହା ଏକ ସ୍ୱତନ୍ତ୍ର ବର୍ଣ୍ଣ ରୂପରେ ମୁଣ୍ଡ ଟେକି ଉଠିଥିଲା । ଆଉ ମଧ୍ୟ କୁହା ଯାଇଛି, କିପରି ଋଗ୍‌ବେଦର ୧୦ମ ମଣ୍ଡଳସ୍ଥ 'ପୁରୁଷସୂକ୍ତ'ର ରଚନା ବେଳକୁ ଏହାର ଉଦ୍ଭବ ହୋଇ ସାରିଥିଲା । ବାସ୍ତବିକ୍ ଋଗ୍‌ବେଦର ଏହି

ଗୋଟିଏ ସ୍ଥାନରେ ହିଁ ଆମେ ଶୂଦ୍ର ନାମର ଉଲ୍ଲେଖ ଦେଖିବାକୁ ପାଇଥାଉଁ, ଯଦିଓ ଋଗ୍‌ବେଦୋତ୍ତର ସାହିତ୍ୟରେ ଏହାର ବହୁଳ ଉଲ୍ଲେଖ ରହିଅଛି । ବିରାଟ ପୁରୁଷଙ୍କର ଦୁଇ ପାଦରୁ ଶୂଦ୍ରବର୍ଣ୍ଣର ଉଦ୍ଭବ ହୋଇଥିଲା ବୋଲି ଯାହା ଶଂସିତ ସୂକ୍ତରେ କୁହାଯାଇଛି, ତାହାର ଅର୍ଥ ହେଲା ସାଙ୍କେତିକ । ଏତଦ୍ଦ୍ୱାରା ଶୂଦ୍ରମାନଙ୍କର କର୍ତ୍ତବ୍ୟ ଓ ତଦନୁସାରୀ ସାମାଜିକ ସ୍ଥିତିର ସୂଚନା ମିଳୁଛି । ଏଥିରୁ ସୂଚନା ମିଳୁଛି ଯେ ଶୂଦ୍ରମାନଙ୍କର କର୍ତ୍ତବ୍ୟ ଥିଲା ସମାଜର ସମସ୍ତଙ୍କର ସେବା କରିବା । ଏଥିରୁ ଆହୁରି ମଧ୍ୟ ସୂଚନା ମିଳୁଛି ଯେ ସେମାନଙ୍କର ସାମାଜିକ ସ୍ଥିତି ଥିଲା ସବୁଠାରୁ ତଳେ । ବାସମ୍‌ଙ୍କ ଭାଷାରେ :

> "The Shudra was in fact a second-class citizen, on the fringes of the Aryan society. The word Shudra is of doubtful etymology, and occurs only once in the Rig-Veda. It was perhaps the name of a non-Aryan tribe, which became subordinate to the conquerers and the beginnings of the Shudra class may be accounted for in this way, though it certainly included other elements" (୪୪)

ବୈଦିକ ସମାଜ କ୍ରମେ ଜଟିଳରୁ ଜଟିଳତର ହେବା ସଙ୍ଗେ ସଙ୍ଗେ ଏହି ସଂସ୍କୃତି ଓ ସଭ୍ୟତାର ବିକାଶ ଓ ବିସ୍ତାର ହେବାକୁ ଲାଗିଲା । ନୂଆ ନୂଆ ଗୋଷ୍ଠୀର ଲୋକମାନେ ଆର୍ଯ୍ୟମାନଙ୍କ ଦ୍ୱାରା ପରାସ୍ତ ହୋଇ ସେମାନଙ୍କର ବଶ୍ୟତା ସ୍ୱୀକାର କରିବାକୁ ଲାଗିଲେ । ସେମାନଙ୍କ ଦ୍ୱାରା ଦାସ-ଗୋଷ୍ଠୀ କ୍ରମେ କ୍ରମେ ସ୍ଫୀତ ହେବାକୁ ଲାଗିଲା । ସେହିମାନେ ହିଁ ଶୂଦ୍ରମାନଙ୍କର ସଂଖ୍ୟାକୁ ବଢ଼ାଇବାକୁ ଲାଗିଲେ । ଏହା ଛଡ଼ା ସମାଜରେ ଆର୍ଯ୍ୟେତର ଅନେକ ଜାରଜ ସନ୍ତାନଙ୍କର ସୃଷ୍ଟି ହେଲା, ଯେଉଁମାନେ କି ଆର୍ଯ୍ୟ ଜୀବନଧାରାର ମହା-ସ୍ରୋତରେ ବହୁ କାରଣରୁ ମିଶି ପାରିନଥିଲେ । ମନୁଙ୍କ ମତରେ ସେମାନଙ୍କୁ ମଧ୍ୟ ଶୂଦ୍ର-ଗୋଷ୍ଠୀରେ ଅନ୍ତର୍ଭୁକ୍ତ କରାଯାଉଥିଲା । (୪୫) ଏହିପରି ଭାବରେ ଶୂଦ୍ର-ଗୋଷ୍ଠୀର ଉଦ୍ଭବ ହୋଇ ତାହାର ପରିସର କ୍ରମେ ବଢ଼ିବାକୁ ଲାଗିଲା । ଯଜୁର୍ବେଦ ବେଳକୁ ସମାଜରେ ଏହା ଏକ ସ୍ୱତନ୍ତ୍ର ବର୍ଣ୍ଣ ରୂପେ ଗୃହ ବର୍ଣ୍ଣର ଏକ ଅଂଶ ରୂପେ ଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇ ସାରିଥିବା କଥା ଆମେ ଦେଖିବାକୁ ପାଇଥାଉଁ । ଶୂଦ୍ରମାନେ ଯେ ଆର୍ଯ୍ୟ-ବର୍ଣ୍ଣର ଅନ୍ତର୍ଗତ, ଏ କଥା ଆମେ ବହୁ ପରବର୍ତ୍ତୀ କାଳରେ (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ) ଅର୍ଥଶାସ୍ତ୍ରରେ ମଧ୍ୟ ଦେଖିବାକୁ ପାଇଥାଉଁ । (୪୬)

ବ୍ରାହ୍ମଣ ଗ୍ରନ୍ଥମାନ ଅନୁଧ୍ୟାନ କଲେ ଆମେ ଜାଣିପାରୁ ଯେ ଶୂଦ୍ରମାନଙ୍କର ସାମାଜିକ ସ୍ଥିତି ଥିଲା ଖୁବ୍ ନିମ୍ନମାନ୍ୟ । ଯଜ୍ଞ କରିବାର ଅଧିକାର ସେମାନଙ୍କର ନଥିଲା ଏବଂ ଏହା ଥିଲା ଉଚ୍ଚ ତିନି ବର୍ଣ୍ଣ ମଧ୍ୟରେ ସୀମାବଦ୍ଧ । ସେମାନେ ଯେଉଁ ଦୁଧ ଦୁହୁଁଥିଲେ, ତାହା ମଧ୍ୟ ଯଜ୍ଞ-କାର୍ଯ୍ୟରେ ଲାଗୁ ନଥିଲା । ସେଥିପାଇଁ ଯଜ୍ଞ ଲାଗି ଶୂଦ୍ରଙ୍କୁ ଗାଈ ଦୁହିଁବା ପାଇଁ ସ୍ପଷ୍ଟ ଭାବରେ ନିଷେଧ କରି କୁହାଯାଇଛି :

"ଶୂଦ୍ରୋ ନ ଦୁହ୍ୟାତ୍" । (୪୭)

ଅର୍ଥାତ୍ ଶୂଦ୍ର (ଯଜ୍ଞ ଲାଗି) ଦୁଧ ଦୁହିଁବା ଉଚିତ ନୁହେଁ । 'ବ୍ରାହ୍ମଣ' ଦେବଯୋନିର ସମ୍ଭୂତ ବୋଲି କଳ୍ପନା କରାଯାଇଥିଲା ବେଳେ 'ଶୂଦ୍ର' ଅସୁରଯୋନିର ସମ୍ଭୂତ ବୋଲି କଳ୍ପନା କରାଯାଇଛି । ତାଣ୍ଡ୍ୟ-ବ୍ରାହ୍ମଣର ନିମ୍ନୋକ୍ତ ପଙ୍କ୍ତିଟି ଏହାର ନିଦର୍ଶନ :

"ଦୈବ୍ୟୋ ବୈ ବର୍ଣ୍ଣୋ ବ୍ରାହ୍ମଣଃ ଅସୁର୍ଯ୍ୟଃ ଶୂଦ୍ରଃ" । (୪୮)

ଅର୍ଥାତ୍ ବ୍ରାହ୍ମଣବର୍ଣ୍ଣ ହେଉଛି ଦେବ-ସମ୍ଭୂତ ଏବଂ ଶୂଦ୍ରବର୍ଣ୍ଣ ହେଉଛି ଅସୁର-ସମ୍ଭୂତ । ଶତପଥ ବ୍ରାହ୍ମଣରେ (୧୩।୬।୨।୧୦) ଶୂଦ୍ରମାନଙ୍କର ଜୀବନ-ନିର୍ବାହର ଧାରା ସମ୍ପର୍କରେ କୁହାଯାଇଛି :

'ଶୂଦ୍ରୋ ବୈ ତପଃ'' ।

ଅର୍ଥାତ୍ ଶୂଦ୍ରମାନେ ସବୁବେଳେ ଖଟୁଥାନ୍ତି । ଶୂଦ୍ରମାନେ ଥିଲେ ଶ୍ରମଜୀବୀ । ସେମାନେ ଆର୍ଯ୍ୟ ଉଚ୍ଚ ତିନି ବର୍ଣ୍ଣଙ୍କ ଦ୍ୱାରା ନାନା ପ୍ରକାର ଶ୍ରମନିଷ୍ଠ କର୍ମରେ ନିଯୁକ୍ତ ହେଉଥିଲେ । ସବୁବେଳେ ଶ୍ରମ କରିବା ଥିଲା ସେମାନଙ୍କର ଜୀବନ-ଧର୍ମ ଓ କର୍ତ୍ତବ୍ୟ । ସେମାନେ ଉଚ୍ଚ ତିନି ବର୍ଣ୍ଣଙ୍କ ଦ୍ୱାରା ବହୁ ଭାବରେ ଶୋଷିତ ହେଉଥିଲେ ବୋଲି କହିଲେ ସତ୍ୟର ଅପଳାପ ହେବ ନାହିଁ । ବାସ୍ତବିକ, ସେମାନଙ୍କର ଏବଂବିଧ ନିମ୍ନମାନ୍ୟ ସାମାଜିକ ସ୍ଥିତି ପ୍ରତି ଲକ୍ଷ୍ୟ କରି ବସୁ କହିଛନ୍ତି :

> "It is clear from the above discussion that a Shudra served the other castes and that he could be evicted from the land, dispossessed of his belongings and might even be killed at the will of the master. The Brahman texts leave no room for doubt about the degraded or low social status of the Shudra community." (୪୯)

ଏଥିରୁ ବୈଦିକ ସମାଜରେ ଶୂଦ୍ରମାନଙ୍କର ଦାସ୍ୟମୟ ସ୍ଥିତି ବିଷୟ ସହଜରେ ଅନୁମେୟ । ଏହା ନିଶ୍ଚିତ ଭାବରେ ଥିଲା ମାନବ-ଧର୍ମର ପରିପନ୍ଥୀ । କିନ୍ତୁ ଏଠାରେ ଲକ୍ଷ୍ୟ କରିବାର କଥା ଯେ ଏ ପ୍ରକାର ଚିନ୍ତାଧାରା ବୈଦିକ ସମାଜର ପ୍ରାଥମିକ ଅବସ୍ଥାରେ ନଥିଲା । ବରଂ ସେତେବେଳେ ଋଷିମାନେ ସାରା ମାନବଗୋଷ୍ଠୀ ମଧ୍ୟରେ ଥିବା ଏକତା ଓ ସାମ୍ୟ ଉପରେ ଗୁରୁତ୍ୱ ଆରୋପ କରୁଥିଲେ । ସେଥିପାଇଁ ତ କୁହା ଯାଇଥିଲା 'ବ୍ରହ୍ମ ଦାସାଃ' ; ଅର୍ଥାତ୍ ଦାସମାନେ ହେଉଛନ୍ତି ବ୍ରାହ୍ମଣ । ସେଥିପାଇଁ ତ ଅଗସ୍ତ୍ୟ ଋଷି 'ଆର୍ଯ୍ୟ' ଓ 'ଦାସ' ଉଭୟ ଗୋଷ୍ଠୀର ମିତ୍ର ବୋଲି ସର୍ବତ୍ର ପୂଜିତ ହେଉଥିଲେ । କିନ୍ତୁ ବ୍ରାହ୍ମଣ ଯୁଗ ବେଳକୁ ବର୍ଣ୍ଣ ବିଭାଗ କ୍ରମେ ଜାତି ବିଭାଗରେ ପରିଣତ ହୋଇ ଯାଇଥିଲା ଏବଂ ସେତେବେଳେ ଜାତି ଜାତି ମଧ୍ୟରେ ଏଭଳି ଭାବରେ ବଡ଼ସାନର ବାଛବିଚାର କରାଯିବାକୁ ଲାଗିଲା । ଏହି ବାଛବିଚାରରେ ବେଶି କ୍ଷତିଗ୍ରସ୍ତ ହେଲେ ଶୂଦ୍ର-ସମ୍ପ୍ରଦାୟର ଲୋକମାନେ ।

**ଚତୁର୍ବର୍ଣ୍ଣେତର ଜାତି :**

ବୈଦିକ ଚାରି ବର୍ଣ୍ଣ ଛଡ଼ା ଅନ୍ୟ ଜାତିମାନଙ୍କ କଥା ବର୍ତ୍ତମାନ ବିଚାର୍ଯ୍ୟ । ଋଗ୍‌ବେଦ ସମୟରେ ତ ଏହି ଜାତିମାନଙ୍କର ପ୍ରଶ୍ନ ହିଁ ନଥିଲା । ଏପରି କି ଅନ୍ୟ ବେଦଗୁଡ଼ିକରେ ମଧ୍ୟ ଏ ପ୍ରକାର ଜାତିବିଭାଗର ଉଲ୍ଲେଖ ନାହିଁ । ବାସ୍ତବିକ ଏ ପ୍ରକାର ଜାତିବିଭାଗର ଉଲ୍ଲେଖ ଆମେ ବିଭିନ୍ନ ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ଦେଖିବାକୁ ପାଇଥାଉଁ । ସେତେବେଳକୁ ଆର୍ଯ୍ୟମାନେ ପଞ୍ଜାବର ସପ୍ତସିନ୍ଧୁ ଅଞ୍ଚଳ ଛାଡ଼ି ପୂର୍ବାଭିମୁଖରେ ଏବଂ ଦକ୍ଷିଣାଭିମୁଖରେ ଅଗ୍ରସର ହୋଇ ସାରିଲେଣି । ଏହି ଅଗ୍ରସର ଫଳରେ ସେମାନଙ୍କୁ ଆର୍ଯ୍ୟେତର ନାନା ଗୋଷ୍ଠୀଙ୍କର ସମ୍ମୁଖୀନ ହେବାକୁ ପଡ଼ିଥିଲା ଏବଂ ସେମାନଙ୍କ ଉପରେ ବିଜୟ ହାସଲ କରି ଆର୍ଯ୍ୟସଭ୍ୟତା ଓ ଆର୍ଯ୍ୟ-ସଂସ୍କୃତିର ପ୍ରସାର କରିବାକୁ ପଡ଼ିଥିଲା । ସେତେବେଳକୁ ଆର୍ଯ୍ୟମାନଙ୍କ ମଧ୍ୟରେ 'ଅନୁଲୋମ' ଓ 'ପ୍ରତିଲୋମ' ବିବାହପ୍ରଥା ପ୍ରସିଦ୍ଧି ଲାଭ କରି ସାରିଥିଲା । ଏହି ବିଭିନ୍ନ ଗୋଷ୍ଠୀମାନଙ୍କ ସହିତ ସମ୍ପର୍କରେ ଆସିବା ଫଳରେ କାଳକ୍ରମେ ସହସ୍ର ସହସ୍ର ସଂଖ୍ୟାରେ ଉପରୋକ୍ତ 'ଅନୁଲୋମ' ଓ 'ପ୍ରତିଲୋମ' ବିବାହମାନ ସଂଘଟିତ ହେବାକୁ ଲାଗିଲା । ଏହି ବିବାହଜନିତ ସନ୍ତାନସନ୍ତତିମାନେ ଆଉ ଆର୍ଯ୍ୟ-ସଂପ୍ରଦାୟରେ ରହିପାରିଲେ ନାହିଁ । ତେଣୁ ସେମାନଙ୍କୁ ସ୍ୱତନ୍ତ୍ର ପରିଚୟ ଦେବା ଲାଗି ହେଲା ଜାତିବିଭାଗର କଳ୍ପନା । ଐତରେୟ ବ୍ରାହ୍ମଣର ବର୍ଣ୍ଣନା ଅନୁଯାୟୀ ବିଶ୍ୱାମିତ୍ରଙ୍କ ଆଦେଶ ନମାନି ତାଙ୍କ ପୁତ୍ରମାନେ ଆର୍ଯ୍ୟେତର ଆନ୍ଧ୍ର, ପୁଣ୍ଡ୍ର, ଶବର, ପୁଳିନ୍ଦ ଓ ମୂତିବ ଗୋଷ୍ଠୀରେ ପରିଣତ ହୋଇଥିଲେ । (୫୦) ଏହାର ତାତ୍ପର୍ଯ୍ୟ ହେଲା, ଆର୍ଯ୍ୟେତର କର୍ମ କରୁଥିବା କେତେକ ଗୋଷ୍ଠୀର ଲୋକମାନଙ୍କୁ ଉପରୋକ୍ତ ମତେ ନାମିତ କରାଗଲା । 'ଆନ୍ଧ୍ର' ନାମର ଉଲ୍ଲେଖରୁ ଜଣାପଡୁଛି ଯେ ଐତରେୟ ବ୍ରାହ୍ମଣର ରଚନା ବେଳକୁ ଆର୍ଯ୍ୟମାନେ ଦକ୍ଷିଣ ଭାରତ ସହିତ ପରିଚିତ ହୋଇ ସାରିଥିଲେ ।

କାଳକ୍ରମେ ଏହି ଜାତିବିଭାଗ କର୍ମ ଓ ଜନ୍ମ ଉଭୟଭିତ୍ତିକ ହୋଇଉଠିଲା । ଏହାର ତାତ୍ପର୍ଯ୍ୟ ହେଲା, ବିଭିନ୍ନ କର୍ମ ନେଇ ବିଭିନ୍ନ ଜାତିର ସୃଷ୍ଟି ହେଲା ଏବଂ ପିତାଙ୍କୁ ଅନୁସରଣ କରି ସେମାନଙ୍କ ସନ୍ତାନ ସନ୍ତତିମାନଙ୍କର ଜାତିନିର୍ଣ୍ଣୟ କରାଯିବାକୁ ଲାଗିଲେ । ଏହିପରି ଭାବରେ କମାର, କୁମ୍ଭାର, ଭଣ୍ଡାରି, ବଢେଇ, ଧୋବା ଇତ୍ୟାଦି ଜାତିଗୁଡ଼ିକର ସୃଷ୍ଟି ହେଲା । ଏହି ଜାତି, ଉପଜାତିର ସଂଖ୍ୟା କ୍ରମେ କ୍ରମେ ବଢ଼ିବାକୁ ଲାଗିଲା । ଏହି ପୃଷ୍ଠଭୂମିରେ ବୈଦିକ ଚତୁର୍ବର୍ଣ୍ଣେତର ଜାତିଗୁଡ଼ିକର ଉଦ୍ଭବ ହୋଇଥିଲା । ଏ ପ୍ରକାର ଜାତିଗତ ବିଭାଜନ ଦ୍ୱାରା ସମାଜ କ୍ରମେ କ୍ରମେ ଦୁର୍ବଳ ହୋଇ ଉଠିଲା ଏବଂ ଗୋଷ୍ଠୀଗତ ଏକତା କ୍ଷୁଣ୍ଣ ହେଲା । ଜାତି, ଜାତି ମଧ୍ୟରେ ଆଧିପତ୍ୟ ଲାଗି ପ୍ରତିଯୋଗିତା, ବୈରଭାବ ଓ ଈର୍ଷ୍ୟାଭାବ ଆସି ଦେଖାଦେଲା । ଏହା ନିଶ୍ଚିତ ଭାବରେ ଥିଲା ଏକ ଦୁର୍ଭାଗ୍ୟ-ଜନକ ସ୍ଥିତି ଏବଂ ଏତଦ୍ୱାରା ମୌଳିକ 'ଚତୁର୍ବର୍ଣ୍ଣ୍ୟ'ର ଲକ୍ଷ୍ୟ ବ୍ୟାହତ ହେଲା ଏବଂ ଉଦ୍ଦେଶ୍ୟ ଭ୍ରଷ୍ଟ ହେଲା । ଏ ପ୍ରକାର ସ୍ଥିତି ପ୍ରତି ଲକ୍ଷ୍ୟ କରି କୋସାମ୍ବୀ ଯଥାର୍ଥରେ କହିଛନ୍ତି :

> "A regular class-based state mechanism, which would dispense altogether with tribal unity as its main driving force, was about to come into existence." (୫୧)

ଏଭଳି ଦୋଷତ୍ରୁଟି ଥିବା ସତ୍ତ୍ୱେ ଏହି ବର୍ଣ୍ଣବିଭାଗ ଯେ ଭାରତୀୟ ସଂସ୍କୃତିର ବିକାଶର ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି, ସେ କଥା ସ୍ୱାମୀ ବିବେକାନନ୍ଦ ସ୍ୱୀକାର କରିଛନ୍ତି । ତାଙ୍କ ମତରେ :

> "We believe in Indian caste as one of the greatest social institutions that the Lord gave to man. We also believe that though the unavoidable defects, foreign persecutions, and above all, the monumental ignorance of many Brahmins who do not deserve the name, have thwarted in many ways, the legitimate fructification of this most glorious Indian institution, it has already worked wonders for

the land of Bharata and is destined to lead Indian humanity to its goal." (୫୧-କ)

ଏଥିରୁ ବର୍ଣ୍ଣବିଭାଗର ବୈଶିଷ୍ଟ୍ୟ କେତେ, ତାହା ଭଲ ଭାବରେ ବୁଝାପଡ଼ିବ ।

**ଚତୁରାଶ୍ରମ :**

'ଚତୁରାଶ୍ରମ' ବା ସ୍ତର 'ଆଶ୍ରମ' ସଂପର୍କୀୟ ଚିନ୍ତାଧାରା ମଧ୍ୟ ବୈଦିକ ଆର୍ଯ୍ୟମାନଙ୍କ ସାମାଜିକ ଜୀବନକୁ ଅତି ଗୁରୁତ୍ୱପୂର୍ଣ୍ଣ ଭାବରେ ନିୟନ୍ତ୍ରିତ କରୁଥିଲା । ସେମାନଙ୍କର 'ଚତୁର୍ବର୍ଣ୍ଣ୍ୟ' ଚିନ୍ତାଧାରା ପ୍ରତି ଏପରି ମମତ୍ୱବୋଧ ଥିଲା ଯେ ଠିକ୍ ତାହାର ଅନୁସରଣରେ ସେମାନେ ଜୀବନକୁ ଚାରୋଟି 'ଆଶ୍ରମ' ବା ଅବସ୍ଥାରେ ବିଭକ୍ତ କରିଥିଲେ ଏବଂ ପ୍ରତିଟି ଆଶ୍ରମକୁ କିପରି ଭାବରେ କଟାଇବାକୁ ହେବ, ସେଥିପାଇଁ ଶୃଙ୍ଖଳିତ ନିୟମମାନ ଗଢ଼ିଥିଲେ । ଆଶ୍ରମ-ଧର୍ମର ସୃଷ୍ଟି ବର୍ଣ୍ଣଧର୍ମର ପରେ ହୋଇଥିବାର ବିଶ୍ୱାସ କରାଯାଏ । ଏ ପ୍ରକାର ସ୍ଥିତି ପ୍ରତି ଲକ୍ଷ୍ୟ କରି ବାସମ୍ ଯଥାର୍ଥରେ କହିଛନ୍ତି :

"We have seen that for the theorist society involved two concepts; one of these was class or Varna, while the other was stage of life or Ashrama. This was a later idea than the class and was evidently more artificial. Just as the Aryan society was divided into four classes, so the life of the individual Aryan was divided into four stages." (୫୨)

'ବର୍ଣ୍ଣଧର୍ମ' ଭଳି 'ଆଶ୍ରମଧର୍ମ'ର ଗୁରୁତ୍ୱ ଏଭଳି ଯେ ଉଭୟକୁ ବୈଦିକ ଧର୍ମରେ ଦୁଇଟି ପାଦ ରୂପରେ କଳ୍ପନା କରାଯାଇଛି । ସାରା ବୈଦିକ ସମାଜର ବିକାଶ ଉଭୟକୁ ଆଶ୍ରୟ କରି ସମ୍ଭବ ହୋଇ ପାରିଛି ।

ମାନବ ଜୀବନକୁ ଦୁଇଗୋଟି ଜିନିଷ ନିୟନ୍ତ୍ରିତ କରିଥାଏ । ଗୋଟିଏ ହେଲା କର୍ମ ଏବଂ ଅପରଟି ହେଲା ଜ୍ଞାନ । କର୍ମ ଲାଗି ମାନସିକ ବଳ ଯେତିକି ଆବଶ୍ୟକ, ଶାରୀରିକ ବଳ ତତୋଽଧିକ ଆବଶ୍ୟକ । ଅପର ପକ୍ଷରେ ଜ୍ଞାନସାଧନା ଲାଗି ବୟସ ଓ ଅନୁଭୂତିର ପରିପକ୍ୱତା ଆବଶ୍ୟକ । ମାନବ ଜୀବନରେ କର୍ମ ଓ ଜ୍ଞାନ ଉଭୟର ସାଧନା ଲାଗି ଆବଶ୍ୟକତା ଥିବାରୁ ବୈଦିକ ସମାଜତତ୍ତ୍ୱବିତ୍‌ମାନେ ଜୀବନର ଦୁଇଟି ଅବସ୍ଥାକୁ ଗୁରୁ

ଦେଇଥିଲେ କର୍ମସାଧନ ଲାଗି ଏବଂ ଆଉ ଦୁଇଟି ଅବସ୍ଥାକୁ ଗ୍ରହଣ କରୁଥିଲେ ଜ୍ଞାନ-ସାଧନ ଲାଗି । ପ୍ରଥମ ଦୁଇଟି ଅବସ୍ଥାକୁ କୁହାଯାଉଥିଲା ବ୍ରହ୍ମଚର୍ଯ୍ୟ ଓ ଗାର୍ହସ୍ଥ୍ୟ । ଶେଷ ଦୁଇଟି ଆଶ୍ରମକୁ କୁହାଯାଉଥିଲା ବାନପ୍ରସ୍ଥ ଓ ସନ୍ନ୍ୟାସ । ବ୍ରହ୍ମଚର୍ଯ୍ୟାଶ୍ରମ ହେଉଛି ଶିକ୍ଷା ଗ୍ରହଣ ସମୟ । ଗୁରୁକୁଳାଶ୍ରମରେ ଯାଇ ପିଲାକୁ ଶିକ୍ଷାଗ୍ରହଣ କରିବାକୁ ପଡୁଥିଲା । ଉଭୟ ପୁଅ ଓ ଝିଅ ଶିକ୍ଷା ଗ୍ରହଣ କରୁଥିଲେ । ସେମାନେ ବ୍ରହ୍ମଚାରୀ ଅଥବା ବ୍ରହ୍ମଚାରିଣୀ ରୂପରେ ଗଣାଯାଉଥିଲେ । ଏହି ଶିକ୍ଷାର ଉଦ୍ଦେଶ୍ୟ, ପାଠ୍ୟକ୍ରମ ଇତ୍ୟାଦି ବିଷୟରେ ଏକ ସ୍ୱତନ୍ତ୍ର ପରିଚ୍ଛେଦରେ ଆଲୋଚନା କରାଯାଇଛି ।

ବ୍ରହ୍ମଚର୍ଯ୍ୟାଶ୍ରମ ପରେ ବ୍ୟକ୍ତିକୁ ଯେଉଁ ଦ୍ୱିତୀୟ ଆଶ୍ରମରେ ପ୍ରବେଶ କରିବାକୁ ପଡୁଥିଲା, ତାହାର ନାମ ଥିଲା 'ଗାର୍ହସ୍ଥ୍ୟ' । ବାହାସାହା ହୋଇ ତା'କୁ ଗୃହୀ ବା ଗୃହିଣୀ ଭାବରେ ଜୀବନ-ଯାପନ କରିବାକୁ ପଡୁଥିଲା । ଗୃହସ୍ଥାଶ୍ରମକୁ ଏକ ମହତ୍ତ୍ୱପୂର୍ଣ୍ଣ ଆଶ୍ରମ ବୋଲି ଧରାଯାଉଥିଲା । ଏହି ଆଶ୍ରମରେ ହିଁ ମଣିଷ ଦେବଋଣ, ଋଷିଋଣ ଓ ପିତୃ-ଋଣରୁ ମୁକ୍ତ ହୋଇ ପାରୁଥିଲା । ପିତୃଋଣରୁ ମୁକ୍ତ ହେବା ଲାଗି ସନ୍ତାନସନ୍ତତି ଉତ୍ପାଦନ କରିବା ଆବଶ୍ୟକ । ଖାଲି ସନ୍ତାନଟିଏ ଜନ୍ମ କରିଦେଲେ ଯେ ଏହି କର୍ତ୍ତବ୍ୟ ସରିଗଲା ତାହା ନୁହେଁ । ଏହି ସନ୍ତାନକୁ ଗୃହସ୍ଥାଶ୍ରମ ଲାଗି ଯୋଗ୍ୟ କରାଇବାକୁ ହେବ ଏବଂ ସେ ଯେପରି ପରିବାର ଓ ସମାଜର ମଙ୍ଗଳସାଧନ ଲାଗି ସମର୍ଥ ହୋଇ ପାରିବ, ସେଥିପାଇଁ ଯଥୋଚିତ କ୍ଷମତା ଓ ଯୋଗ୍ୟତା ତା'ଠାରେ ଆଣାଇବାକୁ ହେବ । ସେତେବେଳେ ଯାଇ ତା'ର ଗୃହସ୍ଥାଶ୍ରମର କର୍ତ୍ତବ୍ୟ ଶେଷ ହେବ ଏବଂ ତା'କୁ ତୃତୀୟ ଆଶ୍ରମ ବାନପ୍ରସ୍ଥାଶ୍ରମରେ ପ୍ରବେଶ କରିବାକୁ ହେବ । ଏହାର ତାତ୍ପର୍ଯ୍ୟ ହେଲା, ପୁଅ ଝିଅଙ୍କ ବାହାସାହା ପରେ ତା'କୁ ବାନପ୍ରସ୍ଥୀ ହେବାକୁ ପଡ଼ିବ । ଗୃହସ୍ଥାଶ୍ରମ ହେଉଛି ସକଳ କାମନାର ସିଦ୍ଧି ଲାଗି ଏକ ପବିତ୍ର ଆଶ୍ରମ । କାହାଙ୍କ ମନରେ କଷ୍ଟ ନଦେବା, ସର୍ବଦା ସତ୍ୟ କହିବା, ଧର୍ମାଚରଣ କରିବା, ପରିବାରର ସମସ୍ତଙ୍କର ଭଲମନ୍ଦ ଖବର ବୁଝିବା, ଅତିଥି-ସତ୍କାର କରିବା ଆଦି କେତେକ କର୍ତ୍ତବ୍ୟ ଗୃହସ୍ଥ ଲାଗି ଖଞ୍ଜା ଯାଇଥିଲା । ଏହିସବୁ କର୍ତ୍ତବ୍ୟ ତା'କୁ ନିଷ୍ଠାପର ଭାବରେ ପାଳନ କରିବାକୁ ପଡୁଥିଲା । ଏଥିପାଇଁ ଏଭଳି ଦୃଢ଼ ନିୟମମାନ ଖଞ୍ଜା ଯାଇଥିଲା ଯେ ସେଗୁଡ଼ିକୁ ଉଲ୍ଲଂଘନ କରିବା ସହଜସାଧ୍ୟ ନଥିଲା । ଶୃଙ୍ଖଳିତ ସମାଜରେ ସେଗୁଡ଼ିକର ଉଲ୍ଲଂଘନ ଥିଲା ଦଣ୍ଡନୀୟ ଅପରାଧ । ଏହିପରି ଭାବରେ ଗୃହସ୍ଥଜୀବନ ବହୁ କର୍ତ୍ତବ୍ୟ ଓ ଦାୟିତ୍ୱବୋଧରେ ଥିଲା ଭାରାକ୍ରାନ୍ତ । ଚାରି ଆଶ୍ରମ ମଧ୍ୟରେ ଗୃହସ୍ଥାଶ୍ରମକୁ ସବୁଠାରୁ ଉଚ୍ଚ ସ୍ଥାନ ଦିଆଯାଇଥିଲା । ଏହି ବୈଦିକ ପରମ୍ପରାର ପ୍ରଭାବ ମନୁଙ୍କ ପର୍ଯ୍ୟନ୍ତ ମଧ୍ୟ ଥିଲା । ମନୁ ତେଣୁ ଯଥାର୍ଥରେ କହିଛନ୍ତି :

"ଯଥା ନଦୀନଦାଃ ସାଗରେ ଯାନ୍ତି ସଂସ୍ଥିତମ୍ ।
ତଥୈବାଶ୍ରମିଣଃ ସର୍ବେ ଗୃହସ୍ଥେ ଯାନ୍ତି ସଂସ୍ଥିତମ୍" ।। (୫୩)

ଅର୍ଥାତ୍ ସକଳ ନଦନଦୀ ଯେତେବେଳେ ସମୁଦ୍ରରେ ପଡ଼ିଯାଆନ୍ତି, ସେତେବେଳେ ସେମାନଙ୍କ ଠାରେ ସ୍ଥିରତା ଆସିଯାଏ । ଠିକ୍ ସେହିପରି ଭାବରେ ସକଳ ଆଶ୍ରମୀ ଯେତେବେଳେ ଗୃହସ୍ଥାଶ୍ରମରେ ପ୍ରବେଶ କରନ୍ତି, ସେତେବେଳେ ସେମାନଙ୍କ ଜୀବନରେ ସ୍ଥିରତା ଆସିଯାଏ । ଗୃହସ୍ଥାଶ୍ରମକୁ ଏକ ଶାନ୍ତଗମ୍ଭୀର ଓ ଗଭୀର ସମୁଦ୍ର ସହିତ ତୁଳନା କରିବାର ତାତ୍ପର୍ଯ୍ୟ ଅଛି ଏଇଠି । ଏହି ସମୁଦ୍ରରେ ନ ପଡ଼ିଲେ ମାନବ-ଜୀବନ-ପ୍ରବାହରେ ସ୍ଥିରତା ଆସିପାରେ ନାହିଁ ; ଜୀବନରେ ସଫଳତା ମିଳିପାରେ ନାହିଁ । ଏହି ଗୃହସ୍ଥାଶ୍ରମ ତ ଖାଲି ବ୍ୟକ୍ତି ବା ପରିବାରର ସୁଖ ପାଇଁ ଅଭିପ୍ରେତ ନଥିଲା : ଅନ୍ୟ ପକ୍ଷରେ ଏହା ସାରା ସମାଜର ସ୍ଥିତିକୁ ଦୃଢ଼ ଓ ଶୃଙ୍ଖଳିତ ଭାବରେ ବଜାୟ ରଖିବା ଲାଗି ଚେଷ୍ଟା କରୁଥିଲା । ରବୀନ୍ଦ୍ରନାଥ ତେଣୁ ଯଥାର୍ଥରେ କହିଛନ୍ତି :

> "ଭାରତବର୍ଷୀୟ ଗୃହାଶ୍ରମ ଆମାଦେର ନିଜେର୍ ସୁଖ, ସୁବିଧାର ଜନ୍ୟ ଛିଲନା— ଗୃହାଶ୍ରମ ସମସ୍ତ ସମାଜକେ ଧାରଣ କରିଯା ରଖିତ ।" (୫୪)

ଏହି ଦୃଷ୍ଟିରୁ ଗୃହସ୍ଥାଶ୍ରମର ଗୁରୁତ୍ୱ ଉପଲବ୍ଧି କରିବାକୁ ହେବ ।

ବାନପ୍ରସ୍ଥାଶ୍ରମରେ ମଣିଷକୁ ଧୀରେ ଧୀରେ ସଂସାରର ବନ୍ଧନରୁ ମୁକ୍ତ ହେବା ପାଇଁ ଉଦ୍ୟମ କରିବାକୁ ପଡ଼ୁଥିଲା । ଏହା ଥିଲା ପଚାଶ ବର୍ଷ ବୟସରୁ ପଞ୍ଚାବନ ବର୍ଷ ବୟସ ମଧ୍ୟରେ ସୀମାବଦ୍ଧ । ଏତେବେଳକୁ ତା'ର ପୁଅ ଗୃହସ୍ଥଧର୍ମ ପାଳିବାକୁ ଯୋଗ୍ୟ ହୋଇ ସାରିଥିଲା । ତେଣୁ ତା'କୁ ଆଉ ଘରକାମରେ ବ୍ୟସ୍ତ ରହିବାକୁ ପଡ଼ୁନଥିଲା । ସେ ଘର ମଧ୍ୟରେ ଥାଇ ମଧ୍ୟ ନଥିଲା ପରି ରହୁଥିଲା । ପରିବାରର ଜ୍ୟେଷ୍ଠ ବ୍ୟକ୍ତି ହିସାବରେ ସେ ଅନ୍ୟ ସଭ୍ୟମାନଙ୍କଠାରୁ ସମ୍ମାନ ପାଉଥିଲା ; ଯତ୍ନ ପାଉଥିଲା । କିନ୍ତୁ ପରିବାରର ଦୈନନ୍ଦିନ କାର୍ଯ୍ୟକଳାପରେ ସେ ଆଦୌ ହସ୍ତକ୍ଷେପ କରୁନଥିଲା । ବେଳେ ବେଳେ ଅନ୍ୟମାନେ ଚାହିଁଲେ, ସେମାନଙ୍କୁ କୌଣସି ଏକ ନିର୍ଦ୍ଦିଷ୍ଟ ପରିସ୍ଥିତି ବା ସମସ୍ୟା ସଂପର୍କରେ ସେ ଉପଦେଶ ଦେଉଥିଲା । ବହୁ ଅନୁଭୂତିଲବ୍ଧ ଜ୍ଞାନ ବଳରେ ଦିଆ ଯାଉଥିବା ତା'ର ଏହି ଉପଦେଶକୁ ସମସ୍ତେ ମାନି ନେଉଥିଲେ ଏବଂ ବାସ୍ତବିକ ତାହା ଥିଲା ପରିବାର ଲାଗି ଶୁଭଙ୍କର । ଏହିପରି ଭାବରେ ତ୍ୟାଗମୁଖୀ ନିର୍ଲିପ୍ତ ଜୀବନଯାପନ କରିବା ଥିଲା ବାନପ୍ରସ୍ଥାଶ୍ରମର ଲକ୍ଷ୍ୟ । ବାନପ୍ରସ୍ଥୀ ପରିବାରର ଦୈନନ୍ଦିନ କାର୍ଯ୍ୟକଳାପରେ ହସ୍ତକ୍ଷେପ ନ କରିବା ଫଳରେ ପାରିବାରିକ ସଂଘର୍ଷର ପ୍ରାୟ ଅବକାଶ ନଥିଲା ଏବଂ ପାରିବାରିକ ଜୀବନ ଶାନ୍ତିମୟ ହୋଇ ଉଠିଥିଲା । ଆଜିକାଲି ଅନେକ କ୍ଷେତ୍ରରେ ବୟସ୍କ ବ୍ୟକ୍ତିମାନଙ୍କର ପାରିବାରିକ ଦୈନନ୍ଦିନ କାର୍ଯ୍ୟକଳାପରେ ହସ୍ତକ୍ଷେପ ଫଳରେ ପାରିବାରିକ ଶାନ୍ତି ବିପର୍ଯ୍ୟସ୍ତ ହୋଇ ଉଠୁଛି ଏବଂ ଶାଶୁବୋହୂ, ବାପପୁଅ ଆଦିଙ୍କ ମଧ୍ୟରେ ମନୋମାଳିନ୍ୟ ଘଟୁଛି । ବୈଦିକ ସମାଜରେ ଏହି ବାନପ୍ରସ୍ଥାଶ୍ରମ ବ୍ୟବସ୍ଥାର ପ୍ରଚଳନ ହେତୁ ଏଭଳି ଘଟିବାର ସମ୍ଭାବନାକୁ ବହୁ

ପରିମାଣରେ ଏଡ଼ାଇ ଦିଆଯାଇ ପାରିଥିଲା । ବାନପ୍ରସ୍ଥୀଙ୍କୁ ଜ୍ଞାନ-ଚର୍ଚ୍ଚାରେ ହିଁ ସମସ୍ତ ବିତାଇବାକୁ ପଡ଼ୁଥିଲା । କେବଳ ଭାବରେ ଜୀବନରେ 'ନିଃଶ୍ରେୟସ୍' ମିଳି ପାରିବ, ସେଥିପାଇଁ ତା'ଙ୍କୁ ଏହି ଜୀବନରେ ପଥ ପ୍ରସ୍ତୁତ କରିବାକୁ ପଡ଼ୁଥିଲା । ପରବର୍ତ୍ତୀ 'ସନ୍ନ୍ୟାସ' ଜୀବନ ଲାଗି ତା'ଙ୍କୁ ଦେହମନରେ ସଂପୂର୍ଣ୍ଣ ଭାବରେ ସଜାଗ ଓ ପ୍ରସ୍ତୁତ ହୋଇଯିବାକୁ ପଡ଼ୁଥିଲା ।

ତା'ପରେ ଆସୁଥିଲା ଚତୁର୍ଥ ଆଶ୍ରମର ସମସ୍ତ । ଏହାର ନାମ ସନ୍ନ୍ୟାସ । ଏହି ଅବସ୍ଥାରେ ତା'ଙ୍କୁ ସଂପୂର୍ଣ୍ଣ ଭାବରେ ଘର ଗୃହ ବନରେ ସନ୍ନ୍ୟାସୀ ହୋଇ ରହିବାକୁ ପଡ଼ୁଥିଲା । ସେତେବେଳେ ତା'ର କ୍ରୋଧ ବିଲୁପ୍ତ ହୋଇ ଯାଉଥିଲା । ସକଳ ଇନ୍ଦ୍ରିୟ ତା'ର ଅଧୀନ ହୋଇ ରହୁଥିଲେ । ଶାନ୍ତ ଚିତ୍ତବୃତ୍ତି ସର୍ବଦା ରହୁଥିଲା ପ୍ରସନ୍ନ । ନିରନ୍ତର ଆତ୍ମଜିଜ୍ଞାସାରେ ତା'ର ସମସ୍ତ ଅତିବାହିତ ହେଉଥିଲା । ଏହି ଅବସ୍ଥାରେ ସକଳ ଜୀବଙ୍କ ପ୍ରତି ସମାନ ଭାବରେ ସ୍ନେହ, ପ୍ରୀତି, ଓ ମୈତ୍ରୀଭାବ ରଖି ସେ ଧୀରେ ଧୀରେ ମୁକ୍ତି-ପଥରେ ଆଗେଇ ଚାଲିଥିଲା ।

ଏହିପରି ଭାବରେ ବୈଦିକ ଆର୍ଯ୍ୟମାନଙ୍କ ଜୀବନରେ ଚାରି ଆଶ୍ରମ ଆସୁଥିଲା । ଏହି ଆଶ୍ରମଗୁଡ଼ିକ ଥିଲା ଗୋଟିଏ ପ୍ରବହମାନ ସୌଧର ଗୋଟିଏ ଗୋଟିଏ ଘାଟ ସଦୃଶ । ଗୋଟିକର ଲକ୍ଷ୍ୟ ଅପରଠାରୁ ଭିନ୍ନ ହେଲେ ମଧ୍ୟ ଏଗୁଡ଼ିକ ଥିଲେ ପରସ୍ପର ସହିତ ଏକ ଗୂଢ଼ ସୂତ୍ରରେ ଗ୍ରଥିତ । ଏହି ସୂତ୍ରଟି ହେଲା ନିଃଶ୍ରେୟସ୍ ପ୍ରାପ୍ତିର ଅଭିପ୍ସା । ପ୍ରତିଟି ଅବସ୍ଥା ଲାଗି ବ୍ୟକ୍ତିକୁ ଯେଉଁ ଯୋଗ୍ୟତା ହାସଲ କରିବାକୁ ପଡ଼ୁଥିଲା, ତାହାର ମୂଳ ଲକ୍ଷ୍ୟ ଥିଲା ନିଃଶ୍ରେୟସ୍-ପ୍ରାପ୍ତି । ତେଣୁ ତା'ର ସକଳ ଅଭିପ୍ସା, ସକଳ ଉଦ୍ୟମ ହେଉଥିଲା । ନିଃଶ୍ରେୟସ୍‌ପ୍ରାପ୍ତିର ଅଭିମୁଖୀ । ଗୋଟିଏ ଆଶ୍ରମରେ ଥାଇ ତା'ଙ୍କୁ ପରବର୍ତ୍ତୀ ଆଶ୍ରମର ଯୋଗ୍ୟତା ହାସଲ କରିବା ପାଇଁ ପ୍ରସ୍ତୁତ ହେବାକୁ ପଡ଼ୁଥିଲା । ଏହିପରି ଭାବରେ ତା'ର ସାରା ଜୀବନ ଏକ ପ୍ରବହମାନ ଧାରା ଭଳି ଗଡ଼ି ଚାଲିଥିଲା ଏବଂ ତା'ଙ୍କୁ ସେହି ଧାରାର ପ୍ରତିଗୋଟି ଘାଟରେ କିଛି ସମସ୍ତ ପାଇଁ କଟାଇବାକୁ ପଡ଼ୁଥିଲା । ଅତଏବ, ଆର୍ଯ୍ୟମାନଙ୍କର ଆଶ୍ରମଧର୍ମ ମଧ୍ୟ ବର୍ଣ୍ଣଧର୍ମ ପରି ଏକ ସୁସ୍ଥ 'ବୈୟକ୍ତିକ' ଜୀବନ ନିର୍ବାହ ଲାଗି ସହାୟକ ହେବା ସଙ୍ଗେ ସଙ୍ଗେ ସାମାଜିକ ଶୃଙ୍ଖଳା ରକ୍ଷା କରି ଦେଶ ଓ ଜାତିର ସାମୂହିକ ଅଭିବୃଦ୍ଧି ଅଣାଇବାରେ ସମର୍ଥ ହୋଇ ପାରିଥିଲା ।

ଆମେ ଦେଖିଆଉଁ ଯେ ବୈଦିକ ଦର୍ଶନ ଥିଲା ବ୍ୟକ୍ତିକେନ୍ଦ୍ରିକ । ବାସ୍ତବିକ ଏହି ବ୍ୟକ୍ତିକେନ୍ଦ୍ରିକତା ଭାରତୀୟ ଦର୍ଶନକୁ ଏପରି ଆଚ୍ଛନ୍ନ କରି ରଖିଛି ଯେ ତାହା ସର୍ବଦା ବ୍ୟକ୍ତିଗତ ଅଭ୍ୟୁଦୟକୁ ଉତ୍ସାହିତ କରିଛି ଏବଂ କିପରି ନିଜର ଆତ୍ମିକ ପରିପୂର୍ଣ୍ଣତା ହାସଲ ହୋଇ

ପାଇବ, ସେଥିପ୍ରତି ଗୁରୁତ୍ୱ ଦେଉଥିଲା । କିନ୍ତୁ ଏହାର ସାମାଜିକ ଭିତ୍ତିଭୂମି ଥିଲା ସଂପୂର୍ଣ୍ଣ ପୃଥକ୍ । କେଉଁଟା ଠିକ କେଉଁଟା ଭୁଲ ତାହା ନିର୍ଣ୍ଣୟ କରିବାର ସ୍ୱାଧୀନତା ଅବଶ୍ୟ ବ୍ୟକ୍ତିବିଶେଷର ଥିଲା । କିନ୍ତୁ ଏହି ନିର୍ଣ୍ଣୟ ସର୍ବଦା ସମାଜର ମଙ୍ଗଳାଭିମୁଖୀ ହେଉଥିଲା । ସାମାଜିକ ସର୍ବସାଧାରଣ-ଚଳଣୀର ଏହା ପରିପନ୍ଥୀ ହେଉନଥିଲା । ଦାର୍ଶନିକ ଚେତନା ଓ ସାମାଜିକ ଚେତନାରେ ଥିବା ଏହି ଭିନ୍ନ ଦୃଷ୍ଟିଭଙ୍ଗୀ ବାସ୍ତବିକ ଏକ ସୁନ୍ଦର ସାମାଜିକ ସ୍ଥିତି ଗଢ଼ି ତୋଳିଥିଲା, ଯଦ୍ଦ୍ୱାରା ବ୍ୟକ୍ତିବାଦ ଓ ସମାଜବାଦ ମଧ୍ୟରେ ଏକ ପ୍ରକାର ସୁସମନ୍ୱୟ ଅଣାଯାଇ ପାରିଥିଲା ।

ଉପରଲିଖିତ ଆଲୋଚନା ଦୃଷ୍ଟେ ଆମେ ବୈଦିକ ସମାଜର ସ୍ଥିତି ସଂପର୍କରେ ନିମ୍ନଲିଖିତ ନିଷ୍କର୍ଷରେ ପହଞ୍ଚି ପାରିବା :

(କ) ବୈଦିକ କାଳରେ ରାଷ୍ଟ୍ରକୁ ସମାଜ ଅର୍ଥରେ ଗ୍ରହଣ କରାଯାଉଥିଲା ଏବଂ ଏହାର (ରାଷ୍ଟ୍ରର) ରାଜନୈତିକ ଅର୍ଥଠାରୁ ସାମାଜିକ ଅର୍ଥ ଉପରେ ଅଧିକତର ଗୁରୁତ୍ୱ ଆରୋପ କରାଯାଉଥିଲା ।

(ଖ) ଚତୁର୍ବର୍ଗ ଫଳପ୍ରାପ୍ତି ଥିଲା ବୈଦିକ ସମାଜର ଲକ୍ଷ୍ୟ ।

(ଗ) ଏହି ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ ପ୍ରତ୍ୟେକ ବ୍ୟକ୍ତିକୁ ନିର୍ଦ୍ଦିଷ୍ଟ କେତୋଟି ସଂସ୍କାର ମଧ୍ୟ ଦେଇ ଗତି କରିବାକୁ ପଡ଼ୁଥିଲା । ସ୍ମୃତି ମତରେ ଏଗୁଡ଼ିକର ସଂଖ୍ୟା ଥିଲା ଷୋହଳ ।

(ଘ) ଚିନ୍ତା ଓ କର୍ମ ମଧ୍ୟରେ ସମନ୍ୱୟ ସ୍ଥାପନ କରିବାର ଉଦ୍ୟମ କରା-ଯାଉଥିଲା । ସମସ୍ତଙ୍କୁ ନିର୍ଦ୍ଦିଷ୍ଟ କେତେକ ଆଚାରର ଅନୁବର୍ତ୍ତୀ ହୋଇ ଚଳିବାକୁ ପଡ଼ୁଥିଲା ।

(ଙ) ବୈଦିକ ସମାଜରେ 'ସପ୍ତ ମର୍ଯ୍ୟାଦା' ଉପରେ ଗୁରୁତ୍ୱ ଆରୋପ କରା-ଯାଉଥିଲା ।

(ଚ) ବୈଦିକ ସମାଜ ଥିଲା ପରିବାର-କୈନ୍ଦ୍ରିକ ; ବ୍ୟକ୍ତି-କୈନ୍ଦ୍ରିକ କିନ୍ତୁ ନୁହେଁ । ପରିବାରକୁ ସମାଜର ଏକକ ବୋଲି ଧରା ଯାଉଥିଲା ।

(ଛ) ବୈଦିକ ପରିବାର ଥିଲା ପିତୃକୈନ୍ଦ୍ରିକ ।

(ଜ) 'ବର୍ଣ୍ଣାଶ୍ରମ' ବ୍ୟବସ୍ଥା ବୈଦିକ ସାମାଜିକ ଧର୍ମର ଦୁଇ ପାଦ ସ୍ୱରୂପ ଥିଲା ଏବଂ ଏହାରି ଉପରେ ନିର୍ଭର କରି ସାରା ସମାଜ ଠିଆ ହୋଇଥିଲା । ବର୍ଣ୍ଣାଶ୍ରମ-ଧର୍ମର ପାଳନ ଲାଗି ସୁ-ଶୃଙ୍ଖଳ ନୀତିନିୟମମାନ ରଖାଯାଇଥିଲା ।

(୯) ଆର୍ଯ୍ୟ ସମାଜରେ 'ଅନୁଲୋମ' ଓ 'ପ୍ରତିଲୋମ' ପଦ୍ଧତିରେ ବିବାହ ପ୍ରଚଳନ ଫଳରେ ପ୍ରାଥମିକ ଅବସ୍ଥାରେ ଥିବା ଆର୍ଯ୍ୟମାନଙ୍କ ରକ୍ତଗତ ଶୁଦ୍ଧତା ପରେ ରକ୍ଷା କରିବା ସମ୍ଭବପର ହୋଇ ପାରିନଥିଲା । ଏହି ପୃଷ୍ଠଭୂମିରେ ବିଭିନ୍ନ ଜାତିର ସୃଷ୍ଟି ହୋଇଥିଲା ।

(୧୦) ପ୍ରାଥମିକ ଅବସ୍ଥାରେ ବର୍ଣ୍ଣର ନିର୍ଣ୍ଣୟ ଗୁଣ ଓ କର୍ମ ଭିତ୍ତିରେ କରି-ଯାଉଥିଲା । କିନ୍ତୁ କାଳକ୍ରମେ ତାହା ଜନ୍ମଭିତ୍ତିକ ହୋଇଉଠିଲା ଏବଂ ସେତେବେଳେ ସମାଜରେ ବଂଶଗତ ବାଛବିଚାର ଭାବ ଆସିଗଲା । ଏ ପ୍ରକାର ସ୍ଥିତି ଋଗ୍‌ବେଦୋତ୍ତର କାଳରେ ଆସିଗଲା ।

(୧୧) ବର୍ଣ୍ଣଧର୍ମର ଅପପ୍ରୟୋଗ ବେଳେ ବେଳେ ଯେ ନ ହୋଇଛି ତାହା ନୁହେଁ । ଏହା ସତ୍ତ୍ୱେ ଏହି ବ୍ୟବସ୍ଥାଟି ଯୁଗ ଯୁଗ ଧରି ଭାରତୀୟ ସାମାଜିକ-ସଂହତି ରକ୍ଷା କରିବାରେ ସାହାଯ୍ୟ କରି ଆସିଛି ।

(୧୨) ସେତେବେଳେ ସମାଜରେ ଦାସତ୍ୱ ପ୍ରଥା ପ୍ରଚଳିତ ଥିଲା । ବିଶେଷ କରି ଋଗ୍‌ବେଦୋତ୍ତର କାଳରେ ଏହାର ପ୍ରାଦୁର୍ଭାବ ଖୁବ୍ ଥିଲା । ଦାସଦାସୀ-ମାନଙ୍କର ସନ୍ତାନ-ସନ୍ତତିମାନେ ସମାଜରେ ଏକ ଦୟନୀୟ ଅବସ୍ଥାର ଶିକାର ହୋଇଥିଲେ ।

ଏହା ହେଲା ବୈଦିକ ସାମାଜିକ ଜୀବନର ଏକ ସ୍ଥୂଳ ପ୍ରତିଛବି ।

## ଟିପ୍ପଣୀ

୧ । Balsastri Hardas : Glimpses of the Vedic Nation : p. 397.

୧-କ । History and Culture of the Indian People Vol I : Religion and Philosophy : Article by V. M. Apte : p. 386.

୨ । Jawaharlal Nehru : The Discovery of India (6th Impression, 1984) : p. 79.

୩ । ଶ୍ରୀଅରବିନ୍ଦ : ଭାରତୀୟ ସଂସ୍କୃତିର ଆଧାର : ଲଳିତମୋହନ ଘୋଷ ଓ ଅନ୍ୟାନ୍ୟ (ଓଡ଼ିଆ ଅନୁବାଦ) : ପୃ. ୨୫୦ ।

୩-କ । ବାଚସ୍ପତି ଗୈରୋଲା : ବୈଦିକ ସାହିତ୍ୟ ଔର୍ ସଂସ୍କୃତି : ପୃ. ୩୩୪ ।
୪ । Balsastri Hardas : op: cit : p. 397.
୫ । ଆନନ୍ଦସ୍ୱାମୀ ବିଶ୍ୱାସ : ପ୍ରାଚୀନ ଭାରତ କା ରାଜନୀତିକ ସାମାଜିକ ଔର୍ ସାଂସ୍କୃତିକ ଇତିହାସ (୧୯୮୨) : ପୃ. ୬୦ ।
୫-କ । ଋଗ୍‌ବେଦ, ୧।୫୧।୬ ; ୪।୨୬।୩ ; ୫।୪୭।୨୨ ।
୬ । A. L. Basham : The Wonder that was India : Rupa & co. (1985 Reprint) : p. 160.
୭ । ବୃହଦାରଣ୍ୟକ ଉପନିଷଦ, ୬।୪ ।
୮ । ଅଥର୍ବବେଦ, ୫।୨୫ ।
୯ । ମନୁସ୍ମୃତି, ୮।୨୨୭ ।
୧୦ । ଏହି ପଞ୍ଚ ମହାଯଜ୍ଞ କ'ଣ ତାହା ନିମ୍ନରେ ଦର୍ଶା ଯାଉଅଛି । ଉଚ୍ଚ ତିନି ବର୍ଣ୍ଣର ପ୍ରତ୍ୟେକ ଗୃହସ୍ଥଙ୍କୁ ଏହା କରିବାକୁ ପଡ଼ୁଥିଲା :

(କ) ବ୍ରହ୍ମଯଜ୍ଞ— ଏହା ହେଉଛି ଜ୍ଞାନର ଯଜ୍ଞ । ଏଥିରେ ଅନ୍ତତଃ ପ୍ରତିଦିନ କିଛି ମନ୍ତ୍ର ଉଚ୍ଚାରଣ କରିବାକୁ ପଡ଼ୁଥାଏ ।

(ଖ) ଦେବଯଜ୍ଞ— ଏଥିରେ ଦେବତାମାନଙ୍କ ଲାଗି କିଛି ଦ୍ରବ୍ୟ ଅର୍ପିତ ହୋଇଥାଏ ।

(ଗ) ପିତୃଯଜ୍ଞ— ପିତୃ-ପୁରୁଷମାନଙ୍କ ପ୍ରତି ସମ୍ମାନ ଓ କୃତଜ୍ଞତା ପ୍ରକାଶ କରିବାକୁ ଯାଇ ସେମାନଙ୍କୁ ନିତି ଏଥିରେ ସ୍ମରଣ କରାଯାଉଥାଏ ।

(ଘ) ଭୂତଯଜ୍ଞ— ଭୂତ ବା ଜୀବମାନଙ୍କ ଲାଗି ଏଥିରେ ବଳି ଅର୍ପିତ କରାଯାଇଥାଏ ; ଯଥା କୁଆ ଓ କୁକୁର-ମାନଙ୍କ ଲାଗି ଖାଦ୍ୟ ।

(ଙ) ନୃଯଜ୍ଞ— ଏହା ମଣିଷମାନଙ୍କ ଉଦ୍ଦେଶ୍ୟରେ କରା-ଯାଇଥାଏ । ଏହାର ଅର୍ଥ ହେଉଛି ଅତିଥି-ସତ୍କାର ।

ଦେଖନ୍ତୁ S. S. Dange (Ed) : Sacrifice in India— Concept and Evolution : Aligarh (1987) : Inaugural Address by M. D. Limaye : p. xii.

(୧୦-କ) ଋଗ୍‌ବେଦ, ୭।୮୭।୨ ; ୭।୮୮।୫-୬ ।

୧୧ । History and Culture of the Indian People, Vol I : "Religion and Philosophy" : Article by V. M. Apte : p. 385.

୧୨ । ଋଗ୍‌ବେଦ, ୧୦।୧୧୭ ।

୧୩ । ତାଣ୍ଡ୍ୟ ବ୍ରାହ୍ମଣ, ୧୮।୨।୧୯ ।

୧୪ । ବାଚସ୍ପତି ଗୈରୋଲା ବୈଦିକ ସାହିତ୍ୟ ଔର୍ ସଂସ୍କୃତି : ପୃ ୩୪୧ ।

୧୫ । ଋଗ୍‌ବେଦ, ୧୦।୫।୬ ।

୧୬ । A. C. Das : Vedic Culture : R. Cambray & Co., Calcutta (1925) ; p. 368.

୧୭ । ଋଗ୍‌ବେଦ, ୧।୧୨୪।୭ ; ୪।୫।୫ ।

୧୮ । A. C. Das : op. cit : p. 368.

୧୯ । ଆନେସ୍ଥୀ ବିଶ୍ୱାସ : ପ୍ରାଚୀନ ଭାରତ କା ରାଜନୀତିକ ସାମାଜିକ ଔର୍ ସାଂସ୍କୃତିକ ଇତିହାସ (୧୯୮୨) : ପୃ. ୬୦ ।

୨୦ । The Cultural Heritage of India, Vol. I : "Vedic Society" : Article by A. S. Altekar : p. 222.

୨୦-କ । P. L. Bhargava : India in the Vedic Age : p. 242.

୨୧ । A. L. Basham : op. cit : p. 156.

୨୨ । ଅଥର୍ବବେଦ, ୫।୨୧।୩ ।

୨୩ । A. L. Basham : op. cit : p. 156.

୨୪ । Balsastri Hardas : op. cit ; Quoting Justice Woodrof from 'Is India Civilised' : p. 407.

୨୫ । P. L. Bhargava : op. cit : p. 236.

୨୬ । ଋଗ୍‌ବେଦ, ୧।୧୨୯।୬ ।

୧୭ । ଋଗ୍‌ବେଦ, ୯।୧୦।୪୨ ; ୨।୯।୨।୪ ; ୪।୪।୨।୯ ; ୭।୬।୪।୨ ।
୧୭-କ । ଋଗ୍‌ବେଦ, ୩।୪।୩।୫ ।
୧୭-ଖ । ମନୁସ୍ମୃତି, ୧୦।୭୬ ।
୧୮ । ଐତରେୟ ବ୍ରାହ୍ମଣ, ୧।୨।୩ ।
୧୯ । ଶତପଥ ବ୍ରାହ୍ମଣ, ୬।୪।୪।୯୫ ।
୧୯-କ । P. L. Bhargava ; op. cit : p. 240.
୩୦ । History and Culture of the Indian People, Vol I : "Social and Economic Conditions" : Article by V. M. Apte : p. 389.
୩୧ । ବାଜସନେୟୀ ସଂହିତା : ଷୋଡ଼ଶ ଅଧ୍ୟାୟ ।
୩୨ । History and Culture of the Indian People, Vol I : "Social and Economic Conditions" : Article by V. M. Apte : p. 515.
୩୩ । ଅଥର୍ବବେଦ, ୨।୯୫।୪ ଇତ୍ୟାଦି ।
୩୪ । Balsastri Hardas : op. cit : p. 441.
୩୪-କ । ଐତରେୟ ବ୍ରାହ୍ମଣ, ୮।୪୦।୪ ।
୩୫ । Balsastri Hardas : op. cit : p. 450.
୩୫-କ । ମହାଭାରତ, ୯୯।୩୬ ।
୩୬ । ଗୌତମ ଧର୍ମସୂତ୍ର, ୧୦ମ ଅଧ୍ୟାୟ ।
୩୬-କ । Jawaharlal Nehru : op. cit : p. 86.
୩୬-ଖ । Jogiraj Basu : India of the Age of the Brahmanas (1969) : p. 18.
୩୬-ଗ । ଐତରେୟ ବ୍ରାହ୍ମଣ, ୮।୯।୮ ।
୩୭ । ଐତରେୟ ବ୍ରାହ୍ମଣ, ୮।୩।୭।୫ ।
୩୮ । The Cultural Heritage of Indita, Vol I : "Vedic Society" : Article by A. S : Altekar : p. 229.
୩୮-କ । S. Radhakrishnan : Religion and Society (1966 Impression) : p. 137.

୩୯ । Balsastri Hardas : op. cit : p. 468.

୩୯-କ । Jawaharlal Nehru ; op. cit p. 86.

୪୦ । Jogiraj Basu : op. cit : p. 21.

୪୦-କ । ଋଗ୍‌ବେଦ, ୧।୨୫।୧ ।

୪୧ । Jawaharlal Nehru : op. cit : p. 85.

୪୨ । ଐତରେୟ ବ୍ରାହ୍ମଣ, ୨।୧୦।୧ ।

୪୩ । History and Culture of the Indian People, Vol I : "Social and Economic Conditions" : Article by V. M Apte : p. 455.

୪୪ । A L Basham : op. cit : p. 144.

୪୫ । ମନୁସ୍ମୃତି, ୧୦।୪୧ ।

୪୬ । ଅର୍ଥଶାସ୍ତ୍ର, ୩।୧୩ ।

୪୭ । ତାଣ୍ଡ୍ୟ ବ୍ରାହ୍ମଣ, ୨।୩।୯ ।

୪୮ । ତାଣ୍ଡ୍ୟ ବ୍ରାହ୍ମଣ, ୧।୨।୬।୭ ।

୪୯ । Jogiraj Basu : op. cit p. 12.

୫୦ । ଐତରେୟ ବ୍ରାହ୍ମଣ, ୭।୩୩।୬ ।

୫୧ । D. D. Kosambi : The Culture and Civilisation of Ancient India in Historical Outline ; p. 88.

(୫୧-କ) The Complete Works of Swami Vivekananda, Vol. 4 (1989) ; p. 299.

୫୨ । A. L. Basham ; op. cit ; p. 159.

୫୩ । ମନୁସ୍ମୃତି, ୬।୯୦ ।

୫୪ । ବୁଦ୍ଧଦେବ ବସୁ : ମହାଭାରତେର କଥା : ରବୀନ୍ଦ୍ରନାଥ ଠାକୁର ଉଦ୍ଧୃତ : ପୃ. ୧୫୨ ।

ଷଷ୍ଠ ପରିଚ୍ଛେଦ

# ବିବାହ ଓ ନାରୀ

ବୈଦିକ ବିଭିନ୍ନ ଅନୁଷ୍ଠାନଗୁଡ଼ିକ ମଧ୍ୟରେ ବିବାହ ଅନୁଷ୍ଠାନଟି ଥିଲା ଅତି ଗୁରୁତ୍ୱପୂର୍ଣ୍ଣ ଓ ପବିତ୍ର । ଏହା କେବଳ ସ୍ତ୍ରୀ ଓ ପୁରୁଷର ମିଳନ ଉଦ୍ଦେଶ୍ୟରେ ଦୈହିକ ସୁଖ ଉତ୍ପାଦନ ଲାଗି ଉଦ୍ଦିଷ୍ଟ ନଥିଲା । ଏହା ଉଭୟ ଐହିକ ଓ ପାରତ୍ରିକ ସୁଖ ଆଣିଦେବାରେ ସହାୟକ ହେଉଥିଲା । ଉଭୟ ସ୍ୱାମୀସ୍ତ୍ରୀ, ଗୃହସ୍ଥାଶ୍ରମରେ ରହି ସେମାନଙ୍କର ବିଭିନ୍ନ କର୍ତ୍ତବ୍ୟ ସମ୍ପାଦନ ଦ୍ୱାରା 'ଚତୁର୍ବର୍ଗ' ଫଳପ୍ରାପ୍ତି ମାର୍ଗରେ କ୍ରମେ କ୍ରମେ ଆଗେଇ ଚାଲିଥିଲେ । ସେମାନଙ୍କର ଗତି ବା ମୁକ୍ତି ପାଇବାକୁ ଏହି ଅନୁଷ୍ଠାନଟି ତ୍ୱରାନ୍ୱିତ କରାଇ ଦେଉଥିଲା । ବାସ୍ତବିକ 'ବିବାହ' ଶବ୍ଦଟିର ଶବ୍ଦତାତ୍ତ୍ୱିକ ଅର୍ଥରେ ଏହି ସତ୍ୟଟି ହିଁ ନିହିତ । 'ବି' ଅର୍ଥ ହେଲା ଗତି ବା ମୁକ୍ତି । ସେଇଥିପାଇଁ ଯେଉଁ ଅନୁଷ୍ଠାନଟି ବହନ କରି ନେଇଯାଏ, ତାହାକୁ କୁହାଯାଏ 'ବିବାହ' । ଏହାର ତାତ୍ପର୍ଯ୍ୟ ହେଲା ବିନା ବିବାହରେ ବ୍ୟକ୍ତିଙ୍କ ମୁକ୍ତି ମିଳିପାରିବ ନାହିଁ । ଯେଉଁମାନେ ଘରସଂସାର ନକରି ଆଜନ୍ମ ବ୍ରହ୍ମଚାରୀ କିମ୍ବା ବ୍ରହ୍ମଚାରିଣୀ ହୋଇ ରହିବେ, ସେମାନଙ୍କ କଥା ଅଲଗା । କିନ୍ତୁ ଲୋକାଳୟରେ ଘରସଂସାର କରି ରହିଲେ ବିବାହ ଆବଶ୍ୟକ । ଏପରିକି ଅରଣ୍ୟରେ ମଧ୍ୟ ମୁନିଋଷିମାନେ ବୈବାହିକ ଜୀବନ ଯାପନ କରିଥାନ୍ତି । ଗୃହସ୍ଥଙ୍କର ଯେଉଁ ପାଞ୍ଚ ପ୍ରକାର ଯଜ୍ଞ କରିବାର କଥା, ବିବାହ ବିନା ସେ ତାହା କରିପାରିବେ ନାହିଁ । ସେଥିପାଇଁ ତ ଶତପଥ ବ୍ରାହ୍ମଣରେ କୁହାଯାଇଛି :

"ଅଯଜ୍ଞୀୟୋ ବୈ ସ ଯୋଽପତ୍ନୀକଃ" । (୧)

ଅର୍ଥାତ୍ ଯାହାଙ୍କର ପତ୍ନୀ ନାହାନ୍ତି, ସେ ଯଜ୍ଞ କରିପାରିବେ ନାହିଁ । ପାଣିନିଙ୍କ କହିବା ଅନୁସାରେ, ଏହାଙ୍କର ପତିଙ୍କ ଯଜ୍ଞରେ ଯୋଗ ଦେବାର ଅଧିକାର ଅଛି ବୋଲି ଏହାଙ୍କୁ କୁହାଯାଏ 'ପତ୍ନୀ' । (୧-କ) ସେଥିପାଇଁ ଯଥାର୍ଥରେ କୁହାଯାଇଛି :

"Vedic sacrifices were jointly performed by the husband and the wife, and the singing of the Vedic hymns during the sacrificial session was long considered as the most appropriate function of the wife, though in the later

> Brahman period, was assigned to the Udgatas," (୯-ଖ)

ଛାତ୍ରାବସ୍ଥା ପ୍ରାୟ ବାରବର୍ଷ ପର୍ଯ୍ୟନ୍ତ ଚାଲୁଥିଲା । ଏହା ଶେଷରେ ଗୁରୁଗୃହରେ ଛାତ୍ରକୁ ଶେଷ ସ୍ନାନ କରିବାକୁ ପଡ଼ୁଥିଲା ଏବଂ ସେଥିପାଇଁ ତା'କୁ କୁହାଯାଉଥିଲା ସ୍ନାତକ । ସେତେବେଳକୁ ତା'ର ପୂର୍ଣ୍ଣ ଯୌବନାବସ୍ଥା । ସେ ସୁନ୍ଦର ବସନ-ଭୂଷଣ ପିନ୍ଧି ପିତୃଗୃହକୁ ଫେରି ଆସୁଥିଲା । ଏହାକୁ ଏକ ଉତ୍ସବ ଭାବରେ ପାଳନ କରାଯାଉଥିଲା । ଏହାର ନାମ ହେଲା ସମାବର୍ତ୍ତନ । ଏହି ସମାବର୍ତ୍ତନ-ଉତ୍ସବର ପରେ ପରେ ତା'କୁ ବିବାହ-ବନ୍ଧନରେ ବାନ୍ଧି ହେବାକୁ ପଡ଼ୁଥିଲା । ସେହିଠାରୁ ଆରମ୍ଭ ହେଉଥିଲା ତାର ଗୃହସ୍ଥାଶ୍ରମ । ଏହାକୁ ଲକ୍ଷ୍ୟ କରି ବାସମ୍ ଯଥାର୍ଥରେ କହନ୍ତି :

> "From now on he was a Snataka (one who has bathed), and he might enjoy normal worldly pleasures, eat any kind of food usually eaten by his class, and wear fine clothes and jewellery, which he put on at a special homecoming ceremony (Samavartan)." (୧)

ଅତଏବ, ବ୍ରହ୍ମଚର୍ଯ୍ୟର କୃଚ୍ଛ୍ର ସାଧନା ପରେ ଜୀବନକୁ ସମ୍ପୂର୍ଣ୍ଣ ଭାବରେ ଉପଭୋଗ କରିବା ପାଇଁ ଗୃହସ୍ଥାଶ୍ରମ ଉପଯୁକ୍ତ ସୁବିଧାସୁଯୋଗ ଦେଉଥିଲା ଏବଂ ବିବାହ ସ୍ୱାମୀସ୍ତ୍ରୀଙ୍କୁ ବହୁ ଦାୟିତ୍ୱ ନିର୍ବାହ କରିବା ପାଇଁ ସହାୟକ ହୋଇ ସେମାନଙ୍କର ସୁଖ-ସାଧନରେ ଏକ ଉପାୟ ଭାବରେ ମଧ୍ୟ ଠିଆ ହୋଇ ପାରୁଥିଲା ।

ଏ ତ ଗଲା ପୁରୁଷ ପିଲାଙ୍କର ପାଠପଢ଼ା କଥା, ଯାହା ପରେ କି ସେମାନେ ବିବାହ କରିବାକୁ ଯୋଗ୍ୟ ବିବେଚିତ ହେଉଥିଲେ । ଝିଅ ପିଲାମାନେ ମଧ୍ୟ ପାଠ ପଢ଼ୁଥିଲେ ଏବଂ ସେମାନଙ୍କୁ ମଧ୍ୟ କୁହାଯାଉଥିଲା ବ୍ରହ୍ମଚାରିଣୀ । କିନ୍ତୁ ସେମାନେ ଘରେ ଥାଇ ବାପା କିମ୍ବା ବଡ଼ ଭାଇଙ୍କ ପାଖରୁ ପାଠ ଶିଖୁଥିଲେ । ଯମ ସ୍ମୃତିରେ ତେଣୁ ଯଥାର୍ଥରେ ଉଲ୍ଲେଖ ଅଛି ଯେ 'ପୁରାକାଳେ ତୁ ନାରୀଣାଂ ମୌଞ୍ଜୀବନ୍ଧନମିଷ୍ୟତେ ।' ଅର୍ଥାତ୍ ପୁରା-କାଳରେ ସ୍ତ୍ରୀମାନେ ମଧ୍ୟ ମୌଞ୍ଜୀ-ବନ୍ଧନ ପିନ୍ଧି ବ୍ରହ୍ମଚର୍ଯ୍ୟବ୍ରତ ପାଳୁଥିଲେ । ଝିଅମାନଙ୍କୁ ଦୂରକୁ ଗୁରୁକୁଳ-ଆଶ୍ରମକୁ ପଠାଇ ପାଠ ପଢ଼ାଇବାରେ ନାନା ଅସୁବିଧା ଉପୁଜିବାର ଆଶଙ୍କା କରି ବୈଦିକ ଆର୍ଯ୍ୟମାନେ ସେମାନଙ୍କୁ ପିତୃଗୃହରେ ଶିକ୍ଷା ଦେବାର ବ୍ୟବସ୍ଥା

କରିଥିଲେ । ଏଥିପ୍ରତି ଲକ୍ଷ୍ୟ କରି ବାଲଶାସ୍ତ୍ରୀ ହରଦାସ ଯଥାର୍ଥରେ କହୁଛନ୍ତି :

> "That was only to avoid the undesirable consequences. Our fore-fathers permitted their female progeny to receive education and at the same time took care to avoid the bad results." (୩-କ)

ବୈଦିକ ବିବାହ ଥିଲା ସ୍ୱାମୀସ୍ତ୍ରୀଙ୍କ ଏକ ପବିତ୍ର ମିଳନ । ଏହା ଦେବତାମାନଙ୍କ ଆଶୀର୍ବାଦ ଓ ନିର୍ଦ୍ଦେଶରେ ସଂଘଟିତ ହୋଇ ଆର୍ଯ୍ୟମାନେ ଭାବୁଥିଲେ । ଏହାର ଉଦ୍ଦେଶ୍ୟ ମଧ୍ୟ ସେହିପରି ଦେବନିର୍ଦ୍ଦିଷ୍ଟ ବୋଲି ସେମାନେ ଧାରଣା କରୁଥିଲେ । ଦେବତାମାନଙ୍କର ଏହି ଇଚ୍ଛା ପୂରଣ କରିବା ପାଇଁ ତେଣୁ ସେମାନେ ସତତ ଯତ୍ନଶୀଳ ହୋଇ ଉଠୁଥିଲେ । ବିବାହ-ବନ୍ଧନ ଥିଲା ସ୍ୱାମୀସ୍ତ୍ରୀଙ୍କ ପାଇଁ ଅଚ୍ଛେଦ୍ୟ । ବିବାହ-ମନ୍ତ୍ରରେ ସେଥିପାଇଁ ସ୍ୱାମୀ ସ୍ତ୍ରୀଙ୍କୁ କହୁଥାନ୍ତି, "ଆକାଶ ଓ ଧରଣୀର ସମ୍ପର୍କ ଯେଉଁଭଳି ଚିରନ୍ତନ. ତୁମର ଓ ମୋ'ର ସମ୍ପର୍କ ଠିକ୍ ସେହିଭଳି ଚିରନ୍ତନ ରହିଥାଉ ।" ସ୍ୱାମୀସ୍ତ୍ରୀ ଇହକାଳ ଓ ପରକାଳ ଉଭୟରେ ଯେ ଚିରସାଥୀ ହୋଇ ରହିଥାନ୍ତି, ଏହା ଥିଲା ବୈଦିକ ଆର୍ଯ୍ୟମାନଙ୍କର ଏକ ବଳିଷ୍ଠ ଧାରଣା । ଗୃହ୍ୟସୂତ୍ର ପଢ଼ିଲାବେଳେ ସ୍ୱାମୀ ସ୍ତ୍ରୀଙ୍କୁ କ'ଣ କହୁଥାନ୍ତି, ତାହା ଅନୁଧ୍ୟାନ କଲେ ଆମେ ଏହି ବିବାହବନ୍ଧନର ପବିତ୍ରତା ଓ ଅଚ୍ଛେଦ୍ୟତା କଥା ସମ୍ୟକ୍ ଭାବରେ ବୁଝି ପାରିବା । ସେହି ମନ୍ତ୍ରଟି ହେଲା :

> "ଗୃହ୍ଣାମି ତେ ସୌଭଗତ୍ୱାୟ ହସ୍ତଂ ମୟା ପତ୍ୟା ଜରଦଷ୍ଟିଃ ଯଥା ଅସଃ ।
> ଭଗଃ ଅର୍ଯ୍ୟମା ସବିତା ପୁରନ୍ଧିଃ ମହ୍ୟଂ ତ୍ୱା ଅଦୁଃ ଗାର୍ହପତ୍ୟାୟ ଦେବାଃ ॥' (୩)

ଏହାର ଅର୍ଥ ହେଲା, ତୁମର ସୌଭାଗ୍ୟ ଆଣିବା ଲାଗି ମୁଁ ତୁମ ହାତ ଧରୁଛି । ମୁଁ ତୁମ ସ୍ୱାମୀ ଏବଂ ତୁମେ ମୋ ସାଥିରେ ବାର୍ଦ୍ଧକ୍ୟ ଅବସ୍ଥା ପାଇବା ଯାଏ ରହିବ । ଗୃହସ୍ଥାଶ୍ରମର କାର୍ଯ୍ୟ ନିର୍ବାହ କରିବା ଲାଗି ଭଗ, ଅର୍ଯ୍ୟମା, ସବିତା ଓ ପୁରନ୍ଧି ଆଦି ଦେବତାମାନେ ମତେ ତୁମକୁ ଆଣି ଦେଇଛନ୍ତି । ଏହି ଗୋଟିଏ ମାତ୍ର ମନ୍ତ୍ରକୁ ଅନୁଧ୍ୟାନ କଲେ ଆମେ ବୈଦିକ ବିବାହର ମୂଳ ଲକ୍ଷ୍ୟ ବିଷୟରେ ଏକ ସ୍ଥୂଳ ଧାରଣା କରି ପାରିବା । ଏହା ହେଲା :

(କ) ବୈଦିକ ବିବାହକୁ ସ୍ତ୍ରୀମାନଙ୍କର ଭାଗ୍ୟୋଦୟ ବୋଲି କଳ୍ପନା କରାଯାଉଥିଲା । ସ୍ୱାମୀଙ୍କ ସହିତ ସ୍ତ୍ରୀ ରହିଲେ ଯାଇ ସେ ସୌଭାଗ୍ୟବତୀ ରୂପେ ଗଣା ଯାଉଥିଲା । ଏବେ ମଧ୍ୟ କୌଣସି ସ୍ତ୍ରୀକୁ ଭାରତୀୟ

ସମାଜରେ ଆଶୀର୍ବାଦ ଦେଲେ ଆମେ 'ସୌଭାଗ୍ୟବତୀ ହୁଅ' ବୋଲି ଆମେ କହୁଥାଉଁ ।

(ଖ) ସ୍ତ୍ରୀ-ପୁରୁଷ ବାର୍ଦ୍ଧକ୍ୟାବସ୍ଥା ଯାଏ ଏକତ୍ର ରହିବାର କଳ୍ପନା କରାଯାଇଥିଲା । ଏହାର ତାତ୍ପର୍ଯ୍ୟ ହେଲା, ବିବାହ-ବନ୍ଧନ ଥିଲା ଅବିଭାଜ୍ୟ ଏବଂ ସ୍ୱାମୀସ୍ତ୍ରୀ ଆମରଣ ଏକାଠି ରହୁଥିଲେ ।

(ଗ) ହାତଗଣ୍ଠି ପଡ଼ିବା ସଙ୍ଗେ ସଙ୍ଗେ ସ୍ୱାମୀ ସ୍ତ୍ରୀଙ୍କ ମନର ଗଣ୍ଠି ମଧ୍ୟ ପଡ଼ିଯାଉଥିଲା । ସେହିଦିନଠାରୁ ଉଭୟଙ୍କର ମନ ଏକମୁଖୀ ହେଉଥିଲା ଏବଂ ପରସ୍ପର ସହିତ ଉତ୍ତମ ବୁଝାମଣା ଭାବ ରଖି ସେମାନେ ଜୀବନ-ନିର୍ବାହ କରୁଥିଲେ ।

(ଘ) ଏ ପ୍ରକାର ବିବାହ-ବନ୍ଧନକୁ ଦୈବନିର୍ଦ୍ଦିଷ୍ଟ ବୋଲି କଳ୍ପନା କରାଯାଉଥିଲା ।

(ଙ) ଏହାର ଏକମାତ୍ର ଉଦ୍ଦେଶ୍ୟ ଥିଲା ଉତ୍ତମ ଭାବରେ ଗୃହସ୍ଥାଶ୍ରମ-ଧର୍ମ ପାଳନ କରିବା ।

ବାସ୍ତବିକ, ଏହି ଭାବଟିକୁ ଲକ୍ଷ୍ୟ କରି ଭାର୍ଗବ କହୁଛନ୍ତି :

"Marriage in the Vedic age was regarded as a religious sacrament and indissoluble by human action." (୪)

ଏଭଳି ପରିସ୍ଥିତିରେ ସ୍ତ୍ରୀ କମ୍ବା ସ୍ୱାମୀ କେହି କାହାକୁ ଛାଡପତ୍ର ଦେବା ପ୍ରଶ୍ନ ହିଁ ସେତେବେଳେ ନଥିଲା ।

ବୈଦିକ ବିବାହରେ ସ୍ୱାମୀସ୍ତ୍ରୀଙ୍କର ପରସ୍ପର ସହିତ ମନ ମିଳିବା ଉପରେ ଖୁବ୍ ଗୁରୁତ୍ୱ ଦିଆଯାଉଥିଲା । ଜଣେ ଅପରକୁ ନିଜ ଆତ୍ମାର ଅଂଶ ବୋଲି ଭାବୁଥିଲେ । ପରସ୍ପର ସହିତ ବୁଝାମଣା ଭାବକୁ ଅତୁଟ ରଖିବା ପାଇଁ ଉଭୟ ପକ୍ଷରୁ ଉଦ୍ୟମ ହେଉଥିଲା । ବୈଦିକ ଶାସ୍ତ୍ରାଧାରରେ ଦେଖିବା ଅଛି :

"ଅର୍ଦ୍ଧୋ ହବା ଏଷ ଆତ୍ମନୋ ଯତ୍ ଜାୟା" । (୫)

ଅର୍ଥାତ୍ ଏ ନିଜର ଅର୍ଦ୍ଧେକ ବୋଲି ଏହାଙ୍କୁ କୁହାଯାଏ 'ଜାୟା' । ଏହାଙ୍କୁ ପତ୍ନୀ କାହିଁକି କୁହାଯାଏ ସେ ବିଷୟରେ ଶତପଥ ବ୍ରାହ୍ମଣରେ (୫।୨।୧।୮) ଠାଏ ଲେଖାଅଛି । ସେଠାରେ କୁହାଯାଇଛି :

"ଜଘନାର୍ଦ୍ଧୋ ବା ଏଷ ଯଜ୍ଞସ୍ୟ ଯତ୍ ପତ୍ନୀ" ।

ଅର୍ଥାତ୍ ଏହାଙ୍କୁ ଜଂଘରେ ଅର୍ଦ୍ଧାଙ୍ଗିନୀ ଭାବରେ ବସାଇ ଯଜ୍ଞ କରାଯାଏ ବୋଲି, ଏ ହେଉଛନ୍ତି ପତ୍ନୀ । ପତିପତ୍ନୀଙ୍କ ଅବଚ୍ଛେଦ୍ୟ ସମ୍ପର୍କର ସମର୍ଥନ ଅନୁରଣନ ମଧ୍ୟ ଐତରେୟ ବ୍ରାହ୍ମଣରେ (୬।୩.୩।୯) ଆମେ ଶୁଣିପାରୁ, ଯେଉଁଠି କୁହାଯାଇଛି :

ବୃଷା ସତ୍ୟଂ ଯୋଷା ଶ୍ରଦ୍ଧା ବୃଷା ମନୋ ଯୋଷା ବାକ୍ ଯଜୈବ ପତିସ୍ତଥ ଜାୟା" ।

ଅର୍ଥାତ୍ ସ୍ୱାମୀ ସତ୍ୟ ହେଲେ ସ୍ତ୍ରୀ ହେଉଛନ୍ତି ଶ୍ରଦ୍ଧା ; ସ୍ୱାମୀ ମନ ହେଲେ ସ୍ତ୍ରୀ ହେଉଛନ୍ତି ବାଣୀ ; ସ୍ୱାମୀ ଯେଉଁଠି ଥାଆନ୍ତି, ସ୍ତ୍ରୀ ରହୁଥାନ୍ତି ସେଇଠି । ସତ୍ୟ ସହିତ ଶ୍ରଦ୍ଧାର ସଂପର୍କ ନିତ୍ୟ ଏବଂ ମନ ସହିତ ବାଣୀର ସଂପର୍କ ନିତ୍ୟ । ଠିକ୍ ଅନୁରୂପ ଭାବରେ ପତିପତ୍ନୀଙ୍କ ପାରସ୍ପରିକ ହେଉଛି ନିତ୍ୟ ଓ ଅବଚ୍ଛେଦ୍ୟ । ସ୍ୱାମୀ ନିଜ ସ୍ତ୍ରୀଙ୍କୁ ନିଜର ଅର୍ଦ୍ଧେକ ବୋଲି ଯଦି ଜ୍ଞାନ କରନ୍ତି, ତେବେ ପ୍ରତିବଦଳରେ ଠିକ୍ ଅନୁରୂପ ଧାରଣା ସ୍ତ୍ରୀଙ୍କର ସ୍ୱାମୀଙ୍କ ପ୍ରତି ଆସିବ ଏବଂ ଉଭୟ ପରସ୍ପରର ଅଭିବୃଦ୍ଧି ଲାଗି, ସନ୍ତୋଷବିଧାନ ଲାଗି ଚେଷ୍ଟିତ ହେବେ । ତଦ୍ଦ୍ୱାରା ଦାମ୍ପତ୍ୟ-ଜୀବନ ସୁଖମୟ ହେବ ଏବଂ ପରିବାରରେ ଶାନ୍ତି ବିରାଜିବ । ମନୁ ମଧ୍ୟ ଏହି ବୈଦିକ ପରମ୍ପରାଟି ଉପରେ ଖୁବ୍ ଗୁରୁତ୍ୱ ଆରୋପ କରିଛନ୍ତି । ତାଙ୍କ କହିବା କଥା ହେଲା :

"ସନ୍ତୁଷ୍ଟୋ ଭାର୍ଯ୍ୟୟା ଭର୍ତ୍ତା ଭର୍ତ୍ତ୍ରା ଭାର୍ଯ୍ୟା ତଥୈବଚ ।
ଯସ୍ମିନ୍ନେବ କୁଳେ ନିତ୍ୟଂ କଲ୍ୟାଣଂ ତତ୍ର ବୈ ଧ୍ରୁବମ୍ ।। (୬)

ଅର୍ଥାତ୍ ଯେଉଁଠି ସ୍ତ୍ରୀ ସ୍ୱାମୀଙ୍କୁ ସନ୍ତୁଷ୍ଟ କରୁଥାନ୍ତି ଏବଂ ସ୍ୱାମୀ ସ୍ତ୍ରୀଙ୍କୁ ସନ୍ତୁଷ୍ଟ କରୁଥାନ୍ତି, ସେହି କୁଳରେ ନିଶ୍ଚିତ ଭାବରେ ମଙ୍ଗଳର ଅଭ୍ୟୁଦୟ ହୋଇଥାଏ । ସ୍ୱାମୀ ଓ ସ୍ତ୍ରୀଙ୍କର ଏହି ପାରସ୍ପରିକ ପ୍ରୀତିଭାବ, ଏକର ସନ୍ତୋଷ ଲାଗି ଅପରର ପ୍ରାଣଭରା ଉଦ୍ୟମ, ପରସ୍ପରକୁ ସୁଖ ଦେବାର ଅଭୀପ୍ସା ବୈଦିକ ପରିବାରକୁ ସୁଖମୟ କରି ତୋଳିଥିଲା । ନାରୀକୁ କୁହା ଯାଉଥିଲା ମଙ୍ଗଳମୟୀ ; କାରଣ ସେ ପରିବାର ପାଇଁ ମଙ୍ଗଳର ମଧୁ ଝରାଇ ଦେଇ ଯାଉଥିଲା । ବାସ୍ତବିକ ନାରୀର 'ବଧୂ' ନାମର ସାର୍ଥକ ଅଛି ଏଇଠି । 'ବ' ଅର୍ଥ ହେଲା ଆନନ୍ଦ । ଏହାକୁ 'ଧୂନୋତି' ବା କମ୍ପମାନ କରି କରି ଯେ ଆସେ ସେ ହେଲା ବଧୂ । ଏହାର ତାତ୍ପର୍ଯ୍ୟ ହେଲା, ବଧୂର ଆଗମନରେ ସମଗ୍ର ପରିବାରରେ ଆନନ୍ଦର ଲହରୀ ଉଦ୍‌ବେଳିତ ହୋଇ ଉଠେ; ସମସ୍ତେ ସୁଖୀ ହୋଇ ଉଠନ୍ତି । ଠିକ୍ ଏହି ଭାବଟିକୁ ଲକ୍ଷ୍ୟ କରି ବିବାହ-ମନ୍ତ୍ରରେ ହସ୍ତଗ୍ରହଣ ପଢ଼ିବାର ଅବ୍ୟବହିତ ପୂର୍ବରୁ ଠାଏ ସମବେତ ସୁଧୀଜନମାନଙ୍କୁ କୁହାଯାଇଛି :

"ସୁମଙ୍ଗଲୀରିୟଂ ବଧୂଃ ଇମାଂ ସମେତ ପଶ୍ୟତ ।
ସୌଭାଗ୍ୟଂ ଅସ୍ୟୈ ଦତ୍ତ୍ୱାୟ ଅଥ ଅସ୍ତଂ ବିପରୀ ଇତନ ।। (୭)

ଅର୍ଥାତ୍ ଏହି ବଧୂ ହେଉଛନ୍ତି ମଙ୍ଗଳମୟୀ । ତୁମ୍ଭେମାନେ ସ୍ୱାଙ୍କ ପାଖକୁ ଆସି ଦେଖ । ସ୍ୱାଙ୍କୁ ସୌଭାଗ୍ୟବତୀ ହେବା ପାଇଁ ତୁମ୍ଭମାନଙ୍କର ସଦିଚ୍ଛା ଦେଇ ସାରିବା ପରେ, ତୁମ୍ଭେମାନେ ଘରକୁ ଫେରିଯାଅ । ଅତଏବ, ବଧୂଙ୍କର ପ୍ରତିଟି ପଦକ୍ଷେପରେ ସତେ ଯେମିତି ମଙ୍ଗଳର ସୌରଭ ବିଞ୍ଚି ହୋଇ ଯାଉଛି, ଏହି ଧାରଣା ଆର୍ଯ୍ୟମାନଙ୍କର ଥିଲା । ତେଣୁ ସେ ଥିଲେ 'ସୁମଙ୍ଗଳୀ' ବା ଲକ୍ଷ୍ମୀସ୍ୱରୂପା ମଙ୍ଗଳମୟୀ । ଏବେ ମଧ୍ୟ ଏହି ପରମ୍ପରା ଭାରତରେ ଅଛି । ଏବେ ମଧ୍ୟ ବଧୂଙ୍କୁ ଗୃହର ଲକ୍ଷ୍ମୀ ବୋଲି କଳ୍ପନା କରାଯାଉଛି ଏବଂ ସେହି ଭାବରେ ଆଦର ଅଭ୍ୟର୍ଥନା କରାଯାଉଛି ।

ପରିବାରରେ ସୁଖ ଆଣିବା ଲାଗି କନ୍ୟାକୁ ବିବାହ ଦେବାବେଳେ ତା'ର କେତେକ ମୌଳିକ କର୍ତ୍ତବ୍ୟ ବିଷୟରେ ସଚେତନ କରାଇ ଦିଆଯାଇଥାଏ ଏବଂ ସେଗୁଡ଼ିକୁ ନିଷ୍ଠାର ସହିତ ପାଳିବା ପାଇଁ ଉପଦେଶ ଦିଆଯାଇଥାଏ । ସେଥିରୁ ଗୋଟିଏ ମନ୍ତ୍ର ଏଠାରେ ଉଲ୍ଲେଖନୀୟ । ମନ୍ତ୍ରଟି ହେଲା :

"ସମ୍ରାଜ୍ଞୀ ଶ୍ୱଶୁରେ ଭବ ସମ୍ରାଜ୍ଞୀ ଶ୍ୱଶ୍ର୍ୱାଂ ଭବ ।
ନନାନ୍ଦରି ସମ୍ରାଜ୍ଞୀ ଭବ ସମ୍ରାଜ୍ଞୀ ଅଧିଦେବୃଷୁ ।। (୮)

ଏହାର ଅର୍ଥ ହେଲା ତୁମେ ଶଶୁରଙ୍କ ଠାରେ ସମ୍ରାଜ୍ଞୀ ଭଳି ଆଚରଣ କର ; ଶାଶୁଙ୍କ ଠାରେ ସମ୍ରାଜ୍ଞୀ ଭଳି ଆଚରଣ କର; ନଣନ୍ଦ ଠାରେ ସମ୍ରାଜ୍ଞୀ ଭଳି ଆଚରଣ କର ଏବଂ ଦିଅରମାନଙ୍କ ଠାରେ ସମ୍ରାଜ୍ଞୀ ଭଳି ଆଚରଣ କର । ଏହି 'ସମ୍ରାଜ୍ଞୀ' ଶବ୍ଦଟିକୁ ମ୍ୟାକ୍ସମୁଲରଙ୍କ ଭଳି ପାଶ୍ଚାତ୍ୟ ପଣ୍ଡିତମାନେ ଭୁଲ ଭାବରେ ଅର୍ଥ କରିଥାନ୍ତି । ସେମାନଙ୍କ ମତରେ, ଏହି 'ସମ୍ରାଜ୍ଞୀ' ଶବ୍ଦର ପ୍ରୟୋଗ ଦ୍ୱାରା ଏହି ସୂଚନା ମିଳୁଛି ଯେ ଘରର ବୋହୂ ଶାଶୁ, ଶଶୁର, ନଣନ୍ଦ, ଦିଅର ଆଦିଙ୍କୁ ଶାସନ କରୁଥିଲା ଏବଂ ଏତଦ୍ଦ୍ୱାରା ପରିବାର ଉପରେ ତା'ର ଦୃଢ଼ କର୍ତ୍ତୃତ୍ୱ ଥିବା କଥା ପ୍ରତିପାଦିତ ହେଉଛି । ପାଶ୍ଚାତ୍ୟ ଚିନ୍ତାଧାରାରେ 'ସମ୍ରାଜ୍ଞୀ'ଙ୍କର ତାହା ହିଁ କର୍ତ୍ତବ୍ୟ । ସେ ସବୁବେଳେ ଶାସନ ହିଁ କରିଥାନ୍ତି । ତେଣୁ ସେମାନେ ଏ ପ୍ରକାର ଅର୍ଥ କରିବା ସ୍ୱାଭାବିକ । କିନ୍ତୁ ବେଶି ଦୁଃଖଦ ବିଷୟ ହେଲା, କେତେକ ଭାରତୀୟ ପଣ୍ଡିତ ଏହି ଅର୍ଥକୁ ଅନ୍ଧ ଭାବରେ ଅନୁକରଣ କରି ସ୍ତ୍ରୀସମାଜର ବୈଦିକ ପରିବାରରେ ଦୃଢ଼ କର୍ତ୍ତୃତ୍ୱ ଥିବାର ପ୍ରମାଣ କରିବା ପାଇଁ ଅପଚେଷ୍ଟା କରିଥାନ୍ତି । ଆମ ଭାରତୀୟ ପରମ୍ପରାରେ ପ୍ରଜାନୁରଞ୍ଜନ ହେଉଛି ରାଜାଙ୍କର ଧର୍ମ । ରଞ୍ଜୟତୀତି ରାଜନ୍ । ଅର୍ଥାତ୍ ଯେ ପ୍ରଜାଙ୍କୁ ସୁଖ ଦିଅନ୍ତି ସେ ହେଲେ ରାଜନ୍ । ପ୍ରଜାଙ୍କର ସୁଖ ହିଁ ତାଙ୍କର ସୁଖ । ସମ୍ରାଟ ଓ ସମ୍ରାଜ୍ଞୀଙ୍କର

କର୍ତ୍ତବ୍ୟ ମଧ୍ୟ ଠିକ୍ ଅନୁରୂପ । ଏହି ମନ୍ତ୍ରଟିର ତାତ୍ପର୍ଯ୍ୟ ହେଲା, ସମ୍ରାଜ୍ଞୀ ଯେମିତି ନିଜ ସୁଖକୁ ବଳିଦେଇ ପ୍ରଜାମାନଙ୍କର ସୁଖ ଚାହିଁଥାନ୍ତି, ଘରର ବୋହୂ ଠିକ୍ ଅନୁରୂପ ଭାବରେ ନିଜର ସୁଖକୁ ବଳି ଦେଇ ଶାଶୁ, ଶଶୁର, ନଣନ୍ଦ, ଦିଅରଙ୍କ ସୁଖ ଚାହିଁବେ ; ସେମାନଙ୍କୁ ଆନନ୍ଦ ଦେବା ପାଇଁ ଚାହିଁବେ । ତା'ହେଲେ ଯାଇ ପରିବାରରେ ମଙ୍ଗଳର ବନ୍ୟା ଖେଳି ଉଠିବ । ମନ୍ତ୍ରଟିର ଏହା ହିଁ ହେଉଛି ପ୍ରକୃତ ଅନ୍ତର୍ନିହିତ ଅର୍ଥ । ଅତଏବ, ପାଶ୍ଚାତ୍ୟ ପଣ୍ଡିତମାନେ କରୁଥିବା ଅର୍ଥଟି ସର୍ବଥା ତ୍ୟାଜ୍ୟ । ଆପ୍ତେ ମଧ୍ୟ ଅନୁରୂପ ଭାବରେ ଅର୍ଥ କରିଛନ୍ତି । ସେ ଏଠାରେ ସ୍ତ୍ରୀର କର୍ତ୍ତୃତ୍ୱକୁ ପ୍ରେମର କର୍ତ୍ତୃତ୍ୱ ବୋଲି ଗ୍ରହଣ କରିଛନ୍ତି । ପରିବାରର ସମସ୍ତଙ୍କୁ ସ୍ତ୍ରୀ ପ୍ରେମ କରିବା ଫଳରେ ପରିବାରରେ ସର୍ବଦା ସୁଖ ବିରାଜମାନ କରିବ, ତାଙ୍କର ଏହା ହିଁ କହିବା ଉଦ୍ଦେଶ୍ୟ । ତାଙ୍କ ମତ ଏଠାରେ ଉଦ୍ଧାର କରି ଯାଇପାରେ :

> "The authority exercised must have been more or less the rule of love." (୮-କ)

ବିବାହ ସମ୍ପର୍କରେ ଯେଉଁ କର୍ମବିଧିମାନ ରହିଅଛି, ସେସବୁର ସାଙ୍କେତିକତାକୁ ଅନୁଧ୍ୟାନ କଲେ ଆମେ ଜାଣିପାରିବା ଯେ ବୈଦିକ ଆର୍ଯ୍ୟମାନେ ତିନିଗୋଟି ଲକ୍ଷ୍ୟ ରଖି ଏହି ଅନୁଷ୍ଠାନଟିକୁ ସମାଦୃତ କରୁଥିଲେ । ପ୍ରଥମଟି ହେଲା ଧର୍ମ ନିମିତ୍ତ; ଦ୍ୱିତୀୟଟି ହେଲା 'ପ୍ରଜା' ବା ସନ୍ତାନ ଉତ୍ପାଦନ ନିମିତ୍ତ ଏବଂ ତୃତୀୟଟି ହେଲା ଜୀବନର ଆନନ୍ଦ ପ୍ରାପ୍ତି ନିମିତ୍ତ । ଏହାକୁ ଲକ୍ଷ୍ୟ କରି ବାଳଶାସ୍ତ୍ରୀ ହରଦାସ ଯଥାର୍ଥରେ କହିଛନ୍ତି :

> "The Vedic people valued the institution of marriage for the sake of religion, progeny, as well as the joy of life. They did want progeny ; but that they wanted of a very high and meritorious order to enable them to follow the divine path." (୯)

ବିବାହବେଳେ ସ୍ୱାମୀ ଅଗ୍ନି ଦେବତାଙ୍କୁ ଯେଉଁ ମନ୍ତ୍ର ବୋଲି ପ୍ରାର୍ଥନା କରିଥାନ୍ତି, ସେଥିରୁ ଜାଣି ହେବ, କେବଳ ବଂଶବୃଦ୍ଧି କରିବା ତାଙ୍କର ଲକ୍ଷ୍ୟ ନଥିଲା । ବରଂ ତାଙ୍କର ଲକ୍ଷ୍ୟ ଥିଲା କିଭଳି ଉତ୍ତମ ସନ୍ତାନଟିଏ ଜନ୍ମ ହେବ, ଯାହା ଫଳରେ କି ସେମାନେ (ସ୍ୱାମୀ-ସ୍ତ୍ରୀ) ଅମୃତତ୍ୱ ପାଇ ପାରିବେ । ଉତ୍ତମ ସନ୍ତାନ ଯେ କୁଳର ମାନସମ୍ମାନ ରକ୍ଷା କରିପାରିବ, ଏହି

ଧାରଣା ଆର୍ଯ୍ୟମାନଙ୍କର ଥିଲା । ସ୍ୱାମୀ ଏଠାରେ ଯେଉଁ ମନ୍ତ୍ରଟି ବୋଲି ଅଗ୍ନିଙ୍କୁ ପ୍ରାର୍ଥନା କରିଥାନ୍ତି, ତାହା ହେଲା :

"ପ୍ରଜାଭିରଗ୍ନେ ଅମୃତତ୍ୱମଶ୍ୟାମ୍" । (୧୦)

ଅର୍ଥାତ୍ ସନ୍ତାନମାନଙ୍କ ମାଧ୍ୟମରେ ଆମେ ଅମର ହୋଇଛୁଁ । ବୈଦିକ ନାରୀ ମଧ୍ୟ ଠିକ୍ ଅନୁରୂପ ପ୍ରାର୍ଥନା କରି କହୁଥାନ୍ତି :

"ମମ ପୁତ୍ରାଃ ଶତ୍ରୁହଣୋଽଥ ମେ ଦୁହିତା ବିରାଟ୍ ।
ଉତାହମସ୍ମି ସଂଜୟା ପତ୍ୟୌ ମେ ଶ୍ଳୋକ ଉତ୍ତମଃ ॥

ଅର୍ଥାତ୍ ମୋ'ର ପୁତ୍ରମାନେ ଶତ୍ରୁହନ୍ତା ହୁଅନ୍ତୁ ; ମୋ' ଝିଅ ଖୁବ ବଡ଼ ହେଉ । ମୁଁ ଜୀବନରେ ସଫଳତା ପାଏଁ ଏବଂ ମୋ' ସ୍ୱାମୀଙ୍କ ଯଶ ଚାରିଆଡ଼େ ବ୍ୟାପ୍ତ ହେଉ । ଅତଏବ, ନିଜର ତଥା ପରିବାରର ସମସ୍ତଙ୍କର ଐହିକ ଓ ପାରତ୍ରିକ ସୁଖ ଅଣାଇବା ଥିଲା ବୈଦିକ ଦମ୍ପତିଙ୍କର ମୁଖ୍ୟ ଲକ୍ଷ୍ୟ ।

ପରିବାରରେ ପୁରୁଷକୁ ବହୁ କଠିନ ପରିଶ୍ରମ କରିବାକୁ ପଡ଼ିଥାଏ । ଘର ଭିତରର କଥା ସିନା ସ୍ତ୍ରୀ ବୁଝିଥାଏ ; ବାହାରର କଥା କିନ୍ତୁ ପୁରୁଷକୁ ବୁଝିବାକୁ ପଡ଼ିଥାଏ । ବହୁ ଆଦିମ କାଳରୁ ସ୍ତ୍ରୀ-ପୁରୁଷଙ୍କ ମଧ୍ୟରେ ସ୍ୱାଭାବିକ ଭାବରେ ଏହି କର୍ମ ବିଭାଜନ ହୋଇ ଆସିଛି । ଆଜିକାଲି ମଧ୍ୟ ଅଳ୍ପ ବହୁତ ଅନୁରୂପ ପରିସ୍ଥିତି ଅଛି । ବୈଦିକ ସମାଜରେ ଠିକ୍ ସେହି ପରିସ୍ଥିତି ହିଁ ଥିଲା । କର୍ମକ୍ଳାନ୍ତ ଦେହ ଧରି ଯେତେବେଳେ ପୁରୁଷ ଘରକୁ ଫେରି ଆସେ, ସେତେବେଳେ ସ୍ତ୍ରୀ ପାଖରୁ ଟିକିଏ ମିଠା କଥା, ଟିକିଏ ଆଦର ସ୍ନେହ ସେ ଚାହେଁ ; ଆଉ ଚାହେଁ ମଧ୍ୟ ଟିକିଏ ଦରଦଭରା ସହାନୁଭୂତି ସୂଚକ କଥା । ଯେଉଁ ପରିବାରରେ ଏଭଳି ସ୍ଥିତି ନାହିଁ, ସେହି ପରିବାର କଦାପି ସୁଖୀ ହୋଇ ପାରେନା । ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ମନୋମାଳିନ୍ୟ ଥିଲେ, ଏହାର କୁପ୍ରଭାବ ଉଭୟ ପରିବାରର ଜ୍ୟେଷ୍ଠ ଓ କନିଷ୍ଠଙ୍କ ଉପରେ ପଡ଼ିଥାଏ । ଜ୍ୟେଷ୍ଠମାନେ ଉପଯୁକ୍ତ ସମ୍ମାନ ଓ ସେବାଶୁଶ୍ରୂଷା ପାଇ ପାରନ୍ତି ନାହିଁ । ସେହିପରି କନିଷ୍ଠମାନେ ଆଦରଯତ୍ନ ପାଇ ପାରନ୍ତି ନାହିଁ । ଏହି ବିଷୟରେ ପ୍ରାଚୀନ ବୈଦିକ ସମାଜତତ୍ତ୍ୱବିତ୍ମାନେ ସମ୍ୟକ୍ ଭାବରେ ଅବହିତ ଥିବା ପରି ମନେ ହୁଏ । ସେଥିପାଇଁ ଅଥର୍ବ ବେଦରେ ଠାଏ କୁହା ଯାଇଛି :

"ଅନୁବ୍ରତଃ ପିତୁଃ ପୁତ୍ରୋ ମାତ୍ରା ଭବତୁ ସଂମନାଃ ।
ଜାୟା ପତ୍ୟେ ମଧୁମତୀଂ ବାଚଂ ବଦତୁ ଶନ୍ତିବାମ୍ ॥ (୧୧)

ଅର୍ଥାତ୍ ପୁଅର ମନ ବାପାମାଆଙ୍କ ମନ ସହିତ ମେଳ ରହୁ ଏବଂ ସେ ସେମାନଙ୍କ କଥା ମାନି ଚଳୁ । ସ୍ତ୍ରୀ ସବୁବେଳେ ସ୍ୱାମୀ ସହିତ ମଧୁର ଭାବରେ କଥାବାର୍ତ୍ତା କରୁ ।

ଘରେ ସ୍ତ୍ରୀକୁ ଛାଡ଼ି ସ୍ୱାମୀ ଦେଶ ବିଦେଶକୁ ଯାଇ ବେପାର ବଣିଜ କରୁଥିଲା; କାହିଁ ଦୂର ଦୂରାନ୍ତରକୁ ଯାଇ ଲଢ଼େଇ ବି କରୁଥିଲା । କେଉଁଥିପାଇଁ ସେ ଏହା କରୁଥିଲା ? କାହାଠାରୁ ସେ ଏଥିପାଇଁ ଉତ୍ସାହ ପାଉଥିଲା ? ଏହାର ଉତ୍ତର ହେବ ସ୍ତ୍ରୀ । ପୁରୁଷର ବିଶ୍ୱାସ ଥିଲା ଯେ ସେ ସିଦ୍ଧିଲାଭ କରି ଘରକୁ ଫେରିଲେ ତା'ର ସତୀ ସ୍ତ୍ରୀ ତା'କୁ ସ୍ୱାଗତ କରି ବସିବ । ସୁଖ, ଦୁଃଖ, ଜୟ, ପରାଜୟ ସବୁଥିରେ ସାଥୀ ହୋଇ ଉଭୟ ସୁଖ ଓ ଆନନ୍ଦରେ ଜୀବନ କଟାଇ ଦେବେ । କ୍ଳାରିସି ବ୍ୟାଡ଼େର୍ (Clarisse Bader) ତେଣୁ ଯଥାର୍ଥରେ କହୁଛନ୍ତି ;

"In those ancient times, woman appeared as the worthy companion of the hero and the Arya excited himself to valorous deeds by the thought of her, who after the victory would proudly lean on his victorious arm." (୧୧-କ)

ବୈଦିକ ସ୍ତ୍ରୀ ସ୍ୱାମୀଙ୍କୁ ଭକ୍ତି କରୁଥିଲା ଏବଂ ଶାଶୁ ଶଶୁରଙ୍କୁ ଓ ପରିବାରର ଅନ୍ୟ ବରିଷ୍ଠ ବ୍ୟକ୍ତିମାନଙ୍କୁ ମଧ୍ୟ ଭକ୍ତି କରୁଥିଲା । ସ୍ୱାମୀଙ୍କ ଆଦେଶକୁ ସେ ଶିରୋଧାର୍ଯ୍ୟ ବୋଲି ଗ୍ରହଣ କରୁଥିଲା । ପରିବାରର ବରିଷ୍ଠ ବ୍ୟକ୍ତିମାନଙ୍କର କଥା ମଧ୍ୟ ତା'କୁ ମାନିବାକୁ ପଡ଼ୁଥିଲା । ପିଲାମାନଙ୍କର ଯତ୍ନ ନେବାଠାରୁ ଆରମ୍ଭ କରି ଘର ଭିତରର ଯାବତୀୟ କାମ ତା'କୁ କରିବାକୁ ପଡ଼ୁଥିଲା । ଏହାର ଅର୍ଥ ନୁହେଁ ଯେ ତା'କୁ ପରିବାରରେ ଅପେକ୍ଷାକୃତ ନିମ୍ନତର ଆସନ ଦିଆଯାଇଥିଲା । ବରଂ ତା'ର ପରିବାରରେ ଆସନ ସ୍ୱାମୀଙ୍କ ଆସନ ସହିତ ସମାନ ଥିଲା । ଉଭୟ ସମାନ ଭାବରେ ପରିବାରର ଥିଲେ କର୍ତ୍ତା-କର୍ତ୍ତ୍ରୀ । ସେଥିପାଇଁ ସେମାନଙ୍କୁ କୁହା ଯାଉଥିଲା ଦମ୍ପତି । ସ୍ତ୍ରୀର ପରିବାରରେ ଥିବା ଏହି ଉଚ୍ଚାସନ ପ୍ରତି ଲକ୍ଷ୍ୟ କରି ଦିଆ ଯାଇଥିବା ଆଲ୍‌ଟେକର୍‌ଙ୍କ ନିମ୍ନଲିଖିତ ମତ ପ୍ରଣିଧାନଯୋଗ୍ୟ :

"Brides being well-trained and grown up at the time of marriage, were naturally regarded as equals of their husbands. The term 'dampati'

would suggest that the husband and wife were regarded as joint heads of the house-hold." (୧୨)

ପାଶ୍ଚାତ୍ୟ ପରମ୍ପରା ପିତୃକେନ୍ଦ୍ରିକ ଥିବାରୁ ପରିବାରର ସମ୍ପତ୍ତିକୁ ପରିଚାଳନା କରିବାର ଦାୟିତ୍ୱ ବିଶେଷ ଭାବରେ ସ୍ୱାମୀ ବହନ କରୁଥିଲେ । ବିବାହ ସମୟରେ ଯେଉଁ ସମ୍ପତ୍ତି ଯୌତୁକ ସ୍ୱରୂପ ସ୍ତ୍ରୀ ସାଥିରେ ଆଣୁଥିଲା, କେବଳ ତାହାର ସେ ଥିଲା ସଂପୂର୍ଣ୍ଣ ଅଧିକାରିଣୀ ଏବଂ ତାହାର ପରିଚାଳନା ଭାର ସଂପୂର୍ଣ୍ଣ ଭାବରେ ତା' ଉପରେ ନ୍ୟସ୍ତ ଥିଲା । ଏ ପ୍ରକାର ସମ୍ପତ୍ତିର ନାମ ଥିଲା 'ପାରିଣାହ୍ୟ', ଯାହା କି ପରବର୍ତ୍ତୀ ଯୁଗରେ 'ସ୍ତ୍ରୀଧନ' ବୋଲି ବିବେଚିତ ହୋଇଥିଲା । କିନ୍ତୁ ପରବର୍ତ୍ତୀ ଯୁଗରେ ବ୍ରାହ୍ମଣ ସମୟ ବେଳକୁ ସ୍ତ୍ରୀମାନଙ୍କର ସମ୍ପତ୍ତି ଉପରେ ଥିବା ଅଧିକାର ଖର୍ବ ହୋଇ ଯାଇଥିବା ଭଳି ମନେହୁଏ । ତୈତ୍ତିରୀୟ ସଂହିତାରେ ତେଣୁ କୁହାଯାଇଛି :

"ତସ୍ମାତ୍ ସ୍ତ୍ରୀୟୋନିରିନ୍ଦ୍ରିୟା ଅଦାୟାଦୀଃ" (୧୩)

ଅର୍ଥାତ୍ ସ୍ତ୍ରୀମାନେ ହେଲେ ଦୁର୍ବଳା ; ତେଣୁ ସେମାନଙ୍କର ସମ୍ପତ୍ତିରେ ଉତ୍ତରାଧିକାର ନାହିଁ । ପରବର୍ତ୍ତୀ କାଳର ଅବସ୍ଥା ଯାହା ହୋଇଥାଉ ନା କାହିଁକି, ବୈଦିକ କାଳରେ ଯେ ସ୍ତ୍ରୀମାନଙ୍କର ସମ୍ପତ୍ତି ଉପରେ ଅଧିକାର ସାବ୍ୟସ୍ତ ହୋଇଥିଲା ଏବଂ ପରିବାରରେ ସେମାନଙ୍କର ଆସନ ଯେ ପୁରୁଷମାନଙ୍କ ଆସନ ସହିତ ସମାନ ଥିଲା, ଏଥିରେ ସନ୍ଦେହ ନାହିଁ । ସମାଜରେ ସ୍ତ୍ରୀ ଓ ପୁରୁଷଙ୍କୁ ଯେ ବୈଦିକ କାଳରେ ସମାନ ଆସନ ଦିଆ ଯାଉଥିଲା ଏ ବିଷୟରେ ରାଜା ମତ ପ୍ରକାଶ କରିବାକୁ ଯାଇ କୁହନ୍ତି :

"There is no hint to show that women occupied a position lower than that of men in society. In intellectual life they occupied the same position as men. Some of the Vedic poets were women. There were women warriors who fought bravely in war. There were also women philosophers." (୧୩-କ)

ଐତରେୟ ବ୍ରାହ୍ମଣରେ ଠାଏ ବୋହୂର ନମ୍ରତା ତଥା ଲଜ୍ଜାଶୀଳତା ପ୍ରଦର୍ଶନ କରିବାକୁ ଯାଇ କୁହାଯାଇଛି :

"ସ୍ନୁଷା ଶ୍ୱଶୁରାଲ୍ଲଜ୍ଜମାନା ନିଲୀୟମାନା ଏତି ।"

ଅର୍ଥାତ୍ ଶଶୁରଙ୍କୁ ଦେଖି ଲଜ୍ଜାରେ ଯାଇ ବୋହୂଟି ତା'ର ସାରା ଦେହ ଘୋଡ଼ାଇ ଦେଇ ଆସୁଛି । ଏଥିରୁ କେହି ଯେପରି ଅନୁମାନ ନ କରନ୍ତୁ ଯେ ବୈଦିକ କାଳରେ ପରଦା-ପ୍ରଥା ଥିଲା । ଲଜ୍ଜାରେ ନବ ପତ୍ନୀ ଶଶୁରଙ୍କ ଆଗରେ ସାରା ଦେହକୁ ଘୋଡ଼ାଇ ରଖି ଚାଲିବା ଗୋଟାଏ କଥା ; ଏବଂ ପରଦାପ୍ରଥା ଆଉ ଗୋଟିଏ କଥା । ପରଦାପ୍ରଥାରେ ବନ୍ଧା ପରଦାରେ ବାହାରିବାକୁ ହୋଇନଥାଏ; ସ୍ତ୍ରୀମାନଙ୍କୁ ସାଧାରଣତଃ ଅସୂର୍ଯ୍ୟଂପଶ୍ୟା ହୋଇ ଘର ଭିତରେ ରହିବାକୁ ପଡ଼ୁଥାଏ । ଏଭଳି ସ୍ଥିତି କିନ୍ତୁ ବୈଦିକ କାଳରେ ଆଦୌ ନଥିଲା । ସ୍ତ୍ରୀମାନେ ପୁରୁଷମାନଙ୍କ ପରି ସ୍ୱଚ୍ଛନ୍ଦରେ ମୁକ୍ତ ଭାବରେ ବୁଲାବୁଲି କରୁଥିଲେ । ସେଭଳି ସ୍ଥିତି ନଥିଲେ ଋଗ୍‌ବେଦରେ ଗୋଟିଏ ବିବାହ-ମନ୍ତ୍ରରେ ସ୍ତ୍ରୀକୁ ସଭାସମିତିରେ ତେଜସ୍ୱିନୀ ରୂପରେ ଠିଆ ହେବାପାଇଁ ଉପଦେଶ ଦିଆଯାଇ ନଥାନ୍ତା । (୧୪) ଅବଶ୍ୟ ଏ ପ୍ରକାର ସ୍ଥିତି ବେଦୋତ୍ତର କାଳକୁ ବଦଳି ଯାଇଥିଲା ଏବଂ ସେତେବେଳେ ସଭାସମିତିକୁ ସ୍ତ୍ରୀମାନଙ୍କୁ ଯିବାପାଇଁ ବାରଣ କରାଯାଇ କେବଳ ପୁରୁଷମାନଙ୍କୁ ସେ ଅଧିକାର ଦିଆ ଯାଇଥିଲା । ମୈତ୍ରାୟଣୀ ସଂହିତା ସେଥିପାଇଁ କୁହେ :

"ତସ୍ମାତ୍ ପୁମାଂସଃ ସଭାଂ ଯାନ୍ତି ନ ସ୍ତ୍ରିୟଃ" । (୧୫)

ଅର୍ଥାତ୍ ସେହି ହେତୁରୁ ସଭାକୁ ପୁରୁଷମାନେ ଯାଆନ୍ତି ; ସ୍ତ୍ରୀମାନେ ଯାଆନ୍ତି ନାହିଁ । ସେ ଯାହାହେଉ, ବୈଦିକ କାଳରେ କିନ୍ତୁ ସ୍ତ୍ରୀମାନଙ୍କର ସଭାସମିତିକୁ ଯିବାରେ ଏବଂ ତର୍କସଭାରେ ଯୋଗ ଦେବାରେ କିଛି ହିଁ ବାଧାବିଘ୍ନ ନଥିଲା । ବରଂ ଏ ପ୍ରକାର କାର୍ଯ୍ୟକଳାପକୁ ସମାଜ ଉତ୍ସାହିତ କରୁଥିଲା । ଆଲ୍‌ଟେକାର ମଧ୍ୟ ଏହି ମତକୁ ସମର୍ଥନ କରନ୍ତି । ତାଙ୍କ କହିବା କଥା ହେଲା;

> "There are no traces of the seclusion of women in Vedic society. They could move freely even in the company of their husbands or lovers. They usually occupied a prominent place in social gatherings, lending charm to them by their graceful dress. Love-marriages referred to in several passages also attest to the freedom of movement granted to grown up maidens." (୧୬)

ଏହି ଯେଉଁ ପ୍ରେମ-ବିବାହ କଥା ପୂର୍ବରୁ କୁହାଗଲା, ତାହା କଳ୍ପିତ ଭାବରେ କୌତୂହଳୋଦ୍ଦୀପକ । ବିବାହ ପୂର୍ବରୁ ବେଳେ ବେଳେ ଯୁବକ-ଯୁବତୀମାନେ ଯେ

କେବଳ ପ୍ରେମ-ସୂତ୍ରରେ ଆବଦ୍ଧ ରହୁଥିଲେ ତାହା ନୁହେଁ ; ସମାଜ ମଧ୍ୟ ଏ ପ୍ରକାର ସଂପର୍କକୁ ସ୍ୱୀକୃତି ପ୍ରଦାନ କରୁଥିଲା । ପରବର୍ତ୍ତୀ ଅନୁଚ୍ଛେଦମାନଙ୍କରେ ବିଭିନ୍ନ ବିବାହ-ପଦ୍ଧତିର ଆଲୋଚନା ପ୍ରସଙ୍ଗରେ ଆମେ ଜାଣିପାରିବା ଯେ ପ୍ରେମ-ବିବାହ ମଧ୍ୟ ଥିଲା ଏକ ସ୍ୱୀକୃତ ବିବାହ ପଦ୍ଧତି । ଏହାକୁ କୁହାଯାଉଥିଲା 'ଗାନ୍ଧର୍ବ ବିବାହ' ।

ପ୍ରେମବିବାହ ପ୍ରସଙ୍ଗ ଉପରେ ଉତ୍ଥାପିତ ହୋଇଥିବାରୁ, ବର୍ତ୍ତମାନ ପ୍ରଶ୍ନ ହୋଇପାରେ, ବୈଦିକ କାଳରେ ବାଲ୍ୟ-ବିବାହ ପ୍ରଥା ଥିଲା କି ? ଯୁବକ-ଯୁବତୀ ପରସ୍ପର ସହିତ ପ୍ରେମ-ସୂତ୍ରରେ ଆବଦ୍ଧ ହୋଇ ପରେ ବିବାହ କରିବାଠାକୁ କେତେ ଦୂର ବାପା-ମାଆ ସୁଯୋଗ ଦେଉଥିଲେ ଏବଂ କେତେ ଦୂର ଏହା ସମାଜ ଦ୍ୱାରା ସ୍ୱୀକୃତ ହେଉଥିଲା ? ଏବେ ବି ପ୍ରେମ କରିବା କଥା କହିଲେ ସମାଜର ବଡ଼ପଣ୍ଡାମାନଙ୍କୁ କେମିତି ଅଡ଼ୁଆ ଅଡ଼ୁଆ ଲାଗେ । ସେମାନେ ଏଥି ପ୍ରତି ନାକ ଟେକନ୍ତି । ସେହି ପରିପ୍ରେକ୍ଷୀରେ ବିଷୟଟି ଆଲୋଚନା କରିବା ନିଶ୍ଚିତ ଭାବରେ କୌତୂହଳଜନକ ହେବ । ଋଗ୍‌ବେଦରେ କେତେକ ସ୍ଥାନରେ ଯୁବକମାନଙ୍କୁ ଆକର୍ଷଣ କରିବା ଉଦ୍ଦେଶ୍ୟରେ ଭଲ ଭଲ ପୋଷାକପତ୍ର ଓ ଗହଣାଗାଣ୍ଠି ପିନ୍ଧି ଉତ୍ସବମାନଙ୍କୁ ଯିବା ପାଇଁ ବିବାହଯୋଗ୍ୟା କନ୍ୟାମାନଙ୍କୁ ପରାମର୍ଶ ଦିଆଯାଇଛି । ଉକ୍ତ ବେଦରେ ଆଉ ଗୋଟିଏ ସ୍ଥାନରେ (୧।୧୧୭।୭) ପ୍ରେମିକ କପଟ ଭାବରେ ପ୍ରେମିକାକୁ ପୂର୍ବରାଗ ପ୍ରଦର୍ଶନ କରୁଛି, ତାହା ବର୍ଣ୍ଣନା କରାଯାଇଛି । ସେହି ବେଦର ଆଉ ଗୋଟିଏ ସ୍ଥାନରେ ପ୍ରେମିକା ପ୍ରେମିକ ପାଖରୁ ଉପହାରମାନ ଗ୍ରହଣ କରୁଥିବା କଥା କୁହାଯାଇଛି । ଉକ୍ତ ବେଦର ଆଉ ଠାଏ (୭।୫୫।୫-୮) କପଟ ଭାବରେ ପ୍ରେମିକାପରିବାରର ସମସ୍ତଙ୍କୁ ମନ୍ତ୍ର ବୋଲି ଶୁଆଇ ପକାଇବାକୁ ହେବ ଏବଂ ତତ୍ପରେ ପ୍ରେମିକକୁ ପ୍ରେମିକା ସହିତ ମିଳିତ ହେବାର ସୁଯୋଗ ମିଳିବ ସେ ବିଷୟରେ ପରାମର୍ଶ ଦିଆଯାଇଛି । ପ୍ରେମିକ-ପ୍ରେମିକାଙ୍କ ପ୍ରେମ ସମ୍ପର୍କରେ କେତେକ ବର୍ଣ୍ଣନା ଆମେ ଋଗ୍‌ବେଦରେ ଅନ୍ୟତ୍ର ମଧ୍ୟ (୧।୧୩୪।୩) ପାଉଥାଉଁ । ଆଉ ଠାଏ (ଋ. ୨।୨୯।୧) 'ରହସୂଃ' ଶବ୍ଦର ବ୍ୟବହାର ହୋଇଛି, ଯାହାର ଅର୍ଥ ହେଲା ଗୋପନରେ ପିଲା ଜନ୍ମ କରିବା । ଏଥିରୁ ଜଣା ପଡ଼ୁଛି ଯେ ବର୍ତ୍ତମାନ ଭଳି ସେତେବେଳେ ମଧ୍ୟ ସମାଜରେ ଜାରଜ-ସନ୍ତାନମାନଙ୍କର ସମସ୍ୟା ରହିଥିଲା ଏବଂ ସେମାନଙ୍କର ଭରଣପୋଷଣ, ଅଧିକାର ଆଦି ବିଷୟରେ ବୈଦିକ ସମାଜତତ୍ତ୍ୱବିତ୍‌ମାନେ ମୁଣ୍ଡ ଘୂରାଉଥିଲେ । କିନ୍ତୁ ସେତେବେଳେ ଏ ସମସ୍ୟା ସେତେ ଗୁରୁତର ନଥିଲା ; କାରଣ ପ୍ରାୟ ସମସ୍ତ କ୍ଷେତ୍ରରେ ପ୍ରାଗ୍‌ବୈବାହିକ ପ୍ରେମ ବିବାହରେ ପରିଣତ ହେଉଥିଲା । ଅଥର୍ବ ବେଦରେ ଠାଏ କୁହାଯାଇଛି :

"ବ୍ରହ୍ମଚର୍ଯ୍ୟେଣ କନ୍ୟା ଯୁବାନଂ ବିନ୍ଦତେ ପତିମ୍" । (୧୮)

ଅର୍ଥାତ୍ ବ୍ରହ୍ମଚର୍ଯ୍ୟାଶ୍ରମ ପରେ ବା ପାଠ ପଢ଼ା ପରେ କନ୍ୟା ଯୁବକ ପତି ବାଛୁଥାଏ । ବ୍ରହ୍ମଚର୍ଯ୍ୟାଶ୍ରମର ସମୟ ହେଲା ବାର ବର୍ଷ । ଅତଏବ, ଏହି ସମୟ ଅତୀତ ହୋଇ

ଯାଉଥିବା ପରେ କନ୍ୟା ନିଶ୍ଚୟ ଯୁବତୀ ହୋଇ ଯାଇଥିବ । ବ୍ରହ୍ମଚର୍ଯ୍ୟାଶ୍ରମ ପରେ ବର ମଧ୍ୟ ସେହିପରି ଯୌବନାବସ୍ଥା ପ୍ରାପ୍ତ ହୋଇଥିବ । ଋଗ୍‌ବେଦର ଗୋଟିଏ ମନ୍ତ୍ର ଅନୁସାରେ (୧୦।୮୫।୨୧) ବିବାହର ଠିକ୍ ପରେ ପରେ କନ୍ୟା ବର ଘରକୁ ଯାଇଥାଏ ଏବଂ ସେଠାରେ ଉଭୟ ଏକତ୍ର ବାସ କରିଥାନ୍ତି । ଏହିସବୁ ପ୍ରମାଣରୁ ତେଣୁ ଆମକୁ ବୁଝିବାକୁ ହେବ ଯେ ବୈଦିକ କାଳରେ ବାଲ୍ୟବିବାହ ପ୍ରଥା ଆଦୌ ନଥିଲା ଏବଂ ବରକନ୍ୟା ଉଭୟ ଯୌବନପ୍ରାପ୍ତି ପରେ ହିଁ ବିବାହ କରୁଥିଲେ । ଏ ସଂପର୍କରେ ଆପ୍ଟେଙ୍କର ନିମ୍ନଲିଖିତ ମନ୍ତବ୍ୟ ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା :

> "All this evidence speaks in favour of the custom of girls normally marrying long after they had reached puberty." (୧୯)

ସ୍ତ୍ରୀଏ ଯୌବନପ୍ରାପ୍ତିର ବହୁ ବର୍ଷ ପରେ ବିବାହ କରୁଥିଲେ ବୋଲି ଆପ୍ଟେ ଯାହା ଉପରେ କହିଛନ୍ତି, ସେ ବିଷୟରେ ଟିକିଏ ଅଧିକ ଆଲୋଚନା ହେବା ଆବଶ୍ୟକ । ବର୍ତ୍ତମାନ ପ୍ରଶ୍ନ ଉଠିପାରେ, ସାଧାରଣତଃ ଯୌବନପ୍ରାପ୍ତିର କେତେ ବର୍ଷରେ ବିବାହ କରି-ଯାଉଥିଲା ? ଏହା ଦୁଇ ତିନି ବର୍ଷରେ ସୀମାବଦ୍ଧ ଥିଲା ନା ଆହୁରି ବେଶି ଗଡ଼ି ଯାଉଥିଲା ? ମନୁଙ୍କ ମତରେ :

"ତ୍ରିଣି ବର୍ଷାଣ୍ୟୁଦୀକ୍ଷେତ କୁମାରୀ ର୍ତୁମତୀ ସତୀ" । (୨୦)

ଅର୍ଥାତ୍ କନ୍ୟା ଋତୁମତୀ ହେଲେ ତିନି ବର୍ଷ ପର୍ଯ୍ୟନ୍ତ ତା'ର ପତି ଲାଗି ଅପେକ୍ଷା କରିବା ଉଚିତ । ଏହାର ତାତ୍ପର୍ଯ୍ୟ ହେଲା, ଋତୁମତୀ ହେବାର ତିନି ବର୍ଷ ମଧ୍ୟରେ କନ୍ୟାକୁ ବିବାହ ଦେଇ ଦେବାର କଥା । କିନ୍ତୁ ମନୁସ୍ମୃତି ତ ବେଦ-ସୃଷ୍ଟିର ବହୁ ପରକାଳର କଥା । ଏହା ଯେ ବୈଦିକ ପରଂପରାକୁ ଠିକ ଭାବରେ ଅନୁସରଣ କରିଛି, ସେ କଥା କହି ହେବ ନାହିଁ । ଋତୁମତୀ ହୋଇ ସାରିବାର ବହୁ ବର୍ଷ ପର୍ଯ୍ୟନ୍ତ କନ୍ୟାକୁ ସୁଯୋଗ୍ୟ ପତି ଲାଗି ଅପେକ୍ଷା କରୁଥିବାକୁ ପଡ଼ୁଥିଲା ବୋଲି ବେଦରେ ବର୍ଣ୍ଣିତ ଅଛି । ଋଗ୍‌ବେଦର ଋଷିକା ଘୋଷା ହେଉଛନ୍ତି ଏହାର ଏକ ଜ୍ୱଳନ୍ତ ନିଦର୍ଶନ, ଯାହାଙ୍କୁ କି ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ପତି-ପ୍ରାପ୍ତି ଲାଗି ଅପେକ୍ଷା କରିବାକୁ ପଡ଼ିଥିଲା । ସେ ତାଙ୍କ ପତିହୀନ ଦୁଃଖମୟ ଜୀବନର କରୁଣ କାହାଣୀ କେତେକ ବେଦମନ୍ତ୍ରରେ ଲିପିବଦ୍ଧ କରିଛନ୍ତି । କନ୍ୟା ସବୁବେଳେ ତା'ର ଯୋଗ୍ୟ ପତିଙ୍କୁ ବାଛୁଥିଲା । ତେଣୁ ଯୋଗ୍ୟ ପତିଟିଏ ପାଇବା ପର୍ଯ୍ୟନ୍ତ ତା'କୁ ନିଶ୍ଚୟ ଅପେକ୍ଷା କରି ରହିବାକୁ ପଡୁଥିବ । ତା'ର ବିବାହ ଋତୁମତୀ ହେବାର ତିନି ବର୍ଷ ଭିତରେ ହୋଇପାରେ କିମ୍ବା ତିନି ବର୍ଷ ଅତିକ୍ରାନ୍ତ ହେବା ପରେ ହୋଇପାରେ । ସେଥିପାଇଁ ମନୁଙ୍କ କହିବା ଭଳି ସେମିତି ଧରାବନ୍ଧା ନିୟମ କିମ୍ବା ବୟସସୀମାର କିଛି

ଗୋଟାଏ ଲକ୍ଷ୍ମଣ-ଗାର ନଥିଲା । ସେଥିପାଇଁ କେବଳ ଦୁଇଟି ବିଷୟ ବିଗୃହକୁ ନିଆ-ଯାଉଥିଲା । ପ୍ରଥମତଃ ସେ ଥିବ ଯୁବତୀ । ଦ୍ୱିତୀୟତଃ ପତି ତା'ର ମନ ଲାଗି ହୋଇଥିବ । କନ୍ୟାର ଯେ ସ୍ୱାଧୀନ ଓ ମୁକ୍ତ ଭାବରେ ପତି-ନିର୍ବାଚନର ଅଧିକାର ଥିଲା, ସେ ବିଷୟରେ ଅବିନାଶ ଚନ୍ଦ୍ର ଦାସ ଯାହା କହିଛନ୍ତି, ତାହା ଏଠାରେ ଲକ୍ଷ୍ୟ କରିବାର କଥା :

> "A respected girl always selected from among her suitors one to whom she really loved, as true love was considered as the real conjugal happiness." (୨୧)

ବିବାହରେ ପ୍ରେମର ପ୍ରାଧାନ୍ୟ ଯେ ସର୍ବାଧିକ, ସେ କଥା ଋଗ୍‌ବେଦରେ ସ୍ପଷ୍ଟ ଭାବରେ କୁହା ଯାଇଛି । (୨୨) ଅତଏବ, ଏଥିରୁ ଏହି ସତ୍ୟ ନିଷ୍କାଷିତ ହେବ ଯେ ବୈଦିକ କାଳରେ ବିବାହ ପୂର୍ବରୁ ପ୍ରେମ କରିବା ସମାଜରେ ଦୂଷଣୀୟ ନଥିଲା । ବରଂ କନ୍ୟା ଯାହାଙ୍କୁ ପ୍ରେମ କରୁଥିଲା, ତାଙ୍କୁ ହିଁ ବିବାହ କରିବା ପାଇଁ ସମାଜ ଓ ପିତାମାତା ତା'କୁ ଉତ୍ସାହ ଦେଉଥିଲେ । କେତେବେଳେ କେମିତି କୌଣସି କାରଣରୁ ଏ ପ୍ରକାର ବିବାହକୁ ପିତା ପସନ୍ଦ ନ କଲେ ମଧ୍ୟ ଝିଅର ମନ-କଥା ହିଁ କାର୍ଯ୍ୟକାରୀ ହେଉଥିଲା । ଆବଶ୍ୟକ ହେଲେ ପତି ତାଙ୍କ ପ୍ରେମିକାକୁ ବଳପୂର୍ବକ ନେଇ ଯାଉଥିଲେ । ଋଗ୍‌ବେଦରେ ବିମଦ ତାଙ୍କ ପ୍ରେମିକା ପୁରୁମିତ୍ରଙ୍କ ଝିଅକୁ ବଳ ପ୍ରୟୋଗ କରି ପିତୃଗୃହରୁ ଅପହରଣ କରି ନେଇ ଯାଇଥିବାର ଯେଉଁ ବର୍ଣ୍ଣନା ଅଛି, ତାହା ଏହାର ନିଦର୍ଶନ । (୨୩) ଏ ପ୍ରକାର ବିବାହରେ ଗାନ୍ଧର୍ବ ପଦ୍ଧତି ଓ ରାକ୍ଷସ ପଦ୍ଧତି ଉଭୟ ମିଶି କରି ଥିଲା । ଅଲ୍‌ଟେକର୍ ମଧ୍ୟ ପ୍ରେମ ବିବାହ ସଂପର୍କରେ ଲେଖିଛନ୍ତି :

> "Love marriages referred to in several passages also attest to the freedom of movement granted to grown-up girls." (୨୪)

କିନ୍ତୁ ଏଠାରେ ମନେ ରଖିବାକୁ ହେବ ଯେ ଏ ପ୍ରକାର ପ୍ରେମ କରିବା ଏକ ସାମାଜିକ ଭ୍ରଷ୍ଟାଚାରରେ ପରିଣତ ହୋଇନଥିଲା ।

ବୈଦିକ ବିବାହ-ପଦ୍ଧତିକୁ ଅନୁଧ୍ୟାନ କଲେ ସେ ସମୟରେ କିପରି ଭାବରେ ବିବାହ କାର୍ଯ୍ୟଟି ସମାହିତ ହେଉଥିଲା, ସେ ବିଷୟରେ ଧାରଣା କରିହେବ । ଏ କଥା ମନେ ରଖିବାକୁ ହେବ ଯେ ହିନ୍ଦୁ-ସମାଜରେ ମୋଟାମୋଟି ଭାବରେ ସେହି ପଦ୍ଧତି ବର୍ତ୍ତମାନ ମଧ୍ୟ

ସାରିବା ପରେ କନ୍ୟା ନିଶ୍ଚୟ ଯୁବତୀ ହୋଇ ଯାଇଥିବ । ବ୍ରହ୍ମଚର୍ଯ୍ୟାଶ୍ରମ ପରେ ବର ମଧ୍ୟ ସେହିପରି ଯୌବନାବସ୍ଥା ପ୍ରାପ୍ତ ହୋଇଥିବ । ଋଗ୍‌ବେଦର ଗୋଟିଏ ମନ୍ତ୍ର ଅନୁସାରେ (୧୦।୮୫।୨୧) ବିବାହର ଠିକ୍ ପରେ ପରେ କନ୍ୟା ବର ଘରକୁ ଯାଇଥାଏ ଏବଂ ସେଠାରେ ଉଭୟ ଏକତ୍ର ବାସ କରିଥାନ୍ତି । ଏହିସବୁ ପ୍ରମାଣରୁ ତେଣୁ ଆମକୁ ବୁଝିବାକୁ ହେବ ଯେ ବୈଦିକ କାଳରେ ବାଲ୍ୟବିବାହ ପ୍ରଥା ଆଦୌ ନଥିଲା ଏବଂ ବରକନ୍ୟା ଉଭୟ ଯୌବନପ୍ରାପ୍ତି ପରେ ହିଁ ବିବାହ କରୁଥିଲେ । ଏ ସଂପର୍କରେ ଆଲ୍ତେକରଙ୍କର ନିମ୍ନଲିଖିତ ମନ୍ତବ୍ୟ ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା :

> "All this evidence speaks in favour of the custom of girls normally marrying long after they had reached puberty." (୧୯)

ଝିଅ ଯୌବନପ୍ରାପ୍ତିର ବହୁ ବର୍ଷ ପରେ ବିବାହ କରୁଥିଲି ବୋଲି ଆଲ୍ତେ ଯାହା ଉପରେ କହିଛନ୍ତି, ସେ ବିଷୟରେ ଟିକିଏ ଅଧିକ ଆଲୋଚନା ହେବା ଆବଶ୍ୟକ । ବର୍ତ୍ତମାନ ପ୍ରଶ୍ନ ଉଠିପାରେ, ସାଧାରଣତଃ ଯୌବନପ୍ରାପ୍ତିର କେତେ ବର୍ଷରେ ବିବାହ କରି-ଯାଉଥିଲି ? ଏହା ଦୁଇ ତିନ ବର୍ଷରେ ସୀମାବଦ୍ଧ ଥିଲି ନା ଆଉ ବେଶି ଗଡ଼ି ଯାଉଥିଲି ? ମନୁଙ୍କ ମତରେ :

"ତ୍ରିଣି ବର୍ଷାଣ୍ୟୁଦୀକ୍ଷେତ କୁମାରୀ ଋତୁମତୀ ସତୀ" । (୨୦)

ଅର୍ଥାତ୍ କନ୍ୟା ଋତୁମତୀ ହେଲେ ତିନି ବର୍ଷ ପର୍ଯ୍ୟନ୍ତ ତା'ର ପତି ଲାଗି ଅପେକ୍ଷା କରିବା ଉଚିତ । ଏହାର ତାତ୍ପର୍ଯ୍ୟ ହେଲା, ଋତୁମତୀ ହେବାର ତିନି ବର୍ଷ ମଧ୍ୟରେ କନ୍ୟାକୁ ବିବାହ ଦେଇ ଦେବାର କଥା । କିନ୍ତୁ ମନୁସ୍ମୃତି ତ ବେଦ-ସୃଷ୍ଟିର ବହୁ ପରକାଳର କଥା । ଏହା ଯେ ବୈଦିକ ପରଂପରାକୁ ଠିକ ଭାବରେ ଅନୁସରଣ କରିଛି, ସେ କଥା କହି ହେବ ନାହିଁ । ଋତୁମତୀ ହୋଇ ସାରିବାର ବହୁ ବର୍ଷ ପର୍ଯ୍ୟନ୍ତ କନ୍ୟାକୁ ସୁଯୋଗ୍ୟ ପତି ଲାଗି ଅପେକ୍ଷା କରୁଥିବାକୁ ପଡ଼ୁଥିଲି ବୋଲି ବେଦରେ ବର୍ଣ୍ଣିତ ଅଛି । ଋଗ୍‌ବେଦର ଋଷିକା ଘୋଷା ହେଉଛନ୍ତି ଏହାର ଏକ ଜ୍ୱଳନ୍ତ ନିଦର୍ଶନ, ଯାହାଙ୍କୁ କି ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ପତି-ପ୍ରାପ୍ତି ଲାଗି ଅପେକ୍ଷା କରିବାକୁ ପଡ଼ିଥିଲି । ସେ ତାଙ୍କ ପତିହୀନ ଦୁଃଖମୟ ଜୀବନର କରୁଣ କାହାଣୀ କେତେକ ବେଦମନ୍ତ୍ରରେ ଲିପିବଦ୍ଧ କରିଛନ୍ତି । କନ୍ୟା ସବୁବେଳେ ତା'ର ଯୋଗ୍ୟ ପତିକୁ ଚାହୁଁଥିଲି । ତେଣୁ ଯୋଗ୍ୟ ପତିଟିଏ ପାଇବା ପର୍ଯ୍ୟନ୍ତ ତା'କୁ ନିଶ୍ଚୟ ଅପେକ୍ଷା କରି ରହିବାକୁ ପଡ଼ୁଥିବ । ତା'ର ବିବାହ ଋତୁମତୀ ହେବାର ତିନି ବର୍ଷ ଭିତରେ ହୋଇପାରେ କିମ୍ବା ତିନି ବର୍ଷ ଅତିକ୍ରାନ୍ତ ହେବା ପରେ ହୋଇପାରେ । ସେଥିପାଇଁ ମନୁଙ୍କ କହିବା ଭଳି ସେମିତି ଧରାବନ୍ଧା ନିୟମ କିମ୍ବା ବୟସସୀମାର କିଛି

ଗୋଟାଏ ଲକ୍ଷଣ-ଗାର ନଥିଲା । ସେଥିପାଇଁ କେବଳ ଦୁଇଟି ବିଷୟ ବିଗ୍ରହକୁ ନିଆ-ଯାଉଥିଲା । ପ୍ରଥମତଃ ସେ ଥିବ ଯୁବତୀ । ଦ୍ୱିତୀୟତଃ ପତି ତା'ର ମନ ଲାଗି ହୋଇଥିବ । କନ୍ୟାର ଯେ ସ୍ୱାଧୀନ ଓ ମୁକ୍ତ ଭାବରେ ପତି-ନିର୍ବାଚନର ଅଧିକାର ଥିଲା, ସେ ବିଷୟରେ ଅବିନାଶ ଚନ୍ଦ୍ର ଦାସ ଯାହା କହିଛନ୍ତି, ତାହା ଏଠାରେ ଲକ୍ଷ୍ୟ କରିବାର କଥା :

> "A respected girl always selected from among her suitors one to whom she really loved, as true love was considered as the real conjugal happiness." (୨୧)

ବିବାହରେ ପ୍ରେମର ପ୍ରାଧାନ୍ୟ ଯେ ସର୍ବାଧିକ, ସେ କଥା ଋଗ୍‌ବେଦରେ ସ୍ପଷ୍ଟ ଭାବରେ କୁହା ଯାଇଛି । (୨୨) ଅତଏବ, ଏଥିରୁ ଏହି ସତ୍ୟ ନିଷ୍କାସିତ ହେବ ଯେ ବୈଦିକ କାଳରେ ବିବାହ ପୂର୍ବରୁ ପ୍ରେମ କରିବା ସମାଜରେ ଦୂଷଣୀୟ ନଥିଲା । ବରଂ କନ୍ୟା ଯାହାଙ୍କୁ ପ୍ରେମ କରୁଥିଲା, ତାଙ୍କୁ ହିଁ ବିବାହ କରିବା ପାଇଁ ସମାଜ ଓ ପିତାମାତା ତା'କୁ ଉତ୍ସାହ ଦେଉଥିଲେ । କେତେବେଳେ କେମିତି କୌଣସି କାରଣରୁ ଏ ପ୍ରକାର ବିବାହକୁ ପିତା ପସନ୍ଦ ନ କଲେ ମଧ୍ୟ ଝିଅର ମନ-କଥା ହିଁ କାର୍ଯ୍ୟକାରୀ ହେଉଥିଲା । ଆବଶ୍ୟକ ହେଲେ ପତି ତାଙ୍କ ପ୍ରେମିକାକୁ ବଳପୂର୍ବକ ନେଇ ଯାଉଥିଲେ । ଋଗ୍‌ବେଦରେ ବିମଦ ତାଙ୍କ ପ୍ରେମିକା ପୁରୁମିତ୍ରଙ୍କ ଝିଅକୁ ବଳ ପ୍ରୟୋଗ କରି ପିତୃଗୃହରୁ ଅପହରଣ କରି ନେଇ ଯାଇଥିବାର ଯେଉଁ ବର୍ଣ୍ଣନା ଅଛି, ତାହା ଏହାର ନିଦର୍ଶନ । (୨୩) ଏ ପ୍ରକାର ବିବାହରେ ଗାନ୍ଧର୍ବ ପଦ୍ଧତି ଓ ରାକ୍ଷସ ପଦ୍ଧତି ଉଭୟ ମିଶି କରି ଥିଲା । ଅଲ୍‌ଟେକର୍ ମଧ୍ୟ ପ୍ରେମ ବିବାହ ସଂପର୍କରେ ଲେଖିଛନ୍ତି :

> "Love marriages referred to in several passages also attest to the freedom of movement granted to grown-up girls." (୨୪)

କିନ୍ତୁ ଏଠାରେ ମନେ ରଖିବାକୁ ହେବ ଯେ ଏ ପ୍ରକାର ପ୍ରେମ କରିବା ଏକ ସାମାଜିକ ଭ୍ରଷ୍ଟାଚାରରେ ପରିଣତ ହୋଇନଥିଲା ।

ବୈଦିକ ବିବାହ-ପଦ୍ଧତିକୁ ଅନୁଧ୍ୟାନ କଲେ ସେ ସମୟରେ କିପରି ଭାବରେ ବିବାହ କାର୍ଯ୍ୟଟି ସମାହିତ ହେଉଥିଲା, ସେ ବିଷୟରେ ଧାରଣା କରିହେବ । ଏ କଥା ମନେ ରଖିବାକୁ ହେବ ଯେ ହିନ୍ଦୁ-ସମାଜରେ ମୋଟାମୋଟି ଭାବରେ ସେହି ପଦ୍ଧତି ବର୍ତ୍ତମାନ ମଧ୍ୟ

ଅନୁସୃତ ହେଉଛ ; ସେହି ମନ୍ତ୍ରଗୁଡ଼ିକ ବୋଲା ହୋଇ ଆସୁଛି । ସ୍ଥୂଳତଃ ଏହି ପଦ୍ଧତି ହେଲା :

(କ) ବରକୁ ସଦଳବଳେ କନ୍ୟା ଘରକୁ ବିବାହ ଲାଗି ଯିବାକୁ ପଡୁଥିଲା । (ଋ. ବେ. ୧୦।୧୭।୧)

(ଖ) ପିତୃ-ଗୃହରେ ଭଲ ପୋଷାକପତ୍ର ଓ ଅଳଙ୍କାର ପିନ୍ଧି କନ୍ୟାକୁ ବିବାହ ଅନୁଷ୍ଠାନରେ ଯୋଗ ଦେବା ପାଇଁ ଅପେକ୍ଷା କରିବାକୁ ପଡୁଥିଲା । (ଋ. ବେ. ୪।୫୮।୯)

(ଗ) ଅତିଥିମାନଙ୍କୁ ଅନ୍ୟାନ୍ୟ ଜିନିଷ ମଧ୍ୟରେ ଗୋମାଂସ ଦ୍ୱାରା ସତ୍କାର କରାଯାଉଥିଲା । ଗୋମାଂସ ନଥିଲେ କୌଣସି ବିବାହ-ଭୋଜି ଭଲ ବୋଲି ଗଣା ଯାଉନଥିଲା । (ଋ. ବେ. ୧୦।୮୫।୧୩)

(ଘ) ବର କନ୍ୟାର ହାତ ଧରି ଅଗ୍ନି ଦେବତାଙ୍କୁ ଘୂରି ପଟେ ସାତ ପାଦ ଚାଲି ଆସୁଥିଲା । ଏତେବେଳେ ଯେଉଁ ମନ୍ତ୍ର ବୋଲା ଯାଉଥିଲା, ତାହା ସପ୍ତପଦୀ-ମନ୍ତ୍ର ନାମରେ ଖ୍ୟାତ । ଏହି ସପ୍ତପଦୀ କର୍ମବିଧାନ ନ ସରିବା ପର୍ଯ୍ୟନ୍ତ ବିବାହ ସଂପୂର୍ଣ୍ଣ ହେଉ ନଥିଲା । (ଋ. ବେ. ୧୦।୮୫।୩୬)

(ଙ) ସ୍ୱାମୀ ସେତେବେଳେ ସ୍ତ୍ରୀର ହାତ ଧରିବାକୁ ଅଧିକାର ପାଉଥିଲା । ଏ ପ୍ରକାର ହାତ ଧରିବାକୁ କୁହା ଯାଉଥିଲା 'ହସ୍ତଗ୍ରାଭ' । (ଋ. ବେ. ୧୦।୧୮।୮)

(ଚ) ବର ରଥରେ କନ୍ୟାକୁ ଧରି ସଦଳବଳେ ନିଜ ଘରକୁ ଫେରି ଯାଉଥିଲା । (ଋ. ବେ. ୧୦।୮୫।୭ ; ୧୦।୮୫।୮ ଇତ୍ୟାଦି)

(ଛ) ତତ୍ପରେ ବିବାହର ଚତୁର୍ଥୀ ରାତିରେ କନ୍ୟାର ପୋଷାକପତ୍ରକୁ ଶୁଦ୍ଧ କରା ଯାଉଥିଲା ଏବଂ ସ୍ୱାମୀ-ସ୍ତ୍ରୀଙ୍କର ମିଳନ ସଂଘଟିତ ହେଉଥିଲା । (ଋ. ବେ. ୧୦।୮୫।୨୮)

(ଜ) ଦୀର୍ଘ ଜୀବନ ଓ ଅବିଚ୍ଛିନ୍ନ ଦାମ୍ପତ୍ୟ ସୁଖ ଉପରେ ମିଳିବ, ସେଥିପାଇଁ କାମନା କରାଯାଉଥିଲା । ଆଉ ମଧ୍ୟ ପୁଅଝିଅ, ନାତିନାତୁଣୀ ହେବା ଲାଗି କାମନା କରାଯାଉଥିଲା । (ଋ. ବେ. ୮।୩୧।୫-୯ ; ୧୦।୩୪।୧୧)

ବୈଦିକ ଆର୍ଯ୍ୟମାନଙ୍କର ପ୍ରାଥମିକ ଅବସ୍ଥାରେ ଋଗ୍‌ବେଦ କାଳରେ ଏହା ଥିଲା ସାଧାରଣ ଭାବରେ ଅନୁସୃତ ବିବାହ-ପଦ୍ଧତି । କିନ୍ତୁ କାଳକ୍ରମେ ସମସ୍ତର ଗତି ସମାଜକୁ

ଜଟିଳ କରିଦେଲା । ଯେଉଁ ପ୍ରକାର ସ୍ଥିତି ପୂର୍ବରୁ କଳ୍ପନା କରିଯାଇ ନଥିଲା, ତାହା ଆସି ଦେଖା ଦେଲା । ତାହାର ପ୍ରଭାବ ସମାଜ ଉପରେ ପଡ଼ିଲା ଏବଂ ବିବାହ ମନ୍ତ୍ରରେ ସାମାନ୍ୟ ପରିବର୍ତ୍ତନ ଅଣାଗଲା । ଏ ପ୍ରକାର ପରିବର୍ତ୍ତନ ଆସିଲା ଅଥର୍ବ ବେଦରେ । ଏହି ସ୍ଥିତିକୁ ଲକ୍ଷ୍ୟ କରି ତେଣୁ କୁହାଯାଇଛି :

> "In the Atharva Veda the marriage Sukta is found with certain important changes," (୨୪-କ)

ଏହି ପରିବର୍ତ୍ତନଗୁଡ଼ିକ ସଂକ୍ଷେପରେ ନିମ୍ନରେ ଦିଆଯାଉଛି :

(କ) ପିତା କନ୍ୟାଦାନ କରିବାର ଅଧିକାରୀ ବୋଲି ସ୍ୱୀକାର କରିଗଲା ।

(ଖ) ବରକନ୍ୟାଙ୍କ କିପରି ଦୀର୍ଘ ଜୀବନ ମିଳିବ ଏବଂ ସେମାନଙ୍କର ସନ୍ତାନ ସନ୍ତତି ହେବେ, ତାହା କାମନା କରି ସେମାନଙ୍କ ଉଦ୍ଦେଶ୍ୟରେ ଗାଈ, କମ୍ବଳ ଇତ୍ୟାଦି ଦାନ ଦେବାର ବ୍ୟବସ୍ଥା ଖଞ୍ଜାହେଲା ।

(ଗ) ବିବାହ ପରେ ଚତୁର୍ଥୀ ରାତିରେ ବରକନ୍ୟାଙ୍କ ମିଳନ ଲାଗି ସ୍ୱତନ୍ତ୍ର ମନ୍ତ୍ର ଖଞ୍ଜାହେଲା ।

(ଘ) ଅଥର୍ବ ବେଦରେ ଥିବା ବିଭିନ୍ନ ତନ୍ତ୍ରମନ୍ତ୍ର ମନ୍ତ୍ରରାଶି ଲୋକମାନଙ୍କ ଦୁଃଖକଷ୍ଟ ଦୂର କରିବା ପାଇଁ ଉଦ୍ଦିଷ୍ଟ ଥିବାରୁ ସେଗୁଡ଼ିକର ଉଚ୍ଚାରଣ ଲୋକମାନଙ୍କ ଲାଗି ଖୁବ୍ ସ୍ୱାଦ୍ୟ ଓ ହୃଦ୍ୟ ଥିଲା । ତେଣୁ ସେଗୁଡ଼ିକର ଉଚ୍ଚାରଣ ଧୀରେ ଧୀରେ ବିବାହ-ମନ୍ତ୍ରରେ ପ୍ରବେଶ କଲା ।

(ଙ) ବ୍ରାହ୍ମଣମାନଙ୍କୁ ସେତେବେଳେ ରାଜାମାନେ କେତେକ କ୍ଷେତ୍ରରେ ହଇରାଣ ହରକତ କରୁଥିବାର ମନେ ହୁଏ । ଏଣୁ ବରକନ୍ୟା ଓ ଉପସ୍ଥିତ ଜନସମାଜକୁ ସେଥିପ୍ରତି ସାବଧାନ କରି ଦିଆଯାଉଥିଲା । ତେଣୁ କୁହାଗଲା ଯେ ଯେଉଁ ରାଜ୍ୟରେ ବ୍ରାହ୍ମଣମାନେ ଅତ୍ୟାଚରିତ, ସେହି ରାଜ୍ୟର ଉନ୍ନତି ଅସମ୍ଭବ । (ଅଥର୍ବ ବେଦ, ୫।୧୯ ; ୫।୮୦)

ଏ ତ ଗଲା ସାଧାରଣ ବିବାହ-ପଦ୍ଧତି କଥା, ଯାହା କି ଋଗ୍‌ବେଦର ପ୍ରାଥମିକ ଅବସ୍ଥାରେ ପ୍ରଚଳିତ ଥିଲା । ସମସ୍ତେ ଏହି ପଦ୍ଧତିକୁ ଅନୁସରଣ କରି ବିବାହ କରୁଥିଲେ । କିନ୍ତୁ କାଳକ୍ରମେ ସମାଜରେ ଜଟିଳତା ଦେଖା ଦେବାକୁ ଲାଗିଲା । ଆର୍ଯ୍ୟେତର ଦାସ, ଦସ୍ୟୁମାନଙ୍କର ପ୍ରଭାବ ମଧ୍ୟ କ୍ରମେ କ୍ରମେ ଆର୍ଯ୍ୟସମାଜ ଉପରେ ପଡ଼ିବାକୁ ଲାଗିଲା । ଆର୍ଯ୍ୟେତର ସମାଜରେ ବିବାହ ବରକନ୍ୟାଙ୍କ ଇଚ୍ଛାନୁସାରେ ସମାହିତ ହେଉଥିଲେ ହେଁ

ଅନେକ ସମୟରେ ଏଥିପାଇଁକି ବଳପ୍ରୟୋଗ କରିବାକୁ ପଡ଼ୁଥିଲା । ଏହି ବଳପ୍ରୟୋଗ କନ୍ୟାର ପିତାମାନଙ୍କ ଇଚ୍ଛା ବିରୁଦ୍ଧରେ ସାଧାରଣତଃ କରାଯାଉଥିଲା । ଆଉ ବେଳେବେଳେ କନ୍ୟାର ଇଚ୍ଛା ବିରୁଦ୍ଧରେ ମଧ୍ୟ ତା'କୁ ବଳ ପ୍ରୟୋଗ କରି ବିବାହ କରାଯାଉଥିଲା । ପ୍ରଥମେ ପ୍ରଥମେ ଆର୍ଯ୍ୟମାନେ ଅବଶ୍ୟ ଏ ପ୍ରକାର ବିବାହକୁ 'ରାକ୍ଷସ ବିବାହ' କହି ଏହାର ନିନ୍ଦା କରୁଥିଲେ । କିନ୍ତୁ କାଳକ୍ରମେ ସେମାନେ ମଧ୍ୟ ଏହାର ଶରଣ୍ୟ ହୋଇଗଲେ । ଏହିପରି ଭାବରେ ବୈଦିକ ଆର୍ଯ୍ୟ-ସମାଜରେ ଆଠ ପ୍ରକାର ବିବାହ-ପଦ୍ଧତି ଦୃଷ୍ଟିଗୋଚର ହେବାକୁ ଲାଗିଲା । ମନୁସ୍ମୃତିରେ ଏହି ଆଠ ପ୍ରକାର ବିବାହ-ପଦ୍ଧତିର ଉଲ୍ଲେଖରୁ ଜଣାପଡ଼େ ଯେ ସେତେବେଳେ ମଧ୍ୟ ଏହା ଅନୁସୃତ ହେଉଥିଲା । ବାସ୍ତବିକ, ବୈଦିକ ଯୁଗରୁ ଆରମ୍ଭ କରି ମହାକାବ୍ୟ ଯୁଗ ପର୍ଯ୍ୟନ୍ତ ଏହି ଆଠ ପ୍ରକାର ବିବାହ-ପଦ୍ଧତି ହିଁ ଅନୁସୃତ ହେଉଥିବାର ପ୍ରମାଣ ଆମେ ବିଭିନ୍ନ ଗ୍ରନ୍ଥରେ ଦେଖିବାକୁ ପାଇଥାଉଁ । ସେଥିପାଇଁ ଯଥାର୍ଥରେ କୁହାଯାଇଛି :

> "From Vedic times to the times of the Indian Epics eight forms of marriage were in vogue. The Hindu form of marriage has never been a contra socia, i.e. a social contract, as in western countries, but has always been a religious sacrament." (୨୪-ଖ)

ଏହି ପଦ୍ଧତିଗୁଡ଼ିକ ବିଷୟରେ ନିମ୍ନରେ ବର୍ଣ୍ଣନା କରାଯାଉଛି । (୨୪-ଗ)

ପ୍ରଥମଟି ହେଲା 'ବ୍ରାହ୍ମ ବିବାହ' । ଏହି ପଦ୍ଧତିରେ ସ୍ୱକନ୍ୟାକୁ ଉପଯୁକ୍ତ ଯାନଯୌତୁକ ଦେଇ ପିତାଙ୍କୁ ନିଜ ବର୍ଣ୍ଣର ଜଣେ ଯୁବକଙ୍କ ସହିତ ଉପରୋକ୍ତ ପଦ୍ଧତିରେ ବିବାହ ଦେବାକୁ ପଡ଼ୁଥାଏ । ଦ୍ୱିତୀୟଟି ହେଲା 'ଦୈବ ବିବାହ' । ଏଥିରେ ଗୃହସ୍ଥଙ୍କ ଯାଜ୍ଞିକ ପୁରୋହିତଙ୍କ ହାତରେ ତାଙ୍କ ପୌରୋହିତ୍ୟର ଦକ୍ଷିଣା ସ୍ୱରୂପ ଅର୍ପଣ କରାଯାଇଥାଏ । ତୃତୀୟଟି ହେଲା 'ଆର୍ଷ ବିବାହ', ଯାହାକି ଋଷିମାନଙ୍କ ମଧ୍ୟରେ ସାଧାରଣତଃ ପ୍ରଚଳିତ ଥିଲା । ଏଥିରେ କିଛି ଯାନଯୌତୁକ ଦେବାକୁ ପଡ଼ି ନଥାଏ । ସାଙ୍କେତିକ ଭାବରେ କନ୍ୟାପଣ ସ୍ୱରୂପ ଗୋଟିଏ ଷଣ୍ଢ ଓ ଗୋଟିଏ ଗାଈ ଏଥିରେ ଦେବାକୁ ପଡ଼ୁଥାଏ । ଚତୁର୍ଥଟି ହେଲା 'ପ୍ରାଜାପତ୍ୟ ବିବାହ' । ଏଥିରେ କନ୍ୟାପିତାଙ୍କୁ କିଛି ଯାନଯୌତୁକ ଦେବାକୁ ପଡ଼ି ନଥାଏ କିମ୍ବା ବରପିତାଙ୍କୁ କିଛି କନ୍ୟାପଣ ଦେବାକୁ ପଡ଼ି ନଥାଏ । ପଞ୍ଚମଟି ହେଲା 'ଗାନ୍ଧର୍ବ ବିବାହ' । ଏହା ଯୁବକ ଓ ଯୁବତୀଙ୍କର ସମ୍ମତି କ୍ରମେ ସଂଘଟିତ ହୋଇଥାଏ । ଏଥିରେ ପିତାମାତାଙ୍କର ସମ୍ମତିର ଆବଶ୍ୟକତା ନଥାଏ । କେବଳ ଯାହା ଆନୁଷ୍ଠାନିକତା ରକ୍ଷା

ଉଦ୍ଦେଶ୍ୟରେ ତାହା ଅଣାଯାଇଥାଏ । ପୂର୍ବରୁ ଯୁବକ ଯୁବତୀ ପରସ୍ପରକୁ ଭଲ ପାଇଥାନ୍ତି ଏବଂ ସେହି ଭଲ ପାଇବା ହିଁ ଶେଷରେ ବିବାହର ଫଳଶ୍ରୁତି ଆଣିଦିଏ । ଆଧୁନିକ ଯୁଗର ପ୍ରେମ-ବିବାହ ଏହା ସହିତ ତୁଳନୀୟ । ଷଷ୍ଠଟି ହେଉଛି 'ଆସୁର ବିବାହ' । ଏଥିରେ ପିତାମାତାଙ୍କଠାରୁ କନ୍ୟାକୁ କିଣା ଯାଇଥାଏ । ସପ୍ତମଟି ହେଲା 'ରାକ୍ଷସ ବିବାହ' । ଏଥିରେ ବଳପ୍ରୟୋଗ ଦ୍ୱାରା ପିତୃଗୃହରୁ କନ୍ୟାକୁ ଅପହରଣ କରି ନିଆଯାଇ ପରେ ବିବାହ କରିବାକୁ ପଡ଼ିଥାଏ । ଅଷ୍ଟମ ଓ ଶେଷଟି ହେଉଛି 'ପୈଶାଚ ବିବାହ' । ଏହାର ନାମକରଣରୁ ଜଣାଯିବ ଯେ ଏହି ପଦ୍ଧତିଟି ଅତ୍ୟନ୍ତ ପୈଶାଚିକ ଓ ନିନ୍ଦନୀୟ । ଏଥିରେ କନ୍ୟା ଶୋଇଥିଲା ବେଳେ କିମ୍ବା ମଦନିଶାରେ ଚେତନା ହରାଇଥିଲା ବେଳେ କିମ୍ବା ମାନସିକ ଭାରସାମ୍ୟ ହରାଇ ବସିଥିଲା ବେଳେ, ବଳପ୍ରୟୋଗ କରି ତାହା ସହିତ ବିବାହ ସଂଘଟିତ କରାଯାଇଥାଏ । ଏହି ଆଠ ପ୍ରକାର ବିବାହ-ପଦ୍ଧତି ମଧ୍ୟରୁ ପ୍ରଥମ ଚାରି ପ୍ରକାର ପଦ୍ଧତି ସାଧାରଣତଃ ବ୍ରାହ୍ମଣମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଏହି ପଦ୍ଧତିଗୁଡ଼ିକୁ ଅତି ପବିତ୍ର ବୋଲି ଚିନ୍ତା କରାଯାଉଥିଲା ଏବଂ ଏହି ପଦ୍ଧତିଗୁଡ଼ିକରେ ଅନୁଷ୍ଠିତ ବିବାହ ଅବିଚ୍ଛେଦ୍ୟ ବୋଲି କଳ୍ପନା କରାଯାଉଥିଲା । ବାସମ୍ ଠିକ୍ ଏହି ମର୍ମରେ କହିଛନ୍ତି :

> "Of these eight forms, the first four were generally approved and were permissible to Brahmins ; these were religious marriages, and were indissoluble." (୧୫)

ବ୍ରାହ୍ମଣମାନଙ୍କ ମଧ୍ୟରେ 'ଗାନ୍ଧର୍ବ ବିବାହ' ପ୍ରଚଳିତ ଥିଲା କି ନାହିଁ, ସେ ବିଷୟରେ ଅବଶ୍ୟ କିଛିଟା ସନ୍ଦେହ ବିଦ୍ୟମାନ । କିନ୍ତୁ କ୍ଷତ୍ରିୟମାନଙ୍କ ମଧ୍ୟରେ ଏହା ନିଶ୍ଚିତ ଭାବରେ ଥିଲା । ଏହି ଗାନ୍ଧର୍ବ ବିବାହକୁ ଅବଲମ୍ବନ କରି ହୋଇଛି ବହୁ ପ୍ରଣୟ-କାହାଣୀର ସୃଷ୍ଟି ଏବଂ ଏହି କାହାଣୀଗୁଡ଼ିକ ଦ୍ୱାରା ବୈଦିକ ସାହିତ୍ୟର ପୃଷ୍ଠା ବହୁଳ ଭାବରେ ମଣ୍ଡିତ । ବାସ୍ତବିକ ବେଦ-ପରବର୍ତ୍ତୀ କାଳରେ ଏହି ପୃଷ୍ଠଭୂମିକୁ ଅବଲମ୍ବନ କରି କବିମାନେ ସୃଷ୍ଟି କରିଛନ୍ତି ଦୁଇଟି ଶବ୍ଦ, ଅଭିସାରିକା ଓ ବାସକସଜ୍ଜିକା । ଅଭିସାରିକା ଲୁଚି ଛପି ତା'ର ପ୍ରିୟତମଙ୍କ ପାଖକୁ ଯାଇଥାଏ ; ଏହି ଯିବାକୁ କୁହାଯାଏ ଅଭିସାର । ବାସକସଜ୍ଜିକା ପ୍ରଣୟ-ପ୍ରଦୀପ ଜାଳି ତା'ର ସ୍ୱଗୃହରେ ପ୍ରିୟତମଙ୍କୁ ଅପେକ୍ଷା କରି ରହିଥାଏ ।

ଶେଷୋକ୍ତ ତିନି ବିବାହପଦ୍ଧତି, ଯଥା, 'ଆସୁର', 'ରାକ୍ଷସ' ଓ 'ପୈଶାଚ' ଥିଲା ଅତି ଅମାନୁଷିକ । ଏହି ପଦ୍ଧତି ଆଦୌ ମୌଳିକ ଆର୍ଯ୍ୟନୀତିର ଅନୁସାରୀ ନଥିଲା । ଅନ୍ୟ ପକ୍ଷରେ ଏହା ଥିଲା ଆର୍ଯ୍ୟନୀତିର ପରିପନ୍ଥୀ । ଏହିଭଳି ଯୁକ୍ତି ଦର୍ଶାଇ କେତେକ ପଣ୍ଡିତ ମତ

ଦିଅନ୍ତି ଯେ ଏ ପ୍ରକାର ବିବାହ ଆଦୌ ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରଚଳିତ ନଥିଲା ; ବରଂ ଏହା ଥିଲା ଆର୍ଯ୍ୟେତର ଗୋଷ୍ଠୀ ମଧ୍ୟରେ ପ୍ରଚଳିତ । ଏ ପ୍ରକାର ଯୁକ୍ତି କିନ୍ତୁ ବିଶ୍ୱାସଯୋଗ୍ୟ ନୁହେଁ । ଯଦି ଏ ପ୍ରକାର ବିବାହ-ପଦ୍ଧତି ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରଚଳିତ ନଥାନ୍ତା, ତେବେ ସେମାନଙ୍କ ଆଠ ପ୍ରକାର ବିବାହ-ପଦ୍ଧତିରେ ଏଗୁଡ଼ିକୁ ଅନ୍ତର୍ଭୁକ୍ତ କରାଯାଇଥାନ୍ତା ବା କାହିଁକି ? ମନୁସ୍ମୃତିରେ ଏଗୁଡ଼ିକ ସ୍ଥାନ ପାଇଥାନ୍ତା ବା କାହିଁକି ? ସମ୍ଭବତଃ ଆର୍ଯ୍ୟେତର ଗୋଷ୍ଠୀର ସାମାଜିକ ପ୍ରଥାର ପ୍ରଭାବ ଆର୍ଯ୍ୟମାନଙ୍କ ଉପରେ ପଡ଼ିଥିଲା ଏବଂ ତାହାର ଫଳଶ୍ରୁତି ସ୍ୱରୂପ ଏ ପ୍ରକାର ବିବାହ ସେମାନଙ୍କ (ଆର୍ଯ୍ୟମାନଙ୍କ) ସମାଜରେ ପ୍ରବେଶ କରି ଯାଇଥିଲା । ଏ ପ୍ରକାର ବିବାହ-ପଦ୍ଧତିର ଶିକାର ଯେଉଁ ସ୍ତ୍ରୀମାନେ ହେଉଥିଲେ, ସେମାନଙ୍କୁ ତ ସମାଜରେ କିଛି ଗୋଟାଏ ବୈଧିକ ସ୍ଥିତି ଦେବାକୁ ହେବ । ସେମାନଙ୍କର ସନ୍ତାନ-ସନ୍ତତିମାନଙ୍କୁ ତ ପୁଣି କିଛି ଗୋଟାଏ ସାମାଜିକ ସ୍ୱୀକୃତି ଓ ଅଧିକାର ଦେବାକୁ ହେବ । ଏହି ଚିନ୍ତା ବୈଦିକ ସମାଜତତ୍ତ୍ୱବିତ୍‌ମାନଙ୍କ ମୁଣ୍ଡକୁ ଯାଇଥିଲା ଏବଂ ସେଥିପାଇଁ ସେମାନେ ଏହାକୁ ଏକ ପ୍ରକାର ବିବାହ ବୋଲି ଅନୁମୋଦନ କରି ନେଇଥିଲେ । ଏହି ପ୍ରକ୍ରିୟାରେ ଉପରୋକ୍ତ ତିନି ପ୍ରକାର ଅତି ନିନ୍ଦନୀୟ ବିବାହ-ପଦ୍ଧତି ଆର୍ଯ୍ୟ ସମ୍ପ୍ରଦାୟ ମଧ୍ୟରେ ପ୍ରବେଶ କରିଥିଲା । ଏହା ମଧ୍ୟ ହେଉଛି ବାସମ୍‌ଙ୍କ ମତ । ସେ କହିଛନ୍ତି :

> "It would seem that, with surprising realism, the jurists recognised a wide range of relationships, so that the girl seduced by her lover's promises or carried off by raiders would have some legal claim to wifely status and her child some degree of legitimacy." (୨୭)

ଏହିପରି ଭାବରେ ନିମ୍ନ ପଦ୍ଧତିର ବିବାହଗୁଡ଼ିକ ବୈଦିକ ଆର୍ଯ୍ୟ ସମ୍ପ୍ରଦାୟ ମଧ୍ୟରେ ପ୍ରବେଶ କରିଥିଲା ।

ଗାନ୍ଧର୍ବ ବିବାହର ଆଉ ଗୋଟିଏ ରୂପ ଥିଲା 'ସ୍ୱୟଂବର' ବା 'ନିଜେ ବରଣ କରିବା' । ଏଥିରେ କନ୍ୟା ତା'ର ସ୍ୱାମୀକୁ ନିଜ ଇଚ୍ଛାରେ ବରଣ କରୁଥିଲା । ସେଥିରେ ପିତାମାତା କିମ୍ବା ସମାଜ କେହି ବାଧାବିଘ୍ନ ଦେଉନଥିଲେ । ଆମେ ବୈଦିକ ଓ ବେଦୋତ୍ତର ଗ୍ରନ୍ଥମାନଙ୍କର ରାଜାମହାରାଜାମାନେ ସେମାନଙ୍କ କନ୍ୟାମାନଙ୍କ ଦ୍ୱାରା ଉପଯୁକ୍ତ ପତିନିର୍ବାଚନର ସୁବିଧା ପାଇଁ ସ୍ୱୟଂବର ସଭାମାନ ଆୟୋଜନ କରିଥିବାର ଭୂରି ଭୂରି ପ୍ରମାଣ ପାଇଥାଉଁ । ସ୍ତ୍ରୀମାନଙ୍କର ଏ ପ୍ରକାର ସ୍ୱେଚ୍ଛାରେ ପତିନିର୍ବାଚନ ପ୍ରତି ଲକ୍ଷ୍ୟ କରି କ୍ଲାରିସି ବ୍ୟାଡ଼େର୍ (Clarisse Bader) ଯଥାର୍ଥରେ କହିଛନ୍ତି :

"The young maiden was free to choose the husband to whom she would unite her lot." (୨୭)

ଅବଶ୍ୟ ବୈଦିକ ଯୁଗରେ ସ୍ତ୍ରୀର ଏହି ଯେଉଁ ସ୍ୱାଧୀନତା ଥିଲା, ତାହା କାଳକ୍ରମେ ଖର୍ବ ହେବାକୁ ଲାଗିଲା ଏବଂ ବେଦୋତ୍ତର ସୂତ୍ରଯୁଗ ବେଳକୁ ତାହା ପୂରାପୂରି ଖର୍ବ ହୋଇ ଯାଇଥିଲା କହିଲେ ଚଳେ । ସେଥିପାଇଁ ବୌଧାୟନ ଧର୍ମସୂତ୍ରରେ କୁହାଗଲା :

ପିତା ରକ୍ଷତି କୌମାରେ ଭର୍ତ୍ତା ରକ୍ଷତି ଯୌବନେ
ପୁତ୍ରୋ ରକ୍ଷତି ଜରାୟାଂ ନ ସ୍ତ୍ରୀଣାଂ ସ୍ୱାତନ୍ତ୍ର୍ୟମର୍ହତି । (୨୮)

ଅର୍ଥାତ୍ ସ୍ତ୍ରୀକୁ ବାପା କୁମାରୀ ଥିବା ଅବସ୍ଥାରେ ରକ୍ଷା କରିବେ ; ସ୍ୱାମୀ ଯୌବନରେ ରକ୍ଷା କରିବେ ; ଏବଂ ପୁଅ ବାର୍ଦ୍ଧକ୍ୟରେ ରକ୍ଷା କରିବେ । ସ୍ତ୍ରୀମାନଙ୍କର ସ୍ୱାତନ୍ତ୍ର୍ୟ ବୋଲି କିଛି ନାହିଁ । ଏ ପ୍ରକାର ସ୍ତ୍ରୀବିରୋଧୀ ପ୍ରତିକ୍ରିୟାଶୀଳ ମନୋବୃତ୍ତିର କାରଣ ହେଲା, ପୁରୁଷପ୍ରଧାନ ସମାଜ କ୍ରମେ କ୍ରମେ ସ୍ତ୍ରୀକୁ ଏକ ସଂପତ୍ତି ହିସାବରେ ଗଣିବାକୁ ଲାଗିଲା ; ତେଣୁ ଏହି ସଂପତ୍ତିର ସୁରକ୍ଷା ଲାଗି ଭିନ୍ନ ଭିନ୍ନ ଲୋକଙ୍କୁ ବିଭିନ୍ନ ସମୟରେ ଦାୟିତ୍ୱ ଦିଆଗଲା । କିନ୍ତୁ ଯାହା ପୂର୍ବରୁ କୁହା ଯାଇଛି, ବୈଦିକ ସମୟରେ ସ୍ଥିତି କିନ୍ତୁ ଥିଲା ଏହାର ବିପରୀତ । ସ୍ତ୍ରୀର ଏହି ଉନ୍ନତ ସାମାଜିକ ସ୍ଥିତି ଦେଖି କ୍ଲାରିସି ବ୍ୟାଡ଼େର୍ ସେଦିନ ବିସ୍ମୟରେ ଅଭିଭୂତ ହୋଇ କହି ଉଠିଥିଲେ :

"The wife ! The wife in ancient India ! With what a shining aureole is she crowned there !" (୨୯)

ପ୍ରେମ ହେଉଛି ନୈସର୍ଗିକ । ଏହା ସୁନ୍ଦର । ଦାମ୍ପତ୍ୟ-ଜୀବନରେ ପୂର୍ଣ୍ଣତା ଆଣିବାକୁ ଗଲେ ସ୍ୱାମୀସ୍ତ୍ରୀଙ୍କ ମଧ୍ୟରେ ପ୍ରେମ ଥିବା ଆବଶ୍ୟକ । ଏହି ପ୍ରେମ ହୁଏତ ବିବାହ ପୂର୍ବରୁ ତରୁଣ-ତରୁଣୀଙ୍କ ମଧ୍ୟରେ ଆଇ ପାରେ କିମ୍ବା ବିବାହ ପରେ ଦୁହିଁଙ୍କ ମଧ୍ୟରେ ଆସିଥାଇ ପାରେ । ବୈଦିକ ସମାଜତତ୍ତ୍ୱବିତ୍‌ମାନେ ପ୍ରେମର ଏହି ଗୁରୁତ୍ୱ ବିଷୟ ଉପଲବ୍ଧି କରିଥିଲେ ଏବଂ ଏହି ପ୍ରେମ ଯେପରି ସ୍ୱାମୀସ୍ତ୍ରୀଙ୍କ ମଧ୍ୟରେ ସର୍ବଦା ଅତୁଟ ରହେ ତାହାର ବ୍ୟବସ୍ଥା କରିଥିଲେ । ସେମାନେ ବିବାହବନ୍ଧନଟିକୁ ସ୍ୱର୍ଗୀୟ ବୋଲି ଚିହ୍ନିତ କରିବା ଫଳରେ ଏବଂ ଏହାକୁ ଚିରନ୍ତନ ଓ ଅବିଚ୍ଛେଦ୍ୟ ବୋଲି ଆଖ୍ୟା ଦେବା ଫଳରେ ଦାମ୍ପତ୍ୟ ପ୍ରେମ ଦୃଢ଼ରୁ ଦୃଢ଼ତର ହେବାକୁ ସମର୍ଥ ହୋଇ ପାରିଥିଲା । ରାଧାକୃଷ୍ଣନ୍‌ଙ୍କ ଭାଷାରେ :

> "Love is spiritual and aesthetic, a matter of conscience and good taste and not one of law or codes. Married life without love is like slave labour. As beauty is higher than harmony, truth is better than consistency, so is love higher than law. Like fire it purifies everything. Physical union without love is the essence of prostitution." (୨୯-କ)

ପ୍ରେମର ଏହି ସ୍ୱରୂପ ବିଷୟରେ ବୈଦିକ ଆର୍ଯ୍ୟମାନେ ସଂପୂର୍ଣ୍ଣ ଅବହିତ ଥିବାରୁ ପ୍ରତ୍ୟେକ ସ୍ୱାମୀ ତାଙ୍କ ସ୍ତ୍ରୀର ପ୍ରେମର ଆସ୍ପଦ ହେବା ପାଇଁ ଉଦ୍ୟମଶୀଳ ହେଉଥିଲେ । ସ୍ତ୍ରୀ ମଧ୍ୟ ସେହିପରି ସ୍ୱାମୀଙ୍କ ପ୍ରେମ ପାଇବାକୁ ଥିଲା ସମଧିକ ଉଦ୍ୟମଶୀଳା । ଏହାର ଫଳରେ ସୁଖମୟ ଓ ପ୍ରେମଭରା ପରିବାରଟିଏ ଗଢି ଉଠୁଥିଲା । ଆଉ ମଧ୍ୟ ପରିବାର ସାଧାରଣତଃ ପୁରୁଷ-ପ୍ରଧାନ ଥିଲେ ବି ସ୍ତ୍ରୀମାନଙ୍କର ସାମାଜିକ ସ୍ଥିତି କିଛି ନ୍ୟୂନ ହୋଇ ନଥିଲା । ସ୍ତ୍ରୀ ଓ ପୁରୁଷ ଉଭୟ ହାତକୁ ହାତ ଛନ୍ଦି ଓ କାନ୍ଧକୁ କାନ୍ଧ ମିଳାଇ ଜୀବନର ଯାତ୍ରାପଥରେ ଆଗେଇ ଚାଲୁଥିଲେ ।

ବୈଦିକ ବିବାହର ଦୁଇଟି ଲକ୍ଷ୍ୟ ଥିଲା । ପ୍ରଥମଟି ହେଲା ସନ୍ତାନ ଉତ୍ପାଦନ କରି ବଂଶ-ରକ୍ଷା କରିବା ଏବଂ ଦ୍ୱିତୀୟଟି ହେଲା 'ସୁରତ' ବା ଦାମ୍ପତ୍ୟ ସୁଖ ଉପଲବ୍‌ଧି କରିବା । ବଂଶ ରକ୍ଷା ପାଇଁ ସନ୍ତାନ ଉତ୍ପାଦନ କରିବା ଥିଲା ମୁଖ୍ୟ ଲକ୍ଷ୍ୟ । ଏହି କାର୍ଯ୍ୟ-ସିଦ୍ଧି ଲାଗି ମିଳୁଥିବା ଯୌନ-ସୁଖ ଥିଲା ଗୌଣ । ସେଥିପାଇଁ ମନୁ ଯଥାର୍ଥରେ କହିଛନ୍ତି ;

'ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା ପୁତ୍ରଃ ପିଣ୍ଡ-ପ୍ରୟୋଜନମ୍'

ଅର୍ଥାତ୍ ପୁତ୍ର ପାଇଁକି ଭାର୍ଯ୍ୟାକୁ ଅଣା ଯାଇଥାଏ ଏବଂ ପୁତ୍ରର ଆବଶ୍ୟକତା ଥାଏ ପିଣ୍ଡ ଦେବାରେ । ଏହି ବଂଶ-ରକ୍ଷା କରିବାର ପ୍ରବଣତା ଆର୍ଯ୍ୟସମାଜକୁ ଏପରି ଭାବରେ ଆଚ୍ଛନ୍ନ କରି ରଖିଥିଲା ଯେ ମୁନିଋଷିମାନେ ମଧ୍ୟ ଅପେକ୍ଷାକୃତ ପରିଣତ ବୟସରେ ବିବାହ କରିବା ପାଇଁ ଆଗେଇ ଆସୁଥିଲେ । ଏ ସଂପର୍କରେ ଅନେକ ବୈଦିକ-କାହାଣୀ ରହିଅଛି । ତନ୍ମଧ୍ୟରୁ ଗୋଟିଏ ହେଲା ଋଷି ଅଗସ୍ତ୍ୟଙ୍କ ସମ୍ପର୍କରେ । ତାଙ୍କ ପିତୃପୁରୁଷମାନଙ୍କୁ ନରକରୁ ଉଦ୍ଧାର କରିବା ପାଇଁ ସେ ବୃଦ୍ଧାବସ୍ଥାରେ ନିଜ ପାଇଁ କନ୍ୟା ଖୋଜି ଗଲେ ଏବଂ ଶେଷରେ ବିଦର୍ଭର ରାଜାଙ୍କ କନ୍ୟା ଲୋପାମୁଦ୍ରାଙ୍କୁ ବିବାହ କଲେ । ଦକ୍ଷିଣ ଭାରତକୁ ଆର୍ଯ୍ୟାନୁଗ

କରିବାରେ ଅଗସ୍ତ୍ୟ-ଲୋପାମୁଦ୍ରାଙ୍କର ଅବଦାନ ଅତୁଳନୀୟ ତଥା ଅବିସ୍ମରଣୀୟ । ସେହିପରି ଅତି ପରିଣତ ବୟସରେ ପୁତ୍ରକାମୀ ଋଷି ଚ୍ୟବନ ପଶ୍ଚିମ ଆର୍ଯ୍ୟାବର୍ତ୍ତର ରାଜା ଶର୍ଯ୍ୟାତିଙ୍କ କନ୍ୟା ସୁକନ୍ୟାଙ୍କୁ ବିବାହ କରିଥିଲେ । ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ବିବାହ କରିନପାରି-ଥିବାରୁ ଏବଂ ଜନନୀ ହେବାର ସୌଭାଗ୍ୟରୁ ବଞ୍ଚିତା ଥିବାରୁ ଋଷିକା ଘୋଷା ଯେ କି ଦୁଃଖରେ କାଳ କାଟୁଥିଲେ, ତାହା ଆମେ ତାଙ୍କ ଦ୍ୱାରା ସୃଷ୍ଟ ଋଗ୍‌ବେଦର କେତେକ ମନ୍ତ୍ରରୁ ଦେଖିପାରୁ । ଅତଏବ ବିବାହର ଫଳଶ୍ରୁତି ସ୍ୱରୂପ ପୁତ୍ର-ସନ୍ତାନଟିଏ ଜନ୍ମ କରାଇବା ଥିଲା ସେତେବେଳେ ସମସ୍ତଙ୍କର କାମ୍ୟ । ପୁତ୍ରହୀନତାକୁ ଋଗ୍‌ବେଦରେ ଦାରିଦ୍ର୍ୟ ହିସାବରେ ଗଣାଯାଇଛି । (୩୦)

କନ୍ୟାସନ୍ତାନର ଜନ୍ମକୁ ସେତେବେଳେ ସ୍ୱାଗତ କରାଯାଉନଥିଲା । କନ୍ୟାର ନାଁ ହେଉଛି 'ଦୁହିତା' । ଦୁହିତାର ଅର୍ଥ ହେଲା ଯେ ଦୁହେଁ । ସେତେବେଳେ ସମ୍ଭବତଃ ଝିଅ ଉପରେ ଗାଈ ଦୁହିଁବାର ଦାୟିତ୍ୱ ରହୁଥିଲା । ସେଥିପାଇଁ ତାକୁ କୁହା-ଯାଉଥିଲା ଦୁହିତା । ଝିଅର ତ ପରିବାରରେ ଆବଶ୍ୟକତା ଥିଲା । ତେବେ ଲୋକେ ଝିଅ-ଜନ୍ମକୁ ସ୍ୱାଗତ କରୁନଥିଲେ କାହିଁକି ? ବୋଧହୁଏ ଦୁହିତାର ଆଉ ଗୋଟିଏ ଅର୍ଥ ଅଛି । ଏହା ଦୁଧ ଦୁହିଁବା ଅର୍ଥରେ କେବଳ ପ୍ରଯୁକ୍ତ ନୁହେଁ । ଏହା ବାପଘରୁ ଧନ ଦୁହିଁବା ଅର୍ଥରେ ମଧ୍ୟ ପ୍ରଯୁକ୍ତ । ଝିଅଟିଏ ବାହା ଦେଲେ ସେତେବେଳେ ଖୁବ୍ ଯୌତୁକ ନିଜ ଅବସ୍ଥା ଅନୁସାରେ ଦେବାକୁ ପଡ଼ୁଥିବ । ଏଥିରେ ବାପାମାଆଙ୍କୁ ଖୁବ୍ ଶ୍ରାନ୍ତ ହେବାକୁ ପଡ଼ୁଥିବ । ସେମାନଙ୍କର ଧନ ଦୁହିଁ ହୋଇ ଯାଉଥିବ । ସେଥିପାଇଁ ଝିଅକୁ ସେମାନେ କହୁଥିଲେ ଦୁହିତା । ସେଥିପାଇଁ ଝିଅର ଜନ୍ମକୁ କେହି ସ୍ୱାଗତ କରୁନଥିଲେ । ପିତୃପ୍ରଧାନ ସମାଜରେ ଏହା ହେବା ହିଁ ସ୍ୱାଭାବିକ । ଏହି ସ୍ଥିତି ପ୍ରତି ଲକ୍ଷ୍ୟକରି ଯଥାର୍ଥରେ କୁହାଯାଇଛି :

> "The fulfilment of the desire for the off-spring and male off-spring in particular, was the chief aim of marriage. Abundance of sons is constantly prayed for alongwith cattle and land, but no desire for daughters is expressed. This desire for son is natural in a patriarchal organisation of society. The son alone could perform the funeral rites for the father and continue the line. (୩୧)

ପୁତ୍ର କାମନା କରିବାର ସେତେବେଳେ ଆଉ ଗୋଟିଏ ବଡ଼ କାରଣ ମଧ୍ୟ ଥିଲା । ଆମେ ଜାଣୁ ଯେ ଗତ ଦ୍ୱିତୀୟ ମହାଯୁଦ୍ଧ ସମୟରେ ଅଧିକ ପୁତ୍ରସନ୍ତାନ ଜନ୍ମ କରିଥିବା

ମାତାଙ୍କୁ ଜମିନ୍ ଓ ଋଷିଆରେ ପୁରସ୍କାର ଦିଆଯାଉଥିଲା । ଲଢ଼େଇ ଲାଗି ସେଠାରେ ଅଧିକରୁ ଅଧିକ ସୈନ୍ୟବଳ ଆବଶ୍ୟକ ପଡ଼ୁଥିବାରୁ ଏଭଳି ପୁତ୍ରସନ୍ତାନ ପ୍ରସବ ଲାଗି ପ୍ରୋତ୍ସାହନ ଦିଆଯାଉଥିଲା । ଠିକ୍ ଅନୁରୂପ ପରିସ୍ଥିତିରେ ପଡ଼ି ଆର୍ଯ୍ୟମାନେ ଅଧିକ ପୁତ୍ର-ସନ୍ତାନ ଜନ୍ମ କରାଇବା ପାଇଁ ଚାହୁଁଥିଲେ । ସେମାନଙ୍କୁ ଦାସ, ଦସ୍ୟୁ ଓ ଅସୁରମାନଙ୍କ ସହିତ ବହୁକାଳ ଲାଗି ଯୁଦ୍ଧରେ ବ୍ୟାପୃତ ହେବାକୁ ପଡ଼ିଥିଲା । ଏଭଳି ଦୀର୍ଘକାଳବ୍ୟାପୀ ଯୁଦ୍ଧରେ ବହୁ ଜୀବନର କ୍ଷୟ ଘଟିବା ସ୍ୱାଭାବିକ । ବାସ୍ତବିକ ତାହା ହିଁ ଘଟିଥିଲା । ସେତେବେଳକାର ଲଢ଼େଇରେ ସୈନ୍ୟସଂଖ୍ୟା ଏକ ବିରାଟ ଭୂମିକା ଗ୍ରହଣ କରିଥିଲା ଏବଂ ଅନେକ କ୍ଷେତ୍ରରେ ତାହା ହିଁ ଜୟପରାଜୟକୁ ନିୟନ୍ତ୍ରିତ କରୁଥିଲା । ସାଧାରଣତଃ ପୁରୁଷମାନେ ଲଢ଼େଇକୁ ଯାଉଥିଲେ । ତେଣୁ ଆର୍ଯ୍ୟମାନେ ସେମାନଙ୍କ ସଂଖ୍ୟା ବୃଦ୍ଧି ଲାଗି ବହୁ ପୁତ୍ର କାମନା କରୁଥିଲେ । ସ୍ତ୍ରୀ ଅନ୍ତତଃ ପକ୍ଷରେ ଦଶଗୋଟି ପୁତ୍ରସନ୍ତାନର ମାଆ ହେଉ, ଏହା ଥିଲା ସମାଜର ଲକ୍ଷ୍ୟ । ସେଥିପାଇଁ ବିବାହବେଦୀର କନ୍ୟା ଲାଗି ଇନ୍ଦ୍ରଙ୍କ ଆଶୀର୍ବାଦ କାମନା କରି କୁହାଯାଉଥିଲା :

‘ଦଶ ଅସ୍ୟାଂ ପୁତ୍ରାନ୍ ଆଧେହି’

ଅର୍ଥାତ୍ ହେ ଇନ୍ଦ୍ର ! ଏହି କନ୍ୟାଠାରେ ଦଶଟି ପୁଅ ଆଣି ଦିଅ ।

ବୈଦିକ ସମାଜରେ ସ୍ତ୍ରୀଙ୍କର ଭୂମିକା କେତେ ମହନୀୟ ଥିଲା ଏବଂ କିପରି ମାନ୍ୟତା ଦିଆଯାଉଥିଲା, ସେ ବିଷୟରେ ଯେଉଁ ମନ୍ତବ୍ୟ ପାଶ୍ଚାତ୍ୟ ଭାରତତତ୍ତ୍ୱବିତ୍ କ୍ଲାରିସି ବ୍ୟାଡ଼େର୍ (Clarisse Bader) ଦେଇଛନ୍ତି, ତାହା ପୂର୍ବରୁ ଉଲ୍ଲେଖ କରାଯାଇଛି । ଏହାର ଅର୍ଥ ନୁହେଁ ଯେ ବୈଦିକ ସମାଜରେ କେବଳ ସ୍ତ୍ରୀଙ୍କୁ ହିଁ ମାନ୍ୟତା ଦିଆଯାଉଥିଲା; ସ୍ୱାମୀଙ୍କୁ ନୁହେଁ । ଅନ୍ୟ ପକ୍ଷରେ ଉଭୟଙ୍କୁ ସମାନ ମାନ୍ୟତା ଦିଆଯାଉଥିଲା । ଉଭୟଙ୍କ ପାଇଁ ସୁନିର୍ଦ୍ଦିଷ୍ଟ କର୍ତ୍ତବ୍ୟମାନ ଧାର୍ଯ୍ୟ କରାଯାଇଥିଲା ଏବଂ ତାହା ସେମାନେ ନିଷ୍ଠାପର ଭାବରେ ପାଳନ କରୁଥିଲେ । ଉଭୟଙ୍କ ମଧ୍ୟରେ ଯେପରି ପ୍ରାଣର ମିଳନ ଘଟିବ, ପରସ୍ପର ପ୍ରତି ଭୂମିକା ବୃଦ୍ଧି ପାଇବ, ଉଭୟ କିପରି ସୁଖଦୁଃଖ, ଆଶାନିରାଶା ଓ ସମ୍ପଦବିପଦର ସାଥୀ ହୋଇ ରହିବେ ସେଥିପ୍ରତି ଗୁରୁତ୍ୱ ଦିଆଯାଉଥିଲା । ବିବାହ ଦୁଇଟି ଶରୀରକୁ କେବଳ ମିଶାଉ ନଥିଲା; ତାହା ଦୁଇଟି ପ୍ରାଣକୁ ମଧ୍ୟ ଓତଃପ୍ରୋତ ଭାବରେ ମିଶାଇ ଦେଉଥିଲା । ସ୍ୱାମୀ ଓ ସ୍ତ୍ରୀ ଉଭୟ ଏହାକୁ ଏକ ଦୈବନିର୍ଦ୍ଦିଷ୍ଟ ପବିତ୍ର ମିଳନ ବୋଲି ଭାବୁଥିଲେ । ସେଥିପାଇଁ ସ୍ୱାମୀଙ୍କ ପାଖରେ ସ୍ତ୍ରୀ ଥିଲେ ଖାଲି ଅର୍ଦ୍ଧାଙ୍ଗିନୀ ନୁହେଁ ; ପ୍ରାଣର ଅର୍ଦ୍ଧେକ ମଧ୍ୟ । ସେ ଜୀବନର ଅର୍ଦ୍ଧେକ ବୋଲି ତ ତାଙ୍କୁ କୁହାଯାଉଥିଲା ଜାୟା । ସ୍ୱାମୀଙ୍କ ଦୃଷ୍ଟି ସ୍ତ୍ରୀଙ୍କ ପ୍ରତି କ'ଣ ଥିଲା, ତାହା ବିବାହ-ମନ୍ତ୍ରର ଗୋଟିଏ ପଙ୍‌କ୍ତିରୁ ବୁଝାପଡ଼ିବ । ସେଠାରେ ସ୍ୱାମୀ ସ୍ତ୍ରୀଙ୍କୁ କହୁଛନ୍ତି :

"ଅମୋଽହମସ୍ମି ସା ତ୍ୱମ୍
ସାମୋଽହଂ ଋକ୍ ତ୍ୱମ୍
ଦ୍ୟୌରହଂ ପୃଥିବୀ ତ୍ୱମ୍ ।" (୩୧-କ)

ଏହାର ଅର୍ଥ ହେଲା, 'ମୁଁ ପ୍ରାଣ ହେଲେ ତୁମେ ହେଉଛ ସେଇ ସ୍ତ୍ରୀ । ମୁଁ ସାମମନ୍ତ୍ର ହେଲେ ତୁମେ ହେଉଛ ଋକ୍ ମନ୍ତ୍ର । ମୁଁ ଆକାଶ ହେଲେ ତୁମେ ହେଉଛ ଧରଣୀ' । ଏହି ରୂପକଳ୍ପଗୁଡ଼ିକର ତାତ୍ପର୍ଯ୍ୟ ବର୍ତ୍ତମାନ ବିଚାର କରିବା କଥା ।

ସ୍ୱାମୀ ହେଉଛନ୍ତି ସ୍ତ୍ରୀଙ୍କ ପ୍ରାଣ । ଦେହ ଓ ପ୍ରାଣ ମଧ୍ୟରେ ଯେମିତି ସମ୍ପର୍କ ସ୍ୱାମୀ ଓ ସ୍ତ୍ରୀଙ୍କ ମଧ୍ୟରେ ଠିକ୍ ଅନୁରୂପ ସମ୍ପର୍କ । ପ୍ରାଣ ନଥିଲେ ଦେହର କିଛି ମୂଲ୍ୟ ନାହିଁ ; ତାହା କେବଳ ଜଡ଼ ପିଣ୍ଡଟିଏ । ସ୍ୱାମୀଙ୍କ ବିନା ସ୍ତ୍ରୀଙ୍କର ଅବସ୍ଥା ଠିକ୍ ସେମିତି । ସାମବେଦ ଓ ଋଗ୍‌ବେଦ ମଧ୍ୟରେ ଯେଉଁ ନିଗୂଢ଼ ସମ୍ପର୍କ ବିଦ୍ୟମାନ, ସେ ବିଷୟ ଏହି ପୁସ୍ତକର ପ୍ରଥମ ଭାଗରେ ବିଶଦ ଭାବରେ ଆଲୋଚିତ ହୋଇଛି । ଋକ୍‌ମନ୍ତ୍ରକୁ ପ୍ରାଣ ଦେଇଥାଏ ସାମମନ୍ତ୍ର । ସାମମନ୍ତ୍ର ପ୍ରାଣମୟ ଥିଲାବେଳେ ଋକ୍‌ମନ୍ତ୍ର ହେଉଛି ବାଙ୍ମୟ । ପ୍ରାଣର ଗମ୍ଭୀର ସ୍ପନ୍ଦନ ହେଲେ ଯାଇ ମୁଖରୁ ବାଣୀ ସ୍ଫୁରିତ ହୋଇଥାଏ । ଅତଏବ ପ୍ରାଣ ଓ ବାକ୍‌ର ସମ୍ପର୍କ ଚିରନ୍ତନ । ତେଣୁ ସ୍ୱାମୀ ପ୍ରାଣ ହେଲେ ସ୍ତ୍ରୀ ହେଲେ ବାକ୍ । ସ୍ୱାମୀ-ସ୍ତ୍ରୀଙ୍କ ସମ୍ପର୍କ ଏହିପରି ଭାବରେ ସାମ-ଋକ୍‌ର ସମ୍ପର୍କ ସହିତ ତୁଳନୀୟ । ଆକାଶ ଓ ଧରଣୀର ସମ୍ପର୍କ ଚିରନ୍ତନ । କେହି କାହାକୁ ମୁହୂର୍ତ୍ତିକ ପାଇଁ ମଧ୍ୟ ଛାଡ଼ି କରି ରହି ପାରନ୍ତି ନାହିଁ । ସ୍ୱାମୀ ଆକାଶ ହେଲେ ସ୍ତ୍ରୀ ହେଉଛନ୍ତି ଧରଣୀ । ସେମାନଙ୍କର ସମ୍ପର୍କ ଚିରନ୍ତନ । ଏହି ଚିରନ୍ତନ ସମ୍ପର୍କକୁ ଚେତାଇ ଦେବା ଲାଗି ସ୍ୱାମୀ ସ୍ତ୍ରୀଙ୍କ ଆଗରେ ଉପରୋକ୍ତ ବେଦ-ମନ୍ତ୍ର ଉଚ୍ଚାରଣ କରିଥାନ୍ତି । ଏହା କଲାବେଳେ ସେ କେତେ ଦୂର ଦିବ୍ୟଚେତନାରେ ଉଦ୍‌ବୁଦ୍ଧ ହୋଇଥାନ୍ତି, ତାହା ସହଜରେ ଅନୁମେୟ । ସ୍ତ୍ରୀ କିପରି ପୁରୁଷ-ପ୍ରାଣର ଅର୍ଦ୍ଧେକ, ତାହା ପ୍ରମାଣ କରିବା ପାଇଁ ଏକ ବୈଦିକ ଗଳ୍ପ ଅଛି । ତାହା ରୁରୁ-ପ୍ରମୋଦ୍‌ବରାଙ୍କ ଦାମ୍ପତ୍ୟ ଜୀବନକୁ ନେଇ ରଚିତ । ସଂକ୍ଷେପରେ ଗଳ୍ପର ବିଷୟବସ୍ତୁ ହେଲା :

ରୁରୁ ଥିଲେ ଜଣେ ଯୁବକ ଋଷି । ତାଙ୍କ ନବବିବାହିତା ସ୍ତ୍ରୀ ପ୍ରମୋଦ୍‌ବରା ଥିଲେ ଯୁବତୀ । ଦୁହେଁ ଖୁବ୍ ଆନନ୍ଦରେ ବନାଶ୍ରମରେ କାଳାତିପାତ କରୁଥିଲେ । ଦିନେ ସକାଳୁ ଶଯ୍ୟାତ୍ୟାଗ ପରେ ପ୍ରମୋଦ୍‌ବରା ଦେଖିଲେ ଯେ ତାଙ୍କ ସ୍ୱାମୀ ପାଖରେ ନାହାନ୍ତି ଏବଂ ଆଶ୍ରମରେ ମଧ୍ୟ ନାହାନ୍ତି । ତାଙ୍କର ସ୍ୱାମୀଙ୍କ ଉପରେ ଭାରି ରାଗ ହେଲା ; ଭାରି ଅଭିମାନ ହେଲା । ସେ ଅଭିମାନିନୀ ହୋଇ ସ୍ୱାମୀଙ୍କ ଆସିବା ବାଟକୁ ଚାହିଁ ରହିଥିଲେ । ଏହି ସମୟରେ ସେ ଦେଖିଲେ ଯେ ସ୍ୱାମୀ ପୁଷ୍ପସ୍ତବକଟିଏ ଧରି ଧାଇଁ ଧାଇଁ ଆସୁଛନ୍ତି । ଏ ସ୍ତବକଟି ଯେ ତାଙ୍କ ପାଇଁ ଅଣା ଯାଉଛି, ଏହା ଭାବିବାରେ ତାଙ୍କର ଆଉ ମାନସିକ

ଦ୍ୱିଧା ନଥିଲା । ତାଙ୍କ ରାଗ, ଅଭିମାନ ତରଳିଯିବାକୁ ଲାଗିଲା । ସେ ପୁଲକିତ ପ୍ରାଣରେ ରୁରୁଙ୍କ ଆଗମନକୁ ପ୍ରତୀକ୍ଷା କରି ରହିଲେ । ରୁରୁ ଆସି ଖୁବ୍ ସ୍ନେହଭରା ଛନ୍ଦରେ ପ୍ରମୋଦ୍‌ବରାଙ୍କ କବରୀରେ ପୁଷ୍ପସ୍ତବକଟି ଗୁଞ୍ଜିଦେଲେ ଏବଂ ପରେ ପରେ ପ୍ରମୋଦ୍‌ବରାଙ୍କୁ ଆଲିଙ୍ଗନରେ ବାନ୍ଧି ରଖିଲେ । କିନ୍ତୁ ଏ କି ଆଶ୍ଚର୍ଯ୍ୟ ! ପ୍ରମୋଦ୍‌ବରାଙ୍କ ସାରା ଦେହ ଯେ ବରଫ ପରି ଥଣ୍ଡା ! ରୁରୁ ଏହାର କାରଣ କିଛି ବୁଝି ପାରିଲେ ନାହିଁ । ସେ ତଳକୁ ଚାହିଁ-ଦେବା ମାତ୍ରେ ଦେଖିଲେ ଯେ ସୁନାର ଚହଟ ଖେଳାଇ ନାଗସାପଟାଏ ଚାଲି ଯାଉଛି । ତାଙ୍କର ଆଉ ବୁଝିବାରେ କିଛି ବାକି ରହିଲା ନାହିଁ । ପ୍ରମୋଦ୍‌ବରା ହୋଇଛନ୍ତି ସର୍ପ-ଦଂଶିତା ଓ ମୃତା । ସେ ଖୁବ୍ ବ୍ୟସ୍ତବିକଳ ହୋଇ ଉଠିଲେ । ସେ ମନେ ମନେ ଭାବିଲେ, "କେଉଁ କାରଣରୁ ମୋ'ର ପ୍ରିୟତମା ମତେ ଛାଡ଼ି ଚାଲିଗଲେ ? ମୁଁ କିନ୍ତୁ ତାଙ୍କୁ ଛାଡ଼ି ଚାଲିଯିବାକୁ ଦେବିନାହିଁ । ତାଙ୍କୁ ନିଶ୍ଚୟ ଠାବ କରି ମୋ ପାଖକୁ ଫେରାଇ ଆଣିବି ।" ରୁରୁ ଋଷିଙ୍କର ତପସ୍ୟାର ପ୍ରଭାବ ଥିଲା ଅସୀମ । ତାହା ବଳରେ ସେ ପ୍ରମୋଦ୍‌ବରାଙ୍କୁ ମୃତ୍ୟୁରାଜ ଯମଙ୍କ ନିଳୟରେ ଠାବ କଲେ । ସେ ଯମଙ୍କ ପାଖକୁ ଯାଇ ତାଙ୍କ ପ୍ରିୟତମାଙ୍କ ଜୀବନ ଫେରାଇ ଦେବାକୁ ତାଙ୍କୁ ଅନୁରୋଧ କଲେ । ଯମ କିନ୍ତୁ ଏଥିରେ ସହଜରେ ରାଜି ହେଲେ ନାହିଁ । ଯମ ଓ ରୁରୁଙ୍କ ମଧ୍ୟରେ ବହୁ ଯୁକ୍ତିତର୍କ ଓ ବାଦାନୁବାଦ ଚାଲିଲା । ଯମ ଶେଷକୁ କହିଲେ, "ଋଷିବର, ପ୍ରମୋଦ୍‌ବରାଙ୍କର ପରମାୟୁ ଶେଷ ହୋଇ ଯାଇଛି । ସେ କିପରି ବା ଆଉ ଆପଣଙ୍କ ସାଥିରେ ରହିପାରିବେ ?" ରୁରୁ କହିଲେ, "କିଛି ପରବାୟ ନାହିଁ ; ମୁଁ ମୋ ପରମାୟୁରୁ ଅର୍ଦ୍ଧେକ ତାଙ୍କୁ ଦେଉଛି । ସେ ସେତିକି ପରମାୟୁ ନେଇ ପୁନର୍ଜୀବନ ପାଆନ୍ତୁ ।" ଯମ ଏହି ସର୍ତ୍ତରେ ରାଜି ହେଲେ । ପ୍ରମୋଦ୍‌ବରା ରୁରୁଙ୍କ ପରମାୟୁରୁ ଅର୍ଦ୍ଧେକ ପାଇ ପୁନର୍ଜୀବନ ଲାଭ କଲେ । ରୁରୁ-ଦମ୍ପତି ପୁଣି ପୂର୍ବଭଳି ଆନନ୍ଦରେ କାଳାତିପାତ କରିବାକୁ ଲାଗିଲେ ।

ଏହି ଗଳ୍ପଟିର ତାତ୍ପର୍ଯ୍ୟ କ'ଣ ? ଦାମ୍ପତ୍ୟ ଜୀବନର କେଉଁ ବିଭାବଟି ପ୍ରତି ଗୁରୁତ୍ୱ ଆରୋପ କରିବା ଉଦ୍ଦେଶ୍ୟରେ ଏହାର ସୃଷ୍ଟି ହୋଇଛି ? ସ୍ତ୍ରୀ ଯେ ସ୍ୱାମୀଙ୍କ ଜୀବନର ଅର୍ଦ୍ଧେକ, ଏହା ହିଁ ପ୍ରତିପାଦିତ କରିବା ଲାଗି ଗଳ୍ପଟିର ସୃଷ୍ଟି ହୋଇଛି । ସ୍ତ୍ରୀ ଯେହେତୁ ସ୍ୱାମୀଙ୍କର ଅର୍ଦ୍ଧେକ ପ୍ରାଣ, ସ୍ତ୍ରୀ ବିନା ସ୍ୱାମୀଙ୍କର ଜୀବନ-ଧାରଣ କରିବା ଅସମ୍ଭବ । କାରଣ ପ୍ରାଣକୁ ଭାଗ ଭାଗ କରିହେବ ନାହିଁ । ତାହା ସର୍ବଦା ପୂର୍ଣ୍ଣ ମାତ୍ରାରେ ହିଁ ରହିବ । ଏହି ଉଚ୍ଚ ବୈଦିକ ଚିନ୍ତାଧାରାର ଝଲକ ଆମେ ଶଂସିତ ଗଳ୍ପରେ ଦେଖିବାକୁ ପାଇଥାଉଁ । ଏଥିରୁ ଜଣା ପଡ଼ିବ, ବୈଦିକ କାଳରେ ସ୍ୱାମୀ-ସ୍ତ୍ରୀଙ୍କର ସମ୍ପର୍କକୁ କିପରି ଭାବରେ ଚିରନ୍ତନ ଓ ଅବିଚ୍ଛେଦ୍ୟ ବୋଲି ଧରାଯାଉଥିଲା ।

ବୈଦିକ ଚିନ୍ତାଧାରାରେ ସ୍ୱାମୀ-ସ୍ତ୍ରୀଙ୍କର ସମ୍ପର୍କ ଖାଲି ଦେହର ସମ୍ପର୍କ ମଧ୍ୟରେ ସୀମାବଦ୍ଧ ନଥିଲା । ଏହାର କେବଳ ଉଦ୍ଦେଶ୍ୟ ନଥିଲା ସନ୍ତାନ ଉତ୍ପାଦନ କରିବା ।

ଏହାକୁ ଏକ ଦିବ୍ୟ ସଂପର୍କ ବୋଲି ଗଣା ଯାଉଥିଲା । ଏହା ଥିଲା ସଂସ୍କୃତି ଓ କୃଷ୍ଟିର ବିକାଶ ପାଇଁ ଏକ ଉପଯୁକ୍ତ ସାଧନ । ସେଥିପାଇଁ ମଲ୍ଲିକ ବାହାଦୂର ଯଥାର୍ଥରେ କହିଛନ୍ତି :

> "The Vedic marriage was a question of culture and refinement and not a question of satisfying the urge of nature, companionship, friendship or love." (୩୧-ଖ)

ସେକ୍‌ସ୍‌ପିଅର ମଧ୍ୟ ବିବାହର ଏହି ଚିରନ୍ତନତ୍ୱ ଓ ଦିବ୍ୟତ୍ୱ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ଏଥିରେ ହଜାର ହଜାର ବର୍ଷ ତଳର ବୈଦିକ ଚିନ୍ତାଧାରା ଅନୁରଣିତ ହୋଇଛି ମାତ୍ର । ସେ କହିଛନ୍ତି :

> "Speak it not lightly. It is a holy thing,
> A bond enduring through long distant years,
> When joy over thine above is hovering,
> Or when thine eye is wet with bitterest tears,
> Recorded by an angel's pinions high,
> And must be questioned in eternity."
> (From the Cottager and Artisan)

ବୈଦିକ ବିବାହର ମୌଳିକ ଲକ୍ଷ୍ୟ କ'ଣ ଥିଲା ତାହା ଏଥିରୁ ସହଜରେ ଅନୁମିତ ହେବ । ଏଥିରୁ ଆହୁରି ମଧ୍ୟ ଅନୁମିତ ହେବ ଯେ ଏହାର ଭିତ୍ତି-ଭୂମି ଏପରି ଦୃଢ଼ ଥିଲା ଏବଂ ଏହାର ନାହାକା ଚେରଟି ଏତେଦୂର ତଳକୁ ଯାଇଥିଲା ଯେ ତାହା ହଜାର ହଜାର ବର୍ଷ ପରେ ମଧ୍ୟ ଆଜି ଭାରତୀୟ ବିବାହ-ପଦ୍ଧତିକୁ ପ୍ରଭାବିତ କରୁଛି । ଆମେ ଯେତେ ଆଧୁନିକ ହେଲେ ମଧ୍ୟ ଏଥିରେ ନିହିତ ଥିବା ଚିରନ୍ତନ ସତ୍ୟ ଓ ଶାଶ୍ୱତ ମୂଲ୍ୟବୋଧକୁ ଆଦୌ ଅସ୍ୱୀକାର କରିପାରିବା ନାହିଁ । ଏହା ହିଁ ହେଉଛି ଆର୍ଯ୍ୟବିବାହର ମହତ୍ତ୍ୱ ।

ପାଣିନିଙ୍କ ମତକୁ ଉଦ୍ଧାର କରି ପୂର୍ବରୁ କୁହାଯାଇଛି ଯେ ଯଜ୍ଞକାର୍ଯ୍ୟରେ ସ୍ୱାମୀଙ୍କୁ ସାହାଯ୍ୟ କରୁଥିବାରୁ ସ୍ତ୍ରୀର ନାମ ଥିଲା 'ପତ୍ନୀ' । ଯଜ୍ଞରେ କେଉଁ କାମ ସ୍ୱାମୀ କରିବେ ଏବଂ କେଉଁ କାମ ସ୍ତ୍ରୀ କରିବେ ତାହା ସୁନିର୍ଦ୍ଦିଷ୍ଟ ହୋଇଯାଇଥିଲା । ଯଜ୍ଞ ଆରମ୍ଭ ହେବା

ପୂର୍ବରୁ ସ୍ତ୍ରୀମାନଙ୍କୁ କୁଶ ଓ ସୋମ-ଲତା ସଂଗ୍ରହ କରିବାକୁ ପଡ଼ୁଥିଲା । ଏହି କୁଶର ନାଁ ଥିଲା 'ମୁଞ୍ଜ' ଘାସ । ଏହା ଆର୍ଯ୍ୟମାନଙ୍କର ବହୁ କାମରେ ଲାଗୁଥିଲା । ଏଥିରେ ମସିଣା ତିଆରି ହେଉଥିଲା ଏବଂ ସୋମରସ ଗୁଣ୍ଡିବା ପାଇଁ ଛଣା ମଧ୍ୟ ତିଆରି ହେଉଥିଲା । ଆଉ ମଧ୍ୟ ଏଥିରେ ବ୍ରହ୍ମଚାରୀ ଲାଗି 'ମେଖଳା' ବା ଅଣ୍ଟାସୂତା ତିଆରି ହେଉଥିଲା । ପାହାଡ଼, ପର୍ବତ ଓ ଜଙ୍ଗଲରେ ବୁଲି ବୁଲି ସେମାନଙ୍କୁ ଏହା ସଂଗ୍ରହ କରିବାକୁ ପଡ଼ୁଥିଲା । ସ୍ତ୍ରୀମାନଙ୍କର ଏହି କାର୍ଯ୍ୟ ପ୍ରତି ଲକ୍ଷ୍ୟ କରି କ୍ଲାରିସି ବ୍ୟାଡ଼େର୍ ଠାଏ କହିଛନ୍ତି :

> "Before the sacrifice began, wondering over the hills were seen the women charged to collect the Kusa, the grass to carpet the sacred enclosure and the plant from which the Soma was extracted." (୩୨)

ପ୍ରୀତି ମିତ୍ର ମଧ୍ୟ ବୈଦିକ ସମାଜରେ ନାରୀର ଭୂମିକା ବିଷୟ ଆଲୋଚନା କରିବାକୁ ଯାଇ ଅନୁରୂପ ମତ ପ୍ରକାଶ କରିଛନ୍ତି । ସେ ଏହି ମତକୁ ପ୍ରତିପାଦିତ କରିବାକୁ ଯାଇ ବହୁ ପୂର୍ବସୂରିଙ୍କ ମତ ଉପରେ ନିର୍ଭରଶୀଳା ହୋଇଛନ୍ତି । ତାଙ୍କ ମତରେ :

> "In the Srauta sacrifices the sacrificer's wife occupied an important position. Her presence was essential in the ritual. In sacred rites she had to follow her husband." (୩୩)

କେବଳ ଯେ ଯଜ୍ଞକର୍ମରେ ସ୍ତ୍ରୀ ସ୍ୱାମୀଙ୍କୁ ସାହାଯ୍ୟ କରୁଥିଲା, ତାହା ନୁହେଁ; ସେ ସ୍ୱାମୀର ସକଳ କର୍ମରେ ଥିଲା ସମଭାଗିନୀ; ସକଳ ଯାତ୍ରା ଥିଲା ସହଯାତ୍ରିଣୀ । ଏପରିକି ସ୍ୱାମୀ ସହିତ ଯୁଦ୍ଧଭୂମିକୁ ଯାଇ ତାଙ୍କୁ ଲଢ଼ିବାକୁ ମଧ୍ୟ ପଡ଼ୁଥିଲା । ଏ ସମ୍ପର୍କରେ ଋଗ୍‌ବେଦରେ ବର୍ଣ୍ଣିତ ଏକ ଆଖ୍ୟାୟିକାର ସୂଚନା ଏଠାରେ ଦିଆଯାଉଛି । (୩୪)

ଆର୍ଯ୍ୟମାନଙ୍କର 'ଖେଳ' ବୋଲି ଜଣେ ରାଜା ଥିଲେ । ତାଙ୍କ ରାଣୀଙ୍କ ନାଁ ଥିଲା 'ବିଶ୍‌ପଲା' । ବିଶ୍‌ପଲା ଯେମିତି ବିଦୁଷୀ ଥିଲେ, ଠିକ୍ ସେମିତି ଜଣେ ବୀରାଙ୍ଗନା ମଧ୍ୟ ଥିଲେ । ଥରେ ରାଜା ଖେଳଙ୍କୁ ଦାସମାନଙ୍କ ସହିତ ଘୋର ଯୁଦ୍ଧ କରିବାକୁ ପଡ଼ିଥିଲା । ରାଣୀ ବିଶ୍‌ପଲା ମଧ୍ୟ ତାଙ୍କ ସ୍ୱାମୀଙ୍କ ସହିତ ଯାଇ ଲଢ଼ୁଥିଲେ । ଯୁଦ୍ଧରେ ଖେଳ ନିହତ

ହେଲେ । କିନ୍ତୁ ବିଶ୍‌ପଲା ଯୁଦ୍ଧକୁ ଗ୍ରୁଲ୍ଲ ରଖିଲେ । ତାଙ୍କର ଗୋଟିଏ ଗୋଡ଼ କଟିଗଲା । କିନ୍ତୁ ସେ ସେଥିକି ଖାତିର କଲେ ନାହିଁ । ସେ ଦେବବୈଦ୍ୟ ଅଶ୍ୱିନୀକୁମାରଙ୍କ ଚିକିତ୍ସାରେ ରହିଲେ । ଅଶ୍ୱିନୀକୁମାର ତାଙ୍କ କଟା ଜାଗାରେ ଗୋଟିଏ 'ଆୟସୀ' ବା ଲୁହାର ଗୋଡ଼ ଲଗାଇ ଦେଲେ । ସେହି ଗୋଡ଼ ସାହାଯ୍ୟରେ ସେ ଯୁଦ୍ଧ ଭୂମିରେ ଅବତୀର୍ଣ୍ଣା ହୋଇ ଦାସମାନଙ୍କୁ ପରାସ୍ତ କଲେ ଏବଂ ସ୍ୱାମୀଙ୍କ ରାଜ୍ୟକୁ ଦାସମାନଙ୍କ ଆକ୍ରମଣରୁ ରକ୍ଷା କଲେ । ଅବଶ୍ୟ ଜର୍ମାନ୍ ପଣ୍ଡିତ ପିଶଲ୍ ଏହାକୁ ଭିନ୍ନ ପ୍ରକାର ଅର୍ଥ କରିଥାନ୍ତି । (୩୫) ତାଙ୍କ ମତରେ ଏହି ଯୁଦ୍ଧରେ ବ୍ୟବହୃତ ହୋଇଥିବା ଗୋଟିଏ ଦ୍ରୁତଗାମୀ ଅଶ୍ୱ ପ୍ରତି ଲକ୍ଷ୍ୟ କରି ଏହା କୁହାଯାଇଛି । ଏହି ଘୋଡ଼ାଟିର ପାଦ ଜଖମ ହୋଇଯିବା ପରେ ତାହାକୁ ଯୋଡ଼ି ଦିଆ ଯାଇଥିଲା ଏବଂ ସେ ପୂର୍ବପରି ଖୁବ୍ ଜୋର୍‌ରେ ଲଢ଼େଇ ଭୂଇଁରେ ଧାଇଁବାକୁ ଲାଗିଥିଲା । ଏହି ମତ କିନ୍ତୁ ଯଥାର୍ଥ ବୋଲି ମନେ ହେଉନାହିଁ । ବୈଦିକ ଆର୍ଯ୍ୟମାନଙ୍କୁ ସୂକ୍ଷ୍ମ ଅସ୍ତ୍ରୋପଚାର (plastic surgery) କାହିଁକି ଯେ ଜଣା ନଥିବ, ସେ କଥା ବିଶ୍ୱାସ କରି ହୁଏ ନାହିଁ । ଅଶ୍ୱିନୀକୁମାରଙ୍କର ଅନ୍ୟ ଯେଉଁ କାର୍ଯ୍ୟାବଳୀ ବିଷୟରେ ବେଦରେ ବର୍ଣ୍ଣନା କରାଯାଇଛି, ସେଥିରୁ ଜଣାଯିବ ଯେ ବୈଦିକ କାଳରେ ଚିକିତ୍ସା-ବିଜ୍ଞାନ ଖୁବ୍ ଅଗ୍ରଗତି କରିଥିଲା । ଠିକ୍ ସେହି ମର୍ମରେ ବାଲଶାସ୍ତ୍ରୀ ହରିଦାସ ମଧ୍ୟ ମତ ଦେବାକୁ ଯାଇ କହିଛନ୍ତି :

> "From these descriptions it is apparent that in the Vedic times the surgical and medical science also had been evolved to a very surprising stage by the Bharatiya people." (୩୬)

ସେ ଯାହାହେଉ, ଏଥିରୁ ଏହି ପ୍ରମାଣ ମିଳୁଛି ଯେ ବୈଦିକ ନାରୀ ସ୍ୱାମୀ ସହିତ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣା ହେବାର ସାମର୍ଥ୍ୟ ମଧ୍ୟ ହାସଲ କରି ପାରିଥିଲେ । ବୈଦିକ ନାରୀ ପୁରୁଷଙ୍କ ଭଳି ଯୁଦ୍ଧଭୂମିରେ ଅବତୀର୍ଣ୍ଣା ହେଉଥିଲେ ବେଳେ ବହୁ ବର୍ଷ ପରେ ମଧ୍ୟ ପ୍ରାଚୀନ ଗ୍ରୀକ୍ ନାରୀର ଅବସ୍ଥା କିଭଳି ଦୟନୀୟ ଥିଲା ଆମେ ଇଉରିପାଇଡ୍‌ସ୍‌ଙ୍କ (Euripides) ନିମ୍ନଲିଖିତ ମନ୍ତବ୍ୟରୁ ଜାଣିପାରୁ :

> "Of all things that have life and sense, we women are most wretched ; for we are compelled to buy with gold a husband who is also, worst of all, the master of our person. They tell us that we live a sheltered life at home while

they go to wars ; but this is nonsense. For I would rather go to battle twice than bear a child once." (୩୭-କ)

ବୈଦିକ ନାରୀର ସ୍ଥାନ କେତେଦୂର ଉଚ୍ଚତର ଥିଲା ଏବଂ କେତେଦୂର ଅଧିକ ସେ ମୁକ୍ତ ଜୀବନ ଯାପନ କରୁଥିଲା, ତାହା ଏଥିରୁ ସହଜରେ ଅନୁମେୟ । ପୁରୁଷଙ୍କ ତୁଲ୍ୟ ସେ ସକଳ କଠିନ କର୍ମ କରି ପାରୁଥିଲା ଏବଂ ତାହା କରିବା ପାଇଁ ସମାଜ ତା'କୁ ଯଥେଷ୍ଟ ସୁଯୋଗ ଦେଇଥିଲା ।

ବିଦ୍ୟାକ୍ଷେତ୍ରରେ ମଧ୍ୟ ବୈଦିକ ସ୍ତ୍ରୀମାନେ ପୁରୁଷମାନଙ୍କଠାରୁ କୌଣସି ମାତ୍ରାରେ ପଛେଇ ଯାଇ ନଥିଲେ । ଅପାଳା, ବିଶ୍ୱବାରା, ଘୋଷା ଆଦି ଅନେକ ଋଷିକା ଥିଲେ ଯେଉଁମାନେ କି ବହୁ ବେଦମନ୍ତ୍ର ସୃଷ୍ଟି କରି ଯାଇଛନ୍ତି । ଅନେକ ସ୍ତ୍ରୀ ମଧ୍ୟ ପିଲାମାନଙ୍କୁ ପାଠ ପଢ଼ାଇବାର ଯୋଗ୍ୟତା ହାସଲ କରିଥିଲେ । ସେମାନଙ୍କୁ 'ଉପାଧ୍ୟାୟା' ବୋଲି କୁହାଯାଉଥିଲା । ବାସ୍ତବିକ, ପତଞ୍ଜଳି (ଖ୍ରୀ. ପୂ. ୨ୟ ଶତାବ୍ଦୀ) ପାଣିନିଙ୍କ 'ଅଷ୍ଟାଧ୍ୟାୟୀ' ଉପରେ ବ୍ୟାଖ୍ୟା କଲାବେଳେ, 'ଉପାଧ୍ୟାୟିନୀ' ଓ 'ଉପାଧ୍ୟାୟା', ଏହି ଦୁଇ ଶବ୍ଦର ବ୍ୟବହାର କରିଛନ୍ତି ଏବଂ ସେଗୁଡ଼ିକର ଅର୍ଥ-ପାର୍ଥକ୍ୟ ମଧ୍ୟ ଦର୍ଶାଇଛନ୍ତି । ତାଙ୍କ ମତରେ 'ଉପାଧ୍ୟାୟିନୀ' ଅର୍ଥ ହେଉଛି ଉପାଧ୍ୟାୟ ବା ଆଚାର୍ଯ୍ୟଙ୍କ ସ୍ତ୍ରୀ ଏବଂ 'ଉପାଧ୍ୟାୟା' ଅର୍ଥ ହେଉଛି ଯେଉଁ ସ୍ତ୍ରୀ ଶିକ୍ଷାଦାନ କରନ୍ତି । ଅତଏବ, ସ୍ତ୍ରୀମାନେ ମଧ୍ୟ ଗୁରୁକୁଳ ଚଳାଇ ଆଚାର୍ଯ୍ୟଙ୍କ ଭଳି ଶିକ୍ଷାଦାନ କରୁଥିଲେ । ଉପନିଷଦ-ଯୁଗରେ ମଧ୍ୟ ମୈତ୍ରେୟୀ ଓ ଗାର୍ଗୀଙ୍କ ଭଳି ରମଣୀ ଥିଲେ ଯେଉଁମାନେ କି ଆଧ୍ୟାତ୍ମିକତା କ୍ଷେତ୍ରରେ ମଧ୍ୟ ପୁରୁଷମାନଙ୍କର ସମତୁଲ୍ୟ ଜ୍ଞାନ ଅର୍ଜନ କରି ପାରିଥିଲେ । ସେ ସମୟରେ ଆଧ୍ୟାତ୍ମିକ ବିଦ୍ୟାର ଋଷିପୁଙ୍ଗବ ଯାଜ୍ଞବଲ୍କ୍ୟଙ୍କ ସହିତ କୁରୁ-ପାଞ୍ଚାଳର ରାଜ-ସଭାରେ ଯୁକ୍ତି-ତର୍କ ଲାଗି ଠିଆ ହେବାର ସାହସ ଗାର୍ଗୀଙ୍କର ଥିଲା ଏବଂ ସେ ଯାଜ୍ଞବଲ୍କ୍ୟଙ୍କ ମୁଣ୍ଡ ଗୋଳମାଳିଆ ହୋଇଗଲା ଭଳି ପ୍ରଶ୍ନ ପଚାରିଥିଲେ । ଶେଷକୁ ଏପରି ହେଲା ଯେ ଯାଜ୍ଞବଲ୍କ୍ୟ ତାଙ୍କୁ ଡରାଇ ଦେଇ କହିଲେ ଯେ ଆଉ ଆଗେଇଲେ ତାଙ୍କ ମୁଣ୍ଡ ଗଣ୍ଡିରୁ ଅଲଗା ହୋଇଯିବ । କ୍ଲାରିସି ବୈଦିକ ନାରୀମାନଙ୍କର ଏହି ଭୂମିକା ପ୍ରତି ଲକ୍ଷ୍ୟ କରି ଯଥାର୍ଥରେ କହିଛନ୍ତି :

"Women had not only the right of offering sacrifices in their own names, but also that of composing hymns. The Rig-veda numbers some of them as its authors." (୩୭)

ଏ କ୍ଷେତ୍ରରେ ଯାଜ୍ଞବଲ୍‌କ୍ୟଙ୍କ ପତ୍ନୀ ମୈତ୍ରେୟୀଙ୍କ ବିଷୟରେ ଆଉ ଟିକିଏ ଅଧିକ ଆଲୋଚନା କରିବା ଅପ୍ରାସଙ୍ଗିକ ହେବ ନାହିଁ । ଯାଜ୍ଞବଲ୍‌କ୍ୟଙ୍କର ଦୁଇଟି ସ୍ତ୍ରୀ ଥିଲେ, ମୈତ୍ରେୟୀ ଓ କାତ୍ୟାୟନୀ । ଯାଜ୍ଞବଲ୍‌କ୍ୟ ସନ୍ନ୍ୟାସ ଗ୍ରହଣ କରିବା ସମୟରେ ତାଙ୍କ ସମ୍ପତ୍ତିକୁ ଦୁଇ ସ୍ତ୍ରୀଙ୍କ ମଧ୍ୟରେ ସମାନ ଭାବରେ ବାଣ୍ଟି ଦେବାକୁ ଚାହିଁଲେ ଏବଂ ମୈତ୍ରେୟୀଙ୍କୁ ତାକି ଏ କଥା କହିଲେ । ମୈତ୍ରେୟୀ ଥିଲେ ଖୁବ୍ ବିଦୁଷୀ ଓ ବେଦାନ୍ତ ଶାସ୍ତ୍ରରେ ପ୍ରବୀଣା । ସେ ଏହି ସମ୍ପତ୍ତି ଅମରତ୍ୱ ଦେଇ ପାରିବ ନାହିଁ ବୋଲି କହି ତାହା ଗ୍ରହଣ କରିବାକୁ ମନା କଲେ ଏବଂ ଯେଉଁ ସଂପତ୍ତି ପାଇଲେ ତାଙ୍କୁ ଅମରତ୍ୱ ମିଳି ପାରିବ, ତାହା ଦେବା ପାଇଁ ସେ ସ୍ୱାମୀଙ୍କୁ ଅନୁରୋଧ କଲେ । ଯାଜ୍ଞବଲକ୍ୟ ଓ ମୈତ୍ରେୟୀଙ୍କ ମଧ୍ୟରେ ଏ ସଂପର୍କରେ କଉଣି ଯୁକ୍ତିତର୍କସମ୍ବଳିତ କଥାବାର୍ତ୍ତା ହୋଇଥିଲା ଏବଂ କିପରି ଶେଷରେ ଯାଜ୍ଞବଲ୍‌କ୍ୟ ମୈତ୍ରେୟୀଙ୍କୁ ବ୍ରହ୍ମ-ବିଦ୍ୟା ଶିଖାଇବା ପାଇଁ ଅଗ୍ରସର ହୋଇଥିଲେ, ସେ ବିଷୟରେ ଠିକ ନଖି ବର୍ଣ୍ଣନା ଆମେ ବୃହଦାରଣ୍ୟକ ଉପନିଷଦରେ ଦେଖିବାକୁ ପାଉଥାଉଁ । ସେ ମୈତ୍ରେୟୀଙ୍କୁ ବୁଝାଇ ଦେଲେ ଯେ ସ୍ୱାମୀ ସ୍ତ୍ରୀଙ୍କୁ ଭଲ ପାଇବା ଅଥବା ମାତା ସନ୍ତାନଙ୍କୁ ଭଲ ପାଇବା ଇତ୍ୟାଦିର ଅର୍ଥ ହେଉଛି ଜଣେ ଅପର ମଧ୍ୟରେ ଥିବା ଆତ୍ମାଙ୍କୁ ଭଲ ପାଉଛି । ଜଣଙ୍କର ଆତ୍ମା ଅନ୍ୟ ଜଣଙ୍କର ଆତ୍ମାକୁ କାହିଁକି ଭଲ ପାଏ ? ଏହାର କାରଣ ହେଲା ଦୁଇ ଆତ୍ମା ଏକ ; ତେଣୁ ଗୋଟିଏ ଆତ୍ମା ଅପର ଆତ୍ମାର ନିକଟକୁ ଯିବା ପାଇଁ ଆଗେଇ ଆସିଥାଏ । ଜଗତ୍‌ର ଏହି 'ଆତ୍ମା'ଙ୍କର ସ୍ଥିତି ଉପଲବ୍‌ଧି କରିବା ହେଉଛି ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନ । ମୈତ୍ରେୟୀଙ୍କର ଏହି ଆତ୍ମଜ୍ଞାନ ବା ବ୍ରହ୍ମଜ୍ଞାନ ଗ୍ରହଣ କରିବାର ଯୋଗ୍ୟତା ଥିଲା ବୋଲି ଯାଜ୍ଞବଲ୍‌କ୍ୟ ତାଙ୍କୁ ଏ ସଂପର୍କରେ ଉପଦେଶ ଦେବା ପାଇଁ ଆଗେଇ ଆସିଥିଲେ । ଏଠାରେ କହିବା ବାହୁଲ୍ୟ ଯେ ଏହି ବ୍ରହ୍ମଜ୍ଞାନର ଉପଲବ୍‌ଧି ମଣିଷକୁ ଅମରତ୍ୱ ଆଣି ଦେଇଥାଏ । ଏହି ବିଷୟରେ ମଧ୍ୟ କ୍ଲାରସି କ'ଣ କହିଛନ୍ତି, ତାହା ଲକ୍ଷ୍ୟ କରି କହିବାର କଥା । ସେ କହିଛନ୍ତି :

> "In a dialogue in which the Aryan genius in all the grandeur of its spiritual tendencies, and in which the great question of the immortality of the soul was debated and the solution of a formidable problem which is put to every one was attempted, one of the interlocutors was a woman who began the solemn conversation." (୩୮)

ଏଥିରୁ ଜଣାପଡ଼ୁଛି ଯେ ବୈଦିକ କାଳରେ ସ୍ତ୍ରୀମାନେ ଅତି ଗୂଢ଼ଜ୍ଞାନସମ୍ବଳିତ ବ୍ରହ୍ମ-ବିଦ୍ୟାରେ ମଧ୍ୟ ପ୍ରବୀଣା ଥିଲେ ଏବଂ ପୁରୁଷମାନଙ୍କ ଭଳି ଏଥିପ୍ରତି ସେମାନଙ୍କର ସମଧିକ

ଆସନ୍ନ ଥିଲା । ଏ ପ୍ରକାର ସ୍ଥିତି କପରି ଉପୁଜି ପାରିଥିଲା ? କ'ଣ କି ଆମମାନଙ୍କୁ କେବଳ ସାଧାରଣ ଘରକରଣା ବିଷୟ ଶିଖାଇବା ଦ୍ୱାରା ଏହା ସମ୍ଭବ ହୋଇ ପାରିଥିଲା ? ଏହାର ଉତ୍ତର ନିଶ୍ଚୟ ନାଁ ହେବ । ସ୍ତ୍ରୀମାନଙ୍କୁ ପୁରୁଷମାନଙ୍କ ଭଳି ସବୁ ପ୍ରକାର ବିଦ୍ୟା ଶିକ୍ଷା ଦିଆ ଯାଉଥିଲା; ଏପରି କି ଯୁଦ୍ଧବିଦ୍ୟା ମଧ୍ୟ ଶିକ୍ଷା ଦିଆଯାଉଥିଲା । ଏହା ଫଳରେ ସେମାନେ ସ୍ୱାମୀମାନଙ୍କର ଉପଯୁକ୍ତ ଅର୍ଦ୍ଧାଙ୍ଗିନୀ ଓ ଜୀବନ-ପଥରେ ସହଯାତ୍ରିଣୀ ହୋଇ ପାରୁଥିଲେ । ସ୍ତ୍ରୀମାନଙ୍କର ସାମାଜିକ ସ୍ଥିତି କେତେ ଉଚ୍ଚରେ ଥିଲା, ତାହା ଏଥିରୁ ସହଜରେ ଅନୁମେୟ । ବୈଦିକ ସ୍ତ୍ରୀମାନଙ୍କ ବିଷୟରେ ବାଳଶାସ୍ତ୍ରୀ ହରଦାସ ଦେଇଥିବା ନିମ୍ନୋକ୍ତ ସାଧାରଣ ମନ୍ତବ୍ୟଟି ଏ ବିଷୟରେ କିଛିଟା ଆଲୋକପାତ କରିବ :

> "Thus the Vedic literature bears testimony to the existence of women in the nation who were highly cultured, learned, extremely devoted and heroic like warriors. The patterns which the Vedic nation has left behind as legacies have been able to inspire the ideals of Indian womanhood in later times right upto the present days." (୩୯)

ବୈଦିକ ବିବାହର ଉଚ୍ଚ ଲକ୍ଷ୍ୟ ଓ ଆଭିମୁଖ୍ୟ ଏବଂ ସ୍ତ୍ରୀମାନଙ୍କର ସାମାଜିକ ସ୍ଥିତି ବିଷୟରେ ପୂର୍ବରୁ ଆଲୋଚନା କରାଯାଇଛି । ଆଉ ମଧ୍ୟ କେଉଁ ଆଦର୍ଶ ନେଇ ସ୍ୱାମୀ-ସ୍ତ୍ରୀ ସମ୍ପର୍କ ନିୟନ୍ତ୍ରିତ ହେଉଥିଲା, ସେ ବିଷୟରେ ମଧ୍ୟ ଆଲୋଚନା କରାଯାଇଛି । ଦୈନନ୍ଦିନ ଦାମ୍ପତ୍ୟ-ଜୀବନ ନିର୍ବାହ ସମ୍ପର୍କରେ ସ୍ୱାମୀ-ସ୍ତ୍ରୀ କି କି ନୀତିନିୟମମାନ ମାନି ଚଳୁଥିଲେ ସେ ବିଷୟରେ କିଛିଟା ଆଲୋକପାତ ବର୍ତ୍ତମାନ କରାଯିବ । ସେଥିରୁ ଜଣାପଡ଼ିବ, ବୈଦିକ ସ୍ୱାମୀ-ସ୍ତ୍ରୀ କପରି ଭାବରେ ଏବଂ କେତେ ଦୂର ବିବାହର ଉଚ୍ଚ ଆଦର୍ଶକୁ ଦୈନନ୍ଦିନ ଜୀବନରେ କାର୍ଯ୍ୟକାରୀ କରୁଥିଲେ । ସେମାନଙ୍କର ଦୈନନ୍ଦିନ ଦାମ୍ପତ୍ୟ-ଜୀବନ ନିମ୍ନଲିଖିତ ନିୟମଗୁଡ଼ିକର ଅନୁବର୍ତ୍ତୀ ଥିଲା :

(କ) ସ୍ତ୍ରୀ ସ୍ୱାମୀଙ୍କ ଆଗରେ ଖାଦ୍ୟ ଖାଉ ନଥିଲା । (ଶତପଥ ବ୍ରାହ୍ମଣ, ୧।୯।୨।୧୨)

(ଖ) ସ୍ୱାମୀଙ୍କୁ ସ୍ତ୍ରୀ ଆଗରେ ଖାଇବାକୁ ପଡ଼ୁଥିଲା ଏବଂ ସେ ଖାଇ ସାରିବା ପରେ ସ୍ତ୍ରୀ ପାଇଁ ଖାଦ୍ୟ ବାଢ଼ି ଦେଉଥିଲେ । ଏହା ଥିଲା ସାଧାରଣ

ନିୟମ । କିନ୍ତୁ ଯେଉଁ ସ୍ୱାମୀ ବୀର ସନ୍ତାନ ଜନ୍ମ କରାଇବା ପାଇଁ ଇଚ୍ଛୁକ ଥିଲେ, ତାଙ୍କ ସ୍ତ୍ରୀ ଆଗରେ ଖାଇବାକୁ ଦେଉନଥିଲେ । ସ୍ତ୍ରୀ ଆଗରେ ସ୍ୱାମୀ ଖାଇଲେ ସେହି ସ୍ତ୍ରୀ ବୀର ସନ୍ତାନର ମାଆ ହୋଇ ପାରିବ ନାହିଁ ବୋଲି ସେତେବେଳେ ବିଶ୍ୱାସ ଥିଲା । (ଶତପଥ ବ୍ରାହ୍ମଣ, ୧୦।୫।୨।୯)

(ଗ) ସ୍ୱାମୀ ସ୍ତ୍ରୀ ପରସ୍ପରକୁ ଭେଟିବାକୁ ଗଲାବେଳେ ଦେହରେ ସୁଗନ୍ଧ-ଦ୍ରବ୍ୟ ଲଗାଇ କରି ଯାଉଥିଲେ । (ଶତପଥ ବ୍ରାହ୍ମଣ, ୯।୪।୧।୪)

(ଘ) ସ୍ତ୍ରୀକୁ ସ୍ୱାମୀଙ୍କର ବାମ ପଟେ ଶୋଇବାକୁ ପଡ଼ୁଥିଲା । ବସା, ଉଠା ଆଦି ସବୁଥିରେ ସ୍ତ୍ରୀକୁ ସ୍ୱାମୀଙ୍କର ବାମ ପଟେ ରହିବାକୁ ପଡ଼ୁଥିଲା । ସେଥିପାଇଁ ତା'ର ନାମାନ୍ତର ଥିଲା 'ବାମା' । କେହି କେହି କୁହନ୍ତି ଯେ ସ୍ତ୍ରୀ ବାମ ଅଙ୍ଗ ଚାଳନରେ ପ୍ରବୀଣା ବୋଲି ତାହାକୁ କୁହାଯାଏ ବାମା । ଏହା କିନ୍ତୁ ଠିକ୍ ନୁହେଁ । ଯୁଦ୍ଧ କ୍ଷେତ୍ରରେ ସ୍ତ୍ରୀ ପୁରୁଷଙ୍କ ଭଳି ଦକ୍ଷିଣ ହସ୍ତ ଚାଳନ କରୁଥିବାର ପ୍ରମାଣ ଆମେ ବୈଦିକ ଗ୍ରନ୍ଥମାନଙ୍କରେ ପାଇଥାଉଁ ।
(ଶତପଥ ବ୍ରାହ୍ମଣ, ୭।୫।୧।୬)

(ଙ) ବୋହୂ ଶ୍ୱଶୁରଙ୍କ ପାଖରେ ଖୁବ୍ ନମ୍ରତା ଦେଖାଉଥିଲା ଏବଂ ତାଙ୍କୁ ଲାଜ କରି ତାଙ୍କ ଆଗରେ ଓଢ଼ଣା ଦେଉଥିଲା ।
(ଐତରେୟ ବ୍ରାହ୍ମଣ, ୩।୧୨।୧)

(ଚ) ଅବିବାହିତା ନଣନ୍ଦମାନେ ଭାଇଙ୍କ ଉପରେ ନିର୍ଭରଶୀଳା ଥିଲେ । ତେଣୁ ଭାଉଜକୁ ନଣନ୍ଦମାନଙ୍କର ଯତ୍ନ ନେବାକୁ ପଡ଼ୁଥିଲା ; ସେମାନଙ୍କ ମନ ନେଇ ସେମାନଙ୍କୁ ସୁଖରେ ରଖିବାକୁ ପଡ଼ୁଥିଲା । (ଐତରେୟ ବ୍ରାହ୍ମଣ, ୩।୧୩।୩)

(ଛ) ସ୍ୱାମୀ-ସ୍ତ୍ରୀ ଏକତ୍ର ମିଶି ସୋମରସ ପିଇ ଯଜ୍ଞ କରୁଥିଲେ ଏବଂ ଏହି ଯଜ୍ଞ ଫଳରେ ଯୋଗ୍ୟ ପୁତ୍ରକନ୍ୟାମାନଙ୍କର ଜନକଜନନୀ ହୋଇ ପାରିବେ ବୋଲି ବିଶ୍ୱାସ କରୁଥିଲେ । (ଋଗ୍‌ବେଦ, ୮।୩୧।୮)

(ଜ) ସନ୍ଧ୍ୟାବେଳର ଯଜ୍ଞଟି କରିବା ଦାୟିତ୍ୱ ସାଧାରଣତଃ ସ୍ତ୍ରୀ ଉପରେ ରହୁଥିଲା ।

(ଝ) ଖରାପ ମତଲବ ରଖି କୌଣସି ପୁରୁଷ ଡାକିଲେ, ସତୀ ସ୍ତ୍ରୀ ତାହାକୁ ଘୃଣାଚକ୍ଷୁରେ ଦେଖୁଥିଲା । (ଶତପଥ ବ୍ରାହ୍ମଣ, ୩।୨।୧।୧୯)

ଉପରୋକ୍ତ ମତଭେଦସମୂହ ମାନ ବୈଦିକ ଦର୍ମତ ଚଳୁଥିଲେ । ଏଗୁଡ଼ିକ ଖାଲି ପାରିବାରିକ କର୍ତ୍ତବ୍ୟ ବୋଲି ଗଣା ଯାଉନଥିଲା କିମ୍ବା ଏକ ବୃହତ୍ତର ସାମାଜିକ ସ୍ୱାର୍ଥ-ସାଧନ ଲାଗି ବ୍ୟବହାର କରାଯାଉନଥିଲା । ଅନ୍ୟ ପକ୍ଷରେ ଜୀବନରେ 'ନିଃଶ୍ରେୟସ' ପାଇବା ଲାଗି ଏଗୁଡ଼ିକୁ ପବିତ୍ର କର୍ତ୍ତବ୍ୟ ବୋଲି ଗ୍ରହଣ କରାଯାଉଥିଲା । ଏଣୁ ଏଗୁଡ଼ିକୁ କେହି ପ୍ରାୟ ଅମାନ୍ୟ କରୁନଥିଲେ । ଏତଦ୍ୱାରା ଯେଉଁ ପାରିବାରିକ ଶାନ୍ତି, ଶୃଙ୍ଖଳା ଓ ଭ୍ରାତୃଭାବ ବିଦ୍ୟମାନ ଥିଲା, ତାହାର ପ୍ରଭାବ ଯଥେଷ୍ଟ ଭାବରେ ସମାଜ ଉପରେ ପଡ଼ୁଥିଲା ।

ବୈଦିକ ବିବାହ ସମ୍ପର୍କରେ ଆଉ ଗୋଟିଏ କୌତୂହଳପ୍ରଦ ପ୍ରଶ୍ନ ବିଚାର୍ଯ୍ୟ । ବୈଦିକ ସ୍ତ୍ରୀ ଗୋଟିଏ ପତି ଗ୍ରହଣ କରୁଥିଲା ନା ବହୁ ପତି ଗ୍ରହଣ କରୁଥିଲା ? ଏ ବିଷୟରେ ପରସ୍ପରବିରୋଧୀ ମତ ବିଦ୍ୟମାନ । ବ୍ରାହ୍ମଣ-ଯୁଗରେ ଅବଶ୍ୟ ଆମେ ଜଣେ ସ୍ତ୍ରୀର ବହୁ ପତି ଗ୍ରହଣ କରିବାକୁ ବାରଣ କରାଯାଇଥିବାର ଦେଖିବାକୁ ପାଇଥାଉଁ । ଅନ୍ୟ ପକ୍ଷରେ ଜଣେ ପତି ବହୁ ସ୍ତ୍ରୀ ଗ୍ରହଣ କରି ପାରିବେ ବୋଲି ତହିଁରେ ଲେଖା ଥିବାର ଦେଖିବାକୁ ପାଇଥାଉଁ । ଉଦାହରଣ ସ୍ୱରୂପ ଐତରେୟ ବ୍ରାହ୍ମଣର ନିମ୍ନୋକ୍ତ ପଙ୍କ୍ତି ଦର୍ଶନୀୟ :

"ଏକସ୍ୟ ପୁଂସୋ ବହ୍ୱୋ ଜାୟାଃ ଭବନ୍ତି
ନ ଏକସ୍ୟୈ ବହବଃ ସହପତୟଃ ।" (୪୦)

ଅର୍ଥାତ୍ ଜଣେ ସ୍ୱାମୀଙ୍କର ବହୁ ସ୍ତ୍ରୀ ହୋଇ ପାରନ୍ତି ; କିନ୍ତୁ ଜଣେ ସ୍ତ୍ରୀର ବହୁ ସ୍ୱାମୀ ହୋଇପାରନ୍ତି ନାହିଁ । ଶତପଥ ବ୍ରାହ୍ମଣ (୯।୪।୧।୬) ମଧ୍ୟ ଠିକ୍ ଅନୁରୂପ ସ୍ୱର ଉତ୍ତୋଳନ କରି କହିଥାଏ :

"ଏକସ୍ୟ ପୁଂସୋ ବହ୍ୱୋ ଜାୟାଃ ଭବନ୍ତି ।"

ଏହା ସତ୍ତ୍ୱେ ଅନେକ ପଣ୍ଡିତ ଭାବନ୍ତି, ମହାଭାରତରେ ତ ଦ୍ରୌପଦୀଙ୍କର ପାଞ୍ଚ ଜଣ ସ୍ୱାମୀ ଥିବା କଥା ବର୍ଣ୍ଣିତ । ଦ୍ରୌପଦୀ ଜଣେ କ୍ଷତ୍ରିୟ କନ୍ୟା ଏବଂ ତାଙ୍କ ସାମାଜିକ ସ୍ଥିତି ଥିଲା ଖୁବ୍ ଉଚ୍ଚରେ । ଏଭଳି ବିବାହ ଦୂଷଣୀୟ ଥିଲେ ମହାଭାରତରେ କଦାପି ଏହାର ଅବତାରଣା କରାଯାଇ ନଥାନ୍ତା । ଏହା ନିଶ୍ଚୟ କୌଣସି ଏକ ପ୍ରାଚୀନ ପରମ୍ପରା ଉପରେ ପର୍ଯ୍ୟବସିତ ହୋଇଥିବ । ସମ୍ଭବତଃ ଏହାର ବେଦମୂଳକତା ରହିଥିବ । ସେମାନେ ସାଧାରଣତଃ ଅଥର୍ବ ବେଦର ଗୋଟିଏ ମନ୍ତ୍ର (୫।୧୭।୮) ଉପରେ ନିର୍ଭରଶୀଳ ହୋଇଥାନ୍ତି । ସେମାନଙ୍କ ମତରେ ଏହି ମନ୍ତ୍ରର ଅର୍ଥ ହେଲା, "ଯଦି କୌଣସି ସ୍ତ୍ରୀର ଅବ୍ରାହ୍ମଣ ଦଶ ଜଣ

ସ୍ୱାମୀ ଥାଆନ୍ତି ଏବଂ ଜଣେ ବ୍ରାହ୍ମଣ ଯଦି ତା'ର ହାତ ଧରେ, କେବଳ ସେହି ବ୍ରାହ୍ମଣ ହିଁ ତାହାର ସ୍ୱାମୀ ହୋଇ ପାରନ୍ତି ।" (୪୧) କିନ୍ତୁ ଏହା ହେଉଛି ମନ୍ତ୍ରଟିର ଭୁଲ ଅର୍ଥ । ଏହାର ପ୍ରକୃତ ଅର୍ଥ ହେବ, ଯଦି କୌଣସି ସ୍ତ୍ରୀର ସ୍ୱାମୀ ବ୍ରାହ୍ମଣ ହୋଇ ନଥାନ୍ତି, ତେବେ ସେ ଦଶ ଥର ବିଧବା ହେବା ପର୍ଯ୍ୟନ୍ତ ପୁନର୍ବାର ପତି ଗ୍ରହଣ କରିପାରିବ । ଅନ୍ୟ ପକ୍ଷରେ, ସେ ବ୍ରାହ୍ମଣ ହେଲେ ତାଙ୍କ ମୃତ୍ୟୁ ପରେ ତାକୁ ପୁନର୍ବିବାହ କରିବାକୁ ପଡ଼ିବ ନାହିଁ । ଅତଏବ, ସ୍ୱାମୀଙ୍କ ବର୍ତ୍ତମାନତାରେ ସ୍ତ୍ରୀର ଅନ୍ୟ ସ୍ୱାମୀ ଗ୍ରହଣ କରିବା ପ୍ରଶ୍ନ ଆଦୌ ଉଠୁ ନାହିଁ । ଖର୍ଗବ ମଧ୍ୟ ଏକଥା ସ୍ପଷ୍ଟ ଭାବରେ ସ୍ୱୀକାର କରିଛନ୍ତି । ଏ ସଂପର୍କରେ ତାଙ୍କର ଦୃଢ଼ ମତ ହେଲା :

> What the verse means is that so long as her husband is not a Brahmin, a woman can marry each time she becomes a widow even if this calamity befalls her ten times, but if she marries a Brahmin, she has to remain faithful to him even after his death." (୪୨)

ଅତଏବ, ଏଥିରୁ ଏହି ସତ୍ୟ କିଷ୍ପାସିତ ହେବ ଯେ ବୈଦିକ କାଳରେ ସ୍ତ୍ରୀମାନଙ୍କର ବହୁ ପତି ଗ୍ରହଣ ପ୍ରଥା ଆଦୌ ନଥିଲା । ଋଗ୍‌ବେଦରେ ଯେ ସ୍ତ୍ରୀମାନଙ୍କର ବହୁ ପତି ଗ୍ରହଣ ବିଷୟରେ ଆଦୌ ଉଲ୍ଲେଖ କରାଯାଇ ନାହିଁ, ସେ ବିଷୟରେ ଆପ୍ଟେ ମଧ୍ୟ ସ୍ପଷ୍ଟ ମତ ବ୍ୟକ୍ତ କରିଛନ୍ତି । (୪୩) ମହାଭାରତରେ ଦ୍ରୌପଦୀଙ୍କର ପଞ୍ଚ ପତି ଗ୍ରହଣ ବିଷୟରେ ଯେଉଁ ଅବତାରଣା କରାଯାଇଛି, ତାହା ଯଥେଷ୍ଟ ପରବର୍ତ୍ତୀ ଘଟଣା ଏବଂ ତାହା ହେଉଛି ଆର୍ଯ୍ୟ ସଂସ୍କୃତି ଉପରେ ଆର୍ଯ୍ୟେତର ସଂସ୍କୃତିର ଯେଉଁ ପ୍ରଭାବ ପଡ଼ିଥିଲା, ତାହାର ଫଳଶ୍ରୁତି ।

ଏହିପରି ଆଉ ଏକ ବିତର୍କମାନ ବିଷୟ ହେଲା ଭାଇ ଓ ଭଉଣୀ ମଧ୍ୟରେ ଥିବା ଅବୈଧ ପ୍ରେମ । ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତରେ ବୈଦିକ ସମାଜରେ ଭାଇଭଉଣୀ ଅବୈଧ ସଂପର୍କ ଚଳୁଥିଲା । ସେମାନେ 'ସ୍ୱସା' ଶବ୍ଦର ବ୍ୟାଖ୍ୟା ଓ ଯମ-ଯମୀ ଉପାଖ୍ୟାନ ଉପରେ ଆଧାର କରି ଏହି ମତ ପୋଷଣ କରିଥାନ୍ତି । 'ସ୍ୱସା' ଶବ୍ଦର ଅର୍ଥ ହେଲା ଭଉଣୀ । ଯାସ୍କଙ୍କ ମତରେ, "ସ୍ୱଂ ଆତ୍ମାନଂ ସାରୟତି ଭ୍ରାତୃଗୃହଂ ଗମୟତି ଇତି ସ୍ୱସା ।" ଏହାର ଅର୍ଥ ହେଲା, ଯେ ନିଜକୁ ଭାଇ ଘରକୁ ନିଆଏ ସେ ହେଲା ସ୍ୱସା । ଭାଇଭଉଣୀ ମଧ୍ୟରେ ସ୍ନେହ

ଚିରନ୍ତନ । ଭାଇ ଉପରେ ଭଉଣୀ ମଧ୍ୟ ଅନେକ କ୍ଷେତ୍ରରେ ନିର୍ଭରଶୀଳା । ତେଣୁ ସେ ଭାଇ ଘରକୁ ଆସିବାକୁ ସବୁବେଳେ ଚାହୁଁଥାଏ । ସାୟଣ ଏହି ଅର୍ଥରେ ହିଁ ଶବ୍ଦଟିର ବ୍ୟାଖ୍ୟା କରିଛନ୍ତି । କିନ୍ତୁ ପାଶ୍ଚାତ୍ୟ ପଣ୍ଡିତମାନେ ଏହି ବ୍ୟାଖ୍ୟାରେ ଭଉଣୀର ଭାଇ ଘରକୁ ଆସିବାଟା 'ରମଣାର୍ଥମ୍' ବୋଲି ମନେ ମନେ ଯୋଡ଼ି ଦେଇଛନ୍ତି । ଏହା କିନ୍ତୁ ଆଦୌ ଠିକ୍ ନୁହେଁ । ଏହା କରିବାରେ ପ୍ରାଚୀନ ଗ୍ରୀକ୍-ସମାଜରେ ସ୍ୱୀକୃତି ଲାଭ କରିଥିବା ଭାଇ-ଭଉଣୀ ପ୍ରେମ ଦ୍ୱାରା ସେମାନେ ପ୍ରଭାବିତ ହୋଇଛନ୍ତି ବୋଲି ବୁଝାଯାଏ । ହପ୍‌କିନ୍‌ସଙ୍କ (Hopkins) ଭଳି ପଣ୍ଡିତ ଯମଙ୍କୁ ଯମୀଙ୍କର ଭାଇ ଓ ସ୍ୱାମୀ ବୋଲି କହିଛନ୍ତି । (୪୪) ଏହା ନିଶ୍ଚୟ ଦୁର୍ଭାଗ୍ୟର କଥା ! କିନ୍ତୁ ଯମ-ଯମୀ ଆଖ୍ୟାନଟି ଋଗ ବେଦରେ (୧୦।୧୦) ଯେପରି ଭାବରେ ବର୍ଣ୍ଣିତ, ତାହା ଅନୁଧ୍ୟାନ କଲେ ଆମେ ଜାଣି ପାରିବା ଯେ ଭାଇ ଓ ଭଉଣୀ ମଧ୍ୟରେ ଥିବା ଅବୈଧ ପ୍ରଣୟକୁ ସେଠାରେ ବରଂ ନିନ୍ଦା କରାଯାଇଛି । ଯମୀ ପ୍ରଥମେ ତାଙ୍କ ଯାଆଁଳା ଭାଇ ଯମଙ୍କ ପାଖକୁ ପ୍ରଣୟ ନିବେଦନ କରି ଆସିଛନ୍ତି । ସେ ଅଛନ୍ତି କାମାତୁରା ; ତେଣୁ ଭଲ ମନ୍ଦ, ଶିଷ୍ଟାଶିଷ୍ଟ ସବୁ ଭୁଲି ଯାଇଛନ୍ତି । କିନ୍ତୁ ଯମ ତାଙ୍କୁ 'ଋତ' ବା ଶାଶ୍ୱତ ନିୟମ କଥା ଚେତାଇ ଦେଇଛନ୍ତି ଏବଂ ଏ ପ୍ରକାର ପାପ କର୍ମରୁ ବିରତ ହେବା ପାଇଁ ଉପଦେଶ ଦେଇଛନ୍ତି । (୪୫) ଏହିଠାରେ ହିଁ ଆଖ୍ୟାନଟିର ପରିସମାପ୍ତି ଘଟିଛି । ଉଭୟଙ୍କର ମିଳନ ଆଦୌ ସଂଘଟିତ ହୋଇନାହିଁ । ଏଥିରୁ କେମିତି ବା ଆମେ ଭାବି ନେବା ଯେ ସେତେବେଳେ ଭାଇ ଓ ଭଉଣୀ ମଧ୍ୟରେ ଅବୈଧ ପ୍ରଣୟ ପ୍ରଚଳିତ ଥିଲା ବୋଲି ଏବଂ ତାହାକୁ ସମାଜ ସ୍ୱୀକାର କରୁଥିଲା ବୋଲି ? ବରଂ ଏହାର ଠିକ୍ ବିପରୀତ ଅବସ୍ଥା ଥିଲା ବୋଲି ଭାବିବା ସମୀଚୀନ ହେବ । ଅତଏବ ପାଶ୍ଚାତ୍ୟ ପଣ୍ଡିତମାନେ ଯମ-ଯମୀ ସମ୍ବାଦକୁ ଭିତ୍ତି କରି ବୈଦିକ ଆର୍ଯ୍ୟମାନଙ୍କ ମଧ୍ୟରେ ଭାଇଭଉଣୀ ମଧ୍ୟରେ ଅବୈଧ ପ୍ରଣୟ ପ୍ରଚଳିତ ଥିଲା ବୋଲି ଯେଉଁ ମତ ଦେଇଥାନ୍ତି ତାହା ସର୍ବଥା ପରିତ୍ୟାଜ୍ୟ ।

ଆଉ ଗୋଟିଏ ପ୍ରଧାନ ବୈଦିକ ପ୍ରଥା ଥିଲା 'ନିୟୋଗ' ଯାହା କି ବହୁଦିନରୁ ପ୍ରାୟ ଖ୍ରୀଷ୍ଟାବ୍ଦ ଆରମ୍ଭର ପ୍ରଥମାବସ୍ଥାରୁ ଭାରତରୁ ଲୋପ ହୋଇଗଲାଣି । ବୌଦ୍ଧ ଜାତକ ଗଳ୍ପମାନଙ୍କରେ, ଏବଂ କୌଟିଲ୍ୟଙ୍କ ପ୍ରଣୀତ ଅର୍ଥଶାସ୍ତ୍ରରେ ମଧ୍ୟ ଆମେ ନିୟୋଗ ବିଷୟରେ ବର୍ଣ୍ଣନା ପାଇଥାଉଁ । ମହାକାବ୍ୟମାନଙ୍କରେ ତ ଏହାର ଭୂରି ଭୂରି ଦୃଷ୍ଟାନ୍ତ ଅଛି । ମହର୍ଷି ବ୍ୟାସଙ୍କୁ ନିୟୋଗ ରୂପରେ ବ୍ୟବହାର କରିବା ଫଳରେ ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର ଜନ୍ମ ହୋଇଥିଲେ । ଏହାର ଏକମାତ୍ର ଉଦ୍ଦେଶ୍ୟ ଥିଲା ପତି ପୁତ୍ରସନ୍ତାନ ଛାଡ଼ି ନଯାଇ ମୃତ ହେଲେ କିମ୍ବା କୌଣସି କାରଣରୁ ପ୍ରଜନ କ୍ଷମତା ହରାଇ ବସିଲେ ପତ୍ନୀଙ୍କୁ ନିୟୋଗ-ବିଧି ଦ୍ୱାରା ପୁତ୍ରସନ୍ତାନ ଜନ୍ମ କରାଇବାକୁ ପଡୁଥିଲା । ଏହା ପାପାଚାର ନଥିଲା । ଅନ୍ୟ ପକ୍ଷରେ

ବିବାହ ଭିନ୍ନ ସନ୍ତାନ ଜନ୍ମ କରିବା ଲାଗି ଏହା ଏକ ପବିତ୍ର ବିଧି ହିସାବରେ ସମାଜ ଦ୍ୱାରା ସ୍ୱୀକୃତ ହୋଇଥିଲା । ଏହାକୁ ଲକ୍ଷ୍ୟ କରି ବାସମ୍ କହିଛନ୍ତି :

> "If the husband was sterile or impotent, he had to take further measures. In the last resort he would appoint a close relative, usually a brother, to produce offspring on his behalf. From several stories in the Epics and elsewhere it appears that holy men of special sanctity were also often in demand for this purpose. Similarly, if the husband died without producing male issue, his brother might act on his behalf." (୪୭)

ବାସ୍ତବିକ୍, 'ଦେବର' ଶବ୍ଦର ଅର୍ଥ ବିଶ୍ଳେଷଣ ଯେପରି ଭାବରେ ଯାସ୍କ କରିଛନ୍ତି ସେଥିରୁ ଅନୁମିତ ହେବ ଯେ ଦିଅର (ଦେବର) ଭାଉଜଙ୍କ ସହିତ ବିବାହରେ ମିଳିତ ହେଉଥିଲେ । ଯାସ୍କ କହିଛନ୍ତି :

"ଦେବରଃ କସ୍ମାତ୍ ? ଦ୍ୱିତୀୟୋ ବର ଉଚ୍ୟତେ ।" (୪୭)

ଅର୍ଥାତ୍ ଏ ହେଉଛନ୍ତି ଦ୍ୱିତୀୟ ବର ; ତେଣୁ ଏହାଙ୍କୁ କୁହାଯାଏ ଦେବର । ଦିଅର-ଭାଉଜଙ୍କର ଏ ପ୍ରକାର ସଂପର୍କ ପ୍ରତି ଲକ୍ଷ୍ୟ କରି ଅନେକ ମନ୍ତ୍ର ରଚିତ ହୋଇଛି । ନିମ୍ନୋକ୍ତ ମନ୍ତ୍ରଟି ଅଶ୍ୱିନୀକୁମାର ଯୁଗଳଙ୍କ ପ୍ରତି ଉଦ୍ଦିଷ୍ଟ । ସେ ଦୁହିଁଙ୍କୁ ଲକ୍ଷ୍ୟ କରି ଆର୍ଯ୍ୟ ଋଷି କହୁଛନ୍ତି :

"କୁହସ୍ୱିଦ୍ଦୋଷା କୁହବସ୍ତୋରଶ୍ୱିନା କୁହାଭିପିତ୍ୱଂ କରତଃ କୁହୋଷତୁଃ ।
କୋ ବାଂଶୟୁତ୍ରା ବିଧବେବ ଦେବରଂ ମର୍ଯ୍ୟଂ ନ ଯୋଷା କୃଣୁତେ ଆସଧସ୍ଥ । (୪୮)

ଏହାର ଅର୍ଥ ହେଲା, "ହେ ଅଶ୍ୱିନୀକୁମାର ଦ୍ୱୟ, ଯେପରି ବିଧବା ସ୍ତ୍ରୀ ଆପଣା ଦେବର ସହିତ ଏବଂ ବିବାହିତା ସ୍ତ୍ରୀ ଆପଣା ପତି ସହିତ ଏକତ୍ର ରହି ସମାନ ଶଯ୍ୟାରେ ଶୟନ କରି ସନ୍ତାନ ଉତ୍ପନ୍ନ କରିଥାନ୍ତି, ଠିକ୍ ସେହିପରି ତୁମେମାନେ କେଉଁଠାରେ ରାତିରେ ଏବଂ କେଉଁଠାରେ ଦିନରେ ରହୁଛ ? ତୁମର ପ୍ରୟୋଜନୀୟ ଜିନିଷ କେଉଁଠାରୁ ପାଉଛ ? କେଉଁ ସମୟରେ କେଉଁ ସ୍ଥାନରେ ରହୁଛ ? କେଉଁ ସ୍ଥାନରେ ଶୋଉଛ ? ପୁଣି କେଉଁ

ଦେଶରେ ନବାସ କରୁଛ ? "ପତିପତ୍ନୀଙ୍କର ଏକତ୍ର-ବାସରେ ସନ୍ତାନ ଉତ୍ପାଦନ କରିବାରେ ଯେତିକ ପବିତ୍ରତା ଅଛି, ଦିଅରଭାଉଜଙ୍କର ଏକତ୍ର-ବାସରେ ସନ୍ତାନ ଉତ୍ପାଦନ କରିବାରେ ଠିକ୍ ସେତିକ ପବିତ୍ରତା ଅଛି ବୋଲି ଆର୍ଯ୍ୟ ଋଷିମାନେ ଉପଲବ୍ଧି କରିଥିଲେ । ଏଥିରେ କନ୍ତୁ ଭାଉଜଙ୍କୁ ସ୍ୱେଚ୍ଛାଗ୍ରହଣୀ ହୋଇ ଦିଅରଙ୍କ ପାଖକୁ ଯିବାକୁ ପଡ଼ୁ ନଥିଲା ; ଏଥିରେ ତାଙ୍କର କାମଲିପ୍ସା ଆଦୌ ନଥିଲା । ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା କପରି ପୁଅଟିଏ ଜନ୍ମ ହେବ ଏବଂ ତଦ୍ୱାରା କୁଳରକ୍ଷା ହେବ । ଯଦି ତାଙ୍କର ଦିଅର ନଥାନ୍ତି, ତେବେ ଅନ୍ୟ କୌଣସି ସମକୁଳଜାତ କମ୍ବା ଉଚ୍ଚକୁଳଜାତ ପୁରୁଷଙ୍କ ସହିତ ତାଙ୍କୁ ନଯ୍ୟୋଗ-ବିଧିରେ ମିଳତ ହେବାକୁ ପଡ଼ୁଥିଲା । ଏ ପ୍ରକାର ମିଳନ ପାଇଁ ମଧ୍ୟ ଏକ ସୀମାସରହଦ ନର୍ଦ୍ଦିଷ୍ଟ ଥିଲା । ନଯ୍ୟୋଗବିଧିରେ ସର୍ବମୋଟ କେତୋଟି ସନ୍ତାନ ଜନ୍ମ କରାଯାଇ ପାରିବ, ତାହାର ସୀମା ନର୍ଦ୍ଧାରଣ କରାଯାଇଥିଲା । ଖାଲି ତ ନଯ୍ୟୋଗ ପାଇଁ ନୁହେଁ, ପତିପତ୍ନୀଙ୍କ ପାଇଁ ମଧ୍ୟ ସର୍ବାଧିକ କେତେ ସନ୍ତାନ ଉତ୍ପାଦନ କର ପାରିବେ, ତା'ର ଏକ ସୀମା ଧାର୍ଯ୍ୟ କରା ଯାଇଥିଲା । ଏହାର ସୀମା ଥିଲା ଦଶ । ସେଥିପାଇଁ ପର ବିବାହ ସମୟରେ କନ୍ୟା ଲାଗି ଇନ୍ଦ୍ରଙ୍କ ଆଶୀର୍ବାଦ ଭିକ୍ଷା କର ବୋଲାଯାଉଥିଲା :

"ଦଶାସ୍ୟାଂ ପୁତ୍ରାନାଧେହି ପତିଂ ଏକାଦଶଂ କୃଧି ।" (୪୧)

ଅର୍ଥାତ୍ ( ହେ ଇନ୍ଦ୍ର ! ) ଏହି ବଧୂଠାରେ ଦଶଟି ପୁଅ ଆଣି ଦିଅ ଏବଂ ଏହାର ସ୍ୱାମୀଙ୍କୁ ଏକାଦଶ ପୁତ୍ର କରିଅ । ଏହାର ତାତ୍ପର୍ଯ୍ୟ ହେଲା, ଦଶଟି ପୁଅ ଜନ୍ମ ହେବା ପରେ ପତି-ପତ୍ନୀଙ୍କର ସଂପର୍କ ମାଆପୁଅଙ୍କ ସଂପର୍କ ଭଳି ହେବ । ପତ୍ନୀ ସେତେବେଳେ ପତିଙ୍କୁ ତାଙ୍କର ଏକାଦଶ ପୁତ୍ର ବୋଲି ଗଣିବେ । ଠିକ୍ ସେମିତି ଜଣେ ବିଧବା ସ୍ତ୍ରୀ ନଜ ପାଇଁ ଦୁଇ, ଏବଂ ଦୁଇ ଲେଖାଏଁ ଗୁରୁଜଣ ପତିଙ୍କ ନମନ୍ତେ ଆଠ, ଏହିପରି ସର୍ବମୋଟ ଦଶ ସନ୍ତାନ ଉତ୍ପାଦନ କରିପାରିବେ । ମୃତଦାର ପୁରୁଷଙ୍କ ପାଇଁ ମଧ୍ୟ ଏହି ନୟମ ସମାଧିକ ପ୍ରଯୁଜ୍ୟ । ସେ ନଜ ପାଇଁକ ଦୁଇ ଏବଂ ଅନ୍ୟ ଗୁରୁଜଣ ବିଧବାଙ୍କ ପାଇଁ ଦୁଇ ଲେଖାଏଁ ଆଠ ଗୋଟି ସନ୍ତାନ ଉତ୍ପନ୍ନ କରିପାରିବେ ।

ବର୍ତ୍ତମାନ ପ୍ରଶ୍ନ ହୋଇପାରେ ସ୍ୱାମୀ ମରିଗଲେ ଯିନା ନଯ୍ୟୋଗବିଧିରେ ନଜ ଦେବର କମ୍ବା ଅନ୍ୟ କୌଣସି ପୁରୁଷଙ୍କ ଔରସରୁ ପୁତ୍ର ଉତ୍ପାଦନ କରିପାରିବେ । ସ୍ତ୍ରୀ ମରିଗଲେ ସ୍ୱାମୀ କ'ଣ ଠିକ୍ ସେମିତି ନଯ୍ୟୋଗ ବିଧିରେ ଅନ୍ୟ କୌଣସି ବିଧବାଠାରୁ ଏପରି ପୁତ୍ର ଜନ୍ମ କରାଇ ପାରିବେ ? ଏହାର ଉତ୍ତର ହଁ ହେବ । ସ୍ତ୍ରୀ କୌଣସି ପୁତ୍ର ସନ୍ତାନ ଛାଡ଼ି ନଦେଇ ମରିଗଲେ ସ୍ୱାମୀଙ୍କୁ ପୁତ୍ରଲାଭ ଲାଗି ବେଳେବେଳେ ଦ୍ୱିତୀୟ ବିବାହ କରିବାକୁ ପଡ଼ୁଥିଲା । ଆଉ ବେଳେବେଳେ ସ୍ୱାମୀ ଯଦି ଏକପତ୍ନୀ-ବ୍ରତ କରିଥାନ୍ତି, ତେବେ ପୁତ୍ର-ଲାଭ ଲାଗି ନଯ୍ୟୋଗବିଧିରେ କୌଣସି ବିଧବା ରମଣୀ ମାଧ୍ୟମରେ ସେ ଏହି କାର୍ଯ୍ୟ ହାସଲ

କରି ପାରୁଥିଲେ । ବିଧବା ସ୍ତ୍ରୀ ଯଦି ନିଜ ଲାଗି ପୁତ୍ର ସୃଷ୍ଟି ନିୟୋଗବିଧିରେ ରତା ଥିଲେ, ତେବେ ସେହି ପୁତ୍ର ତାଙ୍କର ଗୋତ୍ର ଗ୍ରହଣ କରୁଥିଲା ଏବଂ ତାଙ୍କ ସଂପତ୍ତିର ଅଧିକାରୀ ହୋଇ ପାରୁଥିଲା । କିନ୍ତୁ ଅପର ପକ୍ଷରେ ସେ ଯଦି ନିଯୁକ୍ତ ପୁରୁଷ ଲାଗି ଗର୍ଭଧାରଣ କରୁଥିଲେ, ତେବେ ପୁତ୍ରସନ୍ତାନ ସେହି ପୁରୁଷଙ୍କର ଗୋତ୍ର ନେଇ ତାଙ୍କ ସଂପତ୍ତିର ଅଧିକାରୀ ହୋଇପାରୁଥିଲା । ଏ ସଂପର୍କରେ ଋଗ୍‌ବେଦର ନିମ୍ନୋକ୍ତ ମନ୍ତ୍ରଟି ପ୍ରଣିଧାନଯୋଗ୍ୟ :

"ଉଦୀର୍ଷ୍ୱ ନାର୍ଯଭିଜୀବଲୋକଂ ଗତାସୁମେତମୁପଶେଷ ଏହି ।
ହସ୍ତଗ୍ରାଭସ୍ୟ ଦିଧିଷୋସ୍ତବେଦଂ ପତ୍ୟୁର୍ଜନିତ୍ୱମଭି ସଂ ବଭୂଥ ।।" (୫୦)

ଏହାର ଅର୍ଥ ହେଲା, "ହେ ବିଧବା ନାରୀ ! ତୁମେ ଏହି ମୃତପତିଙ୍କ ଆଶା ଛାଡ଼ି ଜୀବିତ ଲୋକମାନଙ୍କ ମଧ୍ୟରୁ ଅନ୍ୟ ପତି ଗ୍ରହଣ କର । ତୁମେ ଯଦି ନିଯୁକ୍ତ ପତିଙ୍କ ପ୍ରୟୋଜନ ସକାଶେ ତାଙ୍କ ସହିତ ନିୟୋଗ କରିବ, ତେବେ ଜନ୍ମ ହେବା ବାଳକ ତାଙ୍କର ହେବ । ତୁମେ ଯଦି ନିଜର ସନ୍ତାନ ଉଦ୍ଦେଶ୍ୟରେ ନିୟୋଗ କରିବ, ତେବେ ସେ ବାଳକ ତୁମର ହେବ । ଏହି ନିୟମ ନିଶ୍ଚୟ ବୃଦ୍ଧି ରଖିବ । ତୁମ ପତି ମଧ୍ୟ ଏହି ନିୟମ ପାଳନ କରିବେ ।"

ପତିଙ୍କ ମୃତ୍ୟୁ ହେଲେ ଯେ କେବଳ ନିୟୋଗବିଧି ପାଳନ କରାଯାଉଥିଲା, ତାହା ନୁହେଁ । ପତିଙ୍କର ବର୍ତ୍ତମାନତାରେ ମଧ୍ୟ ତାହା ବେଳେବେଳେ ପାଳିତ ହେଉଥିଲା । ପତି କୌଣସି କାରଣରୁ ପ୍ରଜନନ-କ୍ଷମତା ହରାଇ ବସିଲେ ତାଙ୍କ ଇଚ୍ଛାରେ ପୁତ୍ରସନ୍ତାନ ପାଇବା ପାଇଁ ପତ୍ନୀଙ୍କୁ ନିୟୋଗର ଆଶ୍ରୟ ନେବାକୁ ସେ ପରାମର୍ଶ ଦେଉଥିଲେ । ସେ ପତ୍ନୀଙ୍କୁ ନିମ୍ନ ମତେ କହୁଥିବା କଥା ଋଗ୍‌ବେଦରେ ବର୍ଣ୍ଣିତ :

"ଅନ୍ୟମିଚ୍ଛସ୍ୱ ସୁଭଗେ ପତିମ୍" । (୫୧)

ଅର୍ଥାତ୍ "ହେ ସୁଭଗେ, ତୁମେ ଅନ୍ୟ ପତିଟିଏ ଖୋଜ ।" ଋଗ୍‌ବେଦର ମନ୍ତ୍ରଦ୍ରଷ୍ଟା ଋଷି ଦୀର୍ଘତମା ଓ କକ୍ଷିବାନ୍ ଥିଲେ ଏହିଭଳି ନିୟୋଗ-ସନ୍ତାନ । ଏଥିରୁ ଜଣାଯିବ ଯେ ନିୟୋଗବିଧିରେ ଜନ୍ମ କରାଯାଇଥିବା ସନ୍ତାନମାନେ ସେମାନଙ୍କ କୁଳୋଚିତ ଆସନ ଓ ମର୍ଯ୍ୟାଦା ଲାଭ କରି ପାରୁଥିଲେ । କେହି ସେମାନଙ୍କୁ ହୀନ ଚକ୍ଷୁରେ ଦେଖୁ ନଥିଲେ ।

ଆଉ ଗୋଟିଏ ବିଷୟ ହେଲା ବିଧବା-ବିବାହ । ଏହା ବୈଦିକ କାଳରେ ଥିଲା କି ନାହିଁ ତାହା ବିଚାର୍ଯ୍ୟ । ପୂର୍ବରୁ ତ କୁହାଯାଇଛି ଯେ ବିଧବା ପୁତ୍ରଲାଭ କରିବା ପାଇଁ

ନିୟୋଗବିଧିରେ ଅନ୍ୟ ପୁରୁଷ ଗ୍ରହଣ କରୁଥିଲେ ଏବଂ ଏଥିପାଇଁ ଦେବରଙ୍କୁ ପ୍ରାଥମିକ ଅଧିକାର ଦିଆଯାଉଥିଲା । ଦେବର ନଥିଲେ ଯାଇ ଅନ୍ୟ ପୁରୁଷଙ୍କ କଥା ଉଠୁଥିଲା । ଏହା ଛଡ଼ା ଯେଉଁ ବିଧବା ରମଣୀ ପୁନର୍ବିବାହ କରିବାକୁ ଚାହୁଁଥିଲେ, ତାଙ୍କୁ ସେଥିପାଇଁ ସୁଯୋଗ ଦିଆଯାଉଥିଲା । ସାଧାରଣତଃ ସେ ଦେବରଙ୍କୁ ବିବାହ କରୁଥିଲେ ଏବଂ ଦେବର ନଥିଲେ ଅନ୍ୟ ପୁରୁଷଙ୍କୁ ବିବାହ କରୁଥିଲେ । ଜଣେ ପୁରୁଷଙ୍କର ବହୁ ସ୍ତ୍ରୀ ଗ୍ରହଣ କରିବାରେ କିଛି ବାଧା ନଥିଲା । ତେଣୁ ଦେବର ବିବାହିତ ଥିଲେ ମଧ୍ୟ ବିଧବା ଭାଉଜଙ୍କୁ ପୁନର୍ବିବାହ କରିବାରେ କିଛି ଅସୁବିଧା ହେଉନଥିଲା । ଶ୍ମଶାନ-ଭୂମିରୁ ବିଧବା ସ୍ତ୍ରୀମାନଙ୍କର ଗୃହକୁ ପ୍ରତ୍ୟାବର୍ତ୍ତନ ପ୍ରତି ଲକ୍ଷ୍ୟ କରି ଋଗ୍‌ବେଦର ଗୋଟିଏ ମନ୍ତ୍ର ଅଛି । ସେଥିରେ ଏହି ସ୍ତ୍ରୀମାନଙ୍କୁ ବୁଝାଯାଇଛି 'ଅବିଧବା' । ଅବିଧବା ଅର୍ଥ ହେଲା ଯେଉଁମାନେ ବିଧବା ନୁହନ୍ତି । ଏମାନଙ୍କ ସ୍ୱାମୀମାନେ ତ ମଲେ । ଏମାନେ ତେବେ ବିଧବା ନହେଲେ କେମିତି ? ଏହା ଭାବିଲେ ବାସ୍ତବିକ ମୁଣ୍ଡ ଗୋଳମାଳିଆ ଧରିଯାଏ । ମନ୍ତ୍ରଟିକୁ ତୀକ୍ଷ୍ଣ ଭାବରେ ଅନୁଧ୍ୟାନ କଲେ ଏହାର ଅର୍ଥଟି ଖୁବ୍ ସ୍ପଷ୍ଟ ହୋଇଉଠେ । ଏହି ମନ୍ତ୍ରଟି ହେଲା :

"ଇମା ନାରୀରବିଧବା ସୁପତ୍ନୀରଞ୍ଜନେନ ସର୍ପିଷା ସଂବିଶନ୍ତୁ ।" (୫୨)

ଅର୍ଥାତ୍ ଏହି ସ୍ତ୍ରୀମାନେ ଲୁହ ନଗଡ଼ାଇ ଅବିଧବା ଅବସ୍ଥାରେ ସୁନ୍ଦର ବେଶଭୂଷା ପିନ୍ଧି (ଶ୍ମଶାନରୁ) ସମସ୍ତଙ୍କ ଆଗେ ଆଗେ ଘୃଣ୍ଣ ଜନ ଘରେ ପ୍ରବେଶ କରନ୍ତୁ । ଏହାର ତାତ୍ପର୍ଯ୍ୟ ହେଲା ସେମାନଙ୍କ ପିଲାଛୁଆଙ୍କୁ ନେଇ ପୁଣି ଘର-ସଂସାର କରିବାକୁ ହେବ ; ଜୀବନର ଭଙ୍ଗା ଘରକୁ ଯୋଡ଼ିବାକୁ ହେବ । ସେମାନଙ୍କୁ ଆବଶ୍ୟକ ହେଲେ ପୁନର୍ବାର ପତି ଗ୍ରହଣ କରି ସୁଖରେ ଦିନ କଟାଇବାକୁ ହେବ । ମୃତ ସ୍ୱାମୀଙ୍କର ବିଧବା ପତ୍ନୀଙ୍କୁ ଋଗ୍‌ବେଦରେ 'ଅବିଧବା' ବୋଲି ବୁଝା ଯାଉଥିବାରୁ ଅନୁମାନ କରାଯାଏ ଯେ ବୈଦିକ କାଳରେ ବିଧବା-ବିବାହ ଚଳୁଥିଲା । କିନ୍ତୁ ସିଧାସଳଖ ଭାବରେ ଋଗ୍‌ବେଦରେ କିମ୍ବା ଅନ୍ୟ କୌଣସି ବେଦରେ ବିଧବା-ବିବାହ ଚଳୁଥିବା କଥା ବୁଝା ଯାଇନାହିଁ । ଆପ୍ତେ ମଧ୍ୟ ଠିକ୍ ଅନୁରୂପ ମତ ଦେଇ କହିଛନ୍ତି :

> "These passages are clear evidence that the remarriage of widows was permitted in certain circumstances, though there is no clear or definite reference to it in the Rig-Veda." (୫୩)

ବୈଦିକ ଯୁଗ ପରେ ସୂତ୍ର-ଯୁଗରେ ବିଧବା-ବିବାହ ଚଳୁଥିବାର ପ୍ରମାଣ ମିଳୁଛି । ବଶିଷ୍ଠ-ଧର୍ମସୂତ୍ରରେ କେତେକ ପରିସ୍ଥିତିରେ ବିଧବା-ବିବାହ ହୋଇପାରିବ ବୋଲି ବୁଝା

ଯାଇଛି । ଧର୍ମସୂତ୍ରରେ ଯେଉଁ ବାର ପ୍ରକାର ପୁତ୍ରଙ୍କର ନାମ ଅଛି ପୁନର୍ବିବାହ କରିଥିବା ବିଧବାର ପୁତ୍ର ତନ୍ମଧ୍ୟରେ ଜଣେ । ତେଣୁ କିଛି ପରିମାଣରେ ବିଧବା-ବିବାହ ସୂତ୍ର-ଯୁଗରେ ଚାଲୁଥିବା ଭଳି ମନେ ହୁଏ । ଏହା କିନ୍ତୁ ପରବର୍ତ୍ତୀ ଯୁଗରେ ବିଭିନ୍ନ କାରଣରୁ ବନ୍ଦ ହୋଇ ଯାଇଥିଲା । ଏହାର ପ୍ରଧାନ କାରଣ ହେଲା, ପରବର୍ତ୍ତୀ କାଳରେ ସ୍ତ୍ରୀକୁ ଏକ ସାଧାରଣ ସମ୍ପତ୍ତି ହିସାବରେ ଗଣା ହେଲା ଏବଂ ତାହାର ସାମାଜିକ ସ୍ଥିତି ହ୍ରାସ ପାଇଲା । ଏପରିକି ତା'ଠାରୁ ବେଦ ପଢ଼ିବାର ଅଧିକାର କାଢ଼ି ନିଆଯାଇ ତା'କୁ ଶୂଦ୍ର ସହିତ ସମାନ କରି ଦିଆଗଲା । ମନୁଙ୍କ ବେଳକୁ ସ୍ତ୍ରୀମାନଙ୍କର ସାମାଜିକ ଅଧଃପତନ ଆରମ୍ଭ ହେଲାଣି । ତେଣୁ ମନୁସଂହିତାର ଛନ୍ଦେ ଛନ୍ଦେ ଆମେ ସ୍ତ୍ରୀସମାଜର ଏକ ଅନନୁକୂଳ ଭାବମୂର୍ତ୍ତି ଦେଖିବାକୁ ପାଇଥାଉଁ । ଅତଏବ, ଏହିସବୁ ଆଲୋଚନାରୁ ଆମକୁ ବିଶ୍ୱାସ କରିବାକୁ ହେବ ଯେ ବୋଧହୁଏ, ବୈଦିକ କାଳରେ ବିଧବା-ବିବାହ ଚାଲୁଥିଲା ।

ଆଉ ଗୋଟିଏ ବହୁ ବିତର୍କିତ ବିଷୟ ହେଲା ସତୀଦାହ ପ୍ରଥା । ବର୍ତ୍ତମାନ ପ୍ରଶ୍ନ ଉଠୁଛି 'ସତୀଦାହ' ପ୍ରଥା ବୈଦିକ କାଳରେ ଥିଲା କି ନାହିଁ । ଆମେ ସମସ୍ତେ ଜାଣୁ ଯେ ଭାରତରେ ବହୁ କାଳ ଧରି ଏ ପ୍ରଥା ଚାଲି ଆସିଥିଲା ଏବଂ ବ୍ରିଟିଶ୍ ଶାସନ ସମୟରେ ଲର୍ଡ ଉଇଲିଅମ୍ ବେଣ୍ଟିକ୍ ଏହାକୁ ଉଚ୍ଛେଦ କରିଥିଲେ । ଏବେ ନିକଟରେ ରାଜସ୍ଥାନରେ ଘଟିଥିବା ଏକ 'ସତୀଦାହ' ଘଟଣା ନେଇ ତୁମୁଳ ବାଦବିସମ୍ବାଦ ଓ ତର୍କ-ବିତର୍କର ସୃଷ୍ଟି ହୋଇଛି । କେତେକ ବିଦ୍ୱାନ୍ ଏହାକୁ ବେଦ-ଭିତ୍ତିକ କହୁଥିଲା ବେଳେ ଆଉ କେତେକ ବିଦ୍ୱାନ୍ ଏହାକୁ ବେଦବିରୋଧୀ ବୋଲି କହୁଛନ୍ତି ଏବଂ ବେଦରେ ଏହାର ଲେଶମାତ୍ର ସଂକେତ ନାହିଁ ବୋଲି ଯୁକ୍ତି କରୁଛନ୍ତି । ପୂର୍ବରୁ ଆମେ ବିଧବାମାନଙ୍କ ସଂପର୍କରେ ଯେଉଁ କେତେକ ବୈଦିକ ମନ୍ତ୍ରର ଅବତାରଣା କରିଛୁ, ତାହା ଅନୁଧ୍ୟାନ କଲେ ସ୍ପଷ୍ଟ ଭାବରେ ଜଣାପଡ଼ିବ ଯେ ପତିମାନଙ୍କ ମୃତ୍ୟୁ ପରେ ସ୍ତ୍ରୀମାନଙ୍କୁ 'ଅବିଧବା' ଭାବରେ ଜୀବନ କଟାଇବା ପାଇଁ କୁହାଯାଇଛି । ବେଦ-ମନ୍ତ୍ରରେ ବ୍ୟବହୃତ ହୋଇଥିବା ଏହି 'ଅବିଧବା' ଶବ୍ଦଟି ଅତି ତାତ୍ପର୍ଯ୍ୟପୂର୍ଣ୍ଣ । ଯଦି ବିଧବାମାନେ ଏଭଳି ଜୀବନ ଯାପନ କରୁଥିଲେ, ତେବେ ସେମାନଙ୍କର ପତିମାନଙ୍କ ଚିତାରେ ଆତ୍ମୋତ୍ସର୍ଗ କରିବାର ଅବକାଶ ଆଉ ଥିଲା ବା କେଉଁଠି ? ବେଦରେ କୌଣସି ସ୍ଥାନରେ ସ୍ତ୍ରୀ ସ୍ୱାମୀଙ୍କ ଚିତାଗ୍ନିରେ ଝାସ ଦେବା କଥାର ଉଲ୍ଲେଖ ନାହିଁ । ଅବଶ୍ୟ ମହାଭାରତରେ ମାଦ୍ରି ତାଙ୍କ ସ୍ୱାମୀ ପାଣ୍ଡୁଙ୍କ ଚିତାଗ୍ନିରେ ଝାସ ଦେବା କଥାର ଉଲ୍ଲେଖ ଅଛି । ସେ ଏହା କରିଥିଲେ ନିଜ ଇଚ୍ଛାରେ ; ସେଥିପାଇଁ କିଛି ବାଧ୍ୟବାଧକତା ନଥିଲା । ପୁଣି ମହାଭାରତର ଘଟଣାବଳୀର ଆବିର୍ଭାବ ତ ବେଦର ବହୁ ବର୍ଷ ପରେ । ଅତଏବ, ବେଦରେ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ମହାଭାରତବର୍ଣ୍ଣିତ ଏହି ଘଟଣାକୁ ବେଦସମର୍ଥିତ ବୋଲି କହିହେବ ନାହିଁ । ଋଗ୍‌ବେଦର ଗୋଟିଏ ମନ୍ତ୍ରକୁ (୧୦।୧୮।୮) ନେଇ ଅନେକ ପଣ୍ଡିତ ବହୁ ବିତର୍କ କରିଥାନ୍ତି ଏବଂ ଏହାର ଭିତ୍ତିରେ

ସତୀଦାହ ପ୍ରଥାର ବେଦ-ମୌଳିକତାକୁ ପ୍ରମାଣ କରିବାର ଚେଷ୍ଟା କରିଥାନ୍ତି । ଏହି ମନ୍ତ୍ର-ନିର୍ଦ୍ଦିଷ୍ଟ ପ୍ରଥା ଅନୁସାରେ ମୃତପତିଙ୍କ ଚିତା ଉପରେ ତାଙ୍କ ବିଧବାକୁ ପ୍ରଥମେ ଶୁଆଇ ଦିଆ ଯାଇଥାଏ ଏବଂ ତା'ପରେ ତାଙ୍କୁ ଚିତାରୁ ଅବତରଣ କରାଯାଇଥାଏ । ଏହା ଘଟିଥାଏ ଚିତାରେ ଅଗ୍ନି-ସଂଯୋଗ କରିବା ପୂର୍ବରୁ । ଏହାକୁ କେତେ କେହି ସତୀଦାହ ପ୍ରଥାର ସୂଚକ ବୋଲି କହିଥାନ୍ତି । କିନ୍ତୁ ଏ ଧାରଣା ଅଯୌକ୍ତିକ ଏବଂ ଭ୍ରମାତ୍ମକ । ପ୍ରଥମତଃ ଯଦି ବିଧବାଙ୍କୁ ଚିତାଗ୍ନିରେ ଦାହ କରିବାର କଥା, ତେବେ ତାଙ୍କୁ ପତିଙ୍କ ଚିତାରେ ଅଗ୍ନି-ସଂଯୋଗ ପୂର୍ବରୁ ତହିଁରୁ ଅବତରଣ କରାଇ ଦିଆଯାଏ କାହିଁକି ? ଦ୍ୱିତୀୟତଃ ପତିଙ୍କ ସହିତ ଶେଷ ଦେଖା ପାଇବା ପାଇଁ ଏବଂ ତାଙ୍କ ସହିତ ଶେଷ ଶୟନ କରିବା ପାଇଁ ସ୍ତ୍ରୀଙ୍କୁ ଏହା ଦ୍ୱାରା ଏକ ସୁଯୋଗ ଦିଆ ଯାଉଥିବାର ସମ୍ଭାବନା ଅଧିକ । ତୃତୀୟତଃ ବିଧବାଙ୍କୁ ମଶାଣି ଭୂଇଁରୁ ବେଶଭୂଷା ହୋଇ ଫେରି ଆସି ଅବିଧବା ରୂପରେ ଚଳିବା ପାଇଁ ଯେଉଁ ଉପଦେଶ ଦିଆ ଯାଉଥିଲା, ତାହା ସତୀଦାହ ପ୍ରଥାର ମୌଳିକ ବିରୋଧୀ । ଆପ୍ତେ ମଧ୍ୟ ଠିକ୍ ଏହି ମତ ଦିଅନ୍ତି ଏବଂ କୁହନ୍ତି ;

> "Since the Dharma-Sutras treat the widow's right to property, the possibility of the general prevalence of Sati is ruled out."(୫୪)

ନେହେରୁଙ୍କ ମତ ମଧ୍ୟ ଅନୁରୂପ । ତାଙ୍କ ମତରେ ସତୀଦାହ-ପ୍ରଥା ପ୍ରାଚୀନ ଭାରତୀୟ ପରଂପରା ଦ୍ୱାରା ଆଦୌ ସମର୍ଥିତ ନୁହେଁ । ଏହା ଭାରତ ଭୂମିକୁ ବାହାରୁ ଆସିଛି । ତାଙ୍କ ଭାଷାରେ :

> "Probably the practice was brought to India by the Scyth-Tartars, among whom the custom prevailed of vassals and liegemen killing themselves on the death of their lord." (୫୪-କ)

ରାଧାକୃଷ୍ଣନ୍‌ଙ୍କ ମତ ମଧ୍ୟ ଏ ବିଷୟରେ ଖୁବ୍ ସ୍ପଷ୍ଟ । ସେ କୁହନ୍ତି :

> "Regarding the practice of Sati, or self-immolation, there is no direct reference to it in the Vedic literature. Grihya Sutras, which describe in detail important ceremonies of domestic life, including the cremation ceremony, are silent about it." (୫୪-ଖ)

ଋଗ୍‌ବେଦର ପରବର୍ତ୍ତୀ ବ୍ୟାଖ୍ୟାକାରମାନେ ଗୋଟିଏ ଋକ୍‌ମନ୍ତ୍ରର (୧୦।୧୮।୭) କଦର୍ଥ କରି ଏଥିରେ ସତୀଦାହ-ପ୍ରଥାର ବୀଜ ନିହିତ ଅଛି କହିଥାନ୍ତି । ଉଦ୍ଧୃତ ମନ୍ତ୍ରଟି ହେଲା :

"ଇମା ନାରୀରବିଧବାଃ ସୁପତ୍ନୀରଞ୍ଜନେନ ସର୍ପିଷା ସଂବିଶନ୍ତୁ
ଅନଶ୍ରବୋ ଽନମୀବାଃ ସୁରତ୍ନା ଆରୋହନ୍ତୁ ଜନୟୋ ଯୋନିଂ ଅଗ୍ରେ ।"

ଅର୍ଥାତ୍‌ ଏହି ଅବିଧବା ନାରୀମାନେ, ଯେଉଁମାନଙ୍କର ସୁନ୍ଦର ସ୍ୱାମୀ ଅଛନ୍ତି, ସେମାନେ ସେମାନଙ୍କ ଆଖିରେ କଜଳ ଲଗାଇ ପ୍ରବେଶ କରନ୍ତୁ; ବିନା ଲୋତକରେ, ବିନା ରୋଗରେ ଏବଂ ଅଳଙ୍କାର ପିନ୍ଧିରେ ଭରି ହୋଇ ସେମାନେ ଆଗ ଘରକୁ ଯାଆନ୍ତୁ ।" ଏଠାରେ ବ୍ୟବହୃତ 'ଅଗ୍ରେ' ଶବ୍ଦଟି ସ୍ଥାନରେ ସ୍ୱାର୍ଥାନ୍ୱେଷୀ ବ୍ୟାଖ୍ୟାକାରମାନେ 'ଅଗ୍ନେଃ' ବୋଲି ରଖି ଏହାର ଅର୍ଥ ଅଗ୍ନି ଗୃହକୁ ପ୍ରବେଶ କରନ୍ତୁ ବୋଲି ବାହାର କଲେ । ଏହାର ପ୍ରଭାବ ଏ ପର୍ଯ୍ୟନ୍ତ ମଧ୍ୟ କେତେକ ପଣ୍ଡିତଙ୍କ ଉପରେ ପଡ଼ିଛି ଏବଂ ସେମାନେ ସତୀଦାହ ପ୍ରଥାକୁ ବେଦସମ୍ମତ ବୋଲି କୁହନ୍ତି । ଏହା କିନ୍ତୁ ନିଶ୍ଚିତ ଭାବରେ ଭ୍ରମାତ୍ମକ । ଏ ସମ୍ପର୍କରେ ଆଉ ଜଣେ ସମାଲୋଚକଙ୍କ ନିମ୍ନୋକ୍ତ ମତ ଉଦ୍ଧାର କରାଯାଇପାରେ :

"ଏଭଳି ପରିପ୍ରେକ୍ଷୀରେ ଧର୍ମ ନାମରେ ତଥାକଥିତ ସ୍ୱର୍ଗପ୍ରାପ୍ତି ଭଳି ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ନାରୀମାନଙ୍କୁ ଅଗ୍ନିରେ ପୋଡ଼ି ହତ୍ୟା କରିବା ମୂର୍ଖତା ଛଡ଼ା ଅନ୍ୟ କିଛି ନୁହେଁ । ଏହି ବେଦବିରୋଧୀ ତଥା ମାନବିକତାବିରୋଧୀ କୁସଂସ୍କାରକୁ ସମର୍ଥନ କରୁଥିବା ଧର୍ମଧ୍ୱଜୀ ପଣ୍ଡିତମାନେ ମହାମୂର୍ଖ ନରହନ୍ତା ଭାବରେ ଦଣ୍ଡିତ ହେବା ଆବଶ୍ୟକ । ପୁଣି ବିଧବା ପାଇଁ ବିଭିନ୍ନ ଶାସ୍ତ୍ରୀୟ ପନ୍ଥା ଅନୁମୋଦିତ ହୋଇଥିବା ବେଳେ ଏ ଯୁଗର ସତୀଦାହ ପ୍ରଥା ସର୍ବଥା ଅନାବଶ୍ୟକ ।" (୫୫)

ଉପରୋକ୍ତ ଆଲୋଚନାରୁ ଏହି ସତ୍ୟ ଉପଲବ୍‌ଧ ହେବ ଯେ ବୈଦିକ ଯୁଗରେ ସତୀଦାହ ପ୍ରଥା ପ୍ରଚଳିତ ନଥିଲା ।

ଆଉ ଗୋଟିଏ ପ୍ରଧାନ ବିଷୟ ହେଲା ଦାୟ ବା ଉତ୍ତରାଧିକାର ସମ୍ପର୍କରେ । ବୈଦିକ କାଳରେ ଝିଅମାନଙ୍କର ସମ୍ପତ୍ତିରେ ଅଧିକାର ଥିଲା କି ନାହିଁ, ଏହା ଏକ କୌତୂହଳ-ପୂର୍ଣ୍ଣ ପ୍ରଶ୍ନ । ପୂର୍ବରୁ କୁହାଯାଇଛି ବୈଦିକ ସମାଜ ଥିଲା ପୁରୁଷ ପ୍ରଧାନ । ବାପାମାଆ ପୁଅଟିଏ ଜନ୍ମ ହେବା ଚାହୁଁଥିଲେ ; ଝିଅଟିଏ କିନ୍ତୁ ନୁହେଁ । ଝିଅ ଜନ୍ମ ହେଲେ ସେମାନେ

ଦୁଃଖିତ ହେଉଥିଲେ ବୋଲି ଅନେକସ୍ଥ ବେଦରେ ବର୍ଣ୍ଣିତ । ଝିଅ ବାହା ହୋଇ ବର ଘରକୁ ଚାଲି ଯାଉଥିଲା । ତେଣୁ ବାପାଙ୍କ ସମ୍ପତ୍ତିରେ ତା'ର ଉତ୍ତରାଧିକାର ପ୍ରବୃତ୍ତି ନଥିଲା । ସେ ବିବାହ ପରେ ହେଉଥିଲା ସ୍ୱାମୀଙ୍କ ସମ୍ପତ୍ତିର ଅଧିକାରିଣୀ । କିନ୍ତୁ ତା'ର ବିବାହ ନ ହେବା ପର୍ଯ୍ୟନ୍ତ ସେ ବାପାମାଆଙ୍କ ପାଖରେ ରହୁଥିଲା ଏବଂ ବାପାମାଆ ନଥିଲେ ଭାଇଙ୍କ ପାଖରେ ରହୁଥିଲା । ସେ ଆଜୀବନ କୁମାରୀ ହୋଇ ରହିବାକୁ ଚାହିଁଲେ ଭାଇଙ୍କ ପାଖରେ ରହି ପାରୁଥିଲା । ବାପାଙ୍କ ସମ୍ପତ୍ତିରୁ ଭରଣପୋଷଣ ହୋଇ ପାରିବାର ଅଧିକାର ତା'ର ଥିଲା । ତୈତ୍ତିରୀୟ ସଂହିତା (୩।୧।୯।୪) ଅନୁସାରେ ମନୁ ନିଜ ସମ୍ପତ୍ତିକୁ ପୁଅମାନଙ୍କ ମଧ୍ୟରେ ହିଁ ବାଣ୍ଟି ଦେଇଥିଲେ । ଝିଅମାନେ ସେଥିରୁ କିଛି ଅଂଶ ପାଇ ନଥିଲେ । ଐତରେୟ ବ୍ରାହ୍ମଣ (୫।୧୪) ମଧ୍ୟ ଏହି ମତକୁ ସମର୍ଥନ କରିଥାଏ । ଅଥର୍ବ ବେଦରେ (୩।୩୧।୩) 'ତାନୁ' ବୋଲି ଜଣେ ବ୍ୟକ୍ତିଙ୍କ ନାମ ଉଲ୍ଲେଖ ଅଛି ଯେ କି ପିତାଙ୍କ ମୃତ୍ୟୁ ପରେ ତାଙ୍କ ଭଗିନୀ 'ଜାମି'ଙ୍କୁ ପୈତୃକ ସମ୍ପତ୍ତିରୁ କିଛି ଭାଗ ଦେଇ ନଥିଲେ । ଏହି ସବୁ ଆଲୋଚନାରୁ ପ୍ରତୀତ ହେବ ଯେ ବୈଦିକ କାଳରେ ସ୍ତ୍ରୀମାନେ ପୈତୃକ ସମ୍ପତ୍ତିରୁ ଉତ୍ତରାଧିକାରିଣୀ ଭାବରେ କିଛି ହେଲେ ଅଂଶ ପାଇ ପାରୁ ନଥିଲେ । ରାଧାକୃଷ୍ଣନ୍ କିନ୍ତୁ ଏଥିରେ ଏକମତ ନୁହନ୍ତି । ତାଙ୍କ ମତରେ :

> "Women had a share in the property of the father and sometimes allowed to remain unmarried with their parents and brothers." (୫୫-କ)

ବାପ ଘରେ ଅବିବାହିତା ଅବସ୍ଥାରେ ଯେଉଁ ଝିଅ ବୃଦ୍ଧା ହେବା ପର୍ଯ୍ୟନ୍ତ ରହୁଥିଲା ଋଗ୍‌ବେଦରେ (୧।୧୧୭।୭) ତା'କୁ 'ଅମାଜୁର' ବୋଲି କୁହାଯାଇଛି । ପିତାଙ୍କ ମୃତ୍ୟୁ ପରେ ଏଭଳି ଝିଅ ନିଶ୍ଚିତ ଭାବରେ ପିତୃସମ୍ପତ୍ତିକୁ ଭୋଗ ଦଖଲ କରୁଥିବ । ଏ ସମ୍ପର୍କରେ ଥିବା ବିଭିନ୍ନ ବୈଦିକ ପଙ୍‌କ୍ତିମାନଙ୍କୁ ବିଚାରକୁ ନେଲେ ଆମେ ଏହି ନିଷ୍କର୍ଷରେ ପହଞ୍ଚିବା ;

(କ) ସ୍ତ୍ରୀମାନେ ପୈତୃକ ସମ୍ପତ୍ତିର ଉତ୍ତରାଧିକାରିଣୀ ନଥିଲେ ।

(ଖ) ପିତୃଗୃହରେ ଥିବା ପର୍ଯ୍ୟନ୍ତ ସେମାନେ ଏହି ସମ୍ପତ୍ତିକୁ ଭୋଗ ଦଖଲ କରୁଥିଲେ ; ଏବଂ

(ଗ) ଏହି ସମ୍ପତ୍ତି ଉପରେ ସେମାନଙ୍କର କେବଳ ଭରଣପୋଷଣର ଅଧିକାର ଥିଲା ।

ବୈଦିକ ସମାଜରେ ମାଆଙ୍କର ସ୍ଥାନ ଖୁବ୍ ଉଚ୍ଚରେ ଥିଲା । ମାତୃତ୍ୱର ଅଧିକାରିଣୀ ହେବା ସ୍ତ୍ରୀ ପକ୍ଷରେ ଥିଲା ଏକ ଗୌରବାବହ ଘଟଣା । ବାସ୍ତବିକ ପତ୍ନୀତ୍ୱର

ଚରମ ବିକାଶ ଘଟିଥିଲା ମାତୃତ୍ୱରେ । ଆଜିକାଲି ଭଲ ପରିବାରରେ ଓ ସମାଜରେ ମାଆଙ୍କୁ ସେତେବେଳେ ଖୁବ୍ ସମ୍ମାନ ଦିଆଯାଉଥିଲା । ଅନ୍ୟ ପକ୍ଷରେ, ଯେଉଁ ସ୍ତ୍ରୀ ଥିଲା ସନ୍ତାନହୀନା ସେ ସର୍ବଥା ସମାଜରେ ଓ ପରିବାରରେ ନିନ୍ଦିତା ହେଉଥିଲା । ଏ ସମ୍ପର୍କରେ କ୍ଲାରିସି ବ୍ୟାଡେର (Clarisse Bader) ଯାହା କହିଛନ୍ତି, ତାହା ଏଠାରେ ପ୍ରଣିଧାନଯୋଗ୍ୟ :

> "Maternity alone completed wife-hood and a mother was an object of veneration." (୫୭)

ମାଆଙ୍କୁ ସନ୍ତାନ ସମେତ ପରିବାରର ସଭ୍ୟମାନଙ୍କୁ ବାପାଙ୍କର ଯାହା ଯାହା ଅବଦାନ, ତାହା ବାଣ୍ଟିବାକୁ ପଡୁଥିଲା । ପରିବାରର ସଭ୍ୟମାନଙ୍କର ଯାହା ପ୍ରାଥମିକ ଆବଶ୍ୟକତା ଯଥା, ଖାଦ୍ୟ, ବସ୍ତ୍ର ଇତ୍ୟାଦି, ତାହାର ବଣ୍ଟନ-ଦାୟିତ୍ୱ ମାଆ ବହନ କରୁଥିଲେ । ମାଆଙ୍କର ଏହି ଭୂମିକା ପ୍ରତି ଗୁରୁତ୍ୱ ଆରୋପ କରି ଭାରତତତ୍ତ୍ୱବିତ୍ ବର୍ଣ୍ଣୌଫ୍ (Burnouf) କହିଛନ୍ତି :

> "The mother appears thus for her principal part to have been the distributor of blessings of every sort, sent by the gods or won by the father, such as, nourishment, clothing, and in general, every thing that could contribute to satisfy the first needs of the growing society." (୫୭)

ମାତୃ ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥରୁ ମଧ୍ୟ ଆମେ ମାଆ ନାମର ମହନୀୟତା ବୁଝି-ପାରିବା । 'ମି' ଧାତୁ ହିଂସାର୍ଥବୋଧକ । ଏଥିରୁ ଯେ ତ୍ରାଣ କରନ୍ତି, ସେ ହେଲେ ମାତୃ । ଏହାର ତାତ୍ପର୍ଯ୍ୟ ହେଲା ମାଆ ସବୁବେଳେ ସନ୍ତାନମାନଙ୍କୁ ହିଂସାରୁ ତ୍ରାଣ କରିଥାନ୍ତି । କୁକୁଡାଟି ବିପଦର ଆଶଙ୍କା ଦେଖିଲେ କିପରି ତାହାର ଶାବକଗୁଡ଼ିକୁ ନିଜ ଡେଣା ତଳେ ଘୋଡ଼ାଇ ରଖେ ତାହା ସମସ୍ତେ ଜାଣନ୍ତି । ପଶୁ ଜଗତରେ ମଧ୍ୟ ନିଜ ସନ୍ତାନକୁ ରକ୍ଷା କରିବା ପାଇଁ ମାଆ ଖୁବ୍ ହିଂସ୍ର ହୋଇ ଉଠିଥାଏ । ରାସ୍ତାରେ ବାପାମାଆ ପିଲା ସହିତ ଚାଲି ଚାଲି ଯାଉଛନ୍ତି । ଏହି ସମୟରେ ସେମାନଙ୍କ ପାଖ ଦେଇ ଖୁବ୍ ଜୋର୍‌ରେ ମଟର ଗାଡ଼ିଟିଏ ଚାଲିଗଲା । ସହଜାତ ପ୍ରବୃତ୍ତି ବଳରେ ମାଆ ଚ୍ଛୁଏଁ ଚ୍ଛୁଏଁ ପିଲାଟିକୁ ରକ୍ଷା କରିବା ପାଇଁ ନିଜ ପାଖକୁ ଟାଣି ଆଣିବେ । ବୈଦିକ ଆର୍ଯ୍ୟମାନେ ମାଆଙ୍କର ଏହି ସହଜାତ

ପ୍ରକୃତି ଓ ପ୍ରକୃତିର ପରିଚୟ ପାଇଥିଲେ । ତେଣୁ ସେମାନେ ତାଙ୍କୁ ସମ୍ମାନରେ 'ମାତୃ' ବୋଲି ଡାକି ଦେଉଥିଲେ । ଋଗ୍‌ବେଦରେ (୧୦।୧୬୯) ଇନ୍ଦ୍ର ନିଜ ଶରୀରରୁ ତାଙ୍କ ବାପାମାଆଙ୍କୁ ଜନ୍ମ କରିଥିଲେ ବୋଲି କୁହାଯାଇଛି । ପୁଅ କ'ଣ କେବେ ବାପାମାଆଙ୍କୁ ଜନ୍ମ କରିପାରେ ? ଏହା ତେଣୁ ଏକ ପ୍ରତୀକାତ୍ମକ ବା ସାଂକେତିକ ଅର୍ଥରେ ବ୍ୟବହୃତ । ବୈଦିକ ସମାଜରେ ପୁଅ ଓ ବାପା ମାଆଙ୍କର ସମ୍ପର୍କ ଯାହା ଥିଲା, ତାହାର ପ୍ରତିଛବି ହିଁ ଏଥିରେ ପଡ଼ିଛି । ପୁଅ ନିଜ ଶରୀରରୁ ଜାତ ସନ୍ତାନ ଭଳି ବାପାମାଆଙ୍କୁ ସ୍ନେହ ଓ ଶ୍ରଦ୍ଧା କରୁଥିଲା । ବାସ୍ତବିକ, ବାପାମାଆ ବୁଢ଼ା ହୋଇଗଲେ କିମ୍ବା ରୋଗାକ୍ରାନ୍ତ ହେଲେ ନିଜ ପୁଅର ଆଦର, ଶ୍ରଦ୍ଧା, ସେବା, ଶୁଶ୍ରୂଷା ଲୋଡ଼ିଥାନ୍ତି । ତାହା ସେମାନଙ୍କୁ ସାନ୍ତ୍ୱନା ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ଦୁଃଖ ଲାଘବ କରିଥାଏ । ଅତଏବ, ବୈଦିକ ପୁତ୍ର ସନ୍ତାନମାନେ ସେମାନଙ୍କ ମାତାପିତାଙ୍କୁ ସମୁଚିତ ସ୍ନେହ ଓ ଶ୍ରଦ୍ଧା କରୁଥିବାର ଯଥେଷ୍ଟ ପ୍ରମାଣ ଆମେ ପାଇଥାଉଁ । ଆଜି ମଧ୍ୟ ଯେତେବେଳେ ବାପାମାଆଙ୍କ କଥା ପଡ଼େ, ସେତେବେଳେ ମାଆଙ୍କୁ ପ୍ରାଥମିକତା ଦେଇ ତାଙ୍କ ନାଁ। ଆଗ ଉଚ୍ଚାରଣ କରାଯାଇଥାଏ । ଉଦାହରଣ ସ୍ୱରୂପ ଗୁରୁକୁଳ ଆଶ୍ରମରେ ଶିଷ୍ୟଙ୍କୁ କୁହାଯାଇଥାଏ 'ମାତୃଦେବୋ ଭବ ; ପିତୃଦେବୋ ଭବ' ଇତ୍ୟାଦି । ଏହାର ଅର୍ଥ ହେଲା, 'ମାଆଙ୍କୁ ଦେବତା ଭଳି ପୂଜା କର ; ବାପାଙ୍କୁ ଦେବତା ଭଳି ପୂଜା କର' ଇତ୍ୟାଦି । ମାଆଙ୍କ ନାଁ। ଏଠାରେ ଆଗ ନିଆ ଯାଇଥିବାରୁ ତାଙ୍କ ପ୍ରତି ପ୍ରାଥମିକତା ଆରୋପ କରାଯାଇଥିବାର ମନେହୁଏ । ଜନନୀ ଓ ଜନ୍ମଭୂମି ସ୍ୱର୍ଗଠାରୁ ବଡ଼ (ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ) ବୋଲି ଯେଉଁ ପ୍ରାଚୀନ ପରମ୍ପରା ଭାରତୀୟ ଜନମାନସକୁ ଆଚ୍ଛନ୍ନ କରି ରଖିଛି ଓ ଭାରତୀୟ ସଂସ୍କୃତିକୁ ଦିଗ୍‌ଦର୍ଶନ ଦେଇଆସିଛି, ତାହା ଯେ ବେଦ-ଭିତ୍ତିକ, ଏଥିରେ ତିଳେ ମାତ୍ର ସନ୍ଦେହର ଅବକାଶ ନାହିଁ । ଏଥିରୁ ଅନୁମିତ ହେବ ଯେ ବୈଦିକ ମାତାଙ୍କ ଆସନ ସମାଜରେ ଖୁବ୍ ଉଚ୍ଚରେ ଥିଲା ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ଜଣାଯିବ ଯେ ବୈଦିକ ଯୁଗରେ ନାରୀମାନଙ୍କର ଆସନ ସମାଜରେ ଖୁବ୍ ଉଚ୍ଚରେ ଥିଲା ; ସେମାନେ ପୁରୁଷମାନଙ୍କ ଭଳି ଉପନୟନ ମଧ୍ୟ ଦେଇ ଗତି କରୁଥିଲେ ; ବେଦ ପଢ଼ୁଥିଲେ ଏବଂ ପୁରୁଷମାନଙ୍କର ସମକକ୍ଷ ଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ସେମାନେ ଏତେ ତଳକୁ ଖସିପଡ଼ିଲେ କାହିଁକି ? କେଉଁ ପରିସ୍ଥିତିରେ ସେମାନଙ୍କୁ ବେଦାଧ୍ୟୟନରୁ ବଞ୍ଚିତ କରାଗଲା ? ଏହା ନିଶ୍ଚୟ କୌତୂହଳୋଦ୍ଦୀପକ ପ୍ରଶ୍ନ । ମନୁ-ସ୍ମୃତିରେ ନାରୀମାନଙ୍କୁ ନିମ୍ନ ଦୃଷ୍ଟିରେ ଦେଖା ଯିବାକୁ ଆରମ୍ଭ ହେଲାଣି ବୋଲି କୁହାଯାଇଛି । ମନୁଙ୍କ ନାମ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ) ଉଲ୍ଲିଖିତ । ଅତଏବ, ମନୁ ହେଉଛନ୍ତି ଖ୍ରୀ. ପୂ: ୪ର୍ଥ ଶତାବ୍ଦୀର ପୂର୍ବବର୍ତ୍ତୀ । ଏହାଙ୍କର ସମୟ ଖ୍ରୀ.ପୂ. ୯ମ ଶତାବ୍ଦୀ (ଖ୍ରୀ. ପୂ. ୮୩୨) ବୋଲି କେହି କେହି କହିଥାନ୍ତି । (୫୮) ଅତଏବ ଖ୍ରୀ.ପୂ.

୯ମ ଶତାବ୍ଦୀରୁ ହିଁ ସ୍ତ୍ରୀମାନଙ୍କର ସାମାଜିକ ସ୍ଥିତି ତଳକୁ ତଳକୁ ଯିବାକୁ ଆରମ୍ଭ କଲାଣି । କେତେକଙ୍କ ମତରେ ଶକ, ହୁନ, କୁଷାଣ ଆଦି ବୈଦେଶିକ ଜାତିମାନେ ଭାରତକୁ ଆସିବା ଫଳରେ ସେମାନଙ୍କର ପ୍ରଭାବ ଭାରତୀୟମାନଙ୍କ ଉପରେ ପଡ଼ିଲା ଏବଂ ଭାରତୀୟମାନେ ନାରୀ ସମ୍ପର୍କରେ ସେମାନଙ୍କର ଧାରଣାକୁ ବଦଳାଇବାକୁ ଲାଗିଲେ । କିନ୍ତୁ ଏହି ଜାତିମାନେ ତ କମା ଖ୍ରୀ. ପୂ. ପ୍ରଥମ ଶତାବ୍ଦୀରେ ଭାରତକୁ ଆସିଥିଲେ ଏବଂ ଏମାନେ ଉତ୍ତର-ପଶ୍ଚିମ ଭାରତର କେତେକ ସୀମାବଦ୍ଧ ଅଂଶରେ ମାତ୍ର ଆଧିପତ୍ୟ ବିସ୍ତାର କରିଥିଲେ । ଏମାନଙ୍କ ପୂର୍ବରୁ ଗ୍ରୀକ୍‌ମାନେ ଭାରତକୁ ଅବଶ୍ୟ ଆସିଥିଲେ ଖ୍ରୀ. ପୂ. ୪ର୍ଥ ଶତାବ୍ଦୀରେ । ଅତଏବ, ବୈଦେଶିକମାନଙ୍କ ପ୍ରଭାବରେ ସାରା ଦେଶରେ ଭାରତୀୟମାନେ ନାରୀ-ସମାଜକୁ ଏକ ନୂତନ ଦୃଷ୍ଟିକୋଣରେ ଦେଖିବାକୁ ଆରମ୍ଭ କରିଥିବା କଥା ବିଶ୍ୱାସଯୋଗ୍ୟ ହେଉନାହିଁ । ଏହା ଛଡ଼ା ନାରୀ-ସମାଜର ପତନ ତ ଆହୁରି ପୂର୍ବରୁ ଖ୍ରୀ. ପୂ. ୯ମ ଶତାବ୍ଦୀରୁ ହେବାକୁ ଆରମ୍ଭ କଲାଣି । ଅତଏବ, ଏହି କାରଣ ଯୁକ୍ତିଯୁକ୍ତ ଭଳି ମନେ ହେଉ ନାହିଁ ।

ଏହାର ପ୍ରକୃତ କାରଣ ହେଉଛି, ସେ ସମୟର ପରିବର୍ତ୍ତିତ ପରିସ୍ଥିତି । କାଳକ୍ରମେ ଆର୍ଯ୍ୟ-ସଂସ୍କୃତି ଓ ଦାସ-ସଂସ୍କୃତି ବା ଆର୍ଯ୍ୟେତର-ସଂସ୍କୃତିର ସମନ୍ୱୟ ଘଟିଲା ଏବଂ ଆର୍ଯ୍ୟମାନେ ଓ ଦାସମାନେ ଏକତ୍ର ସହାବସ୍ଥାନ ନୀତି ଅବଲମ୍ବନ କରି ରହିବାକୁ ଆରମ୍ଭ କଲେ । ଆର୍ଯ୍ୟମାନେ ଦାସ-ସଂପ୍ରଦାୟରୁ ଝିଅ ବାହା ହେଲେ । ଭୀମ ଓ ଅର୍ଜୁନ ଯଥାକ୍ରମେ ହିଡ଼ିମ୍ବା ଓ ଉଲୁପିଙ୍କୁ ବାହା ହୋଇଥିବା କଥା ଏହାର ନିଦର୍ଶନ । ଦାସ-ସ୍ତ୍ରୀ ପରିବାରକୁ ଆସିବା ପରେ ଯଜ୍ଞକାର୍ଯ୍ୟ କରିବାରେ ଅସୁବିଧା ହେଲା । ସେମାନେ ତ ବେଦ ପଢ଼ିନଥିଲେ ଏବଂ ଭଲ ଭାବରେ ସଂସ୍କୃତ ଉଚ୍ଚାରଣ କରିପାରୁ ନଥିଲେ । ତେଣୁ ସେମାନଙ୍କୁ ସ୍ୱାମୀମାନଙ୍କ ସାଥିରେ ବସି ଯଜ୍ଞରେ ଆହୁତି ଦେବାପାଇଁ ବୈଦିକ ସମାଜତତ୍ତ୍ୱବିତ୍‌ମାନେ ଅନୁମତି ଦେଲେ ନାହିଁ । ଯଜ୍ଞରେ ଆହୁତି ଦେବା ଏକ ମର୍ଯ୍ୟାଦାପୂର୍ଣ୍ଣ ଅଧିକାର । ସେମାନଙ୍କର ଆର୍ଯ୍ୟ ସପତ୍ନୀମାନେ ଏହା କରୁଥିବାର ଦେଖି ସେମାନେ ଈର୍ଷାନ୍ୱିତା ହେଲେ ଏବଂ ଯଜ୍ଞାହୁତି ଦେବା ପାଇଁ ନିଜ ନିଜ ସ୍ୱାମୀମାନଙ୍କ ଉପରେ ପ୍ରଭାବ ପକାଇଲେ । ଏହା ଫଳରେ କେତେକ ଦାସ-ରମଣୀ ଯଜ୍ଞରେ ଆହୁତି ଦେବାକୁ ସମର୍ଥ ହୋଇ ପାରିଲେ । ଏଥିରେ ନାନା ପ୍ରକାର ସାମାଜିକ ବିଭ୍ରାଟ ଦେଖାଗଲା । ଏହି ବିଭ୍ରାଟକୁ ପ୍ରତିହତ କରିବା ପାଇଁ ସମାଜତତ୍ତ୍ୱବିତ୍‌ମାନେ ନିୟମ କଲେ ଯେ ସ୍ତ୍ରୀମାନଙ୍କର ଏଣିକି ବେଦ ପଢ଼ିବା ଦରକାର ନାହିଁ । ଦାସ-ରମଣୀମାନଙ୍କ ସହିତ ସମାନ ହେବାକୁ ଯାଇ ଆର୍ଯ୍ୟ ରମଣୀମାନେ ବେଦାଧ୍ୟୟନରୁ ବଞ୍ଚିତ ହେଲେ । ତା'ଛଡ଼ା ଇତି ମଧ୍ୟରେ ଝିଅମାନଙ୍କର ବିବାହ ବୟସ ବାର ତେର ବର୍ଷକୁ ଖସି ଆସିଥିଲା । ଏତେ କମ୍ ବୟସରେ ବେଦ ପଢ଼ି ତାହାକୁ ଅଭ୍ୟସ୍ତ କରିବା ଝିଅମାନଙ୍କ ପକ୍ଷରେ ସମ୍ଭବ ନଥିଲା । ତେଣୁ ଏକ ପ୍ରକାର ବାଧ୍ୟବାଧକତାରେ ବି ସେମାନଙ୍କୁ ବେଦ ପଢ଼ାଗଲା ନାହିଁ । ଖାଲି ବିଧି ରକ୍ଷା କରିବା ପାଇଁ ସେମାନଙ୍କୁ ଉପନୟନ

ମଧ୍ୟ ଦେଇ ଗତି କରିବାକୁ ହେଲା । ମନୁ ସ୍ତ୍ରୀମାନଙ୍କ ପାଇଁ ଉପନୟନ-ବିଧି ଖଣ୍ଡିଲେ ମଧ୍ୟ ସେମାନଙ୍କୁ ବେଦ ପଢ଼ିବା ପାଇଁ ବାରଣ କଲେ । ମନୁସ୍ମୃତିର ବ୍ୟାଖ୍ୟାକାର ମେଧାତିଥି (ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀ) ଠିକ୍ ଏହି ମତ ଦିଅନ୍ତି । ଏହିପରି ବିଭିନ୍ନ କାରଣରୁ ସ୍ତ୍ରୀମାନଙ୍କର ସାମାଜିକ ସ୍ଥିତି କ୍ରମେ ହ୍ରାସ ପାଇବାକୁ ଲାଗିଲା । ପରବର୍ତ୍ତୀ କାଳରେ ସେମାନଙ୍କର ଅବସ୍ଥା ଯେତେ ତଳକୁ ଖସିଥାଉ ନା କାହିଁକି, ବୈଦିକ କାଳରେ ଯେ ସେମାନେ ବେଦ-ପାଠର ଅଧିକାରିଣୀ ଥିଲେ, ଏଥିରେ ସନ୍ଦେହ ନାହିଁ । ଏ ପ୍ରକାର ସ୍ଥିତିକୁ ଲକ୍ଷ୍ୟ କରି ବାଲଶାସ୍ତ୍ରୀ ହରିଦାସ ଯଥାର୍ଥରେ କହିଛନ୍ତି :

> "Whatever might have been the state of affairs in later periods, there is no doubt that the women were entitled to the ceremony of Upanayan and were eligible for admission to any Vedic school for study of the Vedas." (୫୧)

ଉପରୋକ୍ତ ଆଲୋଚନା ଦୃଷ୍ଟିରୁ ଆମେ ବୈଦିକ ବିବାହ ଓ ବୈଦିକ ସମାଜରେ ନାରୀର ସ୍ଥାନ ବିଷୟରେ ସମ୍ୟକ୍ ତଥ୍ୟ ପାଇପାରିବା । ଆଉ ମଧ୍ୟ ପରବର୍ତ୍ତୀ କାଳରେ କେଉଁ କାରଣରୁ ନାରୀର ସାମାଜିକ ସ୍ଥିତି ନିମ୍ନ ସ୍ତରକୁ ଖସି ଆସିଥିଲା ସେ ବିଷୟ ମଧ୍ୟ ଆମେ ବୁଝି ପାରିବା ।

## ଟିପ୍ପଣୀ

୧ । ଶତପଥ ବ୍ରାହ୍ମଣ, ୫।୧।୭।୧୦ ।

ଗୃହସ୍ଥଙ୍କ ପାଇଁ ଏହି ପାଞ୍ଚ ଯଜ୍ଞ ହେଲା ବ୍ରହ୍ମଯଜ୍ଞ, ଦେବଯଜ୍ଞ, ପିତୃଯଜ୍ଞ, ଭୂତଯଜ୍ଞ ଓ ନୃଯଜ୍ଞ । ଏହି ଯଜ୍ଞଗୁଡ଼ିକର ତାତ୍ପର୍ଯ୍ୟ ପାଇଁ ଦେଖନ୍ତୁ ଲେଖକଙ୍କର ଭାରତୀୟ ସଂସ୍କୃତି : ବୈଦିକ ପର୍ବ (୨ୟ ଭାଗ) : ୫ମ ପରିଚ୍ଛେଦ : ଟିପ୍ପଣୀ, ୧୦ ।

ପଞ୍ଚ ମହାଯଜ୍ଞର ଫଳ ଲାଗି ଆଉ ମଧ୍ୟ ଦେଖନ୍ତୁ ସ୍ୱାମୀ ଦୟାନନ୍ଦ ସରସ୍ୱତୀ : ସତ୍ୟାର୍ଥ ପ୍ରକାଶ (ପୂର୍ବାର୍ଦ୍ଧ) : ଓଡ଼ିଆ ଅନୁବାଦ : ଶ୍ରୀବତ୍ସ ପଣ୍ଡା : ପୃ ୯୮ ।

୧-କ । ପାଣିନି : ଅଷ୍ଟାଧ୍ୟାୟୀ, ୪।୧।୩୩ ।

୧-ଖ । The Cultural Heritage of India, Vol. I : "Vedic Society" : Article by A. S. Altekar : pp. 222-223.

୨ । A. L. Basham : The Wonder that was India : p. 166.

୩ । ଋଗ୍‌ବେଦ, ୧୦।୮୫।୩୬ ।

୩-କ । Balsastri Hardas : Glimpses of the Vedic Nation : p. 292.

୪ । P.L. Bhargava : India in the Vedic Age : p. 244.

୫ । ଶତପଥ ବ୍ରାହ୍ମଣ, ୫।୨।୧।୧୦ ।

୬ । ମନୁସ୍ମୃତି, ୩।୬୦ ।

୭ । ଋଗ୍‌ବେଦ, ୧୦।୮୫।୩୩ ।

୮ । ଋଗ୍‌ବେଦ, ୧୦।୮୫।୪୬ ।

୮-କ । History and Culture of the India People, Vol. I : "Social and Economic Conditions" : Article by V.M. Apte : p. 393.

୯ । Balsastri Hardas : Glimpses of the Vedic Nation : p. 299.

୧୦ । ଋଗ୍‌ବେଦ, ୫।୪।୧୦ ।

୧୧ । ଅଥର୍ବ ବେଦ, ୩।୩୦ ।

୧୧-କ । Clarisse Bader : Eng. trans. Mary E. R. Martin : Choukhamba Sanskrit Series (1964) : p 49.

୧୨ । The Cultural Heritage of India, Vol. I ; "Vedic Society" : Article by A.S. Altekar : p. 223.

୧୩ । ତୈତ୍ତିରୀୟ ସଂହିତା, ୬।୫।୮।୨ । ଆହୁରି ମଧ୍ୟ ଦେଖନ୍ତୁ ଶତପଥ ବ୍ରାହ୍ମଣ, ୫।୪।୨।୧୩ ।

୧୩-କ । The Cultural Heritage of India, Vol. I : "Vedic Culture" : Article by C. Kunhan Raja : p. 214.

୧୪ । ଋଗ୍‌ବେଦ, ୧୦।୮୫।୨୬ ।

୧୫ । ମୈତ୍ରାୟଣୀ ସଂହିତା, ୪।୭।୪ ।

୧୬ । The Cultural Heritage of India : "Vedic Society" Article by A. S. Altekar : p. 223. ସ୍ତ୍ରୀମାନେ ମୁକ୍ତ ଭାବରେ ସେମାନଙ୍କ ସ୍ୱାମୀମାନଙ୍କ ସହିତ ସଭାସମିତି, ଯାନଯାତ୍ରା ଆଦିରେ ଉପସ୍ଥିତ ହେଉଥିବା କଥା ଋଗ୍‌ବେଦରେ ଅନେକତ୍ର (୧।୪୮।୬ ; ୧।୧୨୪।୮

ଇତ୍ୟାଦି) ବର୍ଣ୍ଣିତ । କେଗିଙ୍କର (Kaegi) ମତ ମଧ୍ୟ ଅନୁରୂପ ।
ଦେଖନ୍ତୁ Kaegi : Rig-Veda : p. 19.

୧୭ । ଋଗ୍‌ବେଦ, ୧।୧୨୩।୧୧ ; ୭।୨।୫ ।

୧୮ । ଅଥର୍ବବେଦ, ୨୨ଶ କାଣ୍ଡ ।

୧୯ । History and Culture of the India People. Vol. I : "Social and Economic Conditions" : Article by V.M. Apte : p. 392.

୨୦ । ମନୁସ୍ମୃତି, ୪।୧୦ ।

୨୧ । A.C. Das : Rig-Vedic Culture : p. 252.

୨୨ । ଋଗ୍‌ବେଦ, ୧୦।୨୭।୧୨ ।

୨୩ । ଋଗ୍‌ବେଦ, ୧।୧୧୨।୧୯ ; ୧।୧୧୭।୧ ।

୨୪ । The Cultural Heritage of India, Vol I : "Vedic Society" : Article by A. S. Altekar : p. 223.

୨୪-କ । Rai Promath Nath Mullick Bahadur : The Mahabharata As It Was, Is and Ever Shall Be : Cosmo Publications (1989) : p 422.

୨୪-ଖ । Rai Promath Nath Mullick Bahadur : op. cit : p. 425.

୨୪-ଗ । ମନୁସ୍ମୃତିରେ ଏହି ଆଠ ପ୍ରକାର ବିବାହ ନିମ୍ନମତେ ବର୍ଣ୍ଣିତ ।

(କ) ବ୍ରାହ୍ମ ବିବାହ :

ଆଚ୍ଛାଦ୍ୟ ଚାର୍ଚ୍ଚୟିତ୍ୱା ଚ ଶ୍ରୁତଶୀଳବତେ ସ୍ୱୟମ୍
ଆହୂୟ ଦାନଂ କନ୍ୟାୟା ବ୍ରାହ୍ମୋ ଧର୍ମଃ ପ୍ରକୀର୍ତ୍ତିତଃ ॥

ଅର୍ଥାତ୍ ଯେଉଁଥିରେ ବିଦ୍ୱାନ ଓ ଶୀଳସଂପନ୍ନ ଯୁବକଙ୍କୁ ନିଜ ଘରକୁ ଆଦରରେ ନିମନ୍ତ୍ରଣ କରି ପିତା ନିଜ କନ୍ୟାକୁ ସୁନ୍ଦର ଲୁଗା ପିନ୍ଧାଇ ଦେଇ ଏବଂ ତାଙ୍କୁ ପୂଜା କରି ଦାନ ସ୍ୱରୂପ ଦେଇଥାନ୍ତି, ତାହା ହେଲା ବ୍ରାହ୍ମ ବିବାହ ।

(ଖ) ଦୈବ ବିବାହ :

ଯଜ୍ଞେ ତୁ ବିତତେ ସମ୍ୟଗୃତ୍ୱିଜେ କର୍ମ କୁର୍ବତେ ।
ଅଳଂକୃତ୍ୟ ସୁତାଦାନଂ ଦୈବଂ ଧର୍ମଂ ପ୍ରଚକ୍ଷତେ ॥

ଅର୍ଥାତ୍ ବିବାହ-ଯଜ୍ଞରେ ଶ୍ରୋତାର ସ୍ଥାନ ଗ୍ରହଣ କରୁଥିବା ପୁରୋହିତଙ୍କୁ ପିତା ଯେତେବେଳେ ନିଜ କନ୍ୟାକୁ ବସନଭୂଷଣ ପିନ୍ଧାଇ ଦେଇ ଦାନ ହିସାବରେ ଦିଅନ୍ତି, ସେତେବେଳେ ଏହି ବିବାହକୁ ଦୈବ ବିବାହ କୁହାଯାଇଥାଏ ।

(ଗ) ଆର୍ଷ ବିବାହ :

ଏକଂ ଗୋମିଥୁନଂ ଦ୍ୱେ ବା ବରାଦାଦାୟ ଧର୍ମତଃ ।
କନ୍ୟାପ୍ରଦାନଂ ବିଧିବଦାର୍ଷୋ ଧର୍ମଃ ସ ଉଚ୍ୟତେ ॥

ଅର୍ଥାତ୍ ଯେତେବେଳେ ଧାର୍ମିକ ମର୍ଯ୍ୟାଦା ରକ୍ଷା ଲାଗି ଝିଅର ବାପାମାଆ ବରଠାରୁ ଗୋଟିଏ ବା ଦୁଇ ହଳ ଗାଈ ବା ବଳଦ ଗ୍ରହଣ କରିବା ପରେ କନ୍ୟାଦାନ କରିଥାନ୍ତି, ସେହି ବିବାହକୁ କୁହାଯାଏ ଆର୍ଷ-ବିବାହ ।

(ଘ) ପ୍ରାଜାପତ୍ୟ ବିବାହ :

ସହୋଭୌ ଚରତାଂ ଧର୍ମମିତି ବାଚାନୁଭାଷ୍ୟ ଚ ।
କନ୍ୟାପ୍ରଦାନମଭ୍ୟର୍ଚ୍ୟ ପ୍ରାଜାପତ୍ୟୋ ବିଧିଃ ସ୍ମୃତଃ ॥

ଅର୍ଥାତ୍ 'ତୁମେ ଦୁହେଁ ଧର୍ମ ଆଚରଣ ପୂର୍ବକ ଉତ୍ତମ ସନ୍ତାନ ଜନ୍ମ କର', ବରକନ୍ୟାଙ୍କଠାରୁ ଏହି ସ୍ୱୀକୃତି ହାସଲ କରିବା ପରେ ଯେଉଁ କନ୍ୟାଦାନ କରାଯାଇଥାଏ, ତାହାକୁ ପ୍ରାଜାପତ୍ୟ ବିବାହର ବିଧି ବୋଲି କୁହାଯାଏ ।

(ଙ) ଆସୁର ବିବାହ :

ଜ୍ଞାତିଭ୍ୟୋ ଦ୍ରବିଣଂ ଦତ୍ତ୍ୱା କନ୍ୟାୟୈ ଚୈବ ଶକ୍ତିତଃ ।
କନ୍ୟାପ୍ରଦାନଂ ସ୍ୱାଚ୍ଛନ୍ଦ୍ୟାଦାସୁରଃ ଧର୍ମ ଉଚ୍ୟତେ ।

ଅର୍ଥାତ୍ ବିବାହ ହେବାକୁ ଚାହୁଁଥିବା ବ୍ୟକ୍ତି ଯଦି ନିଜ ଶକ୍ତି ଅନୁସାରେ କନ୍ୟାକୁ ଏବଂ ତା'ର ଜ୍ଞାତିଙ୍କୁ ବା ବାପା ମାଆଙ୍କୁ ଧନ ଦେଇ କନ୍ୟା ଗ୍ରହଣ କରିଥାଏ, ତେବେ ସେପ୍ରକାର ବିବାହକୁ ଆସୁର ବିବାହ ବୋଲି କୁହାଯାଏ ।

(ଚ) ଗାନ୍ଧର୍ବ ବିବାହ :

ଇଚ୍ଛୟାଽନ୍ୟୋଽନ୍ୟସଂଯୋଗଃ କନ୍ୟାୟାଶ୍ଚ ବରସ୍ୟ ଚ ।
ଗାନ୍ଧର୍ବଃ ସ ତୁ ବିଜ୍ଞେୟୋ ମୈଥୁନ୍ୟଃ କାମସମ୍ଭବଃ ॥

ଅର୍ଥାତ୍ ଯଦି ନିଜ ଇଚ୍ଛାରେ ବର କନ୍ୟା ଆତ୍ମୀୟ ଲୋକମାନଙ୍କ ଆଦେଶ ନପାଇ ମଧ୍ୟ ମିଳିତ ହୁଅନ୍ତି, ତାହାକୁ ଗାନ୍ଧର୍ବ ବିବାହ କୁହାଯାଏ ।

